# ବାଙ୍କନିଧି ରଚନାବଳୀ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୭୫୧୦୧୪

ପ୍ରଥମ ପ୍ରକାଶ : ୧୯୯୦

ମୁଦ୍ରଣ :
ସପ୍ତର୍ଷି ପ୍ରିଣ୍ଟର୍ସ, କଟକ-୧୦

ମୂଲ୍ୟ : ଛପନ ଟଙ୍କା ମାତ୍ର

# BANKANIDHI RACHANAVALI

*Published by*
**Orissa Sahitya Akademi**
Bhubaneswar-751014
First Edition : 1990

*Printed at*
**Saptarshi Printers**
Cuttack-10

**Price Fifty-six Rupees only**

# ଉପୋଦ୍‌ଘାତ

୰ ବାଙ୍କନିଧି ପଟ୍ଟନାୟକ ଥିଲେ ସ୍ୱାଧୀନତା ପୂର୍ବ ଓଡ଼ିଶାର ଜଣେ ବିଖ୍ୟାତ ବ୍ୟକ୍ତି । ମୁଖ୍ୟତଃ ଏହି ଖ୍ୟାତି ସେ ଅର୍ଜନ କରିଥିଲେ ଜଣେ କୃତବିଦ୍ୟ ସର୍ବଜନମାନ୍ୟ ଶିକ୍ଷକ ଓ ଶିକ୍ଷାବିତ୍ ରୂପେ । ଆଧୁନିକ ଓଡ଼ିଶାର ବହୁ କୃତିସଂପନ୍ନ ସାହିତ୍ୟିକ, ରାଜନୀତିକ ନେତା, ବୈଜ୍ଞାନିକ, ଅଧ୍ୟାପକ, କଳାକାର ଓ କ୍ରୀଡ଼ାବିତ୍ ସେମାନଙ୍କର ପ୍ରତିଭାର ବିକାଶ ଲାଗି ସେହି ମହାନୁଭବ ପ୍ରଧାନଶିକ୍ଷକଙ୍କ ପାଖରେ ଋଣୀ ଓ କୃତଜ୍ଞ । ବାଙ୍କନିଧିଙ୍କର କର୍ମସ୍ଥଳୀ ଥିଲା ଖୋର୍ଦ୍ଧା ହଇଇଂରାଜୀ ବିଦ୍ୟାଳୟ । କିନ୍ତୁ ତାଙ୍କର ଶିକ୍ଷକ-ପ୍ରତିଭାର ପ୍ରଭାବ ସାରା ଓଡ଼ିଶାରେ ବ୍ୟାପି ଯାଇଥିଲା ।

କିନ୍ତୁ ଏହି ବିଶିଷ୍ଟ ବ୍ୟକ୍ତିଙ୍କର ବୈଶିଷ୍ଟ୍ୟ କେବଳ ଶିକ୍ଷକତା ଭିତରେ ଆବଦ୍ଧ ନଥିଲା । ସେ ମଧ୍ୟ ଥିଲେ ଜଣେ ଲେଖକ ଓ ସାହିତ୍ୟିକ । ସୁକୋମଳମତି ବିକାଶୋନ୍ମୁଖ ଛାତ୍ରଛାତ୍ରୀମାନଙ୍କ ପାଇଁ ଓ ରସଗ୍ରାହୀ ପାଠକ-ପାଠିକାମାନଙ୍କ ପାଇଁ ସେ ବହୁ ଗଳ୍ପ, ପ୍ରବନ୍ଧ ଓ କବିତାଦି ରଚନା କରିଛନ୍ତି ଏବଂ ସେଗୁଡ଼ିକ ସେ ସମୟରେ ସମାଜରେ ବେଶ୍ ଆଦୃତ ମଧ୍ୟ ହୋଇଅଛି । ତାଙ୍କର ପ୍ରତିଟି ଲେଖା, ତାହା କିଶୋର କିଶୋରୀମାନଙ୍କ ଲାଗି ହେଉ ବା ସେମାନଙ୍କ ପିତାମାତା ଅଭିଭାବକମାନଙ୍କ ପାଇଁ ହେଉ—ଏକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ । ମଣିଷର ପାରିବାରିକ, ସାମାଜିକ, ନୈତିକ ଓ ବୌଦ୍ଧିକ ଉତ୍କର୍ଷ ସାଧନ ଦିଗରେ ସେ ତାଙ୍କର ଶିକ୍ଷକ ଜୀବନକୁ ନିୟୋଜିତ କରିଥିଲେ ଏବଂ ସେହି କାରଣରୁ ମଧ୍ୟ ଆମେ ତାଙ୍କର ପ୍ରତିଟି ରଚନାରେ ଏହିସବୁ ମାନବୀୟ ଉତ୍କର୍ଷର ପ୍ରତିଷ୍ଠା ପାଇଁ ଏକ ସୃଷ୍ଟିର ଆଗ୍ରହ ଲକ୍ଷ୍ୟ କରିଥାଉଁ । ମଣିଷ ମଣିଷ ଭିତରେ ଏକ କଲ୍ୟାଣ ଭାବନାମୂଳକ ଆନ୍ତରିକ ବୃଦ୍ଧାମଣୀର ସ୍ୱବକାଠି ତାଙ୍କ ଲେଖାଗୁଡ଼ିକ ଭିତରୁ ଆବିଷ୍କାର କରିଥାଉଁ । ତାଙ୍କର ଭାଷା ଶୁଦ୍ଧ, ସରଳ ଓ ସୁବୋଧ ଏବଂ ତାଙ୍କର ରଚନାଶୈଳୀ ଉପଦେଶାତ୍ମକ ଓ ନିର୍ଦ୍ଦେଶାତ୍ମକ । ଶିକ୍ଷାପ୍ରଦତା ହେଲା ତାଙ୍କର ସମସ୍ତ ଲେଖାର ମୂଳଧର୍ମ । ଶୁଭଦର୍ଶୀ କବିମାନେ ସତତା, ସ୍ନେହପ୍ରୀତି, ଦୟା କରୁଣା, କ୍ଷମାକାରୁଣ୍ୟ, ମାନ-ମହତ୍ତ୍ୱ, ଉଦାରତା ଓ ପବିତ୍ରତାଦି ମୌଳିକ ମାନବୀୟ ଧର୍ମଗୁଡ଼ିକୁ ସାହିତ୍ୟ ମାଧ୍ୟମରେ ହିଁ ଆମ ଭଳି ସାଧାରଣ ମଣିଷଙ୍କ ହୃଦୟକୁ ସଂଚରିତ କରାଇ ଦେଇ ଆନ୍ତି । ଅଥବା ଆମ ହୃଦୟରେ "ସ୍ଥାୟୀଭାବ" ରୂପେ ସୁପ୍ତ ରହିଥିବା ଏହି ସବୁ କଲ୍ୟାଣମୟ ଗୁଣଗୁଡ଼ିକୁ ଜାଗରିତ କରାଇ ଦିଅନ୍ତି । ଅବଶ୍ୟ ଏକଥା ସତ ଯେ, ପ୍ରଥମେ ରଚନାଟି ରସ, ରୀତି, ଧ୍ୱନି, ବ୍ୟଞ୍ଜନାଦି ଦ୍ୱାରା ସାହିତ୍ୟିକ ସ୍ୱରୂପକୁ ପ୍ରାପ୍ତ

ହୋଇ ପାଠକ ମନରେ ଅଲୌକିକ ଆନନ୍ଦ ସଞ୍ଚାରିତ କରୁ କରୁ, ପରୋକ୍ଷରେ ପାଠକକୁ କୌଣସି ଏକ ନୀତି, ରୁଚି ବା ଆଦର୍ଶ ପ୍ରତି ସଚେତନ ବା ଅନୁପ୍ରେରିତ କରାଇଥାଏ । ଏହି ଶକ୍ତିକୁ ଆଳଂକାରିକମାନେ "କାବ୍ୟରେ କାନ୍ତା-ସମ୍ମିତ ଉପଦେଶ" ରୂପେ ମାନ୍ୟତା ଦେଇଥାନ୍ତି ।

କିନ୍ତୁ ଆମର ମନେହୁଏ, କେବଳ ପରୋକ୍ଷ ବାଚକତା ନୁହେଁ—ପ୍ରତ୍ୟକ୍ଷ ବାଚକତାର ମଧ୍ୟ ସାହିତ୍ୟରେ ଏକ ମୂଲ୍ୟ ଅଛି । କେବଳ "କାନ୍ତାସମ୍ମିତ" ନୁହେଁ—"ଗୁରୁସମ୍ମିତ" ବା "ଶିକ୍ଷକସମ୍ମିତ" ଉପଦେଶର ମଧ୍ୟ ଏକ ସାହିତ୍ୟିକ ମୂଲ୍ୟ ଅଛି । ସାହିତ୍ୟରେ ସରଳ, ସହଜ, ସ୍ପଷ୍ଟ, ନିର୍ଦ୍ଦିଷ୍ଟ ଓ ପ୍ରତ୍ୟକ୍ଷ ଉଚ୍ଚାରଣର ମଧ୍ୟ ଏକ ମୂଲ୍ୟ ଅଛି । ଏପରି କି ରୂକ୍ଷ, ବା ଠୋକ୍‌ଠୋକ୍ ବକ୍ତବ୍ୟର ମଧ୍ୟ ସାହିତ୍ୟରେ ଏକ ସ୍ଥାନ ଅଛି । ସେଥିପାଇଁ ସଂସ୍କୃତ ସାହିତ୍ୟରେ "ନୀତିଶ୍ଳୋକ" ଗୁଡ଼ିକୁ କମ୍ ମର୍ଯ୍ୟାଦା ଦିଆଯାଇନାହିଁ ।

ସାହିତ୍ୟ ହେବା ଲାଗି ଗୋଟିଏ ରଚନାର ଯେଉଁ ଯେଉଁ ସବୁ ଗୁଣଥିବା ଆବଶ୍ୟକ, ତନ୍ମଧ୍ୟରୁ ପ୍ରଧାନଗୁଣଟି ହେଉଛି ଲେଖକର ଆନ୍ତରିକତା, ସତତା ଓ କଲ୍ୟାଣ-ଭାବନା । ଆଜି ମଧ୍ୟ, ସାହିତ୍ୟରେ ଯେ କେବଳ ରସବାଦ, ଧ୍ୱନିବାଦ, ରୀତିବାଦ ରହିବ, ଏମନ୍ତ ହୋଇ ମଧ୍ୟ କଥା ନାହିଁ । ନୀତିବାଦର ମଧ୍ୟ ସାହିତ୍ୟରେ ଏକ ନିର୍ଦ୍ଦିଷ୍ଟ ଗୌରବମୟ ସ୍ଥାନ ରହିଛି । ବହୁ ପାଠକ-ପାଠିକାଙ୍କ ଚିତ୍ତରେ ନୀତିବାଦୀ ଓ ଉପଦେଶାତ୍ମକ ସାହିତ୍ୟ ପ୍ରତି ଏକ ସହଜ ଆଗ୍ରହ ଓ ଉନ୍ମୁଖତା ମଧ୍ୟ ରହିଥାଏ ।

ଏ ଦୃଷ୍ଟିରୁ ଦେଖିଲେ ୰ ବାଙ୍କନିଧିଙ୍କ ରଚନାପୁଞ୍ଜ ନିଶ୍ଚୟ ଉପାଦେୟ ସାହିତ୍ୟ ରୂପେ ଦେଶବାସୀଙ୍କ ଦ୍ୱାରା ଗୃହୀତ ହେବ । ସୁଖର କଥା ଯେ, ଓଡ଼ିଶା ସାହିତ୍ୟ ଏକାଡେମୀ ଏହି ସ୍ମରଣୀୟ ଶିକ୍ଷକ ଗୁରୁ ଓ ଶୁଭଦର୍ଶୀ ସୁଲେଖକଙ୍କର ଲେଖାଗୁଡ଼ିକୁ ଏକାଠି କରି ଏକ ଗ୍ରନ୍ଥାବଳୀ ପ୍ରକାଶ କରୁଛନ୍ତି ।

ମୋର ବିଶ୍ୱାସ, ଏହି ଗ୍ରନ୍ଥାବଳୀଟି ସର୍ବସାଧାରଣରେ ଶ୍ରଦ୍ଧାର ସହିତ ଆଦୃତ ହେବ । ।।ଇତି।।

ମହାପାତ୍ର ନୀଳମଣି ସାହୁ
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

ତା ୧୨ । ୧ । ୯୦

# ସଂପାଦକଙ୍କ କଲମରୁ

ସ୍ୱର୍ଗତ ବାଙ୍କନିଧି ପଟ୍ଟନାୟକ ଜଣେ ଆଦର୍ଶ ଶିକ୍ଷକ, ଶିକ୍ଷାବିତ୍ ଓ ସୁସାହିତ୍ୟିକ ଭାବରେ ଓଡ଼ିଶାରେ ସୁପରିଚିତ । ତାଙ୍କର ରଚନାବଳୀ ସରଳ, ସରସ ଓ ସୁଖପାଠ୍ୟ ହୋଇଥିବାରୁ ସ୍କୁଲକଲେଜର ଛାତ୍ରଛାତ୍ରୀ ତଥା ଓଡ଼ିଆ ପାଠକମାନଙ୍କ ନିକଟରେ ବିଶେଷଭାବେ ଆଦୃତ । ତାଙ୍କ ରଚନାବଳୀ ମାଧ୍ୟମରେ କୋମଳମତି କିଶୋର କିଶୋରୀଙ୍କ ମନରେ ଉଚ୍ଚ ଆଦର୍ଶ ଓ ନୈତିକବୋଧର ପ୍ରତିଷ୍ଠା ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ବିଭିନ୍ନ ପୌରାଣିକ ଆଖ୍ୟାୟିକାରେ ବର୍ଣ୍ଣିତ ବରିଷ୍ଠ ଓ ଆଦର୍ଶ ନାରୀଚରିତ୍ର ଅବଲମ୍ବନରେ ତାଙ୍କ ଲେଖନୀରୁ ନିଶୃତ ହୋଇଥିଲା 'ସୀତା' ଓ 'ସାବିତ୍ରୀ' । ନାରୀଶିକ୍ଷାର ଉନ୍ନତି ଓ ପ୍ରସାର କଳ୍ପେ ଏହା ଥିଲା ତାଙ୍କର ଏକ ସାହିତ୍ୟିକ ପଦକ୍ଷେପ ।

ଜଣେ ସଫଳ ଅନୁବାଦକ ହିସାବରେ ମଧ୍ୟ ତାଙ୍କର ଲେଖନୀ ସାଧନାରତ ଥିଲା । 'ଇସପ୍‌ସ ଫେବଲସ୍'ର ଗଳ୍ପଗୁଡିକ ସେ ଯେପରି ସହଜ ଓ ସରଳ ଭାବରେ ଅନୁବାଦ କରିଛନ୍ତି ତାହା ତାଙ୍କୁ ଜଣେ ସାର୍ଥକ ଅନୁବାଦକ ରୂପେ ପରିଚିତ କରାଇ ପାରିଛି । ଉକ୍ତ ଗଳ୍ପଗୁଡିକ ସଂକଳିତ ହୋଇ 'କଥା-ଶତକ' ନାମରେ ଆତ୍ମପ୍ରକାଶ କରିଛି । କିନ୍ତୁ ଦୁଃଖର ବିଷୟ, କିଷ୍କିନ୍ଧ୍ୟା ଏକ ପୁରାତନ କୀଟଦଷ୍ଟ ପୁସ୍ତକରୁ ଶେଷ ୧୧ଟି ଗଳ୍ପ ଉଦ୍ଧାର କରିବା ସମ୍ଭବପର ନ ହେବାରୁ ମାତ୍ର ୮୯ଟି ଗଳ୍ପରେ 'କଥା-ଶତକ' ପୁସ୍ତକଟିକୁ ପରିସମାପ୍ତ କରି ଏହି ସଂକଳନରେ ଅନ୍ତର୍ଭୁକ୍ତ କରାଯାଇଛି ।

ବାଦଶାହା ଆକବର ଏବଂ ବିଦୂଷକ ପଣ୍ଡିତ ବୀରବଲଙ୍କୁ କେନ୍ଦ୍ରକରି ବହୁ କୌତୁକପ୍ରଦ ଓ ଚମକପ୍ରଦ କାହାଣୀ ବହୁକାଳରୁ ଲୋକମୁଖରେ ପ୍ରଚଳିତ । ଏ ସଂପର୍କରେ ପ୍ରକାଶିତ ବିଭିନ୍ନ ପୁସ୍ତକରୁ ୪୯ ଗୋଟି କାହାଣୀ ସଂଗ୍ରହ କରି ଲେଖକ 'ବୀରବଲ୍ କାହାଣୀ' ନାମରେ ଏକ ସଂକଳନ ପ୍ରକାଶ କରିଥିଲେ । ତାହା ଏହି 'ରଚନାବଳୀ'ରେ ସ୍ଥାନ ପାଇଛି ।

ବିଭିନ୍ନ ସାମାଜିକ ସମସ୍ୟାର ପୃଷ୍ଠଭୂମିରେ ରଚିତ ତାଙ୍କର ଗଳ୍ପ-ସଂକଳନ 'ଧୂପଗ୍ରସ୍ତା' ତାଙ୍କୁ ଓଡ଼ିଆ ଗଳ୍ପ-ସାହିତ୍ୟର ଅନ୍ୟତମ ଦିଗ୍‌ଦର୍ଶକ ଭାବରେ ସ୍ୱୀକୃତି ପ୍ରଦାନ କରିଛି । ଏଥିରୁ 'ମାଳତୀ' ଶୀର୍ଷକ ଗଳ୍ପଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଂକଳନ'ରେ ସ୍ଥାନିତ କରାଯାଇ ତାଙ୍କୁ ଜଣେ

ସାର୍ଥକ ଗାଳ୍ପିକ ଭାବରେ ସମ୍ମାନିତ କରାଯାଇଛି । ଓଡ଼ିଆ ସାହିତ୍ୟକୁ ତାଙ୍କର ମହନୀୟ ଅବଦାନ ପାଇଁ ସେ ଚିରନମସ୍ୟ ।

ଏତଦ୍‌ବ୍ୟତୀତ ଜୀବନୀସମ୍ବଳିତ ପୁସ୍ତକ 'ସାଧୁଚରିତମାଳା' ଓ ହିନ୍ଦୁଧର୍ମ ସଂପର୍କରେ ରଚିତ ପୁସ୍ତକ 'ହିନ୍ଦୁଧର୍ମଶିକ୍ଷା'ର ସେ ହେଉଛନ୍ତି ଯୁଗ୍ମରଚୟିତା । ଏଣୁ ଏ ଦୁଇଟି ପୁସ୍ତକ ଏହି ସଂକଳନରେ ଅନ୍ତର୍ଭୁକ୍ତ କରାଯାଇ ନାହିଁ । ଲେଖକଙ୍କର କେତେକ ବିଶିଷ୍ଟ ରଚନା ନିର୍ବାଚିତ କରି ଏହି ସଂକଳନରେ ଅନ୍ତର୍ଭୁକ୍ତ କରାଯାଇଛି ।

ସ୍ୱର୍ଗତ ପଟ୍ଟନାୟକଙ୍କର ସୁଯୋଗ୍ୟ ପୁତ୍ର ଲବ୍ଧପ୍ରତିଷ୍ଠ କଥାକାର ସ୍ୱର୍ଗତ ଅଖିଳମୋହନ ପଟ୍ଟନାୟକଙ୍କର ଧର୍ମପତ୍ନୀ ଜ୍ଞାନଦା ପଟ୍ଟନାୟକ ଏହି ସଂକଳନର ପ୍ରସ୍ତୁତି ପାଇଁ ଲେଖକଙ୍କର ସମସ୍ତ ରଚନା ଯୋଗାଇ ଦେଇଥିବାରୁ ମୁଁ ତାଙ୍କୁ ଏକାଡେମୀ ପକ୍ଷରୁ ସାଧୁବାଦ ଜଣାଉଛି ।

ଦୀର୍ଘଦିନ ଧରି ଲୋକଲୋଚନ ଅନ୍ତରାଳରେ ରହିଯାଇଥିବା ବାଙ୍କବାବୁଙ୍କ ରଚନାବଳୀ ସହୃଦୟ ପାଠକ-ପାଠିକାମାନଙ୍କ ନିକଟରେ ପୁନଶ୍ଚ ବିଶେଷ ଆଦୃତ ହେବ ବୋଲି ମୁଁ ଆଶା ରଖୁଛି ।

ସୁରେନ୍ଦ୍ରନାଥ ଶତପଥୀ

ମାଘସପ୍ତମୀ — ସଂପାଦକ

ତା ୨।୨।୯୦ — ଓଡ଼ିଶା ସାହିତ୍ୟ ଏକାଡେମୀ



ରାୟ ସାହେବ ବାଙ୍କନିଧି ପଟ୍ଟନାୟକ

ଜନ୍ମ—୧୮୮୯ ମୃତ୍ୟୁ—୧୩-୫-୧୯୬୧

# ଜୀବନ-ରେଖା

୧୮୮୯ ମସିହାରେ ଢେଙ୍କାନାଳର ଏକ ସଂଭ୍ରାନ୍ତ କରଣ ପରିବାରରେ ସ୍ୱର୍ଗତ ବାଙ୍କନିଧି ପଟ୍ଟନାୟକଙ୍କ ଜନ୍ମ । ଏହି ଢେଙ୍କାନାଳରେ ତାଙ୍କର ବାଲ୍ୟଜୀବନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପ୍ରାଥମିକ ଶିକ୍ଷା ମଧ୍ୟ ଆରମ୍ଭ ହୁଏ । ଛାତ୍ରଜୀବନରୁ ହିଁ ସ୍ୱର୍ଗତ ପଟ୍ଟନାୟକଙ୍କ ଉଜ୍ଜ୍ୱଳ କୃତିତ୍ୱର ପରିଚୟ ମିଳେ । ଢେଙ୍କାନାଳ ହାଇସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ସେ ଏମ୍. ଇ. ପରୀକ୍ଷାରେ ବୃତ୍ତିଲାଭ କରନ୍ତି । ଢେଙ୍କାନାଳରୁ ଆସି ସେ କଟକର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ମ୍ୟାଟ୍ରିକ ଅଧ୍ୟୟନ କରନ୍ତି । ୧୯୦୯ ମସିହାରେ ଉକ୍ତ ବିଦ୍ୟାଳୟରୁ ସମଗ୍ର ଓଡ଼ିଶାରେ ମାଟ୍ରିକ୍ ପରୀକ୍ଷାରେ ସେ ଦ୍ୱିତୀୟ ସ୍ଥାନ ଅଧିକାର କରି ବୃତ୍ତି ଲାଭ କରି ଜୀବନର ଗୌରବୋଜ୍ଜ୍ୱଳ ପୃଷ୍ଠାରେ ପ୍ରତିଭାର ସ୍ୱାକ୍ଷର ଅଙ୍କନ କରନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ସମ୍ମାନିତ କୁଳପତି ବୈଜ୍ଞାନିକ ସ୍ୱର୍ଗତ ଡକ୍ଟର ପ୍ରାଣକୃଷ୍ଣ ପରିଜା ଥିଲେ ତାଙ୍କର ସହପାଠୀ । ତାପରେ ଉଚ୍ଚଶିକ୍ଷା ପାଇଁ ସେ ରେଭେନ୍‌ସା କଲେଜରେ ଯୋଗ ଦିଅନ୍ତି । ଜଣେ ମେଧାବୀ ଓ କୃତୀ ଛାତ୍ର ଭାବରେ ତାଙ୍କର ପ୍ରଶଂସା ଚାରିଆଡ଼େ ଉଚ୍ଛ୍ୱସିତ ହୋଇଉଠେ । ଉକ୍ତ କଲେଜରୁ ସେ ପ୍ରଥମ ଶ୍ରେଣୀରେ ଆଇ. ଏ. ଓ ଦର୍ଶନଶାସ୍ତ୍ର ଅନର୍ସ ନେଇ କୃତିତ୍ୱର ସହିତ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି । ତାପରେ ବାଙ୍କନିଧି କଲିକତା ପ୍ରେସିଡେନ୍‌ସି କଲେଜରେ ଯୋଗ ଦେଇ ଏମ୍. ଏ. ଓ ଆଇନ୍‌ଶାସ୍ତ୍ର ଅଧ୍ୟୟନ କରନ୍ତି । ୧୯୧୬ ମସିହାରେ ଲ' ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ଓ ବୃତ୍ତିଲାଭ କରନ୍ତି ।

ଢେଙ୍କାନାଳ ଷ୍ଟେଟ୍‌ର ତହସିଲଦାର୍ ଭାବରେ ସ୍ୱର୍ଗତ ପଟ୍ଟନାୟକଙ୍କର ପ୍ରଥମ ଚାକିରି ଜୀବନ ଆରମ୍ଭ ହୁଏ । କିନ୍ତୁ ୧୯୧୮ ମସିହାରେ ତଦାନୀନ୍ତନ ରାଜାସାହେବ ସୁରପ୍ରତାପ ଦେବଙ୍କର ଅକାଳ ମୃତ୍ୟୁ ଯୋଗୁଁ ସେ ଉକ୍ତ କାର୍ଯ୍ୟ ପରିତ୍ୟାଗ କରି ବୃହତ୍ତର ଜୀବନର ସନ୍ଧାନରେ କଟକ ଚାଲି ଆସନ୍ତି । ସେ ସମୟରେ ଉତ୍କଳଗୌରବ ମଧୁସୂଦନ ଦାସ କଟକରେ ଆଇନ୍‌ବ୍ୟବସାୟ କରୁଥାନ୍ତି । ସୌଭାଗ୍ୟକ୍ରମେ ତାଙ୍କର ସହକାରୀ ଭାବରେ ସେ ଏକବର୍ଷ ଅତିବାହିତ କରନ୍ତି । କିନ୍ତୁ ଓକିଲାତି କରିବା ପାଇଁ ତାଙ୍କର ବିଶେଷ ଆଗ୍ରହ ନ ଥିଲା । ଆଇନ୍ ବ୍ୟବସାୟର ଗୌରବ, ବିପୁଳ ଉପାର୍ଜନର ପ୍ରଲୋଭନ ତାଙ୍କ ଭାବପ୍ରବଣ କର୍ମୋଜ୍ଜ୍ୱଳ ଯୁବମନକୁ ଧରି ରଖି ପାରିନାହିଁ । ମହତ୍ତର ଜୀବନ ଗଠନର କ୍ଷେତ୍ର— ଶିକ୍ଷାୟତନ ତାଙ୍କୁ ଯେପରି ଅପେକ୍ଷା କରିଥିଲା । ସେ ସମୟରେ ଖୋର୍ଦ୍ଧାର

ଏମ୍. ଇ. ଓ. ଥିଲେ ଅଜୟ ଚନ୍ଦ୍ର ଦାସ । ସେ ବାଙ୍କନିଧି ବାବୁଙ୍କ ବିଦ୍‌ବତ୍ତାର ପରିଚୟ ପାଇଥିଲେ । ତେଣୁ ତାଙ୍କୁ ତତ୍କାଳ ଖୋର୍ଦ୍ଧା ସ୍କୁଲର ହେଡ଼ମାଷ୍ଟର ଭାବରେ ସେ ନିଯୁକ୍ତ ନେଇଥିଲେ ୧୯୧୦ ମସିହାରେ । ଜୀବନର ଅତୃପ୍ତ ଭାବପ୍ରବଣତା ଏଇଠି ପାଏ ଗଭୀରତମ ତୃପ୍ତି । ସୃଜନାକାଂକ୍ଷାର ଆକୁଳ ପିପାସା ଏଇଠି ପାଏ ଆତ୍ମବିକାଶର ସାର୍ଥକ ପରିବେଶ । ୧୯୧୦ରୁ ୧୯୪୯—ଦୀର୍ଘ ୩୦ ବର୍ଷର ଶିକ୍ଷକ ଜୀବନରେ ସେ ଶତ ଶତ କିଶୋରକିଶୋରୀଙ୍କର ଜୀବନଗଠନର ଦାୟିତ୍ୱ ସୁଷ୍ଠୁ ରୂପେ ସଂପନ୍ନ କରି ଗଭୀର ଆତ୍ମତୃପ୍ତି ଲାଭ କରନ୍ତି । କବି ମାନସିଂହ, କବି ରାଉତରାୟଙ୍କ ପରି କାବ୍ୟିକ ପ୍ରତିଭା ତାଙ୍କରି ପ୍ରେରଣାରେ ଗଢ଼ି ଉଠନ୍ତି । ପାଟନା ତଥା ପରବର୍ତ୍ତୀ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସରେ ଖୋର୍ଦ୍ଧା ହାଇସ୍କୁଲ ଉଜ୍ଜ୍ୱଳ ସ୍ୱାକ୍ଷର ଉତ୍କୀର୍ଣ୍ଣ କରେ । ତାଙ୍କରି ସୁପରିଚାଳନା ଫଳରେ ବିଦ୍ୟାଳୟର ଶିକ୍ଷାକ୍ଷେତ୍ର ବ୍ୟତୀତ କ୍ରୀଡ଼ା କ୍ଷେତ୍ରରେ ମଧ୍ୟ ଅନୁରୂପ ଉତ୍କର୍ଷ ସାଧିତ ହୁଏ ।

କଠୋର କର୍ତ୍ତବ୍ୟନିଷ୍ଠା, ସୁଦୃଢ଼ ଶୃଙ୍ଖଳା-ଜ୍ଞାନ, ପ୍ରଭାବ-ଗମ୍ଭୀର ବ୍ୟକ୍ତିତ୍ୱ, ଉନ୍ମାଦନାମୟ ଅଧ୍ୟାପନା ଓ ସର୍ବୋପରି ଛାତ୍ରସମାଜ ପ୍ରତି ଆନ୍ତରିକ ସ୍ନେହ ଓ ସହାନୁଭୂତି ପାଇଁ ବାଙ୍କନିଧି ବାବୁ ଶିକ୍ଷାବିଭାଗରେ ତଥା ଜନସାଧାରଣରେ ଜଣେ ଆଦର୍ଶ ହେଡ଼ମାଷ୍ଟର ଭାବରେ ପରିଚିତ ହୁଅନ୍ତି । ପୂଜାସ୍ପଦ ପଟ୍ଟନାୟକଙ୍କ ଇଂରାଜୀ ପଦ୍ୟ ଅଧ୍ୟାପନା ଶୈଳୀ ଏବେ ମଧ୍ୟ ତାଙ୍କର ବହୁ ଗ୍ରାଜୁଏଟ୍ ଛାତ୍ରମାନଙ୍କ ମନରେ ଲୋଭନୀୟ ସ୍ମୃତି-ସଂପଦ ହୋଇ ରହିଛି ।

ପାଟନା ବିଶ୍ୱବିଦ୍ୟାଳୟର ଫେଲୋ ଭାବରେ ସମ୍ମାନିତ ହୋଇ ପୂଜାସ୍ପଦ ପଟ୍ଟନାୟକଙ୍କର ବହୁ ବର୍ଷ ଅତିବାହିତ ହୁଏ । ୧୯୩୫ ମସିହାରେ ମୟୂରଭଞ୍ଜର ମହାରାଜା ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଙ୍କର ଅନୁରୋଧରେ ଖୋର୍ଦ୍ଧା ସ୍କୁଲରୁ ଏକବର୍ଷ ପାଇଁ ଛୁଟି ନେଇ ସେ ବାରିପଦା ହାଇସ୍କୁଲରେ ହେଡ଼ମାଷ୍ଟର ଭାବରେ ଯୋଗ-ଦିଅନ୍ତି । କିନ୍ତୁ ନିଜ ପ୍ରିୟ ସ୍କୁଲର ଦୁରବସ୍ଥା ନେଇ ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କର ଅନୁଯୋଗ ତାଙ୍କୁ ଅଧୀର କରେ । ବର୍ଷଶେଷରେ ସେ ପୁଣି ଫେରି ଆସନ୍ତି ଜୀବନର କର୍ମସ୍ଥଳୀକୁ—ତାଙ୍କର ପ୍ରିୟ ବିଦ୍ୟାଳୟର ପରିବେଶ ଭିତରକୁ ।

ଶିକ୍ଷାକ୍ଷେତ୍ରରେ ତାଙ୍କର ଅଜସ୍ର ଅବଦାନର ସ୍ୱୀକୃତି ସ୍ୱରୂପ ୧୯୩୭ ମସିହାରେ ବାଙ୍କନିଧି ବାବୁ ଭାରତ ସରକାରଙ୍କ ଦ୍ୱାରା ବହୁଜନ ଆକାଂକ୍ଷିତ 'ରାୟସାହେବ' ଉପାଧିରେ ଭୂଷିତ ହୁଅନ୍ତି । ସମଗ୍ର ବିହାର-ଓଡ଼ିଶା ମଧ୍ୟରେ କୌଣସି ପ୍ରାଇଭେଟ୍ ହାଇସ୍କୁଲର ହେଡ଼ମାଷ୍ଟରଙ୍କ ଭାଗ୍ୟରେ ଏତାଦୃଶ ରାଜସମ୍ମାନ ସେପର୍ଯ୍ୟନ୍ତ ସମ୍ଭବ ହୋଇ ପାରି ନ ଥାଏ । ତା' ପରେ ପରେ ଜଣେ ସୁଦକ୍ଷ ଲବ୍ଧପ୍ରତିଷ୍ଠ ଶୃଙ୍ଖଳା-ପରାୟଣ ହେଡ଼ମାଷ୍ଟର ଭାବରେ ସେ ସରକାରଙ୍କ ଦ୍ୱାରା ପୁଣି ଜୁବୁଲି ମେଡ଼ାଲରେ

ପୁରସ୍କୃତ ହୁଅନ୍ତି । ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଶିକ୍ଷକ ଭାବରେ ଦେଶମୟ ତାଙ୍କର ଖ୍ୟାତି ପରିବ୍ୟାପ୍ତ ହୁଏ ।

ସ୍ୱର୍ଗତ ପଟ୍ଟନାୟକଙ୍କର ଜୀବନ-ଇତିହାସ ହିଁ ଖୋର୍ଦ୍ଧା ହାଇସ୍କୁଲର ଇତିହାସ । ତାଙ୍କର କାର୍ଯ୍ୟକାଳ ଭିତରେ ଏହାର ଗୌରବୋଜ୍ଜ୍ୱଳ ବିପୁଳ ପରଂପରା ଗଢ଼ି-ଉଠିବା ସଙ୍ଗେ ସଙ୍ଗେ ଦୀର୍ଘାୟତନ ବିରାଟ ସ୍କୁଲ ପ୍ରାସାଦ ଓ ସୁରୁଚିସଂପନ୍ନ ଛାତ୍ରାବାସ ନିର୍ମିତ ହୁଏ । ବିଦ୍ୟାଳୟର ପ୍ରାକୃତିକ ପରିବେଶ ବେଶ୍ କାବ୍ୟିକ ଓ କଳାମୟ । ସବୁଠି ଫୁଟି ଉଠିଛି ତାଙ୍କର କଳାମୟ ସୌନ୍ଦର୍ଯ୍ୟବୋଧ ଓ କର୍ମ-ନୈପୁଣ୍ୟର ମଧୁର ରୂପ । ସେ ତାଙ୍କର ପ୍ରିୟ ବିଦ୍ୟାଳୟରୁ ଅବସର ଗ୍ରହଣ କରନ୍ତି ୧୯୪୯ ମସିହାରେ ।

ବାଙ୍କବାବୁ ଥିଲେ ଜଣେ ଉଚ୍ଚକୋଟିର ସାହିତ୍ୟିକ । ବିଶେଷତଃ ଜଣେ ବିଶିଷ୍ଟ କଥାକାର ଭାବରେ ସେ ଓଡ଼ିଆ ସାହିତ୍ୟରେ ସୁପରିଚିତ । ମୁକୁର, ଉତ୍କଳ ସାହିତ୍ୟ, ନବଭାରତ ପ୍ରଭୃତି ସାହିତ୍ୟ-ପତ୍ରିକାମାନଙ୍କର ସେ ଜଣେ ଧାରାବାହିକ ଲେଖକରୂପେ ପରିଚିତ । ତାଙ୍କ ରଚିତ ସୀତା, ସାବିତ୍ରୀ, କଥାଶତକ, ସୁନାପାହାଡ଼, ମୁକୁତାହାର ଓ ଧୂପ୍‌ଛାୟା ପୁସ୍ତକଗୁଡ଼ିକ ତାଙ୍କର ସାରସ୍ୱତ ସାଧନାର ସ୍ୱାକ୍ଷର ବହନ କରେ ।

ବାଙ୍କନିଧିଙ୍କର ସ୍ୱର୍ଗାରୋହଣ ହେଲା ୧୯୬୧ ମେ ୧୩ ତାରିଖରେ । ବାଙ୍କବାବୁଙ୍କ ଜୀବନପାତ୍ର ସବୁ ଦିଗରୁ ସମୃଦ୍ଧ । ସଫଳତାର ଗୋଟିଏ ସାର୍ଥକ ସୃଷ୍ଟି ତାଙ୍କର ଜୀବନ । ଖୋର୍ଦ୍ଧା ଇତିହାସରେ ବାଙ୍କବାବୁଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଚି । ଶିକ୍ଷା, ସମାଜ, ସାହିତ୍ୟ ଓ ବ୍ୟକ୍ତିବିଶେଷ ପ୍ରତ୍ୟେକ ପର୍ଯ୍ୟାୟରେ ତାଙ୍କର ସୁମହତ୍ ଅବଦାନ ଚିର ଅକ୍ଷୁଣ୍ଣ ରହିଥିବ ।



# ବଂଶଲତା

ଶ୍ରୀ ରଘୁ ଅରକ୍ଷିତ
|
ଶ୍ରୀ ବ୍ରଜନାଥ ବଡ଼ ଜେନା
|
ଶ୍ରୀ କୁଞ୍ଜବିହାରୀ ପଟ୍ଟନାୟକ
|
ଶ୍ରୀ ବାଙ୍କନିଧି ପଟ୍ଟନାୟକ
|

| | | | | |
|---|---|---|---|---|
| ମନମୋହନ | ଅଖିଳମୋହନ | ଫକିରମୋହନ | ଭୁବନମୋହନ | ପ୍ରୀତମଂଜରୀ | ଶାନ୍ତମଂଜରୀ |

ଶ୍ୱଶୁର—ଶ୍ରୀ କୁଞ୍ଜବିହାରୀ ପଟ୍ଟନାୟକ

ଶାଶୁ—ଶ୍ରୀମତୀ ଭାନୁମତୀ ଦେବୀ

ଦାଦା ଶ୍ୱଶୁର—ଶ୍ରୀ ପଦ୍ମଚରଣ ପଟ୍ଟନାୟକ

ପିତା—ଶ୍ରୀ କୁଞ୍ଜବିହାରୀ ପଟ୍ଟନାୟକ

ମାତା—ଶ୍ରୀମତୀ ଚମ୍ପା ଦେବୀ

ସ୍ତ୍ରୀ—ଶ୍ରୀମତୀ ହାରମଣୀ ଦେବୀ

# ସୂଚୀ





# ଭୂମିକା

ଏ ଦେଶର ପୁରାଣଗୁଡ଼ିକ ବହୁ ଆଖ୍ୟାୟିକାରେ ପୂର୍ଣ୍ଣ । ସମସ୍ତ ପୁରାଣ ଭିତରେ ମହାଭାରତ ଏ ବିଷୟରେ ସର୍ବଶ୍ରେଷ୍ଠ—ମୂଳ ଆଖ୍ୟାନ ଛଡ଼ା ମହାଭାରତରେ ଯେତେଗୁଡ଼ିଏ ଆଖ୍ୟାୟିକା ଅଛି, ସେଗୁଡ଼ିକ ବିଶ୍ଳେଷଣ କରି ଦେଖିଲେ ତନ୍ମଧ୍ୟରୁ ମାନବ ପ୍ରକୃତିର ବିଚିତ୍ର ଭାବର ଅଭିବ୍ୟକ୍ତିର ଅତ୍ୟୁଜ୍ଜ୍ୱଳ ପରିଚୟ ମିଳେ । ଅବଶ୍ୟ ଅନେକ ଆଖ୍ୟାୟିକାର ମର୍ମଭେଦ କରିବା ସୁକଠିନ—କଳ୍ପନାଜାଲ ଛିନ୍ନ କରି ମୂଳରେ ପହଞ୍ଚିବା ସାମାନ୍ୟ ବିଚକ୍ଷଣତାର କର୍ମ ନୁହେଁ । ତାହାର ଅଭାବରୁ ବହୁ ପୌରାଣିକ ଆଖ୍ୟାୟିକା ଜନସାଧାରଣଙ୍କ ନିକଟରେ ଚିରଦିନ ପ୍ରହେଳିକା ହୋଇ ରହିଅଛି । ପରନ୍ତୁ ତତ୍କାଳୀନ ଅନେକ କଳ୍ପନା ଆଜି ମାନବଚକ୍ଷୁର ଉନ୍ନତତର ବିଜ୍ଞାନ ନିକଟରେ ନିତାନ୍ତ ବାଳକୋଚିତ ପ୍ରତୀୟମାନ ହେଉଅଛି । ତଥାପି ପ୍ରାୟ ସବୁଗୁଡ଼ିକରେ ଯେ ଗୋଟିଏ ସହଜ ସୁନ୍ଦର ଭାବ ଅଛି, ତାହା ସର୍ବଦା ହୃଦୟକୁ ମୁଗ୍ଧ କରିଥାଏ । ପୁଣି ଅଧିକାଂଶ ଆଖ୍ୟାୟିକାରେ ପ୍ରାଚୀନ କାଳର ସମାଜଚିତ୍ର ଅତି ପରିସ୍ଫୁଟ ରୂପେ ପ୍ରକାଶିତ ହୋଇଥିବାରୁ ତଥ୍ୟାନ୍ୱେଷୀ ପାଠକମାନଙ୍କ ନିକଟରେ ତାହାର ମୂଲ୍ୟ କିଛି ଊଣା ନୁହେଁ । ଆଦର୍ଶ ହିସାବରେ ମଧ୍ୟ କୌଣସି କୌଣସି ଆଖ୍ୟାୟିକା ବହୁ ଊର୍ଦ୍ଧ୍ୱରେ ଅବସ୍ଥିତ ଏବଂ ଚିରନୂତନରୂପେ ପ୍ରତିଭାତ ।

ସର୍ବାଂଶରେ ଆଲୋଚନା କରି ଦେଖିଲେ ସାବିତ୍ରୀ-ଉପାଖ୍ୟାନ ଗୋଟିଏ ପରମ ଉପାଦେୟ ବସ୍ତୁ । ଏଭଳି ସର୍ବାଙ୍ଗସୁନ୍ଦର ଆଖ୍ୟାୟିକା ଯଥାର୍ଥରେ ସମଗ୍ର ପୁରାଣ-ସାହିତ୍ୟରେ ବିରଳ । ସାଧନରେ ଅବିଚଳିତ ନିଷ୍ଠା, ପରୀକ୍ଷା ପ୍ରଲୋଭନରେ ଅସାଧାରଣ ଧୈର୍ଯ୍ୟ ଓ ଦୃଢ଼ତା, ଉନ୍ନତ ପବିତ୍ର ଆଦର୍ଶର ଅନୁସରଣରେ ଐକାନ୍ତିକ ଅନୁରାଗ ଓ ଅକୁଣ୍ଠିତ ତ୍ୟାଗ ଏକାଧାରରେ ଅନ୍ୟ କୌଣସି ଆଖ୍ୟାୟିକାରେ ଏପରି ପରିସ୍ଫୁଟ ହୋଇଥିବାର ପ୍ରାୟ ଦେଖାଯାଏ ନାହିଁ । ଅଧିକନ୍ତୁ ମାନବ ପ୍ରାଣର ସ୍ନେହ, ପ୍ରୀତି, ଭକ୍ତି, ସୌଜନ୍ୟ ସେବାନୁରାଗ ପ୍ରଭୃତି ସଦ୍ଭାବଗୁଡ଼ିକ ଯେପରି ସର୍ବାଙ୍ଗ ମୂର୍ତ୍ତି ପରିଗ୍ରହ କରି ରହିଅଛି । କଠୋର ସାଧନା ଏକା ଦେବାନୁଗ୍ରହ ବା ବିଭୁପ୍ରସାଦଲାଭର ସୋପାନ, ସାବିତ୍ରୀଚରିତରେ ଏହି ସତ୍ୟର ପୂର୍ଣ୍ଣ ପ୍ରତିଷ୍ଠା । ତେଣୁ ସାବିତ୍ରୀ ଏ ଦେଶରେ ଯୁଗଯୁଗାନ୍ତ ସ୍ୱୟଂ ଦେବୀରୂପେ ପୂଜିତା ।

ଏହି ସାବିତ୍ରୀ-ଉପାଖ୍ୟାନ ଭାରତ ଭୂମିରେ କେତେ କବି ନାଟ୍ୟକାର ଓ ଶିଳ୍ପୀଙ୍କ ଲେଖନୀ ଓ ତୂଳିକାକୁ ପରମ ଉପାଦେୟ ଉପାଦାନ ଯୋଗାଇ ଅଛି ଏବଂ ନାନା ଭାଷାର ସାହିତ୍ୟର ପୁଷ୍ଟିସାଧନ କରିଅଛି । ପୌରାଣିକ ଆଖ୍ୟାୟିକାରୁ ସାହିତ୍ୟର ଉପାଦାନ ସଂଗ୍ରହ କରିବା ଦେଶର ସାହିତ୍ୟିକମାନଙ୍କର ଗୋଟିଏ ବିଶିଷ୍ଟ

କାର୍ଯ୍ୟ । ଏଥିପାଇଁ ବିଶେଷ ଶକ୍ତି ଓ ସୂକ୍ଷ୍ମ ଦୃଷ୍ଟି ଆବଶ୍ୟକ । ଆମ୍ଭମାନଙ୍କ ଭିତରେ ସେପ୍ରକାର ଉଦ୍ୟମର ଶୋଚନୀୟ ଅଭାବ ଲକ୍ଷିତ ହୁଏ । ସାମାନ୍ୟ ଯାହା ହୋଇଅଛି, ସେଥିରେ ସେହି ଶକ୍ତି ଓ ଦୃଷ୍ଟିର ଅତ୍ୟଳ୍ପ ପରିଚୟ ମିଳିଥାଏ । ଏହି କ୍ଷୁଦ୍ର ପୁସ୍ତକରେ ଲେଖକ ସେହି ଉଦ୍ୟମର କଥଞ୍ଚିତ ଆଭାସ ଦେଇଥିବାର ଦେଖି ମୁଁ ଆନନ୍ଦିତ ହୋଇଅଛି । ବାଙ୍କନିଧି ବାବୁ ସାହିତ୍ୟ କ୍ଷେତ୍ରରେ ସମ୍ପୂର୍ଣ୍ଣ ନୂତନ ବା ଅପରିଚିତ ନୁହନ୍ତି । ତାଙ୍କର ସୁକଳ୍ପିତ ସରସ ଗଳ୍ପଗୁଡ଼ିକ ଉତ୍କଳ ସାହିତ୍ୟରେ ଉପାଦେୟ ସାମଗ୍ରୀରୂପରେ ପରିଗଣିତ ହୋଇଅଛି ଏବଂ ତାହା ପାଠ କରି ଅନେକେ ମୁଗ୍ଧ । ଆଜି କେବଳ ସେ ନୂତନ ଗ୍ରନ୍ଥକାରରୂପରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ । ଏଥିରେ ଅଳ୍ପ ପରିସର ଭିତରେ ଘଟନାର ବର୍ଣ୍ଣନରେ, ଚରିତ୍ରବିଶ୍ଳେଷଣରେ, ମହତ୍ତ୍ୱ ପ୍ରଦର୍ଶନରେ ସେ ଯେପରି କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି, ତାହା ସାମାନ୍ୟ ପ୍ରଶଂସାର କଥା ନୁହେଁ । ପୁସ୍ତକର ଭାଷା ଯେ ବିଷୟର ସମ୍ପୂର୍ଣ୍ଣ ଉପଯୋଗୀ ହୋଇଅଛି, ଏ କଥା ଅକୁଣ୍ଠିତ ଭାବରେ କୁହାଯାଇ ପାରେ । ବ୍ୟବହାର ଦୋଷରେ ସୁନ୍ଦର ବସ୍ତୁ କୁତ୍ସିତ ଆକାର ଧାରଣ କରେ ଏବଂ ମାନବ ପ୍ରାଣରେ ପୀଡ଼ା ଉତ୍ପାଦନ କରେ । ସାହିତ୍ୟ କ୍ଷେତ୍ରରେ ଏହାର ଦୃଷ୍ଟାନ୍ତ ଭୂରି ଭୂରି । ମୋହର ସମ୍ପୂର୍ଣ୍ଣ ବିଶ୍ୱାସ, ଏହି କ୍ଷୁଦ୍ର ପୁସ୍ତକଟି ପାଠ କରି କାହାରି ପ୍ରାଣରେ ସେପ୍ରକାର କୌଣସି ଭାବର ଉଦ୍ରେକ ହେବ ନାହିଁ ; ପରନ୍ତୁ ମଧୁର ବିଷୟର ସରସ ବର୍ଣ୍ଣନା ପାଠ କରି ଚିତ୍ତ ପ୍ରଫୁଲ୍ଲ ଓ ହୃଦୟ ସ୍ନିଗ୍ଧ ହେବ ।

ଏ ଦେଶରେ ନାରୀଶିକ୍ଷାର ପ୍ରଚାର ଓ ପ୍ରସାର ଯେ ଏକାନ୍ତ ଆବଶ୍ୟକ, ଏ କଥା ଆଜି ଆଉ ଯୁକ୍ତିତର୍କଦ୍ୱାରା ପ୍ରମାଣିତ କରିବାକୁ ହେବ ନାହିଁ । କେବଳ ଦୁଃଖର କଥା ଏହି ଯେ, ସେଥିପାଇଁ ଆମ୍ଭମାନଙ୍କ ମଧ୍ୟରେ ସମୁଚିତ ଉତ୍ସାହ ଓ ଉଦ୍ୟମ ନାହିଁ । ନାରୀ-ପ୍ରକୃତିର ଉଦ୍‌ବୋଧନ ପାଇଁ—ନାରୀତ୍ୱର ଆଦର୍ଶ ଦେଶର ବାଳିକା ଓ ଯୁବତୀମାନଙ୍କ ସମ୍ମୁଖରେ ଉପସ୍ଥିତ କରିବାପାଇଁ ବିଶେଷ କୌଣସି ଚେଷ୍ଟାର ଲକ୍ଷଣ ନାହିଁ । ଯେଉଁମାନେ ଏ କ୍ଷେତ୍ରରେ କଷ୍ଟସାଧ୍ୟ ଶ୍ରମ ଓ ଶକ୍ତି ବ୍ୟୟ କରିଅଛନ୍ତି ଓ କରୁଅଛନ୍ତି, ସେମାନେ ଯଥାର୍ଥରେ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର । 'ସାବିତ୍ରୀ' ଏ ବିଭାଗରେ ଖଣ୍ଡିଏ ଉପାଦେୟ ପୁସ୍ତକ, ଏଣୁ ଆମ୍ଭମାନଙ୍କର ଆଦରର ବସ୍ତୁ । ଗ୍ରନ୍ଥକାରଙ୍କର ଏ ନୂତନ ଉଦ୍ୟମ ସର୍ବଥା ପ୍ରଶଂସନୀୟ । ଅଦୂର ଭବିଷ୍ୟତରେ ତାଙ୍କଠାରୁ ବହୁତର ଉପାଦେୟ ସାମଗ୍ରୀ ପ୍ରାପ୍ତିର ଆଶା ହୃଦୟରେ ପୋଷଣ କରି ମୁଁ ତାଙ୍କୁ ସର୍ବାନ୍ତଃକରଣରେ ଅଭିନନ୍ଦନ କରୁଅଛି ।

କଟକ
୨୦।୩।୧୯୧୮

ଶ୍ରୀ ବିଶ୍ୱନାଥ କର

# ପ୍ରଥମ ପରିଚ୍ଛେଦ

ଅତି ପୂର୍ବକାଳରେ ଆମ୍ଭମାନଙ୍କ ଏହି ଭାରତବର୍ଷରେ ମଦ୍ରଦେଶ ବୋଲି ଗୋଟିଏ ରାଜ୍ୟ ଥିଲା । ସେ ସତ୍ୟଯୁଗର କଥା । ସେ ସମୟରେ ଦେଶର ଅବସ୍ଥା କିପରି ସମୃଦ୍ଧିଶାଳୀ ଓ ମନୋରମ ଥିଲା, ବର୍ତ୍ତମାନ କାଳରେ ତାହାର ଧାରଣା କରିବା କଠିନ । ଆଜି ସେ ପବିତ୍ର ଦେଶ ନାହିଁ ବା ତାହାର ସେ ଅଲୌକିକ ଶୋଭା ସମ୍ପଦ ନାହିଁ । ସେ ସମୟରେ ଜଳ ସ୍ଥଳ ବାୟୁ ଆକାଶ ସର୍ବତ୍ରଠାରେ କିପରି ଗୋଟିଏ ଆନନ୍ଦ, କିପରି ଗୋଟାଏ ମୋହ ଥିଲା । ପ୍ରକୃତି ଯେପରି ସୁନ୍ଦର, ମନୁଷ୍ୟ ସେହିପରି ସରଳ ଓ ସତ୍ୟପ୍ରିୟ । ସମସ୍ତଙ୍କ ମୁଖରେ ପ୍ରସନ୍ନତା, ମନରେ ଉତ୍ସାହ, ହୃଦୟରେ ଶାନ୍ତି । ସ୍ଥୂଳରେ ସେ ସମୟର ସବୁ କିଛି ବଡ଼ ସୁନ୍ଦର ଓ ପ୍ରୀତିକର ଥିଲା ।

ଏହି ମଦ୍ରଦେଶରେ ଅଶ୍ୱପତି ନାମରେ ଜଣେ ପରମଧାର୍ମିକ ନରପତି ରାଜତ୍ୱ କରୁଥିଲେ । ମଦ୍ରଦେଶର ସୌନ୍ଦର୍ଯ୍ୟର ଅନ୍ତ ନ ଥିଲା, ଐଶ୍ୱର୍ଯ୍ୟର ତୁଳନା ନ ଥିଲା । ରାଜାଙ୍କର ଶାସନ ପାଳନ ଗୁଣରେ ପ୍ରଜାମାନେ ଅତିଶୟ ସୁଖରେ କାଳ ଯାପନ କରୁଥିଲେ । ରାଣୀ ମାଳବୀ ଦେବୀ ରାଜପୁରୀ ମଧ୍ୟରେ ସାକ୍ଷାତ୍ ଅନ୍ନପୂର୍ଣ୍ଣା ପରି ରହି ସମସ୍ତଙ୍କର ଦୁଃଖ କଷ୍ଟ ହରଣ କରୁଥିଲେ । ତାଙ୍କର ଦାନଶୀଳତା ଓ ମଧୁର ବ୍ୟବହାରରେ ମୁଗ୍ଧ ହୋଇ ସମସ୍ତେ ତାଙ୍କୁ ଦେବତା ପରି ଭକ୍ତି ଓ ଶ୍ରଦ୍ଧା କରୁଥିଲେ । ରାଜା ଓ ରାଣୀଙ୍କ ପୁଣ୍ୟବଳରେ ରାଜ୍ୟ ସର୍ବଦା ଧନଧାନ୍ୟରେ ପୂର୍ଣ୍ଣ । ଦୁଃଖ ବା ଅଭାବ କଣ, ଲୋକମାନେ ଜାଣନ୍ତି ନାହିଁ । କି ନଗର, କି ଜନପଦ, ସର୍ବତ୍ରଠାରେ ଶାନ୍ତି ଓ ସୁଖ ବିରାଜ କରୁଥିଲା । ଗୃହସ୍ଥମାନେ ନିର୍ବିବାଦରେ ନିଜ ନିଜର ବ୍ୟବସାୟ କରୁଥିଲେ, ତାପସମାନେ ତପୋବନରେ ପରମ ଶାନ୍ତିରେ ଯାଗଯଜ୍ଞାଦି ସମ୍ପାଦନ କରୁଥିଲେ । ସଂସାରରେ ଯାହା କିଛି କାମନା ବା ଅଭିଳାଷର ବିଷୟ, ଅଶ୍ୱପତିଙ୍କର ସୌଭାଗ୍ୟବଶତଃ ସେ ସମସ୍ତ ବିଷୟରେ ଅଭାବ ନ ଥିଲା ।

କିନ୍ତୁ ଅଖଣ୍ଡ ସୁଖ ମନୁଷ୍ୟ ଭାଗ୍ୟରେ ଲେଖା ନାହିଁ । ଚନ୍ଦ୍ରରେ କଳଙ୍କ ଅଛି, କୁସୁମରେ କୀଟ ଅଛି । ମଦ୍ରଦେଶର ଅନାବିଳ ସୁଖ ଉପରେ ସେହିପରି ଗୋଟିଏ ଦୁଃଖର ଛାୟା ପଡ଼ିଥିଲା—ରାଜା ସନ୍ତାନହୀନ । ଏଥିଲାଗି କି ରାଜା, କି ପ୍ରଜା, ସମସ୍ତେ ଅତ୍ୟନ୍ତ ଦୁଃଖିତ । ସମୃଦ୍ଧିଶାଳୀ ରାଜ୍ୟ, ଉଚ୍ଚ ବଂଶଗୌରବ, ଅକଳଙ୍କ

ଯଶ, ସବୁ ଅଛି; କିନ୍ତୁ ଗୋଟିଏ ଉତ୍ତରାଧିକାରୀ ଅଭାବରେ ରାଜା ସର୍ବଦା ଦୁଃଖରେ ମ୍ରିୟମାଣ । ପ୍ରଜାମାନଙ୍କର ଦୁଃଖ—ଯେ ରାଜ୍ୟକୁ ଏକ ପରିବାର ଜ୍ଞାନ କରି ପାଳନ କରୁଥିଲେ, ତାଙ୍କ ଅନ୍ତେ ଆମ୍ଭମାନଙ୍କ ଦଶା କଣ ହେବ ? ସନ୍ତାନ ବ୍ୟତୀତ ଅପର କିଏ କୁଳମର୍ଯ୍ୟାଦା ରକ୍ଷା କରିବ ?

ପୁତ୍ରକାମନାରେ ରାଜା ଓ ରାଣୀ ସର୍ବଦା ଦେବକାର୍ଯ୍ୟରେ ବ୍ୟସ୍ତ । ଏପରି ହୋମ ଯାଗ ବାର ବ୍ରତ ନାହିଁ, ଯାହା ସେମାନେ ନ କରିଅଛନ୍ତି । କିନ୍ତୁ କାହିଁରେ କିଛି ଫଳ ହେଲା ନାହିଁ । ଅବଶେଷରେ ଦିନେ ରାଜା ରାଜ୍ୟର ସମସ୍ତ ବ୍ରାହ୍ମଣ ପଣ୍ଡିତ ଓ ମୁନି ଋଷିମାନଙ୍କୁ ନିମନ୍ତ୍ରଣ କରି ଆଣି ସେମାନଙ୍କ ପରାମର୍ଶ ପଚାରିଲେ । ରାଜାଙ୍କ କାତରୋକ୍ତି ଶୁଣି ସେମାନଙ୍କ ମନରେ ବଡ଼ କଷ୍ଟ ହେଲା । ସେମାନେ ଆପଣା ମଧ୍ୟରେ ନାନା ବିଚାର ବିତର୍କ ପରେ ଗୋଟାଏ ସଦ୍‌ଯୁକ୍ତି ସ୍ଥିର କରି ରାଜାଙ୍କୁ କହିଲେ, "ମହାରାଜ, ଆପଣ ନିଷ୍ଠାସହକାରେ ସାବିତ୍ରୀ ଦେବୀଙ୍କର ଉପାସନା କରନ୍ତୁ, ନିଶ୍ଚୟ ମନସ୍କାମ ସିଦ୍ଧ ହେବ ।"

ମୁନି ଋଷିମାନଙ୍କ ଉପରେ ରାଜାଙ୍କର ଅଚଳା ଭକ୍ତି । ସେମାନଙ୍କ ଆଶ୍ୱାସ-ବାକ୍ୟ ଶୁଣି ସେ ଅକୂଳରେ ଟିକିଏ କୂଳ ପାଇଲେ, ନିବିଡ଼ ଅନ୍ଧକାର ମଧ୍ୟରେ ଆଲୋକର ଗୋଟିଏ କ୍ଷୀଣ ରେଖା ଦେଖି ପାରିଲେ । ରାଜା ସନ୍ତାନଲାଭର ସମସ୍ତ ଆଶା ଭରସା ତ୍ୟାଗ କରିଥିଲେ । ବର୍ତ୍ତମାନ ଋଷିବାକ୍ୟରେ ତାଙ୍କର ବିଷଣ୍ଣ ମୁଖରେ ଆନନ୍ଦର ରକ୍ତିମ ଛଟା ଦେଖା ଦେଲା । ରାଜା ସମସ୍ତଙ୍କୁ ସମ୍ମାନ ସହିତ ଯଥାବିଧି ବିଦାୟ ଦେଇ ଉତ୍‌ଫୁଲ୍ଲ ହୃଦୟରେ ଗୃହକୁ ଫେରିଲେ ।

ଗୃହରେ ଥାଇ ଉପାସନା କଲେ ନାନା ବାଧା ବିଘ୍ନ ଉପସ୍ଥିତ ହୋଇ ପାରେ, ଏଥିଲାଗି ଅଶ୍ୱପତି ବନଗମନର ଉଦ୍ୟୋଗ କଲେ । ପ୍ରଜାମାନେ କେତେକ ଆନନ୍ଦ ଓ କେତେକ ନିରାନନ୍ଦରେ ରାଜାଙ୍କୁ ବିଦାୟ ଦେଲେ । ନିରାନନ୍ଦ କାହିଁକି ନା, ରାଜସିଂହାସନ ଅନେକ ଦିନ ଶୂନ୍ୟ ପଡ଼ି ରହିବ ଓ ପିତୃତୁଲ୍ୟ ରାଜା ସେମାନଙ୍କୁ ଛାଡ଼ି ବନକୁ ଯିବେ; ଆନନ୍ଦ କାହିଁକି ନା, ରାଜାଙ୍କର ପୁତ୍ରଲାଭ ହେବ, ଏହି ଆଶାରେ । ଅଶ୍ୱପତି ଶେଷରେ ସମସ୍ତଙ୍କୁ ଆଶ୍ୱାସ ବାକ୍ୟରେ ପରିତୁଷ୍ଟ କରି ଏବଂ ପୂଜ୍ୟ ବ୍ୟକ୍ତି-ମାନଙ୍କର ଆଶୀର୍ବାଦ ଗ୍ରହଣ କରି ବନକୁ ଯାତ୍ରା କଲେ ।

ବନକୁ ଯାଇ ରାଜା ଗୋଟିଏ ନିକାଞ୍ଚନ ସ୍ଥାନରେ ବଡ଼ କଠିନ ତପସ୍ୟା ଆରମ୍ଭ କଲେ । ଦିନ ନାହିଁ ରାତି ନାହିଁ, ଖରା ନାହିଁ ବର୍ଷା ନାହିଁ, ଏକମନରେ

ଏକଧ୍ୟାନରେ ବସି ଦେବୀଙ୍କର ଆରାଧନା କରୁଅଛନ୍ତି । ନିଜର ଦେହ ପ୍ରତି ଯତ୍ନ ନାହିଁ, କଷ୍ଟ ପ୍ରତି ଭ୍ରୂକ୍ଷେପ ନାହିଁ, ମନରେ ଅନ୍ୟ ଚିନ୍ତା ପ୍ରବେଶ କରିବାର ଅବସର ନାହିଁ । ଯଜ୍ଞଧୂମରେ ଆକାଶପଥ ଆଚ୍ଛନ୍ନ ହୋଇଗଲା । ଆହୁତିଗନ୍ଧରେ ବନଭୂମି ଆମୋଦିତ ହୋଇଗଲା । ଦିନେ ନୁହେଁ, ମାସେ ନୁହେଁ, ବର୍ଷେ ନୁହେଁ, ଅଠର ବର୍ଷ କାଳ ରାଜା ଏହି ଦୁଃସାଧ୍ୟ ବ୍ରତ ଧାରଣ କରି ରହିଲେ । ନାନା ରାଜକାର୍ଯ୍ୟ ଓ ନାନା ଚିନ୍ତାରେ ଯାହାଙ୍କର ମନ ସର୍ବଦା ବିକ୍ଷିପ୍ତ ଥିଲା, ସେ ଏକମୁହୂର୍ତ୍ତରେ ସବୁ ମନରୁ ଦୂର କରି ଦେଇ ଏହି କଠୋର ସାଧନାରେ ମନୋନିବେଶ କରି ରହିଲେ । ଧନ୍ୟ ରାଜର୍ଷିଙ୍କ ଏକାଗ୍ରତା !

ଅଶ୍ୱପତିଙ୍କ କଠୋର ତପସ୍ୟା ଦେଖି ତପୋବ୍ୟବସାୟୀ ମୁନିମାନେ ଅବାକ୍ ହୋଇଗଲେ । ସ୍ୱର୍ଗର ଦେବତାମାନେ ସୁଦ୍ଧା ଶଙ୍କିତ ହେବାକୁ ଲାଗିଲେ ।

ଶେଷରେ ସାଧକର ଆକୁଳ ପ୍ରାର୍ଥନା ଦୟାମୟଙ୍କ ଚରଣତଳେ ପ୍ରବେଶ କଲା । ବିଧାତାଙ୍କ ଆସନ ଟଳିବାକୁ ଲାଗିଲା । ସେ ଆଉ ସ୍ଥିର ରହି ନ ପାରି ସାବିତ୍ରୀ ଦେବୀଙ୍କୁ ଡାକି କହିଲେ, "ତୁମ ହୃଦୟଟା କଣ ପାଷାଣରେ ଗଢା ? ଜଣେ ଲୋକ ଅଠର ବର୍ଷ କାଳ ଅନବରତ ତୁମରି ଧ୍ୟାନରେ ରହି ତୁମକୁ ଡାକୁଛି, ଅଥଚ ତୁମର ସେ ଦିଗକୁ ଟିକିଏ ଦୃଷ୍ଟି ନାହିଁ ? ଏ ତ ବଡ଼ ଆଶ୍ଚର୍ଯ୍ୟର କଥା ?"

ସାବିତ୍ରୀ ଦେବୀ କହିଲେ, "ମୁଁ କଣ କରିବି ? ଅଶ୍ୱପତି ପୁତ୍ର କାମନାରେ ତପସ୍ୟା କରୁଅଛି । କିନ୍ତୁ ଆପଣ ଯେଉଁ ଦିନଠାରୁ ତା ଭାଗ୍ୟରେ 'ସନ୍ତାନହୀନ' ବୋଲି ଲେଖି ଦେଇଅଛନ୍ତି, ସେହି ଦିନଠାରୁ ସେ ପଥ ବନ୍ଦ ହୋଇଅଛି । ମୋ ହାତରେ ଆଉ କଣ ଅଛି ?"

ବିଧାତା ଟିକିଏ ଚିନ୍ତିତଭାବରେ କହିଲେ, "ମୁଁ ଦେଖୁଛି, ତୁମର ଗୋଟିଏ ଭୟାନକ ଭ୍ରମ ରହିଛି । ଭାଗ୍ୟରେ ନାହିଁ ବୋଲି କଣ ତାହାର ଆଉ ପରିବର୍ତ୍ତନ ହୋଇ ପାରିବ ନାହିଁ ?"

ସାବିତ୍ରୀ ଦେବୀ କହିଲେ, ତେବେ ଆପଣଙ୍କ ବାକ୍ୟ କଣ ଅନ୍ୟଥା ହେବ ?"

ବିଧାତା କହିଲେ, "ତୁମେ ବା ମୁଁ କିଏ ? ଆମ୍ଭେମାନେ କେବଳ ଉପଲକ୍ଷ୍ୟ ମାତ୍ର । ମନୁଷ୍ୟ ନିଜେ ନିଜର କର୍ମଫଳ ଭୋଗ କରେ । ତାହାର ଯଦି କର୍ମର

ଜୋର୍ ନାହିଁ, ଆମ୍ଭେମାନେ ଶତ ଅନୁଗ୍ରହ କଲେ ସୁଦ୍ଧା କିଛି ହୋଇ ପାରିବ ନାହିଁ । ମନୁଷ୍ୟ ନିଜେ ନିଜ ଭାଗ୍ୟ ଗଢ଼ୁଛି ଓ ଭାଙ୍ଗୁଛି । ସେଥିରେ ଅନ୍ୟ କାହାର କିଛି ହାତ ନାହିଁ । ମନେ କର, ଅଶ୍ୱପତିର ସେପରି କର୍ମର ଫଳ ନ ଥିବାରୁ ସେ ନିଃସନ୍ତାନ ଥିଲେ । କିନ୍ତୁ ସେ ଯେ ଏହି ଅଠର ବର୍ଷ କାଳ ଅସାଧ୍ୟ ସାଧନା କଲେ, ସେ ସବୁ କଣ ବୃଥା ଯିବ ?''

ସାବିତ୍ରୀ ଦେବୀ କହିଲେ, ''କାହିଁକି, ଏହାର ଫଳ ସେ ଅନ୍ୟ ଜନ୍ମରେ ଭୋଗ କରିବ ?''

ବିଧାତା କହିଲେ, ''ନା, ଯଦି କୌଣସି ଲୋକର ପାପ ବା ପୁଣ୍ୟର ବଳ ଖୁବ୍ ବେଶୀ ହୋଇପଡ଼େ, ସେ ଏହି ଜନ୍ମରେ ସୁଦ୍ଧା ତାହାର ଫଳ ଭୋଗ କରି ପାରେ । ଅଶ୍ୱପତିର ଏହି ଦେବଦୁର୍ଲଭ କଠୋର ତପସ୍ୟାରେ ତାହାର ସମସ୍ତ ପାପ ଖଣ୍ଡନ ହୋଇଅଛି । ବର୍ତ୍ତମାନ ସେ ସନ୍ତାନଲାଭର ସମ୍ପୂର୍ଣ୍ଣ ଅଧିକାରୀ ।''

ସାବିତ୍ରୀ ଦେବୀ କହିଲେ, ''ମୋର ଆଜି ଗୋଟିଏ ଭ୍ରମ ଦୂରୀଭୂତ ହେଲା । ବର୍ତ୍ତମାନ ମୋ ପ୍ରତି କି ଆଦେଶ ହେଉଅଛି ?''

ବ୍ରହ୍ମା ଉତ୍ତର କଲେ, ''ଅଶ୍ୱପତିର ତପସ୍ୟା ପୂର୍ଣ୍ଣ ହୋଇଅଛି । ତୁମେ ଶୀଘ୍ର ଯାଇ ତାକୁ ଗୋଟିଏ କନ୍ୟାଲାଭର ବର ଦେଇ ଆସ ।''

ଦେବୀ ବିସ୍ମୟରେ କହିଲେ, ''ସେ ତ ପୁତ୍ରକାମନାରେ ତପସ୍ୟା କରୁଅଛି, କନ୍ୟା ନେଇ ତାହାର କଣ ହେବ ? ଉତ୍ତରାଧିକାରୀ ଅଭାବରେ ବର୍ତ୍ତମାନ ମଦ୍ର-ଦେଶରେ ବିଷମ ଭାବନା ଉପସ୍ଥିତ ହୋଇଅଛି ।''

ବ୍ରହ୍ମା କହିଲେ, ''ଏହି କନ୍ୟାଦ୍ୱାରା ତାହାର ଶତପୁତ୍ରର କାର୍ଯ୍ୟ ହେବ । ଲୋକମାନଙ୍କର ମଧ୍ୟ ସେହିପରି ଧାରଣା ଯେ, ଦେବତାଙ୍କର ଅନୁଗ୍ରହ ବା ନିଗ୍ରହ ଯୋଗୁ ସମସ୍ତ ଶୁଭାଶୁଭ ଫଳ ଘଟୁଅଛି ଏବଂ ସେମାନଙ୍କର ସ୍ୱକୃତ କର୍ମ କିଛି ନୁହେଁ । ଏହି ମହତ୍ ଭ୍ରମ ସଂଶୋଧନ କରିବା ଲାଗି ମୁଁ ଅଶ୍ୱପତିକୁ ପୁତ୍ର ପରିବର୍ତ୍ତରେ କନ୍ୟା ଦେଇଅଛି । ଏହି କନ୍ୟାଦ୍ୱାରା ଜଗତରେ ଏ କଥା ପ୍ରଚାରିତ ହେବ ।''

ଦେବୀ ବ୍ରହ୍ମାଙ୍କଠାରୁ ବିଦାୟ ନେଇ ଶୀଘ୍ର ମର୍ତ୍ତ୍ୟାଭିମୁଖରେ ଯାତ୍ରା କଲେ ।

ଅଶ୍ୱପତି ଧ୍ୟାନମଗ୍ନ ହୋଇ ଏକାଗ୍ରଚିତ୍ତରେ ତପସ୍ୟା କରୁଅଛନ୍ତି । ସାଧନା କ୍ଳେଶରେ ଶରୀର କ୍ଷୀଣ, ମୁଖମଣ୍ଡଳ ପାଣ୍ଡୁବର୍ଣ୍ଣ ଧାରଣ କରିଅଛି । କିନ୍ତୁ ତଥାପି

ସେ ତନ୍ମୟ ହୋଇ ଦେବୀଙ୍କର ଆରାଧନା କରୁଅଛନ୍ତି । ସହସା ଯଜ୍ଞଧୂମ ଭେଦ କରି ଦେବୀ ସେଠାରେ ଆବିର୍ଭୂତା ହୋଇ କହିଲେ, "ବତ୍ସ ! ତୋର ତପସ୍ୟା ପୂର୍ଣ୍ଣ ହୋଇଅଛି । ବିଧାତା ତୋର କଠିନ ସାଧନାରେ ତୁଷ୍ଟ ହୋଇଅଛନ୍ତି । ତୁ ଶୀଘ୍ର ଗୋଟିଏ କନ୍ୟାରତ୍ନ ଲାଭ କରିବୁ । ପୁତ୍ର ନ ହେଲା ବୋଲି ମନରେ କିଛି ଅନୁଶୋଚନା କରିବୁ ନାହିଁ । ଏହି କନ୍ୟାଦ୍ୱାରା ତୋର ଶତପୁତ୍ରର କାର୍ଯ୍ୟ ହେବ ।"

ରାଜାଙ୍କୁ କିଛି କଥା କହିବାର ଅବସର ନ ଦେଇ ଦେବୀ ତତ୍‌କ୍ଷଣାତ୍ ଅନ୍ତର୍ହିତା ହୋଇଗଲେ । ଦେବୀଙ୍କର ସାନ୍ତ୍ୱନା ବାଣୀରେ ରାଜାଙ୍କର ଅନ୍ତରାତ୍ମା ଉଲ୍ଲସିତ ହୋଇ ଉଠିଲା । ସେ ଦେବୀଙ୍କର ଶୂନ୍ୟ ବାଣୀ ସ୍ମରଣ କରି ଅବିଳମ୍ବରେ ପରମ ଆହ୍ଲାଦରେ ରାଜ୍ୟକୁ ଫେରି ଆସିଲେ ।

ରାଜା ବର ଲାଭ କରି ଘରକୁ ଫେରି ଆସିଅଛନ୍ତି, ଏ ସମ୍ବାଦ ପାଇ ପ୍ରଜାମାନେ ଆନନ୍ଦରେ ଅଧୀର ହୋଇ ଉଠିଲେ । ମଦ୍ରଦେଶ ଜୟକୋଳାହଳରେ ପୂର୍ଣ୍ଣ ହୋଇଗଲା ।

ଦୈବବାଣୀ ବ୍ୟର୍ଥ ହେବାର ନୁହେଁ । କିଛିଦିନ ପରେ ରାଣୀଙ୍କର ଗର୍ଭସଞ୍ଚାର ହେଲା । ଏତେ ଦିନର କଠୋର ସାଧନା ପରେ ଫଳଲାଭର ସମ୍ଭାବନା ଦେଖି ଅଶ୍ୱପତିଙ୍କ ହୃଦୟ ଆନନ୍ଦରେ ନାଚି ଉଠିଲା । ପ୍ରଭୁଙ୍କର ଅପାର କରୁଣା କଥା ଭାବି ସେ ଭକ୍ତିରେ ଗଦ୍‌ଗଦ୍ ହୋଇ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ରାଜ୍ୟର ଚାରିଆଡ଼େ ଗୋଟାଏ ହର୍ଷର ଚହଳ ପଡ଼ିଗଲା ।



# ଦ୍ୱିତୀୟ ପରିଚ୍ଛେଦ

ଯଥାସମୟରେ ରାଣୀ ମାଳବୀ ଦେବୀ ଗୋଟିଏ ସର୍ବସୁଲକ୍ଷଣା କନ୍ୟା ପ୍ରସବ କଲେ । ସେଦିନ ମଦ୍ରଦେଶର କି ଆନନ୍ଦ ଦିନ । ଘରଆଡେ ଉତ୍ସବର ଆୟୋଜନ, ଘରଆଡ଼େ ଆନନ୍ଦଧ୍ୱନି, ଘରଆଡ଼େ ହାସ୍ୟକୋଳାହଳ । ରାଜା ପ୍ରଜା, ଧନୀ ଦରିଦ୍ର, ବଣିକ, କୃଷକ, ସମସ୍ତେ ଉତ୍ସବରେ ମଗ୍ନ । ରାଜପୁରୀ ଲତାପତ୍ରପୁଷ୍ପ ପତାକାରେ ସଜ୍ଜିତ ହେବାକୁ ଲାଗିଲା । ପ୍ରତି ଦେବାଳୟ ମନ୍ଦିରରେ ପୂଜା ଅର୍ଚ୍ଚନାର ଧୂମ୍ ଲାଗିଗଲା । ମଙ୍ଗଳବାଦ୍ୟର କୋଳାହଳରେ କର୍ଣ୍ଣ ବଧିର ହୋଇ ଉଠିଲା । ରାଜଧାନୀ ଆଲୋକମାଳାରେ ଭୂଷିତ ହୋଇ ଏକ ଅପୂର୍ବ ଶ୍ରୀ ଧାରଣ କଲା ।

ଖଣ୍ଡିଏ କଳାମେଘ ମଦ୍ରଦେଶକୁ ଘୋଡ଼ାଇ ରଖିଥିଲା । ସେ ଖଣ୍ଡିକ ଘୁଞ୍ଚି ଯିବାରୁ ଆଜି ଲୋକଙ୍କର ଆନନ୍ଦର ସୀମା ନାହିଁ । ସାତଦିନ ପର୍ଯ୍ୟନ୍ତ ରାଜ୍ୟରେ ଦାନର ସ୍ରୋତ ଅବାରିତ ଭାବରେ ଚାଲିଲା । କେଉଁଠାରେ ବ୍ରାହ୍ମଣଭୋଜନ, କେଉଁଠାରେ କାଙ୍ଗାଳଭୋଜନ, କେଉଁଠାରେ ଧନବସ୍ତ୍ରାଦି ବିତରଣ—ଏହିପରି ବରାବର ଲାଗି ରହିଲା ।

ରାଜାଙ୍କ ମନରେ ତ ଆଉ ଆନନ୍ଦ ସମ୍ଭାଳି ହେଉ ନାହିଁ, ନ ହେବ ବା କାହିଁକି ? ବୃଦ୍ଧାବସ୍ଥାରେ ଏତେ ଯତ୍ନ କରି ଗୋଟିଏ କନ୍ୟା ପାଇଅଛନ୍ତି । ପୁଣି କନ୍ୟା ବୋଲି କିପରି କନ୍ୟା ? ଯେପରି ଗୋଟିଏ ଚମ୍ପାକଢ଼ି । କନ୍ୟା ଭୂମିଷ୍ଠ ହେଲା ମାତ୍ରେ କି ଗୋଟିଏ ଅପୂର୍ବ ଆଲୋକରେ ଘର ଉଜ୍ଜ୍ୱଳ ହୋଇ ଉଠିଲା । ପୃଥିବୀ ଯେପରି ଏକପ୍ରକାର ନୂତନ ଶୋଭା ଧାରଣ କଲା । ରାଜା ଓ ରାଣୀ କନ୍ୟାକୁ ମୂର୍ତ୍ତିମାନ୍ ଦେବତାଙ୍କ ଆଶୀର୍ବାଦ ମନେ କରି କୋଳକୁ ଟାଣିନେଲେ । ସେ ରୂପକୁ ଦେଖି ତୃପ୍ତି ନାହିଁ – ଯେତିକି ଦେଖନ୍ତି, ଆହୁରି ଦେଖିବାକୁ ଇଚ୍ଛା ହୁଏ ।

ଅଶ୍ୱପତିଙ୍କର କନ୍ୟା ହୋଇଅଛି, ଏ କଥା ଶୁଣି ବହୁ ଦୂରଦେଶରୁ ଲୋକମାନେ କନ୍ୟା ଦେଖିବାକୁ ଆସି ରାଜପୁରୀରେ ଉପସ୍ଥିତ ହେଲେ । ପ୍ରଜାମାନେ ନାନା ଉପହାର ଘେନି ଦଳେ ଦଳେ କନ୍ୟା ଦେଖିବାକୁ ଆସିଲେ । ମୁନିଋଷିମାନେ ଆସି କନ୍ୟାକୁ ଦେଖି ପ୍ରାଣରେ ସହିତ ଆଶୀର୍ବାଦ କରି ଗଲେ । ଦଳେ ଯାଆନ୍ତି, ଦଳେ ଆସନ୍ତି, ଏହିପରି ରାଜପୁରରୁ ଆଉ ଲୋକ ଛାଡ଼ିବାକୁ ନାହିଁ ।

ଏ ଉତ୍ସବ ଶେଷ ହେଉ ନ ହେଉଣୁ ରାଜକୁମାରୀଙ୍କ ନାମକରଣ ଉତ୍ସବ ଆସି ଉପସ୍ଥିତ ହେଲା । ସାବିତ୍ରୀ ଦେବୀଙ୍କ କୃପାରେ କନ୍ୟା ଲାଭ କରିଥିଲେ ବୋଲି କନ୍ୟାର ନାମ ଦେଲେ—ସାବିତ୍ରୀ ।

ସାବିତ୍ରୀ ଦିନକୁ ଦିନ ଶଶିକଳା ପରି ବଢ଼ି ଯିବାକୁ ଲାଗିଲେ । ଶରୀର ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟ ମଧ୍ୟ ତାଙ୍କର ବିକାଶ ପାଇବାକୁ ଲାଗିଲା । ରାଜା ଆଉ ବେଶୀ ରାଜକାର୍ଯ୍ୟ ଦେଖନ୍ତି ନାହିଁ, ସେ ସର୍ବଦା କନ୍ୟା ସେବାରେ ବ୍ୟସ୍ତ । କନ୍ୟା ସଙ୍ଗେ ନାନା କ୍ରୀଡ଼ା କୌତୁକରେ ତାଙ୍କର ସମୟ କଟିଯାଏ । ସାବିତ୍ରୀ ଯେତେବେଳେ ପଦେ ପଦେ ଦରୋଟି କଥା କହି ଖଲ ଖଲ ହୋଇ ହସି ରାଜାଙ୍କ ଉପରେ ଢଳି ପଡ଼ନ୍ତି, ସେ ଆହ୍ଲାଦରେ ବିହ୍ୱଳ ହୋଇଯାଆନ୍ତି । ସେ ହସରେ ରାଜପୁରୀ ହସି ଉଠେ । ଅଶ୍ୱପତି କନ୍ୟାକୁ ଯେତେ ଆଦର ଯତ୍ନ କରନ୍ତି, ତଥାପି ତାଙ୍କର ମନେ ହୁଏ, ଯେପରି ଯତ୍ନର ତ୍ରୁଟି ହେଲା ।

ଏହିପରି ଶୈଶବ ଯାଇ ବାଲ୍ୟ ବାଲ୍ୟ, ଯାଇ କ୍ରମେ କୈଶୋର ଆସି ଉପସ୍ଥିତ ହେଲା । ରାଜା ନିଜ ହାତରେ କନ୍ୟାର ଶିକ୍ଷାଭାର ନେଇଅଛନ୍ତି । ସେ କନ୍ୟାକୁ ପୁରାଣ କଥା ସବୁ ଶୁଣାନ୍ତି, ଧର୍ମର ମାହାତ୍ମ୍ୟ ବୁଝାନ୍ତି, କଥା ଛଳରେ ନାନା ସଦୁପଦେଶ ଦିଅନ୍ତି । ସାବିତ୍ରୀ ମଧ୍ୟ ବଡ଼ ବୁଦ୍ଧିମତୀ । ସେ ଶୀଘ୍ର ନାନା ଶାସ୍ତ୍ରରେ ନିପୁଣା ହୋଇ ଉଠିଲେ । ଧର୍ମର ପ୍ରଭାବରେ ତାଙ୍କର ମଧୁର ସ୍ୱଭାବ ଆହୁରି ମଧୁରତର ହୋଇ ଉଠିଲା । ସେ ପିତାଙ୍କଠାରୁ ପୂର୍ବବର୍ତ୍ତୀ ପତିବ୍ରତାମାନଙ୍କର ପବିତ୍ର କାହାଣୀ ଶୁଣନ୍ତି, ଆଉ ଚକ୍ଷୁଜଳରେ ଭାସି ନୀରବରେ ଅଶ୍ରୁ ମୋଚନ କରନ୍ତି । ସେ ଯେତେବେଳେ ଶୁଣନ୍ତି—ସତୀ କିପରି ରାଜକନ୍ୟା ହୋଇ ଶ୍ମଶାନବାସୀ ଶିବଙ୍କୁ ପତିରୂପରେ ବରଣ କରିଥିଲେ, ପତିନିନ୍ଦା ଶୁଣି ସତୀ କିପରି ପ୍ରାଣ ବିସର୍ଜନ କରିଥିଲେ, ସେତେବେଳେ ତାଙ୍କ ହୃଦୟ ସତୀଧର୍ମର ମାହାତ୍ମ୍ୟରେ ପୂର୍ଣ୍ଣ ହୋଇ ଉଠେ । ସେ ମନେ କରନ୍ତି, ପତି ନାରୀର ପରମଦେବତା; ପତିଠାରୁ ବଳି ସଂସାରରେ ଆଉ ଏତେ ଆଦରର, ଏତେ ସ୍ନେହର, ଏତେ ଭକ୍ତିର ପାତ୍ର କେହି ନାହିଁ ।

ବୟସ ଓ ଜ୍ଞାନ ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କର ଧର୍ମକର୍ମରେ ଆଗ୍ରହ ମଧ୍ୟ ପ୍ରବଳ ହୋଇ ଉଠିଲା । ବାର ବ୍ରତ ପୂଜା ଉପବାସ କରିବାରେ ତାଙ୍କର ଯେପରି ଆନନ୍ଦ ହୁଏ, ଅନ୍ୟ କୌଣସି କାର୍ଯ୍ୟରେ ସେପରି ହୁଏ ନାହିଁ । ଦୀନ ଆତୁରଙ୍କର ସେବା ଓ ଅତିଥି ଅଭ୍ୟାଗତଙ୍କର ଅର୍ଚ୍ଚନା ତାଙ୍କର ପ୍ରିୟ କାର୍ଯ୍ୟରେ ପରିଣତ ହେଲା ।

ଏପର୍ଯ୍ୟନ୍ତ ସାବିତ୍ରୀଙ୍କର କେବଳ ରୂପରେ ଖ୍ୟାତି ଥିଲା । ଏଣିକି ତାଙ୍କ ଗୁଣରେ ମୁଗ୍‌ଧ ହୋଇ ସମସ୍ତେ ତାଙ୍କର ରୂପ କଥା ପୁଣି ଭୁଲି ଗଲେ । ପିତା ମାତାଙ୍କ ପ୍ରତି କି ଭକ୍ତି, ଦାସଦାସୀଙ୍କ ପ୍ରତି କି ଦୟା, ଇତର ଲୋକଙ୍କ ପ୍ରତି କି ଆଦର ! ଯେଣେ ଯେ ସେ ଦେବୀପ୍ରତିମାଙ୍କଠାରୁ ପଦେ କଥା ଶୁଣିଛି, ସେ ଚିରଦିନ-ପାଇଁ ତାଙ୍କର କିଣା ହୋଇ ରହିଛି । କଥା ନୁହେଁ ତ, ଯେପରି ସୁଧା ଝରୁଛି । ସମସ୍ତେ ତାଙ୍କୁ ରୂପରେ 'ଲକ୍ଷ୍ମୀ' ଓ ଗୁଣରେ 'ସରସ୍ୱତୀ' ବୋଲି ଶ୍ରଦ୍ଧାରେ ତାଙ୍କର ସୁଖ୍ୟାତି କରିବାକୁ ଲାଗିଲେ ।

କ୍ରମେ ଯୌବନ ଆସି ସାବିତ୍ରୀଙ୍କ ଦେହଲତାକୁ ମଣ୍ଡନ କରିଦେଲା; ପୂର୍ଣ୍ଣିମା ଚନ୍ଦ୍ର ଷୋଳ କଳାରେ ପୂର୍ଣ୍ଣ ହୋଇ ଉଠିଲା । ସେ ଶିରୀଷକୋମଳ ଅଙ୍ଗରେ ସର୍ବଦା ଗୋଟାଏ ଲାବଣ୍ୟର ଢେଉ ଖେଳିବାକୁ ଲାଗିଲା । ଆଉ ସେ ବାଲ୍ୟ ଚପଳତା ନାହିଁ । ମୁଖ ଟିକିଏ ଗମ୍ଭୀର ଭାବ ଧାରଣ କଲା, ପଦ୍ମକଳିକା ପରି ବଡ଼ ବଡ଼ ଚକ୍ଷୁ ଯୋଡ଼ିକ ଲଜ୍ଜାରେ ଟିକିଏ ନମ୍ର ହୋଇ ଆସିଲା । ଆହା ! ମନୁଷ୍ୟଠାରେ ପୁଣି ଏତେ ରୂପ ! ଲୋକେ ମନେ କଲେ, କୌଣସି ଶାପଭ୍ରଷ୍ଟା ଦେବକନ୍ୟା ମର୍ତ୍ତ୍ୟକୁ ଓହ୍ଲାଇ ଆସିଅଛନ୍ତି ।

ଦିନେ ସକାଳେ ଅଶ୍ୱପତି ଦେବମନ୍ଦିରରେ ଅଛନ୍ତି, ଏପରି ସମୟରେ ସାବିତ୍ରୀ ପୂଜାଫୁଲ ଧରି ସେଠାରେ ଉପସ୍ଥିତ ହେଲେ । ଫୁଲସାଜି ରଖି ଦେଇ ସେ ପିତାଙ୍କୁ ପ୍ରଣାମ କଲେ । ଅଶ୍ୱପତି ଟିକିଏ ଅନ୍ୟମନସ୍କ ଥିଲେ; ହଠାତ୍ ଚାହିଁ ଦେଖିଲେ, ସମ୍ମୁଖରେ ଗୋଟିଏ ଦେବୀପ୍ରତିମା ଛିଡ଼ା ହୋଇଅଛନ୍ତି । ଅଶ୍ୱପତି ମନେ କରିଥିଲେ, 'ମୋର କନ୍ୟା ଏ ପର୍ଯ୍ୟନ୍ତ ସେହିପରି ପିଲା ଅଛି ।' କିନ୍ତୁ ଆଜି ସେ ଦେଖିଲେ, ତାଙ୍କର ସେ ସାବିତ୍ରୀ ଆଉ ନାହିଁ । ସେ ବରାବର ଯାହାକୁ ଦେଖି ଆସୁଥିଲେ, ଏ ଯେପରି ତାହାଠାରୁ ସ୍ୱତନ୍ତ୍ର । ସାବିତ୍ରୀ ପନ୍ଦର ପାର ହୋଇ ଷୋହଳରେ ଗୋଡ଼ ଦେଇଅଛନ୍ତି । ସେହି ସୁଷମବଦନର ମୁଖମଣ୍ଡଳରେ ଗୋଟିଏ ମଧୁର ଲଜ୍ଜାର ଛାୟା ଆସି ପଡ଼ି ଯାଇଅଛି । ଶ୍ରାବଣ ମାସର ଭରା ନଦୀ ପରି ନବଯୌବନର ଉଚ୍ଛ୍ୱାସରେ ଦେହରେ ଯେପରି ଗୋଟାଏ ଲହରି ଖେଳି ଯାଉଅଛି । ଅଶ୍ୱପତିଙ୍କର ଚମକ ଭାଙ୍ଗିଲା । ସେ ଭାବିଲେ, ଏଣିକି ତ ଆଉ ଏହାକୁ ଘରେ ରଖିବା କର୍ତ୍ତବ୍ୟ ନୁହେଁ । ମାତ୍ର ଏପରି କନ୍ୟା କାହା ହାତରେ ଦେବି ? କିଏ ଏପରି ରତ୍ନର ମୂଲ୍ୟ ବୁଝିବ ? ସାବିତ୍ରୀକୁ ଛାଡ଼ି ମୁଁ ବା ରହିବି କିପରି ? ଏହିପରି ନାନା ଭାବନା ଚିନ୍ତା ପରେ ରାଜା ମନେ କଲେ, ବିବାହ ତ ନିଷ୍ଟୟ ଦେବାକୁ

ହେବ, ତେବେ ଆଉ ମାପ୍ଟା କରି ଫଳ କ'ଣ ? ଯେତେ ଶୀଘ୍ର ହୁଏ, ସେତେ ଭଲ । ଶେଷରେ ଅଶ୍ୱପତି ସ୍ଥିର କଲେ, କନ୍ୟାକୁ ସ୍ୱୟମ୍ବର କରିବାକୁ ହେବ । ତାହାହେଲେ ନାନା ଦେଶରୁ ଅନେକ ରାଜପୁତ୍ର ଆସିବେ ଏବଂ ସାବିତ୍ରୀ ମଧ୍ୟ ସେଥି ମଧ୍ୟରୁ ନିଜର ଉପଯୁକ୍ତ ସଙ୍ଗୀ ବାଛି ନେଇ ପାରିବ । ଏହିପରି ସ୍ଥିର କରି ରାଜା ନାନା ଦେଶ, ନାନା ନଗରକୁ ଦୂତ ପଠାଇ ଦେଲେ । ରାଜ୍ୟର ସବୁଆଡ଼େ ଗୋଟାଏ ଧୂମ୍ ପଡ଼ିଗଲା—ସଭାମଣ୍ଡପ ଗଠନ, ଅତିଥିଶାଳା ନିର୍ମାଣ, ଖାଦ୍ୟଦ୍ରବ୍ୟାଦିର ଆୟୋଜନ ପ୍ରଭୃତି କାର୍ଯ୍ୟ ମହାସମାରୋହରେ ଚାଲିବାକୁ ଲାଗିଲା ।

ପୂର୍ବରୁ ସମସ୍ତେ ସାବିତ୍ରୀଙ୍କର ରୂପ ଗୁଣର ପ୍ରଶଂସା ଶୁଣିଥିଲେ । ପ୍ରତି ରାଜପୁତ୍ରଙ୍କ ମନରେ ସାବିତ୍ରୀଙ୍କୁ ଲାଭ କରିବାର ଆଶା ଜାଗ୍ରତ୍ ହୋଇ ଉଠିଥିଲା । ବର୍ତ୍ତମାନ ସ୍ୱୟମ୍ବରର ନିମନ୍ତ୍ରଣ ପାଇ ସମସ୍ତେ ସାଜସଜ୍ଜା କରି ବହୁ ଆଡ଼ମ୍ବରରେ ମଦ୍ରଦେଶରେ ଉପସ୍ଥିତ ହେଲେ । ମଦ୍ରଦେଶ ଗୀତ ବାଦ୍ୟ, ଆନନ୍ଦ ଉତ୍ସବରେ ପୂର୍ଣ୍ଣ ହୋଇ ଉଠିଲା । ଧନୀ ଦରିଦ୍ର ସମସ୍ତେ ନିଜ ନିଜର ବ୍ୟବସାୟ ଛାଡ଼ି ଦେଇ ଆସି ଉତ୍ସବରେ ଯୋଗ ଦେଲେ । ରାଜାମାନେ ରାଜକନ୍ୟାକୁ ଲାଭ କରିବେ ବୋଲି ବଡ଼ ଆଶା କରିଥିଲେ, କିନ୍ତୁ ସାବିତ୍ରୀଙ୍କୁ ଦେଖିଲା ମାତ୍ରେ ସବୁ ଆଶା ଅଙ୍କୁରରୁ ନିର୍ମୂଳ ହୋଇଗଲା । ତାଙ୍କର ରୂପ ଦେଖି ସମସ୍ତଙ୍କର ଆଖି ଝଲସି ପଡ଼ିଲା । ସେ ଦେବୀରୂପର ଜ୍ୱଳନ୍ତ ଛଟା କେହି ସହ୍ୟ କରି ପାରିଲେ ନାହିଁ । ଏ ରୂପ ମଧ୍ୟରେ ଯେ ଏପରି ଗୋଟାଏ ତେଜ ଥିଲା, ତାହା ସେମାନେ କେହି ଜାଣି ନ ଥିଲେ । ତାଙ୍କ ନିକଟରେ ସମସ୍ତଙ୍କ ମସ୍ତକ ଆପେ ଆପେ ନତ ହୋଇ ପଡ଼ିଲା, ଭୟରେ ଆପାଦମସ୍ତକ କମ୍ପିବାକୁ ଲାଗିଲା; ସ୍ତ୍ରୀ ଭାବରେ କେହି ତାଙ୍କ ଆଡ଼କୁ ଥରେ ଅନାଇ ପାରିଲେ ନାହିଁ । ପ୍ରେମ ପରିବର୍ତ୍ତେ ଭକ୍ତିରେ ସେମାନଙ୍କ ହୃଦୟ ପୂର୍ଣ୍ଣ ହୋଇଗଲା । ସାବିତ୍ରୀଙ୍କୁ ଗୋଟିଏ ଦେବୀମୂର୍ତ୍ତି ମନେ କରି ସମସ୍ତେ ଭୟରେ ନିଜ ନିଜ ଦେଶକୁ ପଳାଇଗଲେ ।

ଏହିପରି ଦଳେ ଗଲେ, ଦଳେ ଆସିଲେ; କିନ୍ତୁ ସାବିତ୍ରୀଙ୍କ ଭାଗ୍ୟର କିଛି ପରିବର୍ତ୍ତନ ହେଲା ନାହିଁ । ତାଙ୍କୁ ଦେଖି କାହାରି ମନରେ ପ୍ରଣୟଭାବର ସଞ୍ଚାର ହେଲା ନାହିଁ । ସମସ୍ତେ ସେହିପରି ତାଙ୍କୁ ଭକ୍ତିଗଦ୍‌ଗଦ୍‌ଚିତ୍ତରେ ପ୍ରଣାମ କରି ଫେରିଗଲେ ।

ସ୍ୱୟମ୍ବର ସଭା ଖାଲି ପଡ଼ି ରହିଲା । ସବୁ ଯତ୍ନ, ସବୁ ଆୟୋଜନ ବ୍ୟର୍ଥ ହେଲା । କଣ୍ଢାକୁଳାଙ୍କର ବିବାହ ହେଉଛି, କିନ୍ତୁ ସାବିତ୍ରୀଙ୍କ ଲାଗି ଆଉ ବର ମିଳିଲା ନାହିଁ । ଦୋଷ ମଧ୍ୟରେ ତାଙ୍କର ଏତିକି ଯେ, ସେ ବଡ଼ ରୂପବତୀ । ଅସୁନ୍ଦର ହେଲେ

ପାତ୍ର ମିଳିବା ଦୁଷ୍କର ହୁଏ, କିନ୍ତୁ ବେଶି ରୂପ ଥିଲେ ବିବାହ ହୁଏ ନାହିଁ, ଏକଥା କୌଣସିଠାରେ ଶୁଣା ନାହିଁ । ଅଶ୍ୱପତିଙ୍କର ଆଉ ଭାବନାର ସୀମା ରହିଲା ନାହିଁ । ସାବିତ୍ରୀଙ୍କ ବିବାହରେ ଯେ ଏପରି ବିଘ୍ନ ଘଟିବ, ସେ ଏହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ବର୍ତ୍ତମାନ ସମ୍ମୁଖରେ ଗୋଟିଏ ମହତ୍ ବିପଦ ଦେଖି ସେ ଅସ୍ଥିର ହୋଇ ଉଠିଲେ ।

ମନୁଷ୍ୟକୁ ଆଶା କଦାପି ଛାଡ଼େ ନାହିଁ । ଅଶ୍ୱପତି ମନେ କଲେ, "ଆଉ ରାଜା ମହାରାଜାରେ ପ୍ରୟୋଜନ ନାହିଁ । ଏଣିକି ଧନୀ ଦରିଦ୍ର, ମୂର୍ଖ ପଣ୍ଡିତ, ଯେ ମିଳିବ, ତାକୁ କନ୍ୟା ପ୍ରଦାନ କରି ନିଶ୍ଚିନ୍ତ ହେବି" ଏହା ଭାବି ସେ ପୁନର୍ବାର ଦୂତ ପଠାଇଲେ । କିନ୍ତୁ ନିଯ୍ୟତିର ଗତି ମନୁଷ୍ୟ ଏତେ ସହଜରେ ବଦଳାଇ ଦେଇ ନ ପାରେ । ନାନା ଦେଶର ରାଜାମାନେ ଆସି ଫେରି ଯିବାରୁ ଚାରିଆଡ଼େ ରାଷ୍ଟ୍ର ହୋଇ ପଡ଼ିଛି ଯେ, ସାବିତ୍ରୀ ମନୁଷ୍ୟ ନୁହନ୍ତି—ସ୍ୱୟଂ ଭଗବତୀ ଆସି ଅଶ୍ୱପତିଙ୍କ ଘରେ ଅବତୀର୍ଣ୍ଣ ହୋଇଅଛନ୍ତି । ଏଣିକି ଆଉ କେହି ସାବିତ୍ରୀଙ୍କ ବିବାହପ୍ରସ୍ତାବ ଶୁଣିବାକୁ ସୁଦ୍ଧା ସାହସ କଲେ ନାହିଁ; ସମସ୍ତେ ତାଙ୍କୁ ସେହି ଦୂରରୁ ଭୟ ଓ ଭକ୍ତିରେ ପ୍ରଣାମ କରି ନିଜ ନିଜ କାର୍ଯ୍ୟରେ ଲାଗିଲେ ।

ରାଜା ଓ ରାଣୀ ଚିନ୍ତାରେ ଆହାର ନିଦ୍ରା ପରିତ୍ୟାଗ କଲେ । ଯେଉଁ ଆଡ଼କୁ ଚାହିଁଲେ, କେବଳ ଅନ୍ଧକାର । କୌଣସିଠାରେ ସେମାନେ ଆଉ ଆଶାର କ୍ଷୀଣ ଆଲୋକ ସୁଦ୍ଧା ଦେଖି ପାରିଲେ ନାହିଁ । କିଏ ମନେ କରିଥିଲା, ଏପରି ଦେବଦୁର୍ଲଭ ରୂପର ଏହି ପରିଣାମ ହେବ ? କିଏ ଭାବିଥିଲା, ଏପରି ଗୁଣବତୀ କନ୍ୟାର କପାଳରେ ଏପରି ଦୁର୍ଭାଗ୍ୟ ଘଟିବ ? ସାବିତ୍ରୀଙ୍କୁ ପାଇ ଅଶ୍ୱପତିଙ୍କର ଗର୍ବ ଓ ଆନନ୍ଦରେ ଭୂଇଁରେ ପାଦ ପଡ଼ୁ ନ ଥିଲା—କେତେ ସୁଖ କଳ୍ପନାରେ ତାଙ୍କ ହୃଦୟ ନାଚି ଉଠୁଥିଲା । କିନ୍ତୁ ସବୁ କୁଆଡ଼େ ଶୂନ୍ୟ ଅଟ୍ଟାଳିକା ପରି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା—ରହିଲା କେବଳ ଗୋଟିଏ ଆର୍ତ୍ତ ହାହାକାର !

ଅଶ୍ୱପତି ଭାବିଲେ—"ସବୁ ସୁଖ, ସବୁ ଆମୋଦରେ ଜଳାଞ୍ଜଳି ଦେଇ ଅଠର ବର୍ଷକାଳ କଠୋର ସାଧନାର ଫଳ ଶେଷରେ ଏହି ହେଲା ? ମୂଳରୁ ଯଦି କନ୍ୟା ନ ହୋଇଥାନ୍ତା, ତାହାହେଲେ ମୁଁ କୌଣସି ପ୍ରକାରେ ନିଜର କର୍ମ ଆଦରି ସନ୍ତୁଷ୍ଟ ରହି ଯାଇଥାନ୍ତି । ତାହାହେଲେ ଆଜି ନୈରାଶ୍ୟର ଏ ଦାରୁଣ ଯନ୍ତ୍ରଣା ଭୋଗ କରିବାକୁ ହୋଇ ନ ଥାନ୍ତା । କିନ୍ତୁ ବର୍ତ୍ତମାନ କଣ ହେଲି ? ଆଶାର କୁହୁକରେ ପଡ଼ି ଜୀବନ ବିଷମୟ ହୋଇଗଲା । ରାଜ୍ୟ ସମ୍ପଦ, ଯଶ ମାନ, ଧର୍ମ କର୍ମ, ସବୁ ବିଷାଦ ହୋଇ ଉଠିଲା । ହା ଭଗବନ୍ ! ମୁଁ କି ପାପ କରିଥିଲି ଯେ, ମୋ ପ୍ରତି ଏ ଗୁରୁଦଣ୍ଡର ବ୍ୟବସ୍ଥା କଲ ?

ସାବିତ୍ରୀ ଦେବୀ ନିଜେ କହୁଥିଲେ ନା, ଏହି କନ୍ୟାଦ୍ୱାରା ମୋର ଶତପୁତ୍ରର କାର୍ଯ୍ୟ ହେବ ? ମାନସମ୍ଭ୍ରମ, କୁଳମର୍ଯ୍ୟାଦା ବଢ଼ିବ ? ଓଃହୋ ! ଶେଷରେ ଦେବତା ଆସି ମତେ ପରିହାସ କରି ଗଲେ ? ମୋ ଦୁର୍ଭାଗ୍ୟଦୋଷରୁ ଦୈବବାଣୀ ମିଥ୍ୟା ହୋଇଗଲା ? ମୁନି ଋଷି ପଣ୍ଡିତ ଜ୍ୟୋତିଷୀ ସମସ୍ତଙ୍କର ଭବିଷ୍ୟତ୍‌ବାଣୀ ମିଥ୍ୟା ହୋଇଗଲା ? ମୋଠାରୁ ବଳି ହତଭାଗ୍ୟ ଆଉ କିଏ ଅଛି ?

ସାବିତ୍ରୀଙ୍କୁ ଦେଖିଲେ ରାଣୀଙ୍କର ଶୋକସମୁଦ୍ର ଉଚ୍ଛୁଳି ଉଠେ । ସେ ଗୋଟିଏ ଗଭୀର ଦୀର୍ଘ ନିଃଶ୍ୱାସ ପକାଇ ବହୁ କଷ୍ଟରେ ଲୋତକର ବେଗ ରୋଧ କରନ୍ତି । ଆହା ! ଏ ପାରିଜାତ ଫୁଲ କଣ ବନମୋଲଣ୍ଡି ପରି ବଣରେ ଫୁଟି ମଉଳିବ—କୌଣସି ଦେବତାଙ୍କ ଭୋଗରେ ଲାଗିବ ନାହିଁ ? ସ୍ୱାମୀ ଛଡ଼ା ନାରୀର ଆଉ ସୁଖ କଣ ?

ରାଜା-ରାଣୀଙ୍କର ନୟନର ମଣି, ଅଞ୍ଚଳର ନିଧି ସାବିତ୍ରୀ କ୍ରମେ ପିତାମାତା-ଙ୍କର ଚକ୍ଷୁଃଶୂଳ ହୋଇ ଉଠିଲେ । ଶେଷରେ ଏହି କନ୍ୟା ଲାଗି ପିତୃପିତା-ମହଙ୍କର ଅକଳଙ୍କ କୁଳରେ କଳଙ୍କ ଲାଗିବ ? ନିଜର ମାନମର୍ଯ୍ୟାଦା, ଜାତିକୁଳ ସବୁ ଯିବ ? ସେମାନେ ଏଣିକି ସାବିତ୍ରୀଙ୍କୁ ବିଧାତାଙ୍କର ଗୋଟିଏ ମୂର୍ତ୍ତିମାନ୍ ଅଭିଶାପ ବୋଲି ଜ୍ଞାନ କଲେ ।

ସାବିତ୍ରୀଙ୍କୁ ପିତାମାତାଙ୍କର ମନୋଭାବ ଅଗୋଚର ରହିଲା ନାହିଁ । ସେମାନଙ୍କର ଦୁର୍ଦ୍ଦଶା ଦେଖି ସେ ନୀରବରେ ଅଶ୍ରୁପାତ କରିବାକୁ ଲାଗିଲେ । ସେ ସେ ପିତାମାତାଙ୍କର ଏ ଦୁଃଖର କାରଣ, ଏ କଥା ଭାବି ତାଙ୍କର ନିଜ ଉପରେ ଘୃଣା ଜନ୍ମିଲା । ସେ ନିଜର ଜୀବନକୁ ଶତ ଧିକ୍‌କାର ଦେବାକୁ ଲାଗିଲେ । କିନ୍ତୁ ସାବିତ୍ରୀ ସର୍ବଶାସ୍ତ୍ରନିପୁଣା, ସ୍ଥିରବୁଦ୍ଧିଶାଳିନୀ । ସେ ପୁଣି ମନେ କଲେ, ଏଥିରେ ମନୁଷ୍ୟର ଆୟତ୍ତ କଣ ? ସବୁ ଦୈବାଧୀନ । ଏହିପରି ଭାବି ସେ ପିତାମାତାଙ୍କ ସୁଖ କାମନାରେ କାନ୍ଦି କାନ୍ଦି କେବଳ ଈଶ୍ୱରଙ୍କୁ ଡାକିବାକୁ ଲାଗିଲେ ।

ସମୟ କାହାକୁ ଅପେକ୍ଷା କରେ ନାହିଁ । ସୁଖରେ ହେଉ, ଦୁଃଖରେ ହେଉ, ଦିନ କଟିଯାଏ । ଏହିପରି ଦିନ ପରେ ଦିନ, ମାସ ପରେ ମାସ କଟିବାକୁ ଲାଗିଲା । ଅଶ୍ୱପତି ଭାବି ଭାବି ପାଗଳ ପରି ହୋଇଗଲେ ।

●

# ତୃତୀୟ ପରିଚ୍ଛେଦ

ଦିନେ ସକାଳେ ରାଜା ସଭାରେ ବସିଅଛନ୍ତି, ଦୁଇ ଚାରିଜଣ ବିଶ୍ୱସ୍ତ ପାରିଷଦ ଛଡ଼ା ପାଖରେ ଆଉ ବେଶି କେହି ଲୋକବାକ ନାହାନ୍ତି । ଏପରି ସମୟରେ ଜଟାଜୁଟବିଭୂଷିତ ଅପୂର୍ବତେଜୋମୟ ଜଣେ ଦୀର୍ଘକାୟ ପୁରୁଷ ଆସି ସଭାରେ ଉପସ୍ଥିତ ହେଲେ । ତାଙ୍କର ବଦନମଣ୍ଡଳରୁ ଗୋଟିଏ ସ୍ୱର୍ଗୀୟ ଜ୍ୟୋତି ବାହାରୁଅଛି, ଯେହ୍ନରେ ପବିତ୍ରତାର ଖଣ୍ଡିଏ ଚିତ୍ର ପ୍ରତିଫଳିତ ହୋଇଅଛି; ତାଙ୍କର ସ୍ନିଗ୍ଧ ଦୃଷ୍ଟି ଓ ମଧୁର ହାସ୍ୟ ଯେପରି ସମସ୍ତଙ୍କୁ ଆଶ୍ୱାସ ପ୍ରଦାନ କରୁଅଛି । ଅଶ୍ୱପତି ମାଣ୍ଡବ୍ୟ ଋଷିଙ୍କୁ ଚିହ୍ନି ପାରି ବ୍ୟସ୍ତତା ସହକାରେ ତାଙ୍କର ଯଥାଯୋଗ୍ୟ ଅଭ୍ୟର୍ଥନା କରି କୁଶଳ ପ୍ରଶ୍ନ କଲେ । ମୁନି ମଧ୍ୟ ରାଜାଙ୍କୁ ଆଶୀର୍ବାଦ କରି ରାଜ୍ୟର ମଙ୍ଗଳ ସମ୍ବାଦ ପଚାରିଲେ ।

କିଛି ସମୟ ପରେ ରାଜାଙ୍କ ଇଙ୍ଗିତରେ ସାବିତ୍ରୀ ଆସି ଧୀର ନମ୍ରଭାବରେ ସଭାରେ ଉପସ୍ଥିତ ହେଲେ । ସଭାଗୃହରେ ଜଣେ ଜ୍ୟୋତିର୍ମୟ ସିଦ୍ଧ ପୁରୁଷଙ୍କୁ ଦେଖି ସାବିତ୍ରୀ କ୍ଷଣକାଳ ସ୍ତମ୍ଭିତ ହୋଇ ରହିଲେ । ସହସା ବିଦ୍ୟୁତ୍‌ବିକାଶ ପରି ଆଶାର ଗୋଟିଏ କ୍ଷୀଣ ରେଖା ତାଙ୍କ ହୃଦୟ ମଧ୍ୟରେ ଖେଳିଗଲା । ତାଙ୍କର ମନେ ହେଲା, ଯେପରି କଣ ଗୋଟାଏ ଶୁଭ ସମ୍ବାଦ ତାଙ୍କୁ ଅପେକ୍ଷା କରି ରହିଅଛି । କି ଗୋଟିଏ ଅଜଣା ଉଲ୍ଲାସରେ ତାଙ୍କର ହୃଦୟ ମନ ଆପ୍ଲୁତ ହୋଇଗଲା । କିଏ ଯେପରି ଆସି ତାଙ୍କ କାନରେ କହିଦେଲା—"ସାବିତ୍ରୀ, ଆଉ ବୃଥା ଚିନ୍ତା କର ନାହିଁ, ତୁମ୍ଭର ଶୁଭ ସମୟ ଆସି ଉପସ୍ଥିତ ।"

ସାବିତ୍ରୀଙ୍କୁ ଏପରି ତଟସ୍ଥ ଦେଖି ରାଜା କହିଲେ, "ମା, ମହାତପା ମୁନି ମାଣ୍ଡବ୍ୟଙ୍କ ପଦଧୂଳିରେ ଆଜି ଆମ ଘର ପବିତ୍ର ହୋଇଅଛି । ମହର୍ଷିଙ୍କ ପାଦପଦ୍ମରେ ପ୍ରଣାମ କର ।" ପିତୃ-ଆଜ୍ଞା ପାଇ ସାବିତ୍ରୀ ଭକ୍ତିର ସହିତ ଋଷିଙ୍କର ପାଦବନ୍ଦନା କଲେ । ସାବିତ୍ରୀଙ୍କୁ ଦେଖି ଋଷି ତାଙ୍କ ଆଡ଼କୁ ଏକଦୃଷ୍ଟିରେ ଅନାଇ ରହିଲେ । ଆନନ୍ଦରେ ତାଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳତର ହୋଇ ଉଠିଲା । ସେ କହିଲେ, "ମା, ଆଶୀର୍ବାଦ କରୁଚି, ତୁ ଶିବତୁଲ୍ୟ ପତି ଲାଭ କର । ତୋଦ୍ୱାରା ମଦ୍ରଦେଶର କୁଳମର୍ଯ୍ୟାଦା ବଢୁ ଓ ପିତା ମାତା ଧନ୍ୟ ହୁଅନ୍ତୁ ।"

ମୁନିଙ୍କ କଥା ଶୁଣି ରାଜା ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ବାଷ୍ପରୁଦ୍ଧ କଣ୍ଠରେ ସାବିତ୍ରୀଙ୍କର ବିବାହବୃତ୍ତାନ୍ତ ବର୍ଣ୍ଣନା କଲେ ଏବଂ ଶେଷରେ ଆକୁଳଭାବରେ

କହିଲେ, "ପ୍ରଭୁ, କୁଳ ମାନ ସବୁ ଯିବାକୁ ବସିଛି; ଏ ବିପଦରୁ ଆପଣ ମତେ ରକ୍ଷା କରନ୍ତୁ । ମୁଁ ଆଉ ସାବିତ୍ରୀ ଆଡ଼କୁ ଅନାଇ ପାରୁ ନାହିଁ । ଗୋଟିଏ କିଛି ଉପାୟ କହି ଦେଇ ମୋର ମର୍ଯ୍ୟାଦା ରକ୍ଷା କରନ୍ତୁ ।" ଏହା କହି ରାଜା କାନ୍ଦି କାନ୍ଦି ମୁନିଙ୍କ ପାଦତଳେ ପଡ଼ିଲେ ।

ମାଣ୍ଡବ୍ୟ ଋଷି ରାଜାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ବୃଥା ଶୋକ କରୁଛ କାହିଁକି ? ଏପରି କନ୍ୟାପାଇଁ ବର ମିଳିବ ନାହିଁ, ଏହା କି ସମ୍ଭବ ? ସାବିତ୍ରୀକୁ ସାମାନ୍ୟ କନ୍ୟା ପରି ମନେ କରିବ ନାହିଁ । ଜଗତର ସମସ୍ତ ପୁଣ୍ୟରାଶି ସଞ୍ଚୟ କରି ବିଧାତା ଏହାକୁ ଗଢ଼ି ଅଛନ୍ତି । ଗୋଟିଏ ଗୋଟିଏ ଯୁଗରେ ଏପରି ଗୋଟିଏ ଗୋଟିଏ କନ୍ୟାର ଆବିର୍ଭାବ ହୁଏ । ତୁମେ କଣ ମନେ କରୁଛ, ସାଧାରଣ ଲୋକଙ୍କ ପରି ତାହାର ବିବାହ ହେବ ? ହେଉ, ତୁମେ ତ ନାନା ଚେଷ୍ଟା ଯତ୍ନ କଲ, ଏଣିକି ଏ ଭାର ସାବିତ୍ରୀ ଉପରେ ଦିଅ । ସେ ନିଜେ ଯାଇ ନିଜର ଉପଯୁକ୍ତ ପତି ବରଣ କରି ଆସୁ ।"

ମୁନିଙ୍କ କଥା ଶୁଣି ରାଜା ଟିକିଏ ନୀରବ ହୋଇ ଚିନ୍ତା କଲେ । ଦରବାର ସମସ୍ତେ ଋଷିବାକ୍ୟ ଶୁଣି "ସାଧୁ ସାଧୁ" ବୋଲି ପ୍ରଶଂସା କଲେ । ସମସ୍ତଙ୍କ କଥାରେ ରାଜା ଏହାହିଁ ସଦ୍‌ଯୁକ୍ତି ବିବେଚନା କରି ସସ୍ନେହ କୋମଳ ସ୍ୱରରେ ସାବିତ୍ରୀଙ୍କୁ କହିଲେ, "ମା, ତୋ ଲାଗି ମଦ୍ରଦେଶର ରାଜଆଡ଼େ ଗୋଟାଏ ବିଷାଦର ଛାୟା ପଡ଼ି ଯାଇଅଛି । ଆମ୍ଭେମାନେ ନାନା ଯତ୍ନ କରି କିଛି ଫଳ ହେଲା ନାହିଁ । ମାଣ୍ଡବ୍ୟ ଋଷିଙ୍କର ଆଦେଶ ପାଳନ କରି ତୁ ଏଣିକି ନିଜର ଇଚ୍ଛାନୁରୂପ ପତି ଅନ୍ୱେଷଣ କର । ତୁ ଯାହାଙ୍କୁ ମନୋନୀତ କରି ଆସିବୁ, ମୁଁ ତାଙ୍କ ହାତରେ ତତେ ସମର୍ପଣ କରିଦେବି ।"

ପିତାଙ୍କ କଥା ଶୁଣି ସାବିତ୍ରୀଙ୍କର ମୁଖ ଲଜ୍ଜାରେ ଟିକିଏ ରକ୍ତିମ ହୋଇ ଉଠିଲା । ସେ କିଛି କଥା ନ କହି ତଳକୁ ମୁହଁ ପୋତି ରହିଲେ । ପ୍ରଥମରେ ସାବିତ୍ରୀ ଟିକିଏ ଗୋଳମାଳରେ ପଡ଼ିଲେ । ବିବାହ କଥା ଉଠିଲେ କୁଳକନ୍ୟା-ମାନଙ୍କର ଲଜ୍ଜା ହେବା ସ୍ୱାଭାବିକ । କିନ୍ତୁ ସାବିତ୍ରୀଙ୍କୁ ନିଜର କର୍ତ୍ତବ୍ୟ ସ୍ଥିର କରିବାକୁ ବେଶି ସମୟ ଲାଗିବ ନାହିଁ । ସେ ପିତାମାତାଙ୍କ ସନ୍ତୋଷ ଲାଗି ଏ ଗୁରୁଭାର ବହନ କରିବାକୁ କୃତସଂକଳ୍ପ ହେଲେ ।

ଅଶ୍ୱପତି ଭାବିଲେ, ନାନା ତୀର୍ଥ ଭ୍ରମଣ କଲେ ମନ ପବିତ୍ର ହୁଏ, ସନ୍ଦେହଦୋଷର ଖଣ୍ଡନ ହୁଏ, ଆଉ ମଧ୍ୟ ଅନେକ ସାଧୁ ଲୋକଙ୍କର ପରିଚୟ ମିଳେ । ବୁଦ୍ଧିମତୀ ସାବିତ୍ରୀ ଏ ଅବସରରେ ନିଶ୍ଚୟ ପତିନିର୍ବାଚନ କରି ପାରିବେ । ଏହିପରି ଭାବି ରାଜା ସାବିତ୍ରୀଙ୍କୁ ତୀର୍ଥଭ୍ରମଣ ଲାଗି ଆଦେଶ ଦେଲେ । ସାବିତ୍ରୀ ମଧ୍ୟ ଇଙ୍ଗିତଦ୍ୱାରା ନିଜର ସମ୍ମତି ଜଣାଇଲେ ।

# ଚତୁର୍ଥ ପରିଚ୍ଛେଦ

ଦିନେ ଶୁଭ ଲଗ୍ନରେ ଶୁଭ କ୍ଷଣରେ ସାବିତ୍ରୀ ତୀର୍ଥଭ୍ରମଣ କରିବା ଲାଗି ବହିର୍ଗତ ହେଲେ । ଖଣ୍ଡିଏ ସୁନ୍ଦର ରଥ ସଜ୍ଜିତ ହୋଇ ରହିଲା । ସଙ୍ଗରେ ତାଙ୍କର ସହଚରୀବୃନ୍ଦ ଓ କେତେ ଜଣ ବୃଦ୍ଧ ମନ୍ତ୍ରୀ ଯିବାକୁ ପ୍ରସ୍ତୁତ ହେଲେ । ଆଉ ଅନେକ ଲୋକବାକ ଓ ଦାସଦାସୀ ମଧ୍ୟ ବାହାରିଲେ । ରାଜା ସାବିତ୍ରୀଙ୍କ ତୀର୍ଥଭ୍ରମଣର ସୁବିଧା ଲାଗି କୌଣସି ଆୟୋଜନର ତ୍ରୁଟି କଲେ ନାହିଁ ।

ରାଜ୍ୟର ଆବାଳବୃଦ୍ଧବନିତା ସମସ୍ତେ ଏ ଦୃଶ୍ୟ ଦେଖିବା ଲାଗି ଆସି ରୁଣ୍ଡ ହେଲେ । ଯେ ଫୁଲରାଣୀ ପରି ରାଜ-ଉପବନରେ ଶୋଭା ପାଉଥିଲେ, ତାଙ୍କୁ ଆଜି ପତି-ଅନ୍ୱେଷଣ ଲାଗି ବିଦେଶକୁ ଯିବାକୁ ହେଉଅଛି. ଏହା ଦେଖି ଲୋକମାନଙ୍କର ବଡ କଷ୍ଟ ହେଲା । ସମସ୍ତଙ୍କର ଆଖି ଛଳ ଛଳ ହୋଇ ଉଠିଲା । ସାବିତ୍ରୀ କିପରି ଶୀଘ୍ର ସିଦ୍ଧମନୋରଥ ହୋଇ ଫେରି ଆସନ୍ତୁ, ଏଥିପାଇଁ ସମସ୍ତେ ଅନ୍ତରରେ ସହୃତ ପ୍ରାର୍ଥନା କଲେ । ସାବିତ୍ରୀ ପିତାମାତାଙ୍କ ଠାରୁ ବିଦାୟ ଆଣିବାକୁ ଗଲେ । ରାଣୀ ବାରମ୍ବାର ସାବିତ୍ରୀଙ୍କୁ ଆଲିଙ୍ଗନ କରି ଓ ଅଞ୍ଚଳରେ ଲୁହ ପୋଛି ଅତି କଷ୍ଟରେ ବିଦାୟ ଦେଲେ । ରାଜା ମଧ୍ୟ କୌଣସି ପ୍ରକାରେ ଲୋତକର ବେଗ ରୋଧ କରି ସାବିତ୍ରୀଙ୍କୁ ଆଶୀର୍ବାଦ କଲେ ।

ଏହାପରେ ସାବିତ୍ରୀ ସମସ୍ତଙ୍କର ଆଶୀର୍ବାଦ ଓ ମଙ୍ଗଳକାମନା ମସ୍ତକରେ ଧରି ସଜଳନୟନରେ ଯାଇ ରଥ ଉପରେ ବସିଲେ । ମଙ୍ଗଳ ବାଦ୍ୟ ବାଜି ଉଠିଲା ଓ ଶୁଭ ହୁଳହୁଳି ଧ୍ୱନିରେ ଆକାଶ ପୂର୍ଣ୍ଣ ହୋଇଗଲା । ଶେଷରେ ସାରଥି ରଥ ଛାଡ଼ିଦେଲା । ଯେତେଦୂର ଦେଖାଗଲା, ଅଶ୍ୱପତି ଉଦାସ ପ୍ରାଣରେ ରଥ ଆଡକୁ ଅନାଇ ରହିଲେ । ଯେତେବେଳେ ରଥର ଧ୍ୱଜା ସୁଦ୍ଧା ଅଦୃଶ୍ୟ ହୋଇଗଲା, ସେ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ମୁହଁ ଫେରାଇଲେ ଓ ଶୋକର ବେଗ ସମ୍ଭାଳି ନ ପାରି ଭୂଇଁରେ ପଡ଼ି କାନ୍ଦିବାକୁ ଲାଗିଲେ । ପ୍ରଜାମାନେ ବିଷଣ୍ଣ ମନରେ ଯେଝା ଘରକୁ ଫେରିଗଲେ ।

ସାବିତ୍ରୀଙ୍କ ରଥ କେତେ ଗ୍ରାମ ନଗର, କାନନ ପ୍ରାନ୍ତର ଅତିକ୍ରମ କରି ଚାଲିବାକୁ ଲାଗିଲା । ପୂର୍ବରୁ ସମସ୍ତେ ସାବିତ୍ରୀଙ୍କ କଥା ଶୁଣିଥିଲେ । ବର୍ତ୍ତମାନ ସେ ତୀର୍ଥଭ୍ରମଣ କରିବାକୁ ବାହାରିଅଛନ୍ତି ଶୁଣି ତାଙ୍କୁ ଥରେ ଦେଖି ଚକ୍ଷୁ

ପତିକି ଜଣିବା ଲାଗି ଲୋକେ ବ୍ୟଗ୍ର ହୋଇ ଉଠିଲେ । ସେ ଯେଉଁଠାକୁ ଯାଆନ୍ତି, ଦେଖନ୍ତି, ପଥ ପାର୍ଶ୍ୱରେ ଲୋକେ ଜମା ହୋଇ ଅଛନ୍ତି; ତାଙ୍କ ଅଭ୍ୟର୍ଥନାପାଇଁ ନାନା ଆୟୋଜନ ହୋଇଅଛି । ରଥ କ୍ରମେ ମଦ୍ରଦେଶ ଗ୍ରନ୍ଥ ଅନ୍ୟ ରାଜ୍ୟରେ ଆସି ପହଞ୍ଚିଲା । ବିଦେଶରେ ମଧ୍ୟ ତାଙ୍କର ଆଦର ଅଭ୍ୟର୍ଥନାର ତ୍ରୁଟି ହେଲା ନାହିଁ । ସାବିତ୍ରୀ ଆସୁଅଛନ୍ତି ଶୁଣି ଅନେକ ରାଜା ମହାରାଜା ଆସି ତାଙ୍କୁ ବହୁ ସମାଦରରେ ପାଛୋଟି ନେଇଗଲେ । ଲୋକମାନେ ମଧ୍ୟ ତାଙ୍କୁ ସ୍ୱୟଂ ଭଗବତୀ ମନେ କରି ଭକ୍ତିରେ ଦୂରରୁ ପ୍ରଣାମ କଲେ ।

ଏହାପରେ ସେ କେତେ ଦେଶ, କେତେ ତୀର୍ଥ ବୁଲିଲେ, ତାହାର କଳନା ନାହିଁ । ସେ ଯେଉଁଠାକୁ ଯାନ୍ତି, ସେଠାରେ ଦାନ ଧର୍ମର ଗୋଟିଏ ଧୂମ୍ ପଡ଼ିଯାଏ । ସାବିତ୍ରୀଙ୍କ ନାମ ଶୁଣି ଅନେକ ଦୂର ଦେଶରୁ ଗରିବ ଦୁଃଖୀମାନେ ଦୌଡ଼ି ଆସିଲେ । ତାଙ୍କର ରୂପ ଗୁଣର କଥା ସମସ୍ତେ କାନରେ ଶୁଣିଥିଲେ, ବର୍ତ୍ତମାନ ଆଖିରେ ଦେଖି ସମସ୍ତଙ୍କ ହୃଦୟ ଭକ୍ତିରେ ପୂର୍ଣ୍ଣ ହୋଇଗଲା ।

ଏହାପରେ ଦିନ ପରେ ଦିନ ଅତିବାହିତ ହେବାକୁ ଲାଗିଲା । କୌଣସି ସ୍ଥାନରେ ମନୋରଥ ସିଦ୍ଧ ହେବାର ନ ଦେଖି ମନ୍ତ୍ରୀମାନେ ହତାଶ ହୋଇ ପଡ଼ିଲେ, କିନ୍ତୁ ସାବିତ୍ରୀ ଏଥିରେ ଆଦୌ ଦୁଃଖିତ ହେଲେ ନାହିଁ । ସେ ମନେ କଲେ, ମାଣ୍ଡବ୍ୟ ଋଷିଙ୍କ ବାକ୍ୟ ମିଥ୍ୟା ହେବାର ନୁହେଁ । ଶୀଘ୍ର ହେଉ, ବିଳମ୍ବରେ ହେଉ, ନିଶ୍ଚୟ ମନସ୍କାମ ସିଦ୍ଧ ହେବ । ସାବିତ୍ରୀ ନାନା ଦେଶ, ନଗର ବୁଲି ଓ ନାନା ତୀର୍ଥ ଦର୍ଶନ କରି ଶେଷରେ ତପୋବନ ଦେଖିବାର ଇଚ୍ଛା ପ୍ରକାଶ କଲେ ।

ସାରଥି ତପୋବନ ଅଭିମୁଖରେ ରଥ ଚଳାଇଲେ । ସାବିତ୍ରୀଙ୍କ ରଥ କ୍ରମେ ନଦ ନଦୀ ଗିରି କାନନ ଅତିକ୍ରମ କରି ଚାଲିବାକୁ ଲାଗିଲା । ବନର ଶୋଭା ଦେଖି ସାବିତ୍ରୀଙ୍କ ମନ ଆନନ୍ଦରେ ପୂର୍ଣ୍ଣ ହୋଇ ଉଠିଲା । କେଉଁଠାରେ ଗୋଟିଏ କ୍ଷୁଦ୍ର ଝରଣା କଲ କଲ ଶବ୍ଦରେ ବୋହି ଯାଉଅଛି, କେଉଁଠାରେ ନାନାଜାତୀୟ ପକ୍ଷୀ ଗଛଡାଳରେ ବସି ସଙ୍ଗୀତଧ୍ୱନି କରୁଅଛନ୍ତି, କେଉଁଠାରେ ବନଫୁଲଗନ୍ଧରେ ଦିଗନ୍ତ ଆମୋଦିତ ହୋଇ ଉଠୁଅଛି, କେଉଁଠାରେ ଶ୍ୟାମଳ ଶସ୍ୟକ୍ଷେତ୍ର ଉପରେ ସୁନ୍ଦର ଢେଉ ଖେଳି ଯାଉଅଛି । ଏ ସବୁ ଶୋଭା ସାବିତ୍ରୀ ମୁଗ୍ଧଦୃଷ୍ଟିରେ ଦେଖିବାକୁ ଲାଗିଲେ । ଯେତିକି ଦେଖନ୍ତି, ଆହୁରି ଦେଖିବାକୁ ଇଚ୍ଛା ହୁଏ । ଏହାପରେ ରଥ ଆସି କ୍ରମେ ଗୋଟିଏ ତପୋବନରେ ଉପସ୍ଥିତ ହେଲା ।

ତପୋବନରେ ଅକସ୍ମାତ ଗୋଟିଏ ବିଚିତ୍ର ରଥ ଦେଖି ଋଷି-କୁମାର ଓ ଋଷି-କୁମାରୀମାନେ ଆସି ରଥ ଚାରିପାଖରେ ଛିଡ଼ା ହେଲେ ।

ଶେଷରେ ସାବିତ୍ରୀଙ୍କର ପରିଚୟ ପାଇ ବନ୍ଧୁ ସମାଦରରେ ଅଭ୍ୟର୍ଥନା କରି ଭିତରକୁ ନେଇଗଲେ । ଏ ସମ୍ବାଦ ପାଇ ନିକଟବର୍ତ୍ତୀ ତପୋବନ ମାନଙ୍କରୁ ମୁନିପତ୍ନୀ ଓ ମୁନି-ବାଳକାମାନେ ଦୌଡ଼ି ଆସିଲେ । ସାବିତ୍ରୀଙ୍କ ରୂପ ଦେଖି ଓ ତାଙ୍କର ବିନୟମଧୁର କଥା ଶୁଣି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ମନେ କଲେ, ଏକ ଦେବୀଙ୍କର ଆବିର୍ଭାବରେ ଆଜି ତପୋବନ ପବିତ୍ର ହୋଇଅଛି ! ଏପରି ଅତିଥିଙ୍କୁ ପାଇ ସମସ୍ତେ ମିଳି ତାଙ୍କର ସେବା ଅର୍ଚ୍ଚନାରେ ମନ ପ୍ରାଣ ଢ଼ାଳିଦେଲେ । ତପୋବନର ଶୋଭା ଦେଖି ଏକ ସ୍ୱର୍ଗୀୟଭାବରେ ସାବିତ୍ରୀଙ୍କ ହୃଦୟ ପୂର୍ଣ୍ଣ ହୋଇଗଲା । ସେ ଯେଉଁ ଆଡ଼କୁ ଚାହାନ୍ତି ସେଠାରେ ତାଙ୍କ ଆଖି ଅଟକି ରହେ— ସହଜରେ ସେଠାରୁ ସେ ଆଖି ଫେରାଇ ପାରନ୍ତି ନାହିଁ । କେଉଁଠାରେ ଗୁଡ଼ିଏ ଗାଈ ଶାନ୍ତଭାବରେ ଚରୁଅଛନ୍ତି, କେଉଁଠାରେ ଋଷି ବାଳକମାନେ ମୃଗଶିଶୁଟିଏ ଧରି ଆଦରରେ କଅଁଳିଆ ଘାସ ଖୁଆଉଅଛନ୍ତି, କେଉଁଠାରେ ମୁନିକୁମାରୀମାନେ କଳସୀରେ ପାଣି ଆଣି ଫୁଲ ଗଛରେ ସିଞ୍ଚୁଅଛନ୍ତି, କେଉଁଠାରେ ଲତାକୁଞ୍ଜ ମଧ୍ୟରୁ କୋଇଲି 'କୁହୁ' 'କୁହୁ' ଡ଼ାକୁଅଛି, କେଉଁଠାରେ ମୟୂର ପୁଚ୍ଛ ଟେକି ଆନନ୍ଦରେ ନୃତ୍ୟ କରୁଅଛି, କେଉଁଠାରେ ବେଦର ଗମ୍ଭୀର ଝଙ୍କାର ଉଠୁଅଛି । ଏ ସବୁ ଦେଖି ସାବିତ୍ରୀ ତନ୍ମୟ ହୋଇଗଲେ । ସେ ମନେ କଲେ, ବିଶେଷ ତପସ୍ୟାର ବଳ ନ ଥିଲେ ମନୁଷ୍ୟର ଏଠାରେ ଜନ୍ମ ହୁଏ ନାହିଁ । ଏହା ତୁଳନାରେ ରାଜଭୋଗ ଅତି ତୁଚ୍ଛ । ଏଠାରେ ନଗରର ସେ ଚହଳ ବା ଚଞ୍ଚଳତା ନାହିଁ । ଚାରିଆଡ଼େ ସ୍ନିଗ୍ଧତା, ଚାରିଆଡ଼େ ପବିତ୍ରତା ।

ଋଷିକନ୍ୟାମାନେ ଯେପରି କି ଅମୂଲ୍ୟ ନିଧି ପାଇଅଛନ୍ତି ! ସେମାନେ ସାବିତ୍ରୀଙ୍କୁ ନେଇ କେତେ ପର୍ବତ, କୁଞ୍ଜ, ନଦୀ, ଝରଣା ଦେଖାଇ ଆଣିଲେ । ସାବିତ୍ରୀ ସେମାନଙ୍କର ସରଳ ଅମାୟିକ ବ୍ୟବହାର ଦେଖି ମୁଗ୍ଧ ହୋଇଗଲେ । ସେମାନେ ସ୍ନେହ ମମତାରେ ତାଙ୍କୁ କିଣି ପକାଇଲେ । ଦିନକର ଆଳାପରେ ସାବିତ୍ରୀଙ୍କର ମନେ ହେଲା, ଯେପରି ଏମାନେ ତାଙ୍କର ଅନେକ ଦିନର ପରମ ଆତ୍ମୀୟ ।

ଏମାନଙ୍କୁ ଛାଡ଼ି ଯିବାକୁ ସାବିତ୍ରୀଙ୍କର ବଡ଼ କଷ୍ଟ ହେଲା; ସାବିତ୍ରୀଙ୍କୁ ବାହାରିବାର ଦେଖି ମୁନିକନ୍ୟାମାନଙ୍କର ମଧ୍ୟ ଆଖି ଛଳ ଛଳ ହୋଇ ଉଠିଲା । ଶେଷରେ ସାବିତ୍ରୀ ମୁନି ଓ ମୁନିପତ୍ନୀମାନଙ୍କର ଚରଣ ବନ୍ଦନା କରି ଓ ଋଷି-କୁମାରୀମାନଙ୍କୁ ପ୍ରୀତି ସମ୍ଭାଷଣ କରି ବିଦାୟ ନେଲେ ।



# ପଞ୍ଚମ ପରିଚ୍ଛେଦ

ଏହିପରି ଭାବରେ ସାବିତ୍ରୀ ନାନା ତପୋବନ ବୁଲିଲେ । ସେଇଠାରୁ ସାଆନ୍ତ, ସେହିପରି ଆଦର, ସେହିପରି ଅଭ୍ୟର୍ଥନା । ଏ ଶାନ୍ତିପୂର୍ଣ୍ଣ ସ୍ଥାନ ଛାଡ଼ି ଅନ୍ୟ କୌଣସି ସ୍ଥାନକୁ ଯିବାକୁ ତାଙ୍କର ଆଉ ଇଚ୍ଛା ହେଲା ନାହିଁ । ତାଙ୍କର ମନେ ହେଲା, ପ୍ରକୃତିଦେବୀ ଯେପରି ଦୁଃଖସନ୍ତାପପୀଡ଼ିତ ମାନବ ଲାଗି ଲୋକକୋଳାହଳରୁ ବହୁ ଦୂରରେ ଝଣ୍ଡିଏ ଶାନ୍ତିନିକେତନ ନିର୍ମାଣ କରି ରଖିଅଛନ୍ତି । ସେଠାରେ ଶୋକ ତାପ, ହିଂସା ଦ୍ୱେଷ, ରୋଗ ଭୟ କିଛି ନାହିଁ—କେବଳ ଶାନ୍ତି, କେବଳ ଆନନ୍ଦ, କେବଳ ପବିତ୍ରତା । ଲୋକେ କେବଳ କଥାରେ ସ୍ୱର୍ଗ ସ୍ୱର୍ଗ ବୋଲି କହନ୍ତି, କିନ୍ତୁ ଏପରି ସୁନ୍ଦର ସ୍ଥାନ ବୋଧହୁଏ ଆଉ ଜଗତରେ ଅନ୍ୟ କୌଣସିଠାରେ ନାହିଁ । ଏ ଯେପରି ମର୍ତ୍ତ୍ୟଜଗତର ପରପାରରେ ଅବସ୍ଥିତ । ସାବିତ୍ରୀ ମନେ କଲେ, ଯେପରି କେତେ ପୁଣ୍ୟଫଳରୁ, କେତେ ତପସ୍ୟାବଳରୁ ତାଙ୍କୁ ଏ ସ୍ଥାନର ଦର୍ଶନ ମିଳିଲା । ଏ ସ୍ଥାନରେ ଜୀବନଟା କଟାଇ ପାରିଲେ ଯେପରି ସେ ଆଉ ସଂସାରରେ କିଛି ଲୋଡ଼ନ୍ତେ ନାହିଁ ।

ମନ୍ତ୍ରୀମାନଙ୍କର ବଡ଼ ଚିନ୍ତା ଉପସ୍ଥିତ ହେଲା । ସେମାନେ ମନେ କଲେ, ସାବିତ୍ରୀ ତ ଏତେ ତୀର୍ଥ ନଗର ତପୋବନ ବୁଲିଲେ, ଏତେ ଲୋକଙ୍କ ସଙ୍ଗେ ଆଳାପ କଲେ, କିନ୍ତୁ କାହିଁ କୌଣସିଠାରେ ତ ମନୋରଥ ପୂର୍ଣ୍ଣ ହେଲା ନାହିଁ ! ତେବେ କଣ ସାବିତ୍ରୀଙ୍କ ଭାଗ୍ୟରେ ଆଉ ବର ଘଟିବ ନାହିଁ ? ଏତେ କଷ୍ଟ, ଏତେ ପରିଶ୍ରମ କଣ ସବୁ ବୃଥା ହୋଇଗଲା ? ସାବିତ୍ରୀ କିନ୍ତୁ ଭାବିଲେ, ଭଗବାନଙ୍କର କୃପା ହେଲେ ସବୁ ହେବ । ବୃଥା ଚିନ୍ତା କରି ଫଳ କଣ ?

ନାନା ତପୋବନ ବୁଲି ଶେଷରେ ସାବିତ୍ରୀ ପମ୍ପାସରୋବର ନିକଟସ୍ଥ ଗୋଟିଏ ତପୋବନରେ ଉପସ୍ଥିତ ହେଲେ । ସୂର୍ଯ୍ୟାସ୍ତ ହେବାକୁ ଆଉ ବେଶି ବିଳମ୍ବ ନାହିଁ । ଦିନମଣିଙ୍କର ଶେଷ ରଶ୍ମିରେଖା ପଡ଼ି ତପୋବନ ଏକ ଅପୂର୍ବ ଶୋଭା ଧାରଣ କରିଅଛି । ପକ୍ଷୀମାନେ ସନ୍ଧ୍ୟାସଙ୍ଗୀତ ଗାନ କରୁଅଛନ୍ତି, ମୃଦୁ ମନ୍ଦ ପବନରେ ଗୋଟିଏ ସୁଗନ୍ଧ ଭାସି ଆସି ପ୍ରାଣକୁ ଆକୁଳ କରି ଦେଉଛି । ଏପରି ସମୟରେ ରଥ ଆସି ତପୋବନ ନିକଟରେ ପହଞ୍ଚିଲା । ଏ ସବୁ ସୁନ୍ଦର ଦୃଶ୍ୟ ଦେଖି ସାବିତ୍ରୀ ମୁଗ୍ଧ ହୋଇଗଲେ । ସୌନ୍ଦର୍ଯ୍ୟରେ ତାଙ୍କର ମନ ପୂରି ଉଠିଲା, ଅନ୍ତର

ମଧ୍ୟରେ କପରି ଗୋଟିଏ ଅଜଣା ଉଚ୍ଛ୍ୱାସର ତରଙ୍ଗ ଖେଳିଗଲା । ସେ ଆଶାର ଉଜ୍ଜ୍ୱଳ ଆଲୋକ ଦେଖି ପାରିଲେ । ତାଙ୍କର ମନେ ହେଲା, ସେ ଯେପରି ଗୋଟାଏ କଣ ମଙ୍ଗଳ ସମ୍ବାଦ ପାଇବେ—ଯେପରି ତାଙ୍କର ମନସ୍କାମ ସିଦ୍ଧ ହେବ । ସେ ଏତେ ତପୋବନ ଦେଖିଅଛନ୍ତି; କିନ୍ତୁ ତାଙ୍କର ମନେ ହେଲା, ଏପରି ରମଣୀୟ ସ୍ଥାନ କେଉଁଠାରେ ତାଙ୍କ ଦୃଷ୍ଟିରେ ପଡ଼ି ନାହିଁ । ଯେପରି ଏ ତପୋବନର ଜୀବଜନ୍ତୁ, ତରୁଲତା, ସମସ୍ତେ ସହସ୍ର ବାହୁ ବିସ୍ତାର କରି ତାଙ୍କୁ ସ୍ନେହରେ ଆହ୍ୱାନ କରୁଅଛନ୍ତି ।

ସାବିତ୍ରୀ ରଥରୁ ଓହ୍ଲାଇ ସହଚରୀମାନଙ୍କ ସହିତ ତପୋବନ ଭିତରେ ପ୍ରବେଶ କଲେ । କିଛି ଦୂର ଯାଇ ଦେଖିଲେ, ଜଣେ ଯୁବକ ସୁକୋମଳ ଘାସ ଉପରେ ବସି ଗୋଟିଏ ହରିଣୀଶିଶୁକୁ ଧରି କ୍ରୀଡ଼ା କରୁଅଛନ୍ତି । ସନ୍ଧ୍ୟାର ରକ୍ତିମ ରାଗରେ ତାଙ୍କର ସୁନ୍ଦର ମୁଖମଣ୍ଡଳ ରଞ୍ଜିତ ହୋଇ ଯାଇଅଛି । ଯୁବକଙ୍କର ବୟସ ଅନୁମାନ ଉଣେଇଶ କି କୋଡ଼ିଏ ହେବ । ସେ ଯୌବନରେ ପଦାର୍ପଣ କଲେ ସୁଦ୍ଧା ବାଳକସୁଲଭ ସରଳତା ଓ କୋମଳତା ଏପର୍ଯ୍ୟନ୍ତ ତାଙ୍କୁ ଛାଡ଼ି ନାହିଁ । ଦେହରୁ ଗୋଟାଏ ଅପୂର୍ବ ଜ୍ୟୋତି ବାହାରୁଅଛି । ମୁନି ପରି ମୁନିବେଶରେ ସେ ସୌନ୍ଦର୍ଯ୍ୟ ଆହୁରି ଉଜ୍ଜ୍ୱଳ—ଆହୁରି କମନୀୟ ଦେଖାଯାଉଅଛି । ତାଙ୍କ ଉପରେ ଦୃଷ୍ଟି ପଡ଼ିବାମାତ୍ରେ ସାବିତ୍ରୀ ହଠାତ୍ ଥକା ହୋଇ ଛିଡ଼ା ହୋଇଗଲେ । ତାଙ୍କ ଚକ୍ଷୁର ପଲକ ପଡ଼ିଲା ନାହିଁ—ଆଉ ପାଦେ ଗୋଡ଼ ଚଳିଲା ନାହିଁ । ସେ ଏପରି ଦେବଦୁର୍ଲଭ ମୂର୍ତ୍ତି କୌଣସିଠାରେ ଦେଖି ନାହାନ୍ତି । ତାଙ୍କର ମନେ ହେଲା, ଏ ବୋଧହୁଏ କୌଣସି ବନଦେବତା ହେବେ ! ନ ହେଲେ ମନୁଷ୍ୟଠାରେ ଏତେ ରୂପ ?

ସାବିତ୍ରୀଙ୍କ ମନରେ କେତେ କଥା ଉଦୟ ହେବାକୁ ଲାଗିଲା; ତାଙ୍କର ଶିରା ପ୍ରଶିରାରେ ଗୋଟିଏ ଆନନ୍ଦର ପ୍ରବାହ ଖେଳିଗଲା । ମନ ଆଜି ତାଙ୍କର ନିଜ ଆୟତ୍ତରେ ନାହିଁ । ସେ ଯେପରି ସ୍ରୋତରେ ପଡ଼ି କେଉଁ ଆଡ଼େ ଭାସି ଯାଉଅଛନ୍ତି ।

ସାବିତ୍ରୀ ମୁଗ୍ଧଦୃଷ୍ଟିରେ ଯୁବକଙ୍କୁ ଅନାଇ ରହିଲେ । ଯୁବକଙ୍କ ଦୃଷ୍ଟି ମଧ୍ୟ ସାବିତ୍ରୀଙ୍କ ଉପରେ ପଡ଼ିଲା । ଶୁଭଚକ୍ଷୁର ମିଳନ ହେଲା । ଲଜ୍ଜାରେ ସାବିତ୍ରୀଙ୍କ ଚକ୍ଷୁ ନତ ହୋଇଗଲା ।

ଯୁବକ ଏକଦୃଷ୍ଟିରେ ଯେପରି ସାବିତ୍ରୀଙ୍କ ରୂପ ପାନ କରିବାକୁ ଲାଗିଲେ । ସେ ଭାବିଲେ, ଆହା ! କେଉଁ ବିଧାତା ଏହାଙ୍କୁ ଗଢି ଅଛନ୍ତି ?

ଏ କିଏ ମନୁଷ୍ୟ, ନା ଦେବତା ? ଯୁବକଙ୍କ ମନରେ ଆଜି କି ଗୋଟିଏ ନୂତନ ଭାବର ସଞ୍ଚାର ହେଲା. ତାଙ୍କ ହୃଦୟ ମଧ୍ୟରେ ଆଜି କିପରି ଗୋଟିଏ ଆନନ୍ଦର ଉତ୍ସ ଫିଟିଗଲା । କେବେ ବାଲ୍ୟ ଯାଇ ଯୌବନ ଆସିଥିଲା, ଏ ତପୋବନରେ ରହି ସେ ଦିନେ ସୁଦ୍ଧା ବୁଝି ପାରି ନ ଥିଲେ । କିନ୍ତୁ ଆଜି ସେପରି ଯୌବନର ଗୋଟାଏ ପ୍ରବଳ ସ୍ରୋତ ଆସି ତାଙ୍କ ହୃଦୟକୁ ପ୍ଲାବିତ କରିଦେଲା । ତାଙ୍କର ବୋଧ ହେଲା, ଆଜି ପକ୍ଷୀମାନଙ୍କର ସଙ୍ଗୀତ କି ସୁନ୍ଦର ଶୁଣା ଯାଉଅଛି, ନଦୀ କି ମଧୁର ଗୀତ ଗାଇ ଗାଇ ବୋହି ଯାଉଅଛି, ବନଭୂମି ବି ଏକ ନୂତନ ଶୋଭା ଧାରଣ କରିଅଛି । କାହାର କୁହୁକ-ବଳରେ ଆଜି ସବୁ ଓଲଟ ପାଲଟ ହୋଇଗଲା ।

ଯୁବକ କ୍ଷଣକାଳ ଏହିପରି ଭାବରେ ରହିଲେ । ପରେ କର୍ତ୍ତବ୍ୟବୁଦ୍ଧି ତାଙ୍କର ସବୁ ଜଡ଼ତା ଦୂର କରିଦେଲା । ସେ ଶୀଘ୍ର ଯାଇ ଅତିଥିମାନଙ୍କର ପରିଚୟ ବୁଝିଲେ ଏବଂ ବହୁତ ଆଦର ସହିତ ସେମାନଙ୍କୁ ତପୋବନ ଭିତରକୁ ନେଇଗଲେ ।

ଏ ସ୍ଥାନରେ ଏ ତପୋବନର ଟିକିଏ ପରିଚୟ ଦେବା ଆବଶ୍ୟକ । ଏଠାରେ ଜଣେ ଅନ୍ଧମୁନି ନିଜର ପତ୍ନୀ ଓ ଏକମାତ୍ର ପୁତ୍ରଙ୍କ ସହିତ ବାସ କରନ୍ତି । ମୁନିଙ୍କ ନାମ ଦ୍ୟୁମତ୍ସେନ । ସେ ଏକସମୟରେ ଶାଲ୍ୱ ଦେଶର ଅଧିପତି ଥିଲେ । ତାଙ୍କର ନାମ ଶୁଣି ଶତ୍ରୁମାନେ ଶଙ୍କିତ ହେଉଥିଲେ । ସେ ନିଜେ ପରମ ଧାର୍ମିକ । ତାଙ୍କ ରାଜ୍ୟରେ ପ୍ରଜାମାନେ ବଡ଼ ସୁଖ ଶାନ୍ତିରେ ଦିନ ଯାପନ କରୁଥିଲେ । ଦ୍ୟୁମତ୍ସେନଙ୍କ ପୁତ୍ରଙ୍କ ନାମ ସତ୍ୟବାନ । ପୁତ୍ରଟି ଦେଖିବାକୁ ଯେପରି ଗୋଟିଏ ଫୁଟିଲା ପଦ୍ମଫୁଲ ପରି, ଗୁଣ ମଧ୍ୟ ତାହାର ଅନୁରୂପ । ସତ୍ୟବାନଙ୍କ ଦୟା ବିନୟାଦି ଗୁଣ ଦେଖି ପିତାମାତା ଓ ରାଜ୍ୟର ଲୋକମାନେ ମୁଗ୍ଧ ହୋଇ ଯାଉଥିଲେ । ଏପରି ଗୁଣଧର ପୁତ୍ର ଓ ଧର୍ମପରାୟଣ ପତ୍ନୀ ପାଇ ରାଜା ନିଜକୁ ବଡ଼ ଭାଗ୍ୟବାନ୍ ମନେ କରୁଥିଲେ । କିନ୍ତୁ ସବୁ ଦିନ କାହାର ସମାନ ଯାଏ ନାହିଁ । ଦୁଃଖ ପରେ ସୁଖ, ସୁଖ ପରେ ଦୁଃଖ—ଏହା ଜଗତର ରୀତି । ଦ୍ୟୁମତ୍ସେନଙ୍କର ଚକ୍ଷୁରୋଗ ହୋଇ ଦୁଇ ଚକ୍ଷୁ ଅନ୍ଧ ହୋଇଗଲେ । ଏ ସୁଯୋଗ ପାଇ ନିକଟବର୍ତ୍ତୀ ରାଜ୍ୟର ଶତ୍ରୁମାନେ ରାଜ୍ୟ ଆକ୍ରମଣ କଲେ । ରାଜ୍ୟର କେତେ ଜଣ ବିଦ୍ରୋହୀ ପ୍ରଜା ମଧ୍ୟ ସେମାନଙ୍କ ସଙ୍ଗେ ଯୋଗ ଦେଲେ । ଶେଷରେ ଦ୍ୟୁମତ୍ସେନ ପରାସ୍ତ ହୋଇ ରାଜ୍ୟଚ୍ୟୁତ ହେଲେ ଏବଂ ଅନ୍ୟ କୌଣସି ଉପାୟ ନ ଦେଖି ପତ୍ନୀ ଓ ପୁତ୍ରଙ୍କ ସହିତ ବନବାସୀ ହେଲେ ।

ଅନ୍ଧ ରାଜା ଅରଣ୍ୟକୁ ଆସି ମୁନିମାନଙ୍କ ଆଶ୍ରମ ନିକଟରେ ଖଣ୍ଡିଏ କୁଟୀର ନିର୍ମାଣ କରି ରହିଲେ ଓ ସବୁ ଚିନ୍ତା ଛାଡ଼ି ଦେଇ କେବଳ ଭଗବତ୍ ଆରାଧନାରେ ମନ ପ୍ରାଣ ସମର୍ପଣ କରିଦେଲେ । ମୁନିମାନଙ୍କ ସହବାସରେ ରହି ଓ ସେମାନଙ୍କଠାରୁ ଧର୍ମୋପଦେଶ ଶୁଣି ଦ୍ୟୁମତ୍‌ସେନ ଆଶ୍ରମବ୍ରତରେ ଦୀକ୍ଷିତ ହୋଇ ତପସ୍ୟାରେ ନିଯୁକ୍ତ ହେଲେ । ସତ୍ୟବାନ୍ ମଧ୍ୟ ପ୍ରାଣପଣେ ପିତାମାତାଙ୍କ ସେବା କରି ଋଷିମାନଙ୍କ ସଙ୍ଗେ ସୁଖରେ କାଳାତିପାତ କରିବାକୁ ଲାଗିଲେ । ତାଙ୍କର ଦେବତୁଲ୍ୟ ରୂପ - ଯେ ଦେଖେ, ସେ ଆକୃଷ୍ଟ ହୋଇପଡ଼େ । ସତ୍ୟବାନଙ୍କର ସରଳ ମଧୁର ବ୍ୟବହାରରେ ମୁଗ୍‌ଧ ହୋଇ ତପୋବନର ସମସ୍ତ ମୁନି ଓ ମୁନିପତ୍ନୀମାନେ ତାଙ୍କୁ ନିଜର ପୁତ୍ର ପରି ମନେ କରନ୍ତି । ତାଙ୍କୁ ଦଣ୍ଡେ ନ ଦେଖିଲେ ସମସ୍ତେ ବଡ଼ ଉଦ୍‌ବିଗ୍ନ ହୋଇ ପଡ଼ନ୍ତି । ଏହିପରି ସତ୍ୟବାନ୍ ସମସ୍ତଙ୍କର ଅତି ଆପଣାର ଲୋକ ହୋଇ ପଡ଼ିଲେ ।

ଏହି ସତ୍ୟବାନ୍ ସେହି ଯୁବକ । ଏହି ସେ ଦିନ ମୃଗଶିଶୁକୁ ଧରି କ୍ରୀଡ଼ା କରୁଥିଲେ । ଏହାଙ୍କ ରୂପ ଦେଖି ସାବିତ୍ରୀ ମୁଗ୍‌ଧ ହୋଇ-ଯାଇଥିଲେ ।

ସତ୍ୟବାନ୍ ରାଜପୁତ୍ର ବୋଲି ଜାଣି ପାରି ସାବିତ୍ରୀଙ୍କର ଆଉ ଆନନ୍ଦର ସୀମା ରହିଲା ନାହିଁ । ସେ ଅନ୍ତରର ସହିତ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, "ପ୍ରଭୁ, ତୁମର ଗୂଢ଼ ଉଦ୍ଦେଶ୍ୟ କ୍ଷୁଦ୍ର ମନୁଷ୍ୟ କଣ ବୁଝିବ ? ଏ ଅମୂଲ୍ୟ ରତ୍ନ ଦାନ କରିବ ବୋଲି କଣ ପ୍ରଥମରେ ଏପରି ବିଘ୍ନ ଘଟାଇଥିଲ ? କିନ୍ତୁ ମୋର କଣ ସତେ ସେ ଭାଗ୍ୟ ହେବ ?"

ତପୋବନରେ ପ୍ରବେଶ କରି ସାବିତ୍ରୀ **ଅନ୍ଧମୁନି** ଓ ତାଙ୍କର ସ୍ତ୍ରୀଙ୍କୁ ପ୍ରଣାମ କଲେ । ସେମାନେ ପୂର୍ବରୁ ସାବିତ୍ରୀଙ୍କ କଥା ଶୁଣିଥିଲେ, ବର୍ତ୍ତମାନ ତାଙ୍କୁ ଅତିଥି ରୂପେ ପାଇ କୃତକୃତ୍ୟ ହୋଇଗଲେ । ସେମାନଙ୍କର ମନେ ହେଲା, ସାବିତ୍ରୀଙ୍କ ଆଗମନରେ ଯେପରି ତପୋବନ ପବିତ୍ର ହୋଇଅଛି । ଉଭୟେ ତାଙ୍କୁ ସ୍ନେହରେ ଆଶୀର୍ବାଦ କରି ନାନା ପ୍ରଶ୍ନ କରିବାକୁ ଲାଗିଲେ । ଅନ୍ୟାନ୍ୟ ମୁନି ଓ ମୁନିପତ୍ନୀମାନେ ଆସି ସାବିତ୍ରୀଙ୍କୁ ଦେଖି ଚକ୍ଷୁ ଚରିତାର୍ଥ କରି ଗଲେ । ସାବିତ୍ରୀ ସେମାନଙ୍କ କଥାବାର୍ତ୍ତା ଓ ବ୍ୟବହାରରେ ମୁଗ୍ଧ ହୋଇଗଲେ ।

କ୍ରମେ ସନ୍ଧ୍ୟା ଉପସ୍ଥିତ ହେଲା ତପୋବନର ପ୍ରତି କୁଟୀରରେ ପୂଜା ଆରତି ଘଣ୍ଟା ବାଜି ଉଠିଲା । ଅସଂଖ୍ୟ ମୁନିକଣ୍ଠରୁ ଏକସଙ୍ଗେ ସନ୍ଧ୍ୟାସ୍ତୋତ୍ରର ଧ୍ୱନି

ଉଠି ବନଟିକୁ ମୁଖରିତ କରିଦେଲା । ସେହି ପବିତ୍ର ଦୃଶ୍ୟ ବର୍ଣ୍ଣନା କରିବା ମନୁଷ୍ୟର ସାଧ୍ୟାତୀତ । ଜଗତରେ ତାହାର ତୁଳନା ନାହିଁ । ସାବିତ୍ରୀ ସେ ଦୃଶ୍ୟ ଦେଖି ମୋହିତ ହୋଇଗଲେ । ତାଙ୍କର ମନେ ହେଲା, ଯେପରି ଏ ବାସ୍ତବ ରାଜ୍ୟର ଦୃଶ୍ୟ ନୁହେଁ— ଯେପରି କି, ସେ ଆସି କେଉଁ ମାୟାପୁରୀରେ ଉପସ୍ଥିତ ହୋଇଅଛନ୍ତି ।

ସନ୍ଧ୍ୟା ବନ୍ଦନା ଶେଷ କରି ସତ୍ୟବାନ୍ ଅତିଥିମାନଙ୍କ ପରିଚର୍ଯ୍ୟାରେ ଲାଗିଲେ । ତାଙ୍କର ମଧୁର ବ୍ୟବହାର ଓ ଅଶେଷ ଯତ୍ନରେ ସମସ୍ତେ ତୁଷ୍ଟ ହୋଇଗଲେ । ସାବିତ୍ରୀ କିଛି ଫଳମୂଳ ଭକ୍ଷଣ କରି ପରମ ଆନନ୍ଦରେ ତୃଣଶଯ୍ୟାରେ ରାତ୍ରି ଯାପନ କଲେ ।

ପ୍ରଭାତରୁ ଉଠି ସାବିତ୍ରୀ ଯାତ୍ରାର ଉଦ୍ୟୋଗ କଲେ । ରଥ ସଜ୍ଜିତ ହେଲା । ସାବିତ୍ରୀ ଅନ୍ଧ ଦମ୍ପତିଙ୍କୁ ପ୍ରଣାମ କରି ବିଦାୟ ନେଲେ । ସେମାନେ ତାଙ୍କୁ ‘ଯୋଗ୍ୟ ଉପଯୁକ୍ତ ପତିଲାଭ କର’ ବୋଲି କହି ଅନ୍ତରର ସହିତ ଆଶୀର୍ବାଦ କଲେ ।

ରଥ ଆରୋହଣ କରି ସାବିତ୍ରୀ ସାରଥିକୁ କହିଲେ, “ଅନ୍ୟ କୌଣସି ସ୍ଥାନକୁ ଯିବା ଆବଶ୍ୟକ ନାହିଁ, ସ୍ୱଦେଶକୁ ରଥ ଫେରାଅ ।” ସାବିତ୍ରୀଙ୍କ କଥା ଶୁଣି ସାରଥି ଅବାକ୍ ହୋଇ ରହିଲା । ମନ୍ତ୍ରୀମାନେ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସାରଥିକୁ ସେହି ଆଦେଶ ଦେଲେ । କିନ୍ତୁ ସାବିତ୍ରୀଙ୍କ ସଙ୍ଗିନୀମାନଙ୍କର କିଛି ବୁଝିବାକୁ ବାକି ରହିଲା ନାହିଁ । ସେମାନେ ସାବିତ୍ରୀ ସତ୍ୟବାନଙ୍କର ହାବଭାବ ଦେଖିଥିଲେ ଏବଂ ସେଥିରୁ ମନୋଭାବ ମଧ୍ୟ କେତେକ ପରିମାଣରେ ଅନୁମାନ କରିଥିଲେ । ବର୍ତ୍ତମାନ ସାବିତ୍ରୀଙ୍କର ଆଦେଶ ଶୁଣି ସେମାନେ ବୁଝି ପାରିଲେ ଯେ, ତାଙ୍କର ଦୁଃଖ-ନିଶା ପ୍ରଭାତ ହୋଇଅଛି – ସେମାନଙ୍କର ସବୁ କଷ୍ଟ, ସବୁ ଶ୍ରମ ସାର୍ଥକ ହୋଇଅଛି ।

ରଥ ଦ୍ରୁତଗତିରେ ଚାଲିବାକୁ ଲାଗିଲା । ସାବିତ୍ରୀ ତପୋବନ ଆଡ଼କୁ ସସ୍ନେହ କରୁଣ ଦୃଷ୍ଟି ପକାଇ ମୁହଁ ଫେରାଇଲେ । ଦେଖୁଁ ଦେଖୁଁ ରଥ ତପୋବନ ଅତିକ୍ରମ କରିଗଲା ।



# ଷଷ୍ଠ ପରିଚ୍ଛେଦ

ଦିନେ ଦେବର୍ଷି ନାରଦ ଆସି ଅଶ୍ୱପତିଙ୍କ ସଭାରେ ଉପସ୍ଥିତ ହେଲେ । ରାଜା ନାରଦଙ୍କୁ ଯଥାଯୋଗ୍ୟ ଅର୍ଚ୍ଚନା କରି ଆସନରେ ବସାଇଲେ ଏବଂ ନାନା କୁଶଳ ପ୍ରଶ୍ନ କଲେ । ଏହିପରି କଥୋପକଥନ ହେଉଥିଲା, ଏପରି ସମୟରେ ସାବିତ୍ରୀ ପାର୍ଶ୍ୱମନ୍ତ୍ରୀଙ୍କ ସଙ୍ଗେ ରାଜ୍ୟରେ ପ୍ରବେଶ କଲେ । ଚାରିଆଡ଼େ ଜୟକୋଳାହଳ ଉଚ୍ଛୁଳି ପଡ଼ିଲା । ପ୍ରଜାମାନଙ୍କ ମନରେ ପୁନର୍ବାର ଆନନ୍ଦର ତରଙ୍ଗ ଖେଳିବାକୁ ଲାଗିଲା । ସାବିତ୍ରୀ ଅନ୍ତଃପୁରରେ ପ୍ରବେଶ କରି ମାତାଙ୍କ ଚରଣ ବନ୍ଦନା କଲେ । ବହୁଦିନ ପରେ ପ୍ରାଣାଧିକା କନ୍ୟାକୁ ପାଇ ରାଣୀଙ୍କର ଅଶ୍ରୁ ଆଉ ବାରଣ ମାନିଲା ନାହିଁ । ସେ ସ୍ନେହରେ ସାବିତ୍ରୀଙ୍କୁ ଆଲିଙ୍ଗନ କରି ଅଞ୍ଚଳରେ ଲୁହ ପୋଛିବାକୁ ଲାଗିଲେ ।

ସାବିତ୍ରୀଙ୍କ ଆସିବା କଥା ଶୁଣି ରାଜା ବଡ଼ ଉଦ୍‌ବିଗ୍ନ ହୋଇ ଉଠିଲେ । କିନ୍ତୁ ନାରଦ ବସିଛନ୍ତି, ଭିତରକୁ ଯିବାର ଆଉ ଉପାୟ ନାହିଁ । ଏଣୁ ସେ ନିଜେ ସାବିତ୍ରୀଙ୍କୁ ସଭାକୁ ଆସିବାକୁ ଆଦେଶ ଦେଲେ । ସେ ସମୟରେ ଅଶ୍ୱପତିଙ୍କ ମନରେ ଆଶା ଓ ଆଶଙ୍କା ମଧ୍ୟରେ ଯେ ତୁମୁଳ ଯୁଦ୍ଧ ଚାଲିଥିଲା, ତାହା କଥାରେ କହି ହେବ ନାହିଁ । ସାବିତ୍ରୀ ଆସି ପ୍ରଥମରେ ନାରଦଙ୍କୁ ଓ ପରେ ପିତାଙ୍କୁ ପ୍ରଣିପାତ କରି ତଳକୁ ମୁହଁ ପୋତି ଛିଡ଼ା ହେଲେ । ସାବିତ୍ରୀଙ୍କର ସରଳ ସୁନ୍ଦର ମୁଖ ଦେଖି ନାରଦଙ୍କ ହୃଦୟରେ ସ୍ନେହ ଉଚ୍ଛୁଳି ଉଠିଲା । ସେ ମନେ ମନେ ସାବିତ୍ରୀଙ୍କୁ ଶତ ଆଶୀର୍ବାଦ କରି ଶେଷରେ କିଛି ନ ଜାଣିଲା ପରି ହୋଇ ପଚାରିଲେ, "ମହାରାଜ, ତୁମ୍ଭ କନ୍ୟା କେଉଁଠାକୁ ଯାଇଥିଲା ? ବର୍ତ୍ତମାନ କେଉଁଠାରୁ ଆସିଲା ? ଏହାର ତ ବିବାହଯୋଗ୍ୟ ବୟସ ହୋଇଗଲାଣି, ପାତ୍ରସ୍ଥ କରିବାକୁ ଆଉ ବିଳମ୍ବ କରୁଅଛ କାହିଁକି ?" ଅଶ୍ୱପତି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ସାବିତ୍ରୀଙ୍କ ବିବାହସମ୍ବନ୍ଧୀୟ ସବୁ କଥା ସଂକ୍ଷେପରେ ବର୍ଣ୍ଣନା କଲେ । ପରେ ସାବିତ୍ରୀଙ୍କୁ ଅନାଇ କହିଲେ, "ମା, କଣ କରି ଆସିଛୁ, ସବୁ ବିସ୍ତାରିତରୂପେ ଦେବର୍ଷିଙ୍କ ଆଗରେ ଖୋଲି କରି କହ । ଆମ୍ଭର ପରମ ସୌଭାଗ୍ୟ ଯେ, ନାରଦ ଋଷି ଏ ସମୟରେ ଉପସ୍ଥିତ ଅଛନ୍ତି ।"

ସାବିତ୍ରୀ ଲଜ୍ଜାରେ ଟିକିଏ ସଂକୁଚିତ ହୋଇ ବିନୀତ ସ୍ୱରରେ ସତ୍ୟବାନଙ୍କୁ ବରଣ କରିଥିବା କଥା କହିଲେ ଏବଂ ସଂକ୍ଷେପରେ ତାଙ୍କର ବଂଶ ପରିଚୟ ଦେଲେ ।

ଏ କଥା ଶୁଣି ରାଜା ଆଶ୍ୱସ୍ତ ହେଲେ । ତାଙ୍କର ହୃଦୟ ପୁଲକିତ ହୋଇ ଉଠିଲା । ସଭାରେ ଯେତେ ଲୋକ ଥିଲେ, ସମସ୍ତେ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । କେବଳ ଆନନ୍ଦିତ ହେଲେ ନାହିଁ ଦେବର୍ଷି ନାରଦ । ସେ କ୍ଷଣକାଳ ଚିନ୍ତିତ ଭାବ ଦେଖାଇ ପରେ କହିଲେ, "ସତ୍ୟବାନ୍ ରୂପ ଗୁଣ, କୁଳ ଶୀଳ, ବିଦ୍ୟା ବୁଦ୍ଧି, ଆଚାର ବ୍ୟବହାର, ସବୁ ବିଷୟରେ ସାବିତ୍ରୀର ଉପଯୁକ୍ତ ପାତ୍ର । ବୋଧ ହୁଏ, ଏପରି ପାତ୍ର ପୃଥିବୀରେ ମିଳିବା କଠିନ । କିନ୍ତୁ ତାହାର ସବୁ ଗୁଣ ମଧ୍ୟରେ ଗୋଟିଏ ବଡ଼ ଦୋଷ ଅଛି ।" ଏହା କହିଦେଇ ନାରଦ ଟିକିଏ ନୀରବ ହେଲେ । ସଭାର ସମସ୍ତେ ଉତ୍କଣ୍ଠା ସହିତ ତାଙ୍କ ଆଡ଼କୁ ଅନାଇ ରହିଲେ । ଅଶ୍ୱପତି କହିଲେ, "ପ୍ରଭୁ, କି ଦୋଷ ଅଛି, କହି ସଂଶୟ ଦୂର କରନ୍ତୁ ।" ନାରଦ କହିଲେ, "ସଂସାରରେ କେହି ଏକାବେଳକେ ଦୋଷରୁ ମୁକ୍ତ ନୁହେ । ଆଲୁଅ ସଙ୍ଗେ ଅନ୍ଧାର ପରି ଗୁଣ ସଙ୍ଗେ ବରାବର ଦୋଷ ମିଶି ଥାଏ । ସତ୍ୟବାନ୍‌ର ଯେଉଁ ଦୋଷ ଅଛି, ତାହା ଖଣ୍ଡନ କରିବାକୁ ତାହାର ଶକ୍ତି ନାହିଁ—ସେ ବାଧ୍ୟଲିପି ।" ଅଶ୍ୱପତି କହିଲେ, "ଆମ୍ଭମାନଙ୍କର ବଡ଼ ଆଶଙ୍କା ହେଉଅଛି । ଶୀଘ୍ର ଖୋଲିକରି ସବୁ କହନ୍ତୁ ।" ନାରଦ କହିଲେ, "ସତ୍ୟବାନ୍ ଅଳ୍ପାୟୁ । ଆଜିଠାରୁ ବର୍ଷକ ପରେ ତାହାର କାଳ ପୂର୍ଣ୍ଣ ହେବ ।"

ଏକଥା ଶୁଣି ସଭାର ସମସ୍ତେ ଚମକି ଉଠିଲେ । ସମସ୍ତଙ୍କର ମୁଖ ମଳିନ ହୋଇଗଲା । ସାବିତ୍ରୀ କିନ୍ତୁ ଟିକିଏ ବିଚଳିତ ହେଲେ ନାହିଁ—ସେ ଯେପରି ଧୀର ସ୍ଥିର ଭାବରେ ଛିଡ଼ା ହୋଇ ରହିଲେ ।

ଶେଷରେ ଅଶ୍ୱପତି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ସାବିତ୍ରୀ, ଋଷିଙ୍କ କଥା କି ଶୁଣିଲୁ? ମୁଁ ତୋତେ ଅନୁମତି ଦେଉଛି, ତୁ ଅନ୍ୟ ପତି ବରଣ କର । ସତ୍ୟବାନର ସବୁ ଗୁଣ ଗୋଟିଏ ଦୋଷ ଲାଗି ପଣ୍ଡ ହୋଇ ଯାଇଅଛି । ମୁଁ ଜାଣି ଶୁଣି କିପରି ତୋତେ ଏପରି ପାତ୍ରରେ ଅର୍ପଣ କରିବି ?"

ସାବିତ୍ରୀ ଏଥର କଥା କହିବାକୁ ବାଧ୍ୟ ହେଲେ । ସେ ଦେଖିଲେ, ଏଣିକି ଆଉ ଲଜ୍ଜା କଲେ ଚଳିବ ନାହିଁ । ତାହାହେଲେ ଧର୍ମ କର୍ମ ସବୁ ନଷ୍ଟ ହେଉଅଛି । ସେ ମନେ କଲେ, ପିତାଙ୍କ ଆଦେଶ ପାଳନୀୟ ସତ୍ୟ, କିନ୍ତୁ ଧର୍ମର ଆଦେଶ ଲଙ୍ଘନ କରି ନୁହେ । ଧର୍ମ ରକ୍ଷା ଲାଗି କ୍ଷଣକପାଇଁ ପିତାଙ୍କ କଥାରେ ପ୍ରତିବାଦ କଲେ କିଛି ପାପ ହେବ ନାହିଁ । ଏହିପରି ଭାବି ସେ ଧର୍ମବଳରେ ମନକୁ ଦୃଢ଼ କରି ନେଲେ ଏବଂ ଧୀର ଅଥଚ ଦୃଢ଼ ସ୍ୱରରେ କହିଲେ, "ପିତା, ଲୋକେ ଧର୍ମତୁଳା ଥରେ ପକାନ୍ତି, କନ୍ୟାଦାନ ଥରେ କରନ୍ତି, 'ଦେଲି' ଏକଥା ଥରେ ମାତ୍ର କହନ୍ତି । ଏ ସବୁ କାର୍ଯ୍ୟ କେବଳ ଥରେ

ମାନ ସତ୍ୟ । ସୁତରାଂ ଯେତେବେଳେ ମୁଁ ଥରେ ସତ୍ୟବାନଙ୍କୁ ହୃଦୟ ମନ ଅର୍ପଣ କରିଅଛି, ସେ ଦୀର୍ଘାୟୁ ହୁଅନ୍ତୁ ବା ଅଳ୍ପାୟୁ ହୁଅନ୍ତୁ, ଗୁଣୀ ହୁଅନ୍ତୁ ବା ନିର୍ଗୁଣ ହୁଅନ୍ତୁ, ମୁଁ ଅନ୍ୟ କାହାରିକୁ ବରଣ କରି ପାରିବି ନାହିଁ—ମୋର ଆଉ ସେ ଶକ୍ତି ନାହିଁ । କୌଣସି କାର୍ଯ୍ୟ କରିବାକୁ ହେଲେ ପ୍ରଥମେ ମନରେ ସ୍ଥିର କରିବାକୁ ହୁଏ, ପରେ ବାକ୍ୟରେ ପ୍ରକାଶ କରାଯାଏ ଏବଂ ସର୍ବଶେଷରେ କାର୍ଯ୍ୟରେ ପରିଣତ କରିବାକୁ ହୁଏ । * ମୁଁ ମନେ ମନେ ଯେତେବେଳେ ଆତ୍ମଦାନ କରିଅଛି, ସେ କାର୍ଯ୍ୟ ସେହିଠାରେ ଶେଷ ହୋଇ ଯାଇଅଛି । ତାହାର ଅନ୍ୟଥା ହେବ କିପରି ? ଏଣିକି ମୋର ଅନ୍ୟ ଚିନ୍ତା ମନରେ ସ୍ଥାନ ଦେବା ପାପ ।"

ସାବିତ୍ରୀଙ୍କ କଥା ଶୁଣି ନାରଦଙ୍କ ହୃଦୟ ଉତ୍ଫୁଲ୍ଲ ହୋଇ ଉଠିଲା । ସେ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ହର୍ଷରେ ହର୍ଷରେ ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ଅଶ୍ୱପତି କହିଲେ, "ସାବିତ୍ରୀ ତ ମୁନିଋଷିଙ୍କ କଥା କହୁଅଛି । ମୁଁ କିପରି ଏହାର ପ୍ରତିବାଦ କରିବି ? କିପରି ବା ତାକୁ ଧର୍ମପଥରୁ ବିଚ୍ୟୁତ କରିବି ? ଦେବର୍ଷି, ଆପଣ ତ ସବୁ ଜାଣନ୍ତି, ମତେ ଉପାୟ କହି ଦିଅନ୍ତୁ ।"

ନାରଦ କହିଲେ, "ମହାରାଜ, ସାବିତ୍ରୀ ପରି କନ୍ୟା ପାଇଅଛ, ତୁମେ ବଡ଼ ଭାଗ୍ୟବାନ୍ । ଏଥିରେ ଆଉ ବାଧା ଦିଅ ନାହିଁ । ମନରେ କିଛି ଦ୍ୱିଧା ନ କରି ଶୀଘ୍ର ସତ୍ୟବାନ୍ ହାତରେ କନ୍ୟାକୁ ଅର୍ପଣ କର । ଯୋଗ୍ୟ ସଙ୍ଗେ ଯୋଗ୍ୟର ମିଳନ ହେଉ । ଏପରି ପତିବ୍ରତାର କିଛି ଅମଙ୍ଗଳ ହେବ ନାହିଁ । ଧର୍ମତେଜରେ ବିଧି-ଲିପିର ମଧ୍ୟ ଖଣ୍ଡନ ହୋଇପାରେ । ଜଗତରେ ସତୀର ଅସାଧ୍ୟ କିଛି ନାହିଁ । ଆହୁ, ମା, ତତେ ଆଶୀର୍ବାଦ କରୁଅଛି, ତୁ ଚିର ସଧବା ହୋଇ ଦୀର୍ଘଜୀବନ ଲାଭ କର । ଯୁଗେ ଯୁଗେ ଲୋକରେ ତୋର ନାମ କୀର୍ତ୍ତିତ ହେଉ ।"

ଅଶ୍ୱପତି କହିଲେ, "ହେଉ, ଆପଣଙ୍କ କଥାରେ ମୁଁ ସତ୍ୟବାନଙ୍କ ସଙ୍ଗେ ସାବିତ୍ରୀକୁ ବିବାହ ଦେଉଅଛି । ଏଣିକି ଭାଗ୍ୟରେ ଯାହା ଥିବ ଘଟୁ ।"

ନାରଦଙ୍କ ମନସ୍କାମ ସିଦ୍ଧ ହେଲା । ସେ ସାବିତ୍ରୀଙ୍କଠାରୁ ଯାହା ଆଶା କରିଥିଲେ, ତାହା ପାଇଲେ । ତାଙ୍କର ମର୍ତ୍ତ୍ୟକୁ ଆସିବା ସାର୍ଥକ ହେଲା । ସେ ଆଉ ବିଳମ୍ବ ନ କରି ସ୍ୱର୍ଗକୁ ଯାତ୍ରା କଲେ ।

---

* ଅଂଶଟି ଅବିକଳ ସଂସ୍କୃତରୁ ଗୃହୀତ

ଏହାପରେ ଅଶ୍ୱପତି ସାବିତ୍ରୀଙ୍କ ବିବାହର ଉଦ୍ୟୋଗ କରିବାକୁ ଲାଗିଲେ । ପ୍ରଥମେ ସେ ସମ୍ବନ୍ଧ ସ୍ଥିର କରିବା ଲାଗି କେତେକ ଜଣ ପାତ୍ର ମିତ୍ର ସଙ୍ଗରେ ନେଇ ଦ୍ୟୁମତ୍ସେନଙ୍କ ଆଶ୍ରମକୁ ବାହାରିଲେ । ଅଶ୍ୱପତିଙ୍କ ପରିଚୟ ପାଇ ଦ୍ୟୁମତ୍ସେନ ପରମ ଆଦରରେ ନିଜର ଅବସ୍ଥାନୁଯାୟୀ ତାଙ୍କର ସତ୍କାର କଲେ । ଅନ୍ୟାନ୍ୟ କଥାବାର୍ତ୍ତା ପରେ ଅଶ୍ୱପତିଙ୍କ ଆଗମନର କାରଣ ପଚାରିବାରୁ ସେ କହିଲେ, "ମୋର କନ୍ୟା ସାବିତ୍ରୀକୁ ମୁଁ ସତ୍ୟବାନଙ୍କ ହାତରେ ଅର୍ପଣ କରିବାକୁ ଇଚ୍ଛା କରିଅଛି । ଏକା ସତ୍ୟବାନ ହିଁ ସାବିତ୍ରୀର ଉପଯୁକ୍ତ ପାତ୍ର । ବର୍ତ୍ତମାନ ଆପଣ ଅନୁମତି ଦେଲେ ମୁଁ କୃତାର୍ଥ ହେବି ।"

ଦ୍ୟୁମତ୍ସେନ କହିଲେ, "ମହାରାଜ, ମୁଁ ରାଜ୍ୟ ବିଭବ ସବୁ ହରାଇ ଏଠାରେ ବନବାସୀ ହୋଇ କାଳ କଟାଉଅଛି । ପର୍ଣ୍ଣ କୁଟୀରରେ ମୋର ବାସ, ଫଳ ମୂଳ ମୋର ଆହାର । ସୁକୁମାରୀ ସାବିତ୍ରୀ ପିଲାଦିନୁ ସୁଖ ସମୃଦ୍ଧି ମଧ୍ୟରେ ବଢ଼ି ଆସିଅଛନ୍ତି । ସେ ଏଠାରେ କିପରି ରହିବେ ? ଏତେ ଗୁରୁ ଭାର ମୋ ଉପରେ କାହିଁକି ପକାଉଅଛନ୍ତି ?"

ଅଶ୍ୱପତି କହିଲେ, "ରାଜୈଶ୍ୱର୍ଯ୍ୟ ସଙ୍ଗେ ସୁଖ ଦୁଃଖର କିଛି ସମ୍ପର୍କ ନାହିଁ । ଏ ସବୁ ଜାଣି ଶୁଣି ସାବିତ୍ରୀ ନିଜେ ଆସି ସତ୍ୟବାନଙ୍କୁ ବରଣ କରି ସାରିଅଛି । ଆପଣ ଯେଉଁ ବିଭବର ଅଧିକାରୀ, ରାଜ୍ୟ ସମ୍ପଦ ତାହା ନିକଟରେ କି ଛାର ! ଆପଣ ଆଉ ମତେ ହତାଶ କରନ୍ତୁ ନାହିଁ ।"

ଦ୍ୟୁମତ୍ସେନ କହିଲେ, "ଆପଣଙ୍କ ସଙ୍ଗେ ସମ୍ବନ୍ଧ ସ୍ଥାପନ କରିବାର ଆଶା ଏକସମୟରେ ମୋ ମନରେ ଜାଗ୍ରତ ହୋଇଥିଲା । ରାଜ୍ୟଚ୍ୟୁତ ହୋଇ ଅନେକ ଦିନୁ ସେ ସବୁ ଆଶାରେ ଜଳାଞ୍ଜଳି ଦେଇଥିଲି । କିନ୍ତୁ ଦେଖୁଅଛି, ଏ ସମ୍ବନ୍ଧ ହେବା ବିଧିନିର୍ବନ୍ଧ । ଆପଣଙ୍କ ପ୍ରସ୍ତାବ ଶୁଣି ମୁଁ ଯେ କେତେଦୂର ସୁଖୀ ହେଲି, ମୁହଁରେ ତାହା ପ୍ରକାଶ କରି ହେବ ନାହିଁ । କେବଳ ସାବିତ୍ରୀଙ୍କର କଷ୍ଟ ହେବ ବୋଲି ମୁଁ ଏପରି କହୁଥିଲି ।"

ଏହିପରି କଥାବାର୍ତ୍ତା ହେଲା ପରେ ବିବାହର ଦିନ ସ୍ଥିର ହୋଇଗଲା । ସତ୍ୟବାନଙ୍କ କମନୀୟ ମୂର୍ତ୍ତି ଓ ଶିଷ୍ଟାଚାର ଦେଖି ଅଶ୍ୱପତିଙ୍କର ଅନ୍ତରାତ୍ମା ଶୀତଳ ହୋଇଗଲା । ସେ ପ୍ରଫୁଲ୍ଲ ଚିତ୍ତରେ ରାଜ୍ୟକୁ ଫେରି ଆସିଲେ ।

ରାଜ୍ୟର ଚାରିଆଡ଼େ ଗୋଟାଏ ଭାରି ଧୂମ୍ ପଡ଼ିଗଲା । ଆତ୍ମୀୟ ସ୍ୱଜନ, ବନ୍ଧୁ ବାନ୍ଧବ, ସମସ୍ତେ ନିମନ୍ତ୍ରିତ ହୋଇ ଆସିଲେ । ପ୍ରଜା ନାନା ଦ୍ରବ୍ୟ ସମ୍ଭାରର

ଆୟୋଜନ କଲେ । ପ୍ରଜାମାନଙ୍କର ଆଉ ଉତ୍ସାହର ସୀମା ନାହିଁ । ସାବିତ୍ରୀଙ୍କର ବିବାହ ହେବ ବୋଲି ସେମାନଙ୍କର ଖାଇବା ପିଇବାର ଠିକ୍ ନାହିଁ । ସମସ୍ତେ ଗୋଟାଏ ଉତ୍ସବର ଆଶାରେ ଉନ୍ମତ୍ତ ହୋଇ ରହିଲେ ।

ଶେଷରେ ଦିନେ ଶୁଭକ୍ଷଣରେ ରାଜା ସପରିବାର ତପୋବନକୁ ଯାତ୍ରା କଲେ । ସଙ୍ଗରେ ସୈନ୍ୟ ସାମନ୍ତ, ହସ୍ତୀ ଅଶ୍ୱ, ଦୋଳା ରଥ ଅନେକ ଚାଲିଲେ । ପ୍ରଜାମାନେ ମଧ୍ୟ ଦଳ ଦଳ ହୋଇ ବାହାରିଲେ । ଏହିପରି ଗୋଟାଏ ଜନତାର ସ୍ରୋତ ତପୋବନ ଆଡ଼କୁ ଚାଲିବାକୁ ଲାଗିଲା । ଯେଉଁ ବାଟ ଦେଇ ଗଲେ, ଆନନ୍ଦଧ୍ୱନି ଓ ଜୟକୋଳାହଳରେ ଚାରିଆଡ଼ ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ପୂର୍ବରୁ ତପୋବନ ନିକଟରେ ଅନେକ ବାସଗୃହ ନିର୍ମିତ ହୋଇଥିଲା । ରାଜା ନିଜର ଲୋକବାକଙ୍କ ସହିତ ଯାଇ ସେହିଠାରେ ଆଶ୍ରୟ ନେଲେ ।

ଗୋଟିଏ ଲତାକୁଞ୍ଜ ତଳେ ବେଦି ନିର୍ମିତ ହେଲା । ସମ୍ମୁଖରେ ଗୋଟିଏ ପ୍ରକାଣ୍ଡ ସଭାଗୃହ ଲତା ପତ୍ର ଫଳ ପୁଷ୍ପରେ ସଜ୍ଜିତ ହୋଇ ରହିଲା । ଏକମାତ୍ର କନ୍ୟାର ବିବାହ ଲାଗି ଅଶ୍ୱପତି ଆୟୋଜନର କୌଣସି ତ୍ରୁଟି କଲେ ନାହିଁ । ରାଜା ନିଜେ ଯାଇ ତପୋବନର ସମସ୍ତ ମୁନି ଓ ମୁନିପତ୍ନୀମାନଙ୍କୁ ନିମନ୍ତ୍ରଣ କରି ଆସିଲେ । ସେମାନେ ମଧ୍ୟ କେହି ନିମନ୍ତ୍ରଣର ଅପେକ୍ଷା ନ କରି ଆସି ବିବାହସଭାରେ ଉପସ୍ଥିତ ହେଲେ । ସତ୍ୟବାନଙ୍କର ବିବାହ, ଏଥିରେ ପୁଣି ନିମନ୍ତ୍ରଣ କଣ ? ଏ ତ ସେମାନଙ୍କର ନିଜର କାର୍ଯ୍ୟ ।

କ୍ରମେ ବିବାହ ଲଗ୍ନ ଉପସ୍ଥିତ ହେଲା, ମଙ୍ଗଳମହୁରୀ ବାଜି ଉଠିଲା । ମୁନିପତ୍ନୀମାନଙ୍କର ହୁଳହୁଳିଧ୍ୱନିରେ ତପୋବନ ଉଚ୍ଛୁଳି ପଡ଼ିଲା । ବର କନ୍ୟା ନାନା ରତ୍ନାଳଙ୍କାରରେ ଭୂଷିତ ହୋଇ ଆସି ବିବାହବେଦିରେ ବସିଲେ । ପୁରୋହିତମାନେ ମନ୍ତ୍ରପାଠ କରିବାକୁ ଲାଗିଲେ, ଋଷିମାନେ ସ୍ୱସ୍ତିବାଚନ କଲେ ଏବଂ ପ୍ରଜାମାନଙ୍କର ଜୟଧ୍ୱନିରେ ଦିଗନ୍ତ ପୂରି ଉଠିଲା । ଏହିପରି ଆନନ୍ଦକୋଳାହଳ ମଧ୍ୟରେ ଦୁଇଟି ପ୍ରାଣ ଏକ ହୋଇଗଲା । ମଣି କାଞ୍ଚନର ସଂଯୋଗ ହେଲା—ଦୁଇଟି ପାରିଜାତ ଫୁଲ ଏକସୂତ୍ରରେ ଗୁନ୍ଥା ହୋଇଗଲା । ଆହା, କି ଅପରୂପ ଶୋଭା !—ଯେପରି ଗୋଟିଏ ଡେମ୍ଫରେ ଦୁଇଟି ଫୁଲ ଫୁଟିଅଛି ।

ଏ ଉତ୍ସବ ଅନେକ ଦିନ ପର୍ଯ୍ୟନ୍ତ ଚାଲିଲା । ସ୍ଥାନେ ସ୍ଥାନେ ନୃତ୍ୟ ଗୀତ,

ସ୍ଥାନେ ସ୍ଥାନେ ଆମୋଦପ୍ରମୋଦ । କେଉଁଠାରେ ଦଳେ ଭୋଜନ କରୁଅଛନ୍ତି, କେଉଁଠାରେ ଦଳେ ବସି ଗଳ୍ପ କରୁଅଛନ୍ତି । ଚାରିଆଡ଼େ ହାସ୍ୟର ଧ୍ୱନି, ଚାରିଆଡ଼େ ଆନନ୍ଦର ଝଙ୍କାର । କିଛିଦିନ ପାଇଁ ତପସ୍ୱୀମାନେ ସଂସାରୀ ହୋଇଗଲେ ଓ ସଂସାରୀମାନେ ତପସ୍ୱୀ ଭାବ ଧାରଣ କଲେ । ଅଶ୍ୱପତିଙ୍କର ଭଣ୍ଡାର ଖୋଲା— ଯେ ଯାହା ଲୋଡ଼ିଲା ସେ ତାହା ପାଇଲା । ଏହିପରି ସର୍ବଶୁଭରେ ସାବିତ୍ରୀ ସତ୍ୟବାନଙ୍କର ବିବାହ ଉତ୍ସବ ଶେଷ ହେଲା । ମୁନି ଋଷିମାନେ ନବଦମ୍ପତିଙ୍କୁ ଅନ୍ତରର ପ୍ରକୃତ ଆଶୀର୍ବାଦ କରି ନିଜ ନିଜ ଆଶ୍ରମକୁ ଚାଲିଗଲେ ।

ଅଶ୍ୱପତି କନ୍ୟାକୁ ଅନେକ ବହୁମୂଲ୍ୟ ଦ୍ରବ୍ୟ ଯୌତୁକ ଦେଇ ପାତ୍ର ମନ୍ତ୍ରୀଙ୍କ ସଙ୍ଗେ ମଦ୍ର ଦେଶକୁ ଫେରି ଆସିଲେ । ସାବିତ୍ରୀଙ୍କୁ ହରାଇ ମଦ୍ରଦେଶ ଅନ୍ଧକାର ହୋଇଗଲା । ସାବିତ୍ରୀ ଯେପରି ରାଜ୍ୟରୁ ସବୁ ଆଲୋକ, ସବୁ ତେଜ ହରଣ କରି ନେଇ ଯାଇ ତପୋବନରେ ଆଶ୍ରୟ ନେଲେ ।



# ସପ୍ତମ ପରିଚ୍ଛେଦ

ସାବିତ୍ରୀଙ୍କର ସବୁ ଇଚ୍ଛା, ସବୁ ଆକାଙ୍‌କ୍ଷା ପୂର୍ଣ୍ଣ ହେଲା । ସେ କଠିନ ତପସ୍ୟା ପରେ ଇଷ୍ଟ ବର ପରି ସତ୍ୟବାନଙ୍କୁ ପାଇ ଅନ୍ତରରେ ସହସ୍ର ଭଗବାନଙ୍କୁ ଧନ୍ୟବାଦ ଦେଲେ । ସେ ମନେ କଲେ, ମୋଠାରୁ ବଳି ଭାଗ୍ୟବତୀ କିଏ ? ପ୍ରକୃତିଦେବୀଙ୍କର ଅତୁଳ ଶୋଭାସମ୍ପଦ ମଧ୍ୟରେ ଏପରି ସ୍ୱାମୀଙ୍କ ସଙ୍ଗେ ଜୀବନ କଟାଇବି, ଏପରି ସୁଖ କେତେ ଜଣଙ୍କ ଭାଗ୍ୟରେ ଘଟେ ? ସେଣେ ସାବିତ୍ରୀଙ୍କୁ ଦେଖି ସତ୍ୟବାନଙ୍କ ମନରେ ଗୋଟିଏ ଅତୃପ୍ତ ବାସନା ଜାଗ୍ରତ ହୋଇ ଉଠିଥିଲା । କିନ୍ତୁ ତପୋବନର କଠୋର ସଂଯମ ମଧ୍ୟରେ ସେ ତାକୁ ଭୁଲିବାକୁ ଚେଷ୍ଟା କରିଥିଲେ । ସେ ସ୍ୱପ୍ନରେ ଭାବି ନ ଥିଲେ ଯେ, ରାଜନନ୍ଦିନୀ ସାବିତ୍ରୀ ଜଣେ ବନବାସୀ ତପସ୍ୱୀକୁ ମନରେ ସ୍ଥାନ ଦେବେ । ଆଜି ସେହି ସାବିତ୍ରୀଙ୍କୁ ସହଧର୍ମିଣୀରୂପେ ପାଇ ସତ୍ୟବାନଙ୍କ ପ୍ରାଣ ପୁଲକିତ ହୋଇ ଉଠିଲା ।

ଅନ୍ଧ ରାଜା ଓ ରାଣୀଙ୍କର ଆଉ ଆନନ୍ଦର ସୀମା ନାହିଁ । ସାବିତ୍ରୀଙ୍କୁ ପାଇ ସେମାନେ ରାଜ୍ୟ ସମ୍ପଦ ସବୁ ଭୁଲିଗଲେ । ଅରଣ୍ୟବାସ ଆଉ କଷ୍ଟକର ବୋଧ ହେଲା ନାହିଁ । ଅନ୍ଧ ରାଜାଙ୍କ ମନରେ ଗୋଟିଏ ଦୁଃଖ ରହିଲା, ଆହା, ଏପରି ବୋହୂକୁ ସାହା ଥରେ ଆଖିରେ ଦେଖି ପାରିଲି ନାହିଁ ! ଏ ସମୟରେ ଯଦି ମୁଁ ଥରେ ମାତ୍ର ସାବିତ୍ରୀଙ୍କୁ ଆଖି ପୂରାଇ ଦେଖି ଚିରକାଳ ଅନ୍ଧ ହୋଇ ରହନ୍ତି, ତାହାହେଲେ ଆଉ କିଛି ଚିନ୍ତା ରହନ୍ତା ନାହିଁ ।

ରାଣୀଙ୍କ ମନରେ ଗୋଟିଏ ବଡ଼ ଆଶଙ୍କା ହେଲା । ସେ ମନେ କଲେ, ସାବିତ୍ରୀ ରାଜକନ୍ୟା, ଅସଂଖ୍ୟ ଦାସ ଦାସୀ ସେବିତ ରାଜଗୃହରେ ପରମ ସୁଖରେ ବଢ଼ି ଆସିଅଛନ୍ତି । ଦୁଃଖ କ'ଣ, ଅଭାବ କଣ, ସେ ଜାଣନ୍ତି ନାହିଁ । ଏଠାକୁ ଆସି ସେ ଚଳିବେ କିପରି ? ସୁକୋମଳ ଲତାଟିକୁ ଉଦ୍ୟାନରୁ ଆଣି ଅରଣ୍ୟରେ ରୋପଣ କଲେ ସେ ଅଯତ୍ନରେ ଶୁଖି ଯିବ ନାହିଁ ତ ? ସାବିତ୍ରୀଙ୍କର ନିଶ୍ଚୟ ଏଠାରେ ଭାରି କଷ୍ଟ ହେବ । ସେ କଦାପି ସୁଖୀ ହୋଇ ପାରିବେ ନାହିଁ । ଏ ସବୁ କଥା ଭାବି ଶାଶୁ ବଡ଼ ବ୍ୟସ୍ତ ହେଲେ, କିନ୍ତୁ ତାଙ୍କର ଏ ସନ୍ଦେହ ଶୀଘ୍ର ଦୂର ହୋଇଗଲା ।

ଅଶ୍ୱପତି ବାହୁଡ଼ିଗଲା ପରେ ସାବିତ୍ରୀ ସମସ୍ତ ବହୁମୂଲ୍ୟ ବସ୍ତ୍ରାଲଙ୍କାର ଛାଡ଼ି ମୁନିପତ୍ନୀମାନଙ୍କ ପରି ଖଣ୍ଡିଏ ଗେରୁଆ ଲୁଗା ପିନ୍ଧିଲେ । ଏହି ତପସ୍ୱିନୀ ବେଶରେ ତାଙ୍କର ରୂପ ଆଉ ଏକ ପ୍ରକାର ଦିଶିଲା, ଦେହର ଲାବଣ୍ୟ ଯେପରି ଆହୁରି ଫୁଟି

ବାହାରକୁ । ଯାହାର ସୌନ୍ଦର୍ଯ୍ୟ ଅଛି, ତାହାର ଅନ୍ୟ ଆଭରଣରେ ପ୍ରୟୋଜନ କଣ ? ଏପରି ବେଶ ପରିବର୍ତ୍ତନ ଦେଖି ଶାଶୁଙ୍କ ମନରେ ବଡ଼ କଷ୍ଟ ହେଲା । ସେ ଯେତେ ବାରଣ କଲେ ସୁଦ୍ଧା ସାବିତ୍ରୀ ବାରଣ ମାନିଲେ ନାହିଁ । ସାବିତ୍ରୀ କହିଲେ, "ଆପଣ ଜାଣି ଶୁଣି ଏପରି କହୁଅଛନ୍ତି କାହିଁକି ? ତପସ୍ୱୀର ସ୍ତ୍ରୀ ଜଣେ ରାଜରାଣୀ ହେଲେ ଶୋଭା ପାଇବ ? ଏହି ମୋର ଉପଯୁକ୍ତ ବେଶ । ସେ ସବୁ ଅଳଙ୍କାରରେ ମୋର ପ୍ରୟୋଜନ କ'ଣ ?" ମନେ ମନେ କହିଲେ, "ମୁଁ ହୃଦୟରେ ଯେଉଁ ଅମୂଲ୍ୟ ରତ୍ନ ଧାରଣ କରିଅଛି, ତାହା ତୁଳନାରେ ଏ ସବୁ ଅତି ତୁଚ୍ଛ, ଅତି ହୀନ ।" ଏ ଯୁକ୍ତିକୁ ଆଉ ଉତ୍ତର ନାହିଁ, ଶାଶୁ ଆଉ କିଛି କହି ପାରିଲେ ନାହିଁ । ସାବିତ୍ରୀଙ୍କୁ ତପସ୍ୱିନୀ-ବେଶରେ ଦେଖି ମୁନିମାନଙ୍କର ବଡ଼ ଆନନ୍ଦ ହେଲା । ସେମାନେ ତାଙ୍କର ବହୁ ପ୍ରଶଂସା କରିବାକୁ ଲାଗିଲେ ।

ସାବିତ୍ରୀ ତପୋବନକୁ ଆସି ନିଜର କର୍ତ୍ତବ୍ୟ ବୁଝି ନେଲେ । ଦରିଦ୍ର ଗୃହକୁ ଆସି ସୁଦ୍ଧା ସାବିତ୍ରୀ ଇଚ୍ଛା କରିଥିଲେ ଅସଂଖ୍ୟ ଦାସଦାସୀ-ପରିବେଷ୍ଟିତ ହୋଇ ରାଜରାଣୀ ପରି ଚଳି ପାରିଥାନ୍ତେ । ଅଶ୍ୱପତି ମଧ୍ୟ କନ୍ୟାର ସନ୍ତୋଷ ଲାଗି ସର୍ବସ୍ୱ ଦେବାକୁ କୁଣ୍ଠିତ ହୋଇ ନ ଥାନ୍ତେ ; କିନ୍ତୁ ସାବିତ୍ରୀ ସେ ଇଚ୍ଛା କଲେ ନାହିଁ । ସେ ମନେ କଲେ, ମୋର ସ୍ୱାମୀ ଦରିଦ୍ର, ମତେ ସେହି ଦରିଦ୍ରଭାବରେ ଚଳିବାକୁ ହେବ । ସେଇଥିରେ ମୋର ସୁଖ, ସେଇଥିରେ ମୋର ଆନନ୍ଦ । ପତିଗୃହକୁ ଆସି ସାବିତ୍ରୀ ପ୍ରକୃତରେ ବନବାସିନୀ ହୋଇ ପଡ଼ିଲେ – ଯେପରି ଆଜନ୍ମ ସେ ଏହିଠାରେ ବଢ଼ି ଆସିଛନ୍ତି, ଯେପରି ସେ ରାଜଧାନୀର ଐଶ୍ୱର୍ଯ୍ୟ ବିଳାସ କେବେ ସୁଦ୍ଧା ଉପଭୋଗ କରି ନାହାନ୍ତି । ତାଙ୍କର ଏ ଅଦ୍ଭୁତ ପରିବର୍ତ୍ତନରେ ବନବାସୀ ସମସ୍ତେ ମୁଗ୍ଧ ହୋଇଗଲେ । କୌଣସିଠାରେ କୃତ୍ରିମତାର ଚିହ୍ନ ମାତ୍ର ନାହିଁ—ସବୁ ସହଜ, ସବୁ ସରଳ ।

ଶାଶୁ ଶ୍ୱଶୁରଙ୍କ ଆଉ ଆନନ୍ଦର ସୀମା ନାହିଁ । ସାବିତ୍ରୀଙ୍କର ସେବା ଯତ୍ନ ଭକ୍ତି ଶ୍ରଦ୍ଧା ଦେଖି ସେମାନେ ମୋହିତ ହୋଇଗଲେ । ଶାଶୁଙ୍କୁ ଆଉ କିଛି ଘରର କାର୍ଯ୍ୟ କରିବାକୁ ହେଲା ନାହିଁ—ସାବିତ୍ରୀ ତାଙ୍କୁ ସେ ଅବସର ଦେଲେ ନାହିଁ । କ୍ଷୁଦ୍ର ସଂସାରଟିକୁ ସେ ଏପରି ସୁବ୍ୟବସ୍ଥରୂପେ ଚଳାଇବାକୁ ଲାଗିଲେ ଯେ, କାହାର କୌଣସି ଚିନ୍ତା ବା ଅଭାବ ରହିଲା ନାହିଁ । କାହା ମନରେ ଗୋଟିଏ ଇଚ୍ଛାର ଉଦୟ ହେବା ମାତ୍ରକେ ସାବିତ୍ରୀ ତାହା ଏପରି ଭାବରେ ସମ୍ପନ୍ନ କରି ଦିଅନ୍ତି ଯେ, କାହାକୁ ମୁହଁ ଫିଟାଇ କହିବାକୁ ପଡ଼େ ନାହିଁ ।

ଅତିଥି ଅଭ୍ୟାଗତଙ୍କର ସେବା ସତ୍କାର, ମୁନିଋଷିମାନଙ୍କର ଆଦର ଅଭ୍ୟର୍ଥନା ସାବିତ୍ରୀଙ୍କର ଅତି ପ୍ରିୟ କାର୍ଯ୍ୟ ହୋଇ ଉଠିଲା । ତାଙ୍କର ମଧୁର ବ୍ୟବହାର ଓ ସେବାଧର୍ମରେ ଏପରି ଆସ୍ଥା ଦେଖି ଆଶ୍ରମବାସୀ ସମସ୍ତେ ତାଙ୍କ ପ୍ରତି ଆକୃଷ୍ଟ ହୋଇଗଲେ । ବନର ପଶୁପକ୍ଷୀ ସୁଦ୍ଧା ସାବିତ୍ରୀଙ୍କ ସରଳ ବ୍ୟବହାରରେ ବଶ ହୋଇ ପଡ଼ିଲେ । ସେ ତପୋବନର ଅଧିଷ୍ଠାତ୍ରୀ ଦେବୀ ପରି ଏ ଆଶ୍ରମ ସେ ଆଶ୍ରମ ବୁଲି ଅବସର ସମୟଟି କଟାଇ ଦିଅନ୍ତି । କେତେବେଳେ ଋଷିମାନଙ୍କ ନିକଟରେ ବସି ଧର୍ମ-ବ୍ୟାଖ୍ୟା ଶୁଣୁଅଛନ୍ତି, କେତେବେଳେ ମୁନିପତ୍ନୀମାନଙ୍କଠାରୁ ନାରୀଧର୍ମର ଉପଦେଶ ଗ୍ରହଣ କରୁଅଛନ୍ତି, କେତେବେଳେ ଋଷିକୁମାରୀମାନଙ୍କ ସଙ୍ଗେ କ୍ରୀଡ଼ା କୌତୁକରେ ରତ ଅଛନ୍ତି । ଏହିପରି ଗୃହର କର୍ତ୍ତବ୍ୟ କାର୍ଯ୍ୟ କରି ସାଧୁସହବାସରେ ସାବିତ୍ରୀଙ୍କର ତପୋବନର ଦିନଗୁଡ଼ିକ ବଡ଼ ସୁଖରେ କଟିଯାଏ ।

କିନ୍ତୁ ଏତେ ସୁଖ, ଏତେ ଆନନ୍ଦ ମଧ୍ୟରେ ସାବିତ୍ରୀଙ୍କ ମନରେ ଶାନ୍ତି ନାହିଁ । ନାରଦଙ୍କର ସେହି ଭୟଙ୍କର କଥା ପ୍ରତିମୁହୂର୍ତ୍ତରେ ତାଙ୍କ କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଥିଲା । ସେ ଭୀଷଣ ପରିଣାମର କଥା ଭାବିଲା ବେଳକୁ ସାବିତ୍ରୀଙ୍କର ହୃତ୍‌ପିଣ୍ଡ ଛିନ୍ନ ହୋଇଯାଏ । ନାନା କାର୍ଯ୍ୟ ମଧ୍ୟରେ ସେ ତାକୁ ଭୁଲିବାକୁ ଚେଷ୍ଟା କରନ୍ତି, କିନ୍ତୁ ଗୋଟାଏ ଅପଦେବତା ପରି ସେ ଚିନ୍ତା ବରାବର ତାଙ୍କୁ ଅସ୍ଥିର କରି ରହିଲା । ଓଃ ! କି କଠୋର ବିଧିଲିପି ! ଏପରି ସ୍ୱାମୀ, ଜଗତରେ ଯାହାର ତୁଳନା ନାହିଁ, ବିଧାତାଙ୍କର ଯେ ଅପୂର୍ବ ସୃଷ୍ଟି, କେତେ ଭାଗ୍ୟଫଳରେ ଯାହାଙ୍କୁ ପାଇଅଛୁ, ତାଙ୍କୁ ପୁଣି ନିଜର କର୍ମଦୋଷରୁ ହରାଇବାକୁ ହେବ । ଏ ସୁନା-ଘର କ୍ଷଣକେ ଚୂନା ହୋଇଯିବ । ସାବିତ୍ରୀ ଆଉ ଭାବି ପାରନ୍ତି ନାହିଁ । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯାଏ ।

କିନ୍ତୁ ହୃଦୟରେ ଏପରି ଗୁରୁ ଭାର ବହନ କଲେ ସୁଦ୍ଧା ସାବିତ୍ରୀଙ୍କଠାରେ ଉଦ୍‌ବେଗର ଲକ୍ଷଣ କିଛି ନାହିଁ । ସେ ପ୍ରଶାନ୍ତ ମୂର୍ତ୍ତି ସର୍ବଦା ସ୍ଥିର, ଅଚଞ୍ଚଳ । କ୍ଷଣକପାଇଁ ତାଙ୍କୁ କେହି କର୍ତ୍ତବ୍ୟପଥରୁ ବିଚଳିତ ହେବାର ଦେଖି ନାହିଁ । ମନ କଥା ମନରେ ରଖି ସେ ଶାଶୁ ଶ୍ୱଶୁରଙ୍କର ସେବା ଶୁଶ୍ରୂଷା କରନ୍ତି ଓ ପ୍ରଫୁଲ୍ଲ ମୁଖରେ ସ୍ୱାମୀଙ୍କର ମନୋରଞ୍ଜନ କରନ୍ତି । ତାଙ୍କ ମନରେ ଯେ କିଛି ଦୁଃଖ ଅଛି, ଏ କଥା ଜଣେ କେହି ସନ୍ଦେହ କରି ନାହିଁ ।

ପ୍ରଭାତର ବାଳସୂର୍ଯ୍ୟ ଯେତେବେଳେ ତପୋବନକୁ ସ୍ୱର୍ଣ୍ଣକିରଣରେ ରଞ୍ଜିତ କରିଦିଏ, ପକ୍ଷୀମାନଙ୍କର ଆନନ୍ଦଧ୍ୱନିରେ ଯେତେବେଳେ ଚତୁର୍ଦ୍ଦିଗ ମୁଖରିତ ହୋଇ ଉଠେ, ସତ୍ୟବାନ୍ ଖଣ୍ଡିଏ କୁଠାର ଧରି ଫଳମୂଳ ଓ କାଷ୍ଠ ସଂଗ୍ରହପାଇଁ ବନକୁ

ଯାଆନ୍ତି । ସାବିତ୍ରୀ ଆଶ୍ରମର ଏକ ପ୍ରାନ୍ତରେ ଛିଡ଼ା ହୋଇ ସତ୍ୟବାନଙ୍କୁ ଏକଦୃଷ୍ଟିରେ ଅନାଇ ରହନ୍ତି । ଯେତେବେଳେ ସତ୍ୟବାନ୍ ବନ ମଧ୍ୟରେ ଅଦୃଶ୍ୟ ହୋଇଯାନ୍ତି, ସାବିତ୍ରୀ ଗୋଟିଏ ଦୀର୍ଘନିଶ୍ୱାସ ପକାଇ ଶାଶୂଶ୍ୱଶୁରଙ୍କର ପୂଜା ଲାଗି ପୁଷ୍ପ ସଂଗ୍ରହ କରିବାକୁ ବାହାରନ୍ତି । ସେମାନଙ୍କ ପୂଜାର ସମସ୍ତ ଆୟୋଜନ କରିଦେଇ ସେ ନିଜେ ଆଶ୍ରମର ଗୋଟିଏ ନିର୍ଜନ ସ୍ଥାନକୁ ଯାଆନ୍ତି ଓ ସେଠାରେ ବସି ଏକାନ୍ତମନରେ ପତିଙ୍କ ମଙ୍ଗଳକାମନାରେ ଭଗବାନଙ୍କର ଆରାଧନା କରନ୍ତି ।

ଏହା ଛଡ଼ା ବାର ବ୍ରତ ଉପବାସ ଉପାସନା ନାରୀର କର୍ତ୍ତବ୍ୟ ଯାହା କିଛି, ସାବିତ୍ରୀ କୌଣସିଟି ବାଦ୍ ଦିଅନ୍ତି ନାହିଁ—ସବୁଗୁଡ଼ିକ ସେ ଭକ୍ତି ସହିତ ବିଧି ଅନୁସାରେ ସମ୍ପନ୍ନ କରନ୍ତି । ମନୁଷ୍ୟପ୍ରାଣ କେତେ ବା ସହିବ ? ଏହିପରି କରି ସାବିତ୍ରୀଙ୍କର ଦେହ କ୍ରମେ କ୍ଷୀଣ ହୋଇ ଆସିଲା, ତାଙ୍କର କନକ କାନ୍ତି ମ୍ଳାନ ହୋଇଗଲା । ଏସବୁ ଦେଖି ଶାଶୂ ବଡ଼ ଚିନ୍ତିତ ହେଲେ । ସେ ଯେତେ ନିଷେଧ କଲେ ସୁଦ୍ଧା କିଛି ଫଳ ହେଲା ନାହିଁ । ପତିବ୍ରତାଙ୍କର ଯୁକ୍ତିଯୁକ୍ତ କୋମଳ ପ୍ରତିବାଦରେ ସେ ଶେଷରେ ନିରସ୍ତ ହୋଇ ରହିଲେ । ସାବିତ୍ରୀ କିନ୍ତୁ ଏ ସବୁ କଷ୍ଟକୁ କଷ୍ଟ ବୋଲି ମନେ କରନ୍ତି ନାହିଁ । ପତି ତାଙ୍କର ଧ୍ୟାନ, ପତି ତାଙ୍କର ଜ୍ଞାନ, ପତି ତାଙ୍କର ଚତୁର୍ବର୍ଗ । ପତିଙ୍କ ମଙ୍ଗଳ ଲାଗି ସେ ହସି ହସି ନିଜର ଜୀବନ ପର୍ଯ୍ୟନ୍ତ ଉତ୍ସର୍ଗ କରି ପାରନ୍ତି—ଏ କଷ୍ଟ କେଉଁ ଛାର !

ସାବିତ୍ରୀଙ୍କ ଦେହର ଏପରି ପରିବର୍ତ୍ତନ ସତ୍ୟବାନଙ୍କର ଅଗୋଚର ରହିଲା ନାହିଁ । ସେ ବଡ଼ ଚିନ୍ତିତ ହୋଇ ଅନେକ ଥର କହିଲେ "ଦେଖ ସାବିତ୍ରି, ତୁମେ ବଡ଼ ଅନ୍ୟାୟ କରୁଅଛ । ଏପରି ଅଯତ୍ନ କଲେ ଦେହଟା କେତେଦିନ ରହିବ ? ତୁମର ଏ ରୂପ ଦେଖି ଆମ୍ଭମାନଙ୍କ ମନରେ ଯେ କି କଷ୍ଟ ହେଉଅଛି, ତୁମେ ତାହା ଜାଣ ନାହିଁ ।" ଏ କଥା ଶୁଣି ସାବିତ୍ରୀ କେବଳ ମୃଦୁ ମୃଦୁ ହସନ୍ତି, ଆଉ କିଛି ଉତ୍ତର ଦିଅନ୍ତି ନାହିଁ । ସେ ହସର ଅର୍ଥ ଏହି—ତୁମେ ମୋର ଗୁରୁ ହେଲେ ସୁଦ୍ଧା ଏ ବିଷୟରେ ତୁମେ ନିତାନ୍ତ ବାଳକ । ନାରୀଧର୍ମ କଥା ତୁମେ କଣ ଜାଣ ? ସ୍ତ୍ରୀର ମନ ତୁମେ କଣ ବୁଝିବ ? ସେ ହସ, ସେ ହାବଭାବରେ କଣ ଥାଏ କେଜାଣି, ସତ୍ୟବାନ୍ ଆଉ ପଦେ କଥା କହି ପାରନ୍ତି ନାହିଁ ।



# ଅଷ୍ଟମ ପରିଚ୍ଛେଦ

ଏହିପରି ଭାବରେ ପ୍ରାୟ ଗୋଟିଏ ବର୍ଷ କଟିଗଲା । ନାରଦ-କଥିତ କାଳ ପୂର୍ଣ୍ଣ ହେବାକୁ ଆଉ କେତୋଟି ଦିନ ମାତ୍ର ଅଛି । କି ସ୍ୱପ୍ନ, କି ଜାଗରଣ ସବୁବେଳେ ସେହି ନିଷ୍ଠୁର ସ୍ମୃତି କୀଟ ପରି ସାବିତ୍ରୀଙ୍କ ମର୍ମସ୍ଥାନ କର୍ତ୍ତନ କରୁଅଛି । ସେ ନିର୍ଦ୍ଦିଷ୍ଟ କାଳ ଏତେ ନିକଟ ଦେଖି ତାଙ୍କର ବକ୍ଷଃସ୍ଥଳ କମ୍ପି ଉଠିଲା । ସାବିତ୍ରୀ କ୍ରମେ ବେଶି ଅଧୀର ହୋଇ ଉଠିଲେ । ତାଙ୍କ ମନର ଚଞ୍ଚଳତା ଆଉ କାହାରି ନିକଟରେ ଗୋପନ ରହିଲା ନାହିଁ । କିନ୍ତୁ ସେ ଯେତେ ପରିଶ୍ରମ କଲେ, ସାବିତ୍ରୀ କାହାରିକୁ କିଛି ନକହି ମନରେ ଏ ଦାରୁଣ ଯନ୍ତ୍ରଣା ସହ୍ୟ କଲେ । ସେ ମନେ କଲେ, ଏ ଭୟାନକ କଥା କହି ବୃଥା କାହିଁକି ପରିବାରର ସୁଖ ଶାନ୍ତି ନଷ୍ଟ କରିଦେବି ? ଯାହା ଅଦୃଷ୍ଟରେ ଥିବ ଘଟୁ, ବିଧି-ନିୟମକୁ କିଏ ବାରଣ କରିବ ?

ଏହିପରି ଭାବି, ସତ୍ୟବାନଙ୍କ ଆୟୁ କାଳ ପୂରିବାକୁ ଚାରୋଟି ଦିନ ଅଛି, ସାବିତ୍ରୀ 'ତ୍ରିରାତ୍ର ବ୍ରତ' ଗ୍ରହଣ କରିବାର ସ୍ଥିର କଲେ । ସେ ଅତି କଷ୍ଟକର ବ୍ରତ । ତିନି ଦିନ ତିନି ରାତି ଅନାହାର ଅନିଦ୍ରାରେ ରହି ଦୃଢ଼ ମନରେ ଏ ବ୍ରତ କରିବାକୁ ହୁଏ । ଏ କଥା ଶୁଣି ଶାଶୂ ଶ୍ୱଶୁର ବଡ଼ ଚିନ୍ତିତ ହୋଇ କହିଲେ, "ମା, ଏ ଅତି କଠୋର ବ୍ରତ । ଗୃହସ୍ଥମାନଙ୍କ କଥା ଦୂରେ ଥାଉ, ସିଦ୍ଧତମ ମୁନିମାନେ ସୁଦ୍ଧା ଏହା କରି ପାରନ୍ତି ନାହିଁ । ତୁମେ ବୃଥା କାହିଁକି ଏ ଅସାଧ୍ୟ କାର୍ଯ୍ୟରେ ମନ ବଳାଉଅଛ ? ତାହା ଛଡ଼ା ନାନା ବ୍ରତ ଉପବାସ କରି ତୁମର ଦେହ ଅତି ଶୀର୍ଣ୍ଣ ହୋଇ ଯାଇ-ଅଛି । ଟିକିଏ ଚାଲିବାକୁ ସୁଦ୍ଧା ତମର ଶକ୍ତି ନାହିଁ । ଏହା ଉପରେ ତୁମେ ଯଦି ଏ ବ୍ରତ କର, ତାହା ହେଲେ ତୁମର ଆଉ ପ୍ରାଣ ରହିବ ନାହିଁ ।"

କିନ୍ତୁ ସର୍ବଶାସ୍ତ୍ରନିପୁଣା ସାବିତ୍ରୀଙ୍କୁ କଥାରେ ପରାସ୍ତ କରିବା ସହଜ କଥା ନୁହେ । ସେ କହିଲେ, "ମୁଁ ଯାହା ମାନସିକ କରିଅଛି, ତାହା ନ କଲେ ମୋର ପାପ ହେବ । ମୋର ଯାହା ହେଉ ପଛକେ ମୁଁ ନିଶ୍ଚୟ ଏ ବ୍ରତ କରିବି । ସ୍ୱାମୀଙ୍କ ମଙ୍ଗଳ ଲାଗି ମୁଁ ଏ ବ୍ରତ କରୁଅଛି । ଆପଣମାନେ ଆଶୀର୍ବାଦ କଲେ ମୁଁ ସବୁ କଷ୍ଟ ଅକ୍ଳେଶରେ ସହ୍ୟ କରି ପାରିବି ।" ଶାଶୂ ଶ୍ୱଶୁର ବାଧ୍ୟ ହୋଇ ଅନୁମତି ଦେଲେ । ସତ୍ୟବାନ୍ ସାବିତ୍ରୀଙ୍କର ଦୃଢ଼ ସଂକଳ୍ପ ଦେଖି ଅବାକ୍ ହୋଇଗଲେ । ସେ ମନେ କଲେ ସାବିତ୍ରୀ ମାନବୀ ନୁହନ୍ତି—ଦେବୀ । ନିମ୍ନଗାମୀ ସ୍ରୋତ ପରି ସାବିତ୍ରୀ ଭକ୍ତିର ଉଚ୍ଛ୍ୱାସରେ ଜଗତ୍ ପ୍ଳାବିତ କରିଦେବାକୁ ଉଦ୍ୟତ । ଏ ଅଦମ୍ୟ ବେଗ ରୋଧ କରିବ

କଏ ? ସତ୍ୟବାନ୍ ଦେଖିଲେ, ବୃଥା ବାରଣ କରିବା ନିଷ୍ପ୍ରୟୋଜନ । ସାମାନ୍ୟ ବାଲୁବନ୍ଧ ଏ ସ୍ରୋତସ୍ୱତୀର ବେଗ ସମ୍ଭାଳି ପାରିବ ନାହିଁ ।

ସାବିତ୍ରୀ ସେଦିନ ପ୍ରତ୍ୟୁଷରୁ ଉଠି ସ୍ନାନାଦି କରି ଶୁଦ୍ଧ ମନରେ ନିଜ ହାତରେ ବ୍ରତର ସବୁ ଆୟୋଜନ କଲେ, ଶେଷରେ ଶାଶୁ ଶ୍ୱଶୁର ଓ ସତ୍ୟବାନଙ୍କୁ ପ୍ରଣାମ କରି ଯଥାନିୟମରେ ବ୍ରତାରମ୍ଭ କଲେ । ଓଃ ! କି କଠୋର ବ୍ରତ ! ସାବିତ୍ରୀ ଏକ ଆସନରେ ନିବିଷ୍ଟ ଚିତ୍ତରେ ବସି ଅଛନ୍ତି । ଚକ୍ଷୁଦ୍ୱୟ ମୁଦ୍ରିତ ହୋଇଅଛି । ଚନ୍ଦ୍ରମଣ୍ଡଳ ପରି ଗୋଟିଏ ଜ୍ୟୋତିରେଖା ତାଙ୍କ ମୁଖମଣ୍ଡଳକୁ ବେଷ୍ଟନ କରି ରହିଅଛି । ସାବିତ୍ରୀଙ୍କୁ ଦେଖି ସମସ୍ତଙ୍କର ଗିରିରାଜତନୟା ତପୋରତା ପାର୍ବତୀଙ୍କ କଥା ମନରେ ଉଦିତ ହେଲା । କି କଠୋର ସଂଯମ ! କି ଅଟଳ ଐକାନ୍ତିକତା ! ଦୁଇ ଚକ୍ଷୁରୁ ଦରଦରି ଅଶ୍ରୁଧାର ବହି ଯାଉଅଛି । ଯେପରି ସବୁ ପାପ, ସବୁ କଳୁଷ ଅଶ୍ରୁ ଆକାରରେ ନିର୍ଗତ ହୋଇ ଚାଲି ଯାଉଅଛି ! ସାବିତ୍ରୀ ବାହ୍ୟଜ୍ଞାନଶୂନ୍ୟ — ନିଃଶ୍ୱାସ ପ୍ରଶ୍ୱାସ ଚାଲୁଅଛି କି ନା, ସନ୍ଦେହ । କେବଳ ମାଟି ଦେହଟା ପୃଥିବୀରେ ସ୍ଥିର ହୋଇ ରହିଅଛି, କିନ୍ତୁ ଆତ୍ମା ବିହଙ୍ଗମ ପରି ମୁକ୍ତ ଆକାଶରେ ଉଡ଼ିଯାଇ କେଉଁ ପାପତାପଶୂନ୍ୟ ଶାନ୍ତିମୟ ଧାମରେ ବିଚରଣ କରୁଅଛି ।

ପୂର୍ବର ସୂର୍ଯ୍ୟ ପଶ୍ଚିମରେ ଅସ୍ତ ହେଲେ । ପୁନରାୟ ସେହି ସୂର୍ଯ୍ୟ ପଶ୍ଚିମ ଗୁଡ଼ି ପୂର୍ବରେ ଦେଖା ଦେଲେ । ସଂସାରର ସମସ୍ତ ନିତ୍ୟନୈମିତ୍ତିକ କାର୍ଯ୍ୟ ଯଥାରୀତି ସମ୍ପନ୍ନ ହୋଇଗଲା । କିନ୍ତୁ ସାବିତ୍ରୀ ସେହିପରି ଏକ ଆସନରେ ଏକ ଧ୍ୟାନରେ ବସି-ଅଛନ୍ତି । ଜଗତର ଘଟଣାବଳୀ ପ୍ରତି ତାଙ୍କର ଦୃଷ୍ଟି ନାହିଁ, ନିଜର ଦେହ ପ୍ରତି ଲକ୍ଷ୍ୟ ନାହିଁ । ସବୁ ଘଟଣାର ଯେଉଁଠାରେ ଉତ୍ପତ୍ତି, ସବୁ କାର୍ଯ୍ୟର ଯେଉଁଠାରେ ଲୟ, ସେହି ବିଭୁପାଦପଦ୍ମ ତଳେ ବସି ସେ ଆକୁଳ ହୃଦୟରେ ପତିଙ୍କର ଜୀବନ ଭିକ୍ଷା କରୁଅଛନ୍ତି । ସାବିତ୍ରୀଙ୍କର ଅଦ୍ଭୁତ ସାଧନ ଦେଖି ତାପସବ୍ରତଧାରୀ ମୁନିମାନେ ସୁଦ୍ଧା ବିସ୍ମିତ ହୋଇଗଲେ । ସେମାନେ ମନେ କଲେ, ସାବିତ୍ରୀ ମନୁଷ୍ୟ ନୁହନ୍ତି— କୌଣସି ଛଦ୍ମବେଶୀ ଦେବତା ଆମ୍ଭମାନଙ୍କୁ ସାଧନାର ନିଷ୍ଠା ଶିକ୍ଷା ଦେବାକୁ ଆସିଅଛନ୍ତି ।

ତିନି ଦିନ ପରେ ସାବିତ୍ରୀ ଆସନରୁ ଉଠି ସ୍ନାନାଦି କରି ବ୍ରତ ସାଙ୍ଗ କଲେ । ତାଙ୍କର ଶରୀର ଏପରି ଦୁର୍ବଳ ହୋଇ ଯାଇଅଛି ଯେ, ବୋଧ ହୁଏ ଟିକିଏ ପବନ ଲାଗିଲେ ପଡ଼ିଯିବେ ! କିନ୍ତୁ ଦେହରୁ କିପରି ଗୋଟିଏ ଅପୂର୍ବ ଜ୍ୟୋତି ବାହାରୁଅଛି ! ଅଗ୍ନିରେ ଦଗ୍ଧ ହୋଇ ସୁନା ଯେପରି ବିଶୁଦ୍ଧ ହୋଇଯାଏ, ତିନି ଦିନର କଠୋର ତପସ୍ୟା ପରେ ସ୍ୱଭାବଶୁଦ୍ଧା ସାବିତ୍ରୀ ଆହୁରି ବିଶୁଦ୍ଧ, ଆହୁରି ପବିତ୍ର ହୋଇ ଉଠିଲେ । ମନେ ହେଲା, ଯେପରି ସାବିତ୍ରୀଙ୍କର ଜଡ଼ ଦେହ ଆଉ ନାହିଁ— ସମସ୍ତ

ଶରୀରକି ଗୋଟିଏ ମୂର୍ତ୍ତିମାନ୍ ଆତ୍ମା । ସେ ମୂର୍ତ୍ତି ସେ ଦେଖିଲା, ତାହାର ମସ୍ତକ ଭକ୍ତିରେ ଅବନତ ହୋଇ ପଡ଼ିଲା ।

ବ୍ରତ ଶେଷରେ ସାବିତ୍ରୀ ବ୍ରାହ୍ମଣଭୋଜନ ଇତ୍ୟାଦି କରାଇ ଶାଶୂ, ଶ୍ୱଶୁର ଓ ମୁନି ଋଷିମାନଙ୍କର ଚରଣଧୂଳି ଗ୍ରହଣ କଲେ । ମୁନି ଓ ଦ୍ୱିଜମାନେ ତାଙ୍କୁ ଆଶୀର୍ବାଦ କରି ବିଦାୟ ନେଲେ । ଶାଶୂ ସାବିତ୍ରୀଙ୍କୁ ଡାକି କହିଲେ, "ଯେଉଁ ବ୍ରତ ମନାସି ଥିଲ, ତାହା ତ ଶେଷ ହେଲା, ବର୍ତ୍ତମାନ ଭୋଜନାଦି କରି ଟିକିଏ ବିଶ୍ରାମ କର ।"

ସାବିତ୍ରୀ କହିଲେ, "ସୂର୍ଯ୍ୟ ଅସ୍ତ ଯିବାକୁ ଅଳ୍ପ ସମୟ ଅଛି । ମୁଁ ସନ୍ଧ୍ୟା ସମୟରେ ଭୋଜନ କରିବି, ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ କରିବା ନିଷେଧ । ଆପଣ ସେଥିଲାଗି ଚିନ୍ତା କରନ୍ତୁ ନାହିଁ ।"

ଏପରି ସମୟରେ ସତ୍ୟବାନ୍ କୁଠାରହସ୍ତରେ ବନକୁ ବାହାରିଲେ । ଏହା ଦେଖି ସାବିତ୍ରୀଙ୍କ ମନରେ ବଡ଼ ଆଶଙ୍କା ହେଲା । ଆଜି ସେହି ଭୟାନକ ଦିନ—ଆଜି ସତ୍ୟବାନଙ୍କର ଆୟୁ ଶେଷ ହେବ । ନାରଦଙ୍କର ସେହି ନିଦାରୁଣ ବାକ୍ୟ ସ୍ମରଣ କରି ସାବିତ୍ରୀଙ୍କର ବକ୍ଷଃସ୍ଥଳ କମ୍ପି ଉଠିଲା । ସେ ଶୀଘ୍ର ସତ୍ୟବାନଙ୍କ ନିକଟକୁ ଯାଇ କହିଲେ, "ଆଜି ଏପରି ଅସମୟରେ ବନକୁ ବାହାରିଲ କାହିଁକି ? ଦିନ ଆସି ଶେଷ ହେଲାଣି । ଏ ସମୟରେ ବନକୁ ଯିବା ନିରାପଦ ନୁହେ । ଆଜି କୌଣସି ପ୍ରକାରେ ଚଳିଯିବ । ମୋ କଥା ରକ୍ଷା କରି ତୁମେ ଆଉ କୁଆଡ଼େ ଯାଅ ନାହିଁ ।"

ସତ୍ୟବାନ୍ ଟିକିଏ ହସିକରି କହିଲେ, "ତୁମେ ବୃଥା ଭୟ କରୁଛ କାହିଁକି ? ମୁଁ ତ ପ୍ରାୟ ଏହି ସମୟରେ ବନକୁ ଯାଏ । ଆଜି ଅବା ଟିକିଏ ବିଳମ୍ବ ହୋଇ ଯାଇଛି । ତେବେ କଣ ସମସ୍ତେ ଆଜି ଉପବାସୀ ରହିବେ ? ଫଳମୂଳ ଅବା ନ ହେଲା, କାଠ ନ ହେଲେ ପାକ ଯଜ୍ଞ ହେବ କିପରି ?"

ସାବିତ୍ରୀ ଦେଖିଲେ, ବାସ୍ତବିକ୍ ସତ୍ୟବାନ୍ ବନକୁ ନ ଗଲେ ବୃଦ୍ଧ ପିତା-ମାତାଙ୍କର କଷ୍ଟ ହେବ । ନିଜର ସ୍ୱାର୍ଥଲାଗି ସେ କଣ ସତ୍ୟବାନଙ୍କୁ କର୍ତ୍ତବ୍ୟରୁ ବିରତ କରିବେ ? ପୁଣି ମନେ ମନେ ଭାବିଲେ, ନାରଦ ଯାହା କହିଥିଲେ, ତାହା ଆସି ବୋଧ ହୁଏ ଫଳିଲା । ସେଥିଲାଗି ସତ୍ୟବାନଙ୍କୁ କର୍ମସୂତ୍ରରେ ମୃତ୍ୟୁ ନିକଟକୁ ଟାଣି ନେଇ ଯାଉଅଛି । ସାବିତ୍ରୀ କିଛିକ୍ଷଣ ନୀରବ ହୋଇ କହିଲେ, "ଯାହା ହେଉ, କିନ୍ତୁ ମୁଁ ତୁମକୁ ଏକାକୀ ଯିବାକୁ ଦେବି ନାହିଁ । ଚାଲ, ମୁଁ ଆଜି ତୁମ ସାଙ୍ଗରେ ଯିବି । ମୁଁ

ଅନେକ ଦିନ ହେଲା ଅରଣ୍ୟ ଦେଖି ନାହିଁ । ଆଜି ମୋର ଦେଖିବାକୁ ବଡ଼ ଇଚ୍ଛା ହେଉଅଛି ।"

ଏ କଥା ଶୁଣି ସତ୍ୟବାନ୍ ବିସ୍ମୟରେ ଅବାକ୍ ହୋଇଗଲେ । ସେ କହିଲେ, "ତୁମେ କଣ କହୁଛ, ମୁଁ ବୁଝିପାରୁ ନାହିଁ । ଦିନ ଦିନ ହେଲା ମୁଖରେ ଜଳବିନ୍ଦୁ ଛୁଆଁ ଦେଇ ନାହଁ । ତୁମର ଟିକିଏ ଠିଆ ହେବାକୁ ଶକ୍ତି ନାହିଁ । ତା ଉପରେ କଣ ନା ତୁମେ ବନକୁ ଯିବ ? ତୁମ ମନରେ କଣ ଅଛି କେ ଜାଣି, ମୁଁ ତୁମକୁ ଏପର୍ଯ୍ୟନ୍ତ ଚିହ୍ନି ପାରିଲି ନାହିଁ ।"

ସ୍ୱାମୀଙ୍କର ଏପରି ଆଦର କଥା ଶୁଣି ସାବିତ୍ରୀଙ୍କ ଆଖି ଛଳଛଳ ହୋଇ ଉଠିଲା । ସେ ମନୋଭାବ ଦମନ କରି କହିଲେ, "ଏପରି ସମୟରେ ବନର ଶୋଭା ଭାରି ସୁନ୍ଦର ଦେଖାଯାଏ । ମୁଁ ତୁମକୁ ବିଶେଷ ପ୍ରାର୍ଥନା କରୁଛି, ମୋର ଆଜିକାର ଇଚ୍ଛାଟି ପୂରଣ କର । ମୋର କିଛି କଷ୍ଟ ହେବ ନାହିଁ । ତୁମେ ସେ ଭାବନା କର ନାହିଁ ।"

ସତ୍ୟବାନ୍ ସାବିତ୍ରୀଙ୍କ ଅନୁରୋଧ ଭାଙ୍ଗି ପାରିଲେ ନାହିଁ । ସ୍ୱାମୀଙ୍କ ସମ୍ମତି ପାଇ ସାବିତ୍ରୀ ପିତାମାତାଙ୍କଠାରୁ ଅନୁମତି ନେବାକୁ ଗଲେ । ଶାଶୁ ନାନାପ୍ରକାର ବାରଣ କରି କହିଲେ, "ତୁମେ ସତ୍ୟବାନ୍ ଲାଗି ବୃଥା ଚିନ୍ତା କରୁଛ କାହିଁକି ? ସେ ଯାଇ ଦଣ୍ଡକ ମଧ୍ୟରେ ସର୍ବ ଶୁଭରେ ଫେରି ଆସିବ । ତୁମେ ଯାଇ ଭୋଜନାଦି କର ।" ସାବିତ୍ରୀ କହିଲେ, "ମୋର ଆଜି ବନ ଦେଖିବାକୁ ବଡ଼ ଇଚ୍ଛା ହୋଇଅଛି । ବିଶେଷତଃ ଶାସ୍ତ୍ରରେ ବିଧାନ ଅଛି ଯେ, ବ୍ରତ ଶେଷରେ ସ୍ୱାମୀଙ୍କ ସହିତ ବରାବର ରହିବାକୁ ହେବ । ତାହା ନ ହେଲେ ବଡ଼ ଅମଙ୍ଗଳ ହୁଏ ।"

ବୃଦ୍ଧ ଦମ୍ପତି ଭାବିଲେ, ସାବିତ୍ରୀ ଏଠାକୁ ଆସିଲା ଦିନଠାରୁ ଦିନେ ହେଲେ କିଛି ପ୍ରାର୍ଥନା ବା ଅନୁରୋଧ କରି ନାହାନ୍ତି । ଆଜି ତାଙ୍କୁ ବାରଣ କଲେ ତାଙ୍କ ମନରେ କଷ୍ଟ ହୋଇ ପାରେ । ଏହିପରି ଭାବି ସେମାନେ ଆଶୀର୍ବାଦ କରି ସାବିତ୍ରୀଙ୍କୁ ବିଦାୟ ଦେଲେ ।

ବୃଦ୍ଧ ଦମ୍ପତିଙ୍କର ଅନୁମତି ପାଇ ସାବିତ୍ରୀ ଅତି ଆଗ୍ରହ ସହିତ ବାହାରିବାର ଉଦ୍ୟୋଗ କଲେ । ଯାତ୍ରାକାଳରେ ସେ ଭଗବାନଙ୍କୁ ଡାକି ହୃଦୟରେ ଟିକିଏ ବଳ ସଞ୍ଚୟ କରିନେଲେ ଏବଂ ଶାଶୁ, ଶ୍ୱଶୁର ଓ ତପୋବନର ସମସ୍ତ ମୁନି ଋଷିଙ୍କୁ ମନେ ମନେ ଭକ୍ତିର ସହିତ ପ୍ରଣାମ କରି ସତ୍ୟବାନଙ୍କ ସଙ୍ଗରେ ବନକୁ ବାହାରିଲେ ।

●

# ନବମ ପରିଚ୍ଛେଦ

ସାବିତ୍ରୀ ଓ ସତ୍ୟବାନ୍ ବନପଥରେ ଚାଲି ଅଛନ୍ତି । ସେତେବେଳକୁ ସୂର୍ଯ୍ୟଦେବ ପଶ୍ଚିମ ଗଗନକୁ ବିବିଧ ରଙ୍ଗରେ ଚର୍ଚ୍ଚିତ କରି ଦେଇ ଧୀରେ ଧୀରେ ବୁଡ଼ି ଯାଉଅଛନ୍ତି । ପକ୍ଷୀମାନେ ମଧୁର କାକଳି କରି ନିଜ ନିଜ ବସାକୁ ଫେରୁଅଛନ୍ତି । ସନ୍ଧ୍ୟାର ମଧୁର କିରଣରେ ତରୁଲତା ଝଲମଲ କରୁଅଛି । ସତ୍ୟବାନ୍ ସାବିତ୍ରୀଙ୍କ ହାତ ଧରି ବନର ଶୋଭା ଦେଖାଇ ଦେଖାଇ ଧୀରେ ଧୀରେ ଅଗ୍ରସର ହେଉଅଛନ୍ତି । କେଉଁଠାରେ ଗଛଗୁଡ଼ିକ ଫୁଲଭାରରେ ଅବନତ ହୋଇ ପଡ଼ିଅଛି, କେଉଁଠାରେ ଲତାଟିଏ ମୃଦୁ ପବନରେ ଥର ଥର ହୋଇ କମ୍ପୁଅଛି, କେଉଁଠାରେ ଗୋଟିଏ କ୍ଷୁଦ୍ର ତରଙ୍ଗିଣୀ ତରତର ହୋଇ ବହି ଯାଉଅଛି, କେଉଁଠାରେ ଚକୁଆ ଚକୋଇ କରୁଣ ରାଗିଣୀ କରି ପରସ୍ପରଠାରୁ ମେଲାଣି ନେଉଅଛନ୍ତି । ସତ୍ୟବାନ୍ ନାନା କଥା କହି ଗୋଟି ଗୋଟି କରି ସାବିତ୍ରୀଙ୍କୁ ସବୁ ଦେଖାଇ ଦେଉଅଛନ୍ତି । ଉପଯୁକ୍ତ ସଙ୍ଗୀ ନ ଥିଲେ କୌଣସି ବସ୍ତୁ ପୂର୍ଣ୍ଣ ଭାବରେ ଉପଭୋଗ କରି ହୁଏ ନାହିଁ । ବହୁଦିନ ପରେ ସତ୍ୟବାନ୍ ଆଜି ଏ ଶୋଭାଭଣ୍ଡାର ମଧ୍ୟରେ ଜୀବନସଙ୍ଗିନୀଙ୍କୁ ଏକାକୀ ପାଇଅଛନ୍ତି—ତାଙ୍କର ଆଉ ଆନନ୍ଦର ଶେଷ ନାହିଁ । ସେ କେତେ କଥା କହି, କେତେ ରହସ୍ୟ କରି ବାଟ ଚାଲୁଅଛନ୍ତି ।

କିନ୍ତୁ ସାବିତ୍ରୀଙ୍କର ମନର ଭାବ ଅଲଗା । ଆଜି ବନର ଶୋଭା ତାଙ୍କ ଆଖିରେ ପଡ଼ୁ ନାହିଁ, ସତ୍ୟବାନଙ୍କ କଥା ତାଙ୍କ କାନରେ ପ୍ରବେଶ କରୁ ନାହିଁ । ସେ କେବଳ ମଝିରେ ମଝିରେ 'ହୁଁ' 'ହଁ ।' କରି କରି କମ୍ପିତ ପଦରେ ଛାୟା ପରି ସତ୍ୟବାନଙ୍କର ଅନୁସରଣ କରୁଅଛନ୍ତି । ତାଙ୍କ ହୃଦୟ ମଧ୍ୟରେ ଯେ ଆଜି କି ପ୍ରବଳ ଝଡ଼ତୋଫାନ ବୋହୁଅଛି, ତାହା କଥାରେ ପ୍ରକାଶ କରି ହେବ ନାହିଁ । ସାବିତ୍ରୀଙ୍କର ଆଜି ଅଗ୍ନି ପରୀକ୍ଷା । ସେ ଚରମ ପରୀକ୍ଷାରୁ କିପରି ଉତ୍ତୀର୍ଣ୍ଣ ହେବେ, ସେ ଭୀଷଣ ଦରବାରରେ ନିଜର କି ଦାବି ଦେଖେଇବେ, କେବଳ ଏହି ସବୁ କଥା ତାଙ୍କ ମନକୁ ଆଲୋଡ଼ିତ କରୁଅଛି ।

ସତ୍ୟବାନ୍ କିଛି ଫଳମୂଳ ସଂଗ୍ରହ କରି କାଠ ଲାଗି ଆଉ କିଛି ଦୂରି ଅଗ୍ରସର ହେଲେ । କ୍ରମେ ସନ୍ଧ୍ୟାର ଅନ୍ଧକାର ମାଡ଼ି ଆସିଲା । ଅତି କ୍ଷୀଣ ଆଲୋକ ସାହାଯ୍ୟରେ ସାବିତ୍ରୀ ଓ ସତ୍ୟବାନ୍ ହାତ ଧରାଧରି ହୋଇ ଅରଣ୍ୟ ମଧ୍ୟରେ ଚାଲି-ଅଛନ୍ତି । ଚାରିଆଡ଼ ନୀରବ ନିସ୍ତବ୍ଧ । ମଝିରେ ମଝିରେ ହିଂସ୍ର ଜନ୍ତୁମାନଙ୍କର

କୋଳାହଳ ଶୁଣା ଯାଉଅଛି । ବାହାରେ ଆଜି ଯେପରି ଅନ୍ଧକାର, ସାବିତ୍ରୀଙ୍କ ଅନ୍ତର ମଧ୍ୟ ସେହିପରି । ସେ ପ୍ରତି ମୁହୂର୍ତ୍ତରେ ବନ୍ୟଜନ୍ତୁର ପାଦ ଶବ୍ଦ ଶୁଣୁଅଛନ୍ତି, ପ୍ରତି ସ୍ଥାନରେ ବିକଟ ମୂର୍ତ୍ତିର କଳ୍ପନା କରୁଅଛନ୍ତି । ଗଛରୁ ପତ୍ରଟିଏ ଖସି ପଡ଼ିବା ମାତ୍ରକେ ସାବିତ୍ରୀ ଚମକି ଉଠନ୍ତି । ସେ ମନେ କରନ୍ତି, ବୋଧ ହୁଏ ଏହିଠାରେ ସବୁ ଶେଷ ହେଲା । ପକ୍ଷୀ ଯେପରି ଶାବକମାନଙ୍କ ଉପରେ କିଛି ଆପଦ ପଡ଼ିବାର ଦେଖିଲେ ନିଜ ପକ୍ଷରେ ସେମାନଙ୍କୁ ଘୋଡ଼ାଇ ପକାଏ, ସାବିତ୍ରୀ ସେହିପରି କମ୍ପିତ ହସ୍ତରେ ସତ୍ୟବାନଙ୍କୁ ବେଷ୍ଟନ କରି ଧରନ୍ତି । ସାବିତ୍ରୀଙ୍କର ଏପରି ଭାବ ଦେଖି ସତ୍ୟବାନ୍ ମନେ କଲେ, ବୋଧହୁଏ ହିଂସ୍ର ଜନ୍ତୁମାନଙ୍କ ଚିତ୍କାର ଶୁଣି ସାବିତ୍ରୀ ଭୟରେ କାତର ହେଉଅଛନ୍ତି । ସେ କହିଲେ, "ସାବିତ୍ରି, କିଛି ଭୟ ନାହିଁ । ସତ୍ୟବାନ୍ ଯେ ପର୍ଯ୍ୟନ୍ତ ତୁମ ସଙ୍ଗରେ ଅଛି, କେହି ତୁମର କେଶାଗ୍ର ସୁଦ୍ଧା ସ୍ପର୍ଶ କରିପାରିବ ନାହିଁ ।" ସାବିତ୍ରୀ ମନେ ମନେ ଭାବିଲେ, "ଆହା, ମୁଁ ଯଦି ଏହିପରି ଦୃଢ଼ ଭାବରେ ଏହିଭଳି କଥା କହି ପାରନ୍ତି, ତାହାହେଲେ ଆଉ ଚିନ୍ତା କଣ ଥିଲା ?" ମନର ଭାବ ପରିବର୍ତ୍ତନ କରି ପ୍ରକାଶ୍ୟରେ କହିଲେ, "ତୁମେ ଯେତେବେଳେ ସାଙ୍ଗରେ ଅଛ, ଭୟ କଣ ? କିଛି ନାହିଁ—ଚାଲ ।"

ଏହି ସମୟରେ ଗୋଟିଏ ଶୁଖିଲା ଗଛରେ ଉପଯୁକ୍ତ କାଠ ଦେଖି ସତ୍ୟବାନ୍ କୁଠାର ଧରି ବୃକ୍ଷ ଆରୋହଣ କଲେ । ହଠାତ୍ ସାବିତ୍ରୀଙ୍କ ଦକ୍ଷିଣ ଚକ୍ଷୁ ସ୍ପନ୍ଦିତ ହେବାକୁ ଲାଗିଲା । କି ଘୋରଟିଏ ଅଜଣା ବିପଦର ଆଶଙ୍କାରେ ତାଙ୍କର ସମସ୍ତ ଶରୀର ଶିହରି ଉଠିଲା । ପତିଙ୍କ ମଙ୍ଗଳ କାମନାରେ ସାବିତ୍ରୀ ସକଳ ଦେବତାଙ୍କୁ ପ୍ରଣାମ କଲେ ।

ଗଛରେ ଚଢ଼ି ସତ୍ୟବାନ୍ ଚୋଟେ ଦିଚୋଟ ମାରିଅଛନ୍ତି, ଏପରି ସମୟରେ ତାଙ୍କର ଭୟଙ୍କର ଶିରଃପୀଡ଼ା ଉପସ୍ଥିତ ହେଲା । ସହସ୍ର ବୃଶ୍ଚିକ ଯେପରି ଏକ ସଙ୍ଗରେ ତାଙ୍କ ମସ୍ତକକୁ ଦଂଶନ କଲେ । ସତ୍ୟବାନ୍ ଆଉ ସ୍ଥିର ରହି ପାରିଲେ ନାହିଁ । କୌଣସି ପ୍ରକାରେ ଗଛକୁ ଦୃଢ ଭାବରେ ଧରି ରହିଲେ । ତାଙ୍କ ହାତରୁ କୁଠାର ଖଣ୍ଡିକ ତଳେ ଖସିପଡ଼ିଲା । କୁଠାର ପଡ଼ିବା ସଙ୍ଗେ ସଙ୍ଗେ ସାବିତ୍ରୀଙ୍କ ମର୍ମସ୍ଥଳ ଯେପରି ଶତଖଣ୍ଡ ହୋଇ ଛିନ୍ନ ହୋଇଗଲା ।

ସାବିତ୍ରୀ ଭାବିଲେ, ସର୍ବନାଶ ! ସମୟ ଆସି ଉପସ୍ଥିତ ହେଲା ! ଆଉ ରକ୍ଷା ନାହିଁ । ଏତେବେଳକେ ଋଷି ବାକ୍ୟ ଫଳିଲା । ସେ ଥରେ ଦୁଇ ଥର, ତିନି ଥର ସତ୍ୟବାନଙ୍କୁ ଡାକିଲେ—କିଛି ଉତ୍ତର ନାହିଁ ।

ସାବିତ୍ରୀଙ୍କର ଉତ୍କଣ୍ଠା ବୃଦ୍ଧି ପାଇବାକୁ ଲାଗିଲା । ସେ ବାରମ୍ବାର ସତ୍ୟବାନଙ୍କୁ ଡାକିବାକୁ ଲାଗିଲେ । କିନ୍ତୁ ସତ୍ୟବାନଙ୍କର ଆଉ କଥା କହିବାର ଶକ୍ତି ନାହିଁ । ସେ ବହୁ କଷ୍ଟରେ ଗଛରୁ ଧୀରେ ଧୀରେ ଓହ୍ଲାଇ ଦୁଇ ହାତରେ ମୁଣ୍ଡକୁ ଧରି ସାବିତ୍ରୀଙ୍କ ନିକଟରେ ଉପସ୍ଥିତ ହେଲେ । ସାବିତ୍ରୀ କମ୍ପିତ ସ୍ୱରରେ ପଚାରିଲେ, "କଣ ହେଲା ?"

ସତ୍ୟବାନ କହିଲେ, "ଓଃ ! ଘୋର ଯନ୍ତ୍ରଣା ! ମୋ ମୁଣ୍ଡକୁ ଯେପରି କିଏ ଶତ ଶତ ଶେଳ ବିନ୍ଧୁଅଛି ! ମତେ କିଛି ଦେଖାଯାଉ ନାହିଁ । ବୋଧ ହୁଏ ପ୍ରାଣ ବାହାରିଯିବ—ଆଉ ନିସ୍ତାର ନାହିଁ ।"

ସାବିତ୍ରୀ ହଠାତ୍ ନିଜର ଅଞ୍ଚଳ ପାରି ସତ୍ୟବାନଙ୍କୁ ଶୁଆଇ ଦେଲେ ଏବଂ ତାଙ୍କର କୋଡ଼ରେ ଧାରଣ କରି ନାନାପ୍ରକାରେ ଶୁଶ୍ରୂଷା କରିବାକୁ ଲାଗିଲେ । କିନ୍ତୁ କୌଣସିଥିରେ କିଛି ହେଲା ନାହିଁ । କ୍ରମେ ଯନ୍ତ୍ରଣା ବଢ଼ିବାକୁ ଲାଗିଲା । ସତ୍ୟବାନ୍ ଶଯ୍ୟାରେ ପଡ଼ି ଛଟପଟ ହେବାକୁ ଲାଗିଲେ । ତାଙ୍କର ମୁଖମଣ୍ଡଳ ନିସ୍ତେଜ ହୋଇ ଆସିଲା, ଚକ୍ଷୁ ମୁଦ୍ରିତ ହୋଇଗଲା ।

ସାବିତ୍ରୀ ବୁଝିଲେ—ସବୁ ଶେଷ ହୋଇଅଛି, ଭବିତବ୍ୟ ଫଳିଅଛି । ସେ ଆଉ ସମ୍ଭାଳି ପାରିଲେ ନାହିଁ, ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । ଅତୀତର ସହସ୍ର ସ୍ମୃତି ତାଙ୍କ ମନରେ ଜାଗ୍ରତ ହେବାକୁ ଲାଗିଲା । ସେ କୋହରେ ବେଶି ବେଶି କାନ୍ଦିବାକୁ ଲାଗିଲେ ।

ଏଠାରେ ସାବିତ୍ରୀଙ୍କୁ ସାନ୍ତ୍ୱନା ଦେବ କିଏ ? ନିବିଡ଼ ବନ—ଚତୁର୍ଦ୍ଦିଗ ଅନ୍ଧକାର, ଜନମାନବର ସମାଗମ ନାହିଁ । ଚାରିଆଡ଼େ କେବଳ ବନ୍ୟଜନ୍ତୁମାନଙ୍କର ଭୀଷଣ କୋଳାହଳ ଶୁଣା ଯାଉଅଛି । ଏପରି ଅବସ୍ଥାରେ ଏକାକିନୀ ସାବିତ୍ରୀ ମୁମୂର୍ଷୁ ପତିଙ୍କୁ କୋଡ଼ରେ ଧରି ବସିଅଛନ୍ତି । ଓଃ ! କି ଭୟଙ୍କର ଦୃଶ୍ୟ ! ଭାବିଲା ବେଳକୁ ଦେହ ଶୀତେଇ ପଡ଼ୁଅଛି ।

କିନ୍ତୁ ସାବିତ୍ରୀଙ୍କର ସେତେବେଳେ ଏ ସବୁ କଥା ଭାବିବାକୁ ଅବସର ନାହିଁ । ନିଜର କୌଣସି ବିପଦ ଘଟିବ, ସେ ଦିଗକୁ ତାଙ୍କର ଅଣୁମାତ୍ର ଭ୍ରୂକ୍ଷେପ ନାହିଁ । ସେ ଏକମନ ଏକଧ୍ୟାନରେ କେବଳ ସତ୍ୟବାନଙ୍କ କଥା ଭାବୁଅଛନ୍ତି । ସେ ଭାବୁଅଛନ୍ତି, ଏପରି ସ୍ୱାମୀ—ରୂପ ଗୁଣରେ ଜଗତରେ ଯାହାର ତୁଳନା ନାହିଁ, ଯେ ମୋର ନୟନର ମଣି, ଜୀବନର ଜୀବନ— ତାଙ୍କୁ ଛାଡ଼ି ମୁଁ ବଞ୍ଚିବି କିପରି ? ଏପରି ସ୍ନେହଶୀଳ ସ୍ୱାମୀ— କେତେ ତପସ୍ୟା ବଳରେ ଯାହାଙ୍କୁ ଲାଭ କରିଥିଲି, ଯାହାଙ୍କୁ ପାଇ ଏ ମର୍ତ୍ତ୍ୟ ମୋ ପକ୍ଷରେ ସ୍ୱର୍ଗରେ ପରିଣତ ହୋଇଥିଲା - ସେ ଏକ ମୁହୂର୍ତ୍ତରେ ମାୟାବନ୍ଧନ ଛିଣ୍ଡାଇ ଦେଇ

ଚାଲିଯିବେ ? ଆଉ ମୁଁ ଏକାକୀ ଏ ସଂସାରସମୁଦ୍ରରେ କେବଳ ଛନ୍ଦଭ ହାହାକାରକୁ ସାର କରି ରହିବି ? "ପ୍ରଭୁ, କି ପାପରେ ମୋର ଏ ଗୁରୁଦଣ୍ଡ ହେଲା ? ମୁଁ ଜୀବନରେ କାହାର କିଛି ଅନିଷ୍ଟ କରି ନାହିଁ, ଭୁଲେ ସୁଦ୍ଧା ହୃଦୟରେ ପାପଚିନ୍ତାକୁ ସ୍ଥାନ ଦେଇ ନାହିଁ । ଏତେ ବାର ବ୍ରତ, ପୂଜା ଆରାଧନା ସବୁ କଣ ବ୍ୟର୍ଥ ହୋଇଗଲା ? ଏ ସବୁର ତେବେ କଣ କିଛି ମୂଲ୍ୟ ନାହିଁ ? ପ୍ରଭୁ, ସ୍ୱାମୀଙ୍କୁ ନେଲ ତ, ମତେ ସାଙ୍ଗରେ ନେଲ ନାହିଁ କାହିଁକି ? ପତି ବିନା ସ୍ତ୍ରୀଲୋକର ଅନ୍ୟ ଗତି କଣ ଅଛି ? ପ୍ରାଣ ଚାଲିଗଲେ ଦେହଟାରେ ଆଉ ପ୍ରୟୋଜନ କଣ ?"

ସାବିତ୍ରୀ ଏହିପରି କିଂକର୍ତ୍ତବ୍ୟବିମୂଢ଼ଭାବରେ ଚିନ୍ତା କରୁଅଛନ୍ତି । ତାଙ୍କର ବାହ୍ୟଜ୍ଞାନ ଲୁପ୍ତ । ନାରଦଙ୍କର ସେହି କଥା ତାଙ୍କର ସ୍ମରଣ ହେଲା, "ପତିବ୍ରତାର କିଛି ଅମଙ୍ଗଳ ହେବ ନାହିଁ । ଧର୍ମତେଜରେ ବିଧିଲିପିର ମଧ୍ୟ ଖଣ୍ଡନ ହୋଇଯିବ । ଜଗତରେ ସତୀର ଅସାଧ୍ୟ କିଛି ନାହିଁ ।" ଏହି କଥା ଭାବି ସାବିତ୍ରୀଙ୍କର ଟିକିଏ ସାହସ ହେଲା, ମନରେ ଟିକିଏ ଦମ୍ଭ ଆସିଲା । ତାଙ୍କ ହୃଦୟ ମଧ୍ୟରେ ଗୋଟିଏ କ୍ଷୀଣ ଆଶାର ଦୀପ ଜଳି ଉଠିଲା । ସେ ବାରମ୍ବାର ସ୍ୱାମୀଙ୍କ ମୁଖ ନିରୀକ୍ଷଣ କରିବାକୁ ଲାଗିଲେ । ସେ ମୁଖକୁ ଦେଖି ତାଙ୍କର ମନେ ହେଲା, ଏପରି ସ୍ୱାମୀ ମତେ ଛାଡ଼ି ଯିବେ—ଅସମ୍ଭବ ? ଜଳ ସ୍ଥଳ ଅନ୍ତରୀକ୍ଷ ଯେଉଁଠାକୁ ସେ ଯିବେ, ମୁଁ ସେଠାକୁ ତାଙ୍କର ଅନୁସରଣ କରିବି । ଏହିପରି ଭାବି କପରି ଗୋଟିଏ ଅଭୂତ ଶକ୍ତିରେ ସାବିତ୍ରୀଙ୍କ ମନ ଶକ୍ତିମାନ୍ ହୋଇ ଉଠିଲା । ତାଙ୍କ ଦେହ ଗୋଟିଏ ସ୍ୱର୍ଗୀୟ ଜ୍ୟୋତିରେ ମଣ୍ଡିତ ହୋଇଗଲା । ସେ ସ୍ୱାମୀଙ୍କ ଚିନ୍ତାରେ ତନ୍ମୟ ହୋଇଗଲେ । ସତ୍ୟବାନଙ୍କ ପ୍ରାଣ ସଙ୍ଗେ ତାଙ୍କ ପ୍ରାଣ ଏକ ହୋଇଗଲା ।

ସାବିତ୍ରୀ ଏହିପରି ଧ୍ୟାନମଗ୍ନ ହୋଇଅଛନ୍ତି, ତାଙ୍କର ବୋଧ ହେଲା, ଯେପରି ହଠାତ୍ ସେହି ବନସ୍ଥଳୀ ଆହୁରି ଭୀଷଣ ହୋଇ ଉଠିଲା, ଗୋଟାଏ ତାମସୀ ଛାୟା ଆସି ସେ ସ୍ଥାନକୁ ଆଚ୍ଛନ୍ନ କରି ପକାଇଲା । ସାବିତ୍ରୀ ମନେ କଲେ, ଯେପରି କେତେ-ଗୁଡ଼ାଏ ବିକଟ ମୂର୍ତ୍ତି ଆସି ତାଙ୍କର ଚାରିଆଡ଼େ ନୃତ୍ୟ କରୁଅଛନ୍ତି । ସେ ଦୃଶ୍ୟ ଅତି ଭୟଙ୍କର, ଅତି ବିଶୃଙ୍ଖଳାମୟ । କିନ୍ତୁ ସାବିତ୍ରୀ ଏଥିରେ ଆଦୌ ବିଚଳିତ ହେଲେ ନାହିଁ । ତାଙ୍କର ମୂର୍ତ୍ତି ସ୍ଥିର ଗମ୍ଭୀର ।

କିଛିକ୍ଷଣ ପରେ ସହସା ବନଭୂମି ଆଲୋକିତ ହୋଇ ଉଠିଲା । ସାବିତ୍ରୀ ଚାହିଁ ଦେଖିଲେ, ସମ୍ମୁଖରେ ଗୋଟିଏ ଅପୂର୍ବ ଜ୍ୟୋତିର୍ମୟ ପୁରୁଷ ମୂର୍ତ୍ତି । ତାଙ୍କର ପରିଧାନ ରକ୍ତବସ୍ତ୍ର, ମସ୍ତକରେ ଉଜ୍ଜ୍ୱଳ ମୁକୁଟ, ହସ୍ତରେ ପାଶ ଓ ଦଣ୍ଡ । ସାବିତ୍ରୀ

ବିସ୍ମୟାବିଷ୍ଟ ହୋଇ କିଛି ସମୟ ସେହି ମୂର୍ତ୍ତି ଆଡ଼କୁ ଅପଲକଦୃଷ୍ଟିରେ ଅନାଇ ରହିଲେ । ପରେ କହିଲେ, "ପ୍ରଭୋ, ଆପଣ କିଏ ? ଏ ଉଜ୍ଜ୍ୱଳ ମୂର୍ତ୍ତି ଦେଖି ବୋଧ ହେଉଅଛି, ଆପଣ କୌଣସି ଦେବତା ହେବେ । ଦୟା କରି ମୋର ସଂଶୟ ଦୂର କରନ୍ତୁ ।"

ତେଜୋମୟ ମୂର୍ତ୍ତି ଉତ୍ତର କଲେ, "ସାବିତ୍ରି, ମୋ ନାମ ଯମ । ମୁଁ ସଂସାରର ଲୟକର୍ତ୍ତା, କାଳ ଶେଷ ହେଲେ ମୁଁ ଆସି ଜୀବମାନଙ୍କର ପ୍ରାଣ ହରଣ କରି ନେଇଯାଏ । ବର୍ତ୍ତମାନ ସତ୍ୟବାନଙ୍କର କାଳ ପୂର୍ଣ୍ଣ ହୋଇଅଛି । ସେଥିଲାଗି ମୁଁ ତାଙ୍କୁ ନେବାକୁ ଆସିଅଛି ।"

ସାବିତ୍ରୀ ବୁଝି ପାରିଲେ ଶେଷ ମୁହୂର୍ତ୍ତ ଆସି ଉପସ୍ଥିତ, ଆଉ ରକ୍ଷା ନାହିଁ । ସେ ଦେଖିଲେ, ବର୍ତ୍ତମାନ ଆଉ ଅଧୀର ହୋଇ କ୍ରନ୍ଦନ କଲେ ଚଳିବ ନାହିଁ—ସ୍ଥିରଚିତ୍ତରେ କର୍ତ୍ତବ୍ୟ କରିବାକୁ ହେବ । ଏହିପରି ଭାବି ସାବିତ୍ରୀ ମନକୁ ଟିକିଏ ଦୃଢ଼ କରିନେଲେ ଏବଂ ଅତି ବିନୀତଭାବରେ ଯମରାଜଙ୍କୁ ପଚାରିଲେ, "ଶୁଣିଅଛି, ଆପଣଙ୍କ ଅନୁଚରମାନେ ଆସି ମୃତବ୍ୟକ୍ତିକୁ ନେଇଯାନ୍ତି । ଏ ସ୍ଥଳରେ ଆପଣ ନିଜେ କାହିଁକି ଉପସ୍ଥିତ ?"

ଯମ ଉତ୍ତର କଲେ, "ସାବିତ୍ରି ସତ୍ୟବାନ୍ ପରମଧାର୍ମିକ, ତାହା ଛଡ଼ା ତୁମେ ନିଜେ ସାଧ୍ୱୀ ପତିବ୍ରତା ତାଙ୍କୁ କୋଳରେ ଧରି ବସିଅଛ । ସୁତରାଂ ଯମଦୂତମାନେ ତାଙ୍କୁ ସ୍ପର୍ଶ କରି ପାରିବେ ନାହିଁ । ଏଥିଲାଗି ମତେ ନିଜେ ଆସିବାକୁ ହୋଇଅଛି । ବର୍ତ୍ତମାନ ତୁମେ ସତ୍ୟବାନଙ୍କୁ ପରିତ୍ୟାଗ କର, ମୁଁ ମୋର ନିଜର କାର୍ଯ୍ୟ କରେ ।"

ସାବିତ୍ରୀ ଆଉ କିଛି କଥା ନ କହି ଧୀରେ ଧୀରେ ସତ୍ୟବାନଙ୍କୁ କୋଳରୁ ଖସାଇଦେଇ ନିକଟରେ ଛିଡ଼ା ହେଲେ । ଯମରାଜ ସତ୍ୟବାନଙ୍କ ଦେହରୁ ଆତ୍ମାକୁ କାଢ଼ିନେଇ ଯମପୁରୀ ଆଡ଼କୁ ଅଗ୍ରସର ହେଲେ । ସାବିତ୍ରୀ ମଧ୍ୟ ପଛେ ପଛେ ତାଙ୍କର ଅନୁସରଣ କଲେ ।



## ଦଶମ ପରିଚ୍ଛେଦ

କିଛି ଦୂର ଯାଇ ଯମ ହଠାତ୍ ପଛକୁ ଫେରି ଦେଖିଲେ, ସାବିତ୍ରୀ ପଛେ ପଛେ ଆସୁଅଛନ୍ତି । ଯମ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲେ, "ସାବିତ୍ରି, ତୁମେ ଆଉ କୁଆଡ଼େ ଆସୁଅଛ ? ସତ୍ୟବାନ୍‌ଙ୍କର କାଳ ପୂର୍ଣ୍ଣ ହେଲା, ସେ ମୃତ୍ୟୁବରଣ କଲେ । ତୁମେ ଆଉ ବୃଥା ଶୋକ କରୁଅଛ କାହିଁକି ? ବର୍ତ୍ତମାନ ତୁମେ ଘରକୁ ଫେର ।"

ସାବିତ୍ରୀ କହିଲେ, "ମୋର ଆଉ ଘର କାହିଁ । ଆପଣ ତ ମୋ ଘରଟିକୁ ସଙ୍ଗେ ସଙ୍ଗେ ନେଇ ଯାଉଅଛନ୍ତି । ମୁଁ ଆଉ କେଉଁଠାକୁ ଫେରିବି ? ବର୍ତ୍ତମାନ ସ୍ୱାମୀଙ୍କର ଅନୁଗମନ କରିବାହିଁ ମୋର କର୍ତ୍ତବ୍ୟ । ମୁଁ ସେହି କର୍ତ୍ତବ୍ୟ ପାଳନ କରୁଅଛି । ଆପଣ ସେଥିରେ ବାଧା ଦିଅନ୍ତୁ ନାହିଁ ।"

ଯମ କହିଲେ "ସାବିତ୍ରି, ତୁମେ ବିପଦରେ ପଡ଼ି ଅନ୍ଧ ହୋଇ ଯାଇଅଛ । ସ୍ୱାମୀଙ୍କ ଅନୁସରଣ କରିବା ତୁମ ପକ୍ଷରେ ଅସମ୍ଭବ । ତୁମେ ବୃଥା କଷ୍ଟ ସ୍ୱୀକାର କରୁଅଛ କାହିଁକି ? ତୁମର ଯାହା କରିବାର, ତୁମେ କରିଅଛ । ଏଣିକି ଘରକୁ ଯାଇ ସ୍ୱାମୀଙ୍କର ଅନ୍ତ୍ୟେଷ୍ଟିକ୍ରିୟାଦି କର—ତାଙ୍କର ଊର୍ଦ୍ଧ୍ୱଗତି କାମନା କର । ଏହାହିଁ ବର୍ତ୍ତମାନ ତୁମର କର୍ତ୍ତବ୍ୟ ।"

ସାବିତ୍ରୀ କହିଲେ, "ମୋର କି ସାଧ୍ୟ ଯେ, ମୁଁ ସ୍ୱାମୀଙ୍କର ଊର୍ଦ୍ଧ୍ୱଗତି କରିବି ? ସଂସାରରେ ସମସ୍ତେ ନିଜ ନିଜ କର୍ମଫଳ ଭୋଗ କରନ୍ତି । ଭାଇ ବନ୍ଧୁ ପରିବାର କେହି କାହାର ନୁହନ୍ତି । ଧର୍ମରକ୍ଷା କଲେ ନିଜେ ନିଜର ବନ୍ଧୁ ଓ କୁକର୍ମ କଲେ ନିଜେ ନିଜର ଶତ୍ରୁ । କିଏ କାହାର ଆତ୍ମାର ସଦ୍‌ଗତି କରି ପାରେ ? ଅତଏବ ଧର୍ମ ଉପାର୍ଜନ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ । ସ୍ତ୍ରୀଲୋକର ପତିଅନୁଗମନ ଛଡ଼ା ଅନ୍ୟ ଧର୍ମ ନାହିଁ । ମୁଁ ସେହି ଧର୍ମ ପାଳନ କରୁଅଛି, ଆପଣ ସ୍ୱୟଂ ଧର୍ମରାଜ ହୋଇ ମତେ ବାରଣ କରୁଅଛନ୍ତି କାହିଁକି ?"

ସାବିତ୍ରୀଙ୍କ ମୁଖରୁ ଏପରି କଥା ଶୁଣି ଯମ ମୁଗ୍ଧ ହୋଇଗଲେ । ସେ ଦେଖିଲେ, ସାବିତ୍ରୀ ସାମାନ୍ୟ ରମଣୀ ନୁହନ୍ତି ! ସେ ସବୁ ନ୍ୟାୟସଙ୍ଗତ କଥା କହୁ-ଅଛନ୍ତି । ଏହାଙ୍କୁ ଫେରାଇବାକୁ ହେବ କିପରି ? ଏହିପରି ଚିନ୍ତା କରି ସେ କହିଲେ, "ସାବିତ୍ରି, ମୁଁ ତୁମର ସୁଧାମୟ ବାକ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛି । ବାସ୍ତବିକ୍ ତୁମ ପରି ସାଧ୍ୱୀ ଜଗତରେ ବିରଳ । ବର୍ତ୍ତମାନ ତୁମେ ସତ୍ୟବାନଙ୍କ ଜୀବନ

ଛାଡ଼ି ଅନ୍ୟ ବର ପ୍ରାର୍ଥନା କରୁଅଛ କର, ମୁଁ ନିଶ୍ଚୟ ତୁମର ବାଞ୍ଛା ପୂର୍ଣ୍ଣ କରିବ ।"

ସାବିତ୍ରୀ କହିଲେ, "ପ୍ରଭୁ, ଯଦି ପ୍ରୀତ ହୋଇଅଛନ୍ତି, ତେବେ ଏହି ବର ଦିଅନ୍ତୁ ଯେ, ମୋର ଶ୍ୱଶୁର ଅନ୍ଧ, ସେ ପୁନର୍ବାର ତାଙ୍କର ଚକ୍ଷୁ ଫେରି ପାଇବେ ।"

ଯମ କହିଲେ, "ତୁମ ଶ୍ୱଶୁର ଚକ୍ଷୁ ଲାଭ କରିବେ । ତୁମେ ବର୍ତ୍ତମାନ ଘରକୁ ଫେର ।"

ସାବିତ୍ରି କହିଲେ, ଆପଣଙ୍କର ସଙ୍ଗ ଛାଡ଼ିବାକୁ ମୋର ତିଳେ ମାତ୍ର ଇଚ୍ଛା ନାହିଁ । ଶାସ୍ତ୍ରରେ ଅଛି, ସାଧୁସଙ୍ଗଠାରୁ ବଳି ପୁଣ୍ୟ ଜଗତରେ କିଛି ନାହିଁ । ମୁଁ ବହୁ ଭାଗ୍ୟରୁ ଆପଣଙ୍କ ସହବାସ ଲାଭ କରିଅଛି । ଆପଣ ଏଥିରୁ ମତେ ବଞ୍ଚିତ କରନ୍ତୁ ନାହିଁ ।"

ଯମ କହିଲେ, "ସାବିତ୍ରି, ତୁମେ କଥାରେ ମତେ କିଣି ନେଇ ଅଛ । ମୁଁ ତୁମ କଥା ଯେତିକି ଶୁଣୁଅଛି, ଆହୁରି ଶୁଣିବାକୁ ଇଚ୍ଛା ହେଉଅଛି । ତୁମେ ଅନ୍ୟ ବର ପ୍ରାର୍ଥନା କର ।"

ସାବିତ୍ରୀ କହିଲେ, "ମୋର ପିତା ଅପୁତ୍ରିକ ଅଛନ୍ତି, ତାଙ୍କୁ ପୁତ୍ର ଦାନ କରନ୍ତୁ ।"

ଯମ କହିଲେ, "ହେଉ, ତୁମ ପିତାଙ୍କର ଶତ ପୁତ୍ର ହେବେ । ତୁମେ ଆଉ ବିଳମ୍ବ କର ନାହିଁ । ରାତ୍ରି ଅଧିକ ହୋଇଗଲାଣି, ବର୍ତ୍ତମାନ ଘରକୁ ଫେର ।"

ସାବିତ୍ରୀ କହିଲେ, "ପ୍ରଭୁ, ମୋର ଆଉ ଘରେ କି ପ୍ରୟୋଜନ ? ସଂସାର କରିବାକୁ ମୋର ବାସନା ନାହିଁ । ସଂସାର ଲୋକମାନେ ମିଥ୍ୟା ମାୟାରେ ମୋହିତ ହୋଇ କେବଳ 'ମୋର ମୋର' କରି ସତ୍ୟପଥ ଲଙ୍ଘନ କରୁଅଛନ୍ତି ; ସ୍ତ୍ରୀ ପୁତ୍ର ପରିବାର ଏ ସବୁ କେବଳ ଅନର୍ଥର ହେତୁ । ଏହି ମୋହରେ ପଡ଼ି ସମସ୍ତେ ସଂସାର ପୋକ ପରି ନିଜ ନିଜର କର୍ମସୂତ୍ରରେ ଆବଦ୍ଧ ହୋଇ ନାନା ଯନ୍ତ୍ରଣା ଭୋଗ କରୁଅଛନ୍ତି । ମୁଁ ଜାଣି ଶୁଣି ଆଉ କାହିଁକି ସେ ପଥରେ ଗୋଡ଼ ଦେବି ? ଆପଣ ବା ମତେ ସେ ଉପଦେଶ ଦେବେ କିପରି ? ଧର୍ମହିଁ ସଂସାରର ସର୍ବଶ୍ରେଷ୍ଠ ବସ୍ତୁ । ମୁଁ ସେହି ଧର୍ମ ପାଳନ କରୁଅଛି । ଇହଲୋକ, ପରଲୋକ, ସର୍ବତ୍ର ସ୍ୱାମୀ ସ୍ତ୍ରୀର ଏକମାତ୍ର ଆଶ୍ରୟ ସ୍ଥଳ । ସେ ଆଶ୍ରୟ ଛାଡ଼ି ମୁଁ ଅନ୍ୟ କୁଆଡ଼େ ଯିବି ।"

ଯମରାଜ ଦେଖିଲେ, ଏ ତ ବଡ଼ ବିପଦର କଥା ! ସର୍ବଶାସ୍ତ୍ର-ନିପୁଣା ସାବିତ୍ରୀଙ୍କୁ କଥାରେ ପରାସ୍ତ କରିବା ସହଜ ନୁହେ । ସେ ଯାହା କହୁଅଛନ୍ତି, ସବୁ ଯୁକ୍ତି-ଯୁକ୍ତ, ସବୁ ସାରଗର୍ଭ । ଅଥଚ ସାବିତ୍ରୀଙ୍କୁ ନିରସ୍ତ ନ କଲେ ନ ଚଳେ । ନ ହେଲେ ଯେ ସବୁ ବିଧି ନିୟମ ବ୍ୟର୍ଥ ହୋଇଯିବ । ଏହିପରି ଭାବି ଯମ ସାବିତ୍ରୀଙ୍କୁ କହିଲେ, "ଦେଖ, ସାବିତ୍ରୀ, ତୁମେ ଅସମ୍ଭବ କାମନା କରୁଅଛ । ଯାହା କେବେ କେହି କରି ନାହିଁ, ତାହା ତୁମେ କିପରି କରିବ ? ମୁଁ ତୁମକୁ ବରଂ ଆଉ ଗୋଟିଏ ବର ଦେଉ-ଅଛି । ତୁମେ ସେଥିରେ ସନ୍ତୁଷ୍ଟ ହୋଇ ଯାଅ । ସତ୍ୟବାନଙ୍କ ଜୀବନ ଛଡ଼ା ତୁମର ଆଉ କଣ ମାଗିବାର ଅଛି ମାଗ ।"

ସାବିତ୍ରୀ କହିଲେ, "ମୋର ଶ୍ୱଶୁର ରାଜ୍ୟହୀନ ହୋଇଅଛନ୍ତି । ଏହି ବର ଦିଅନ୍ତୁ ଯେ, ପୁନର୍ବାର ତାଙ୍କର ରାଜ୍ୟ ପାଇବେ ।"

ଯମ 'ତଥାସ୍ତୁ' କହି ଦେଇ ଦ୍ରୁତଗତିରେ ଯମପୁରୀ ଆଡ଼କୁ ଅଗ୍ରସର ହେଲେ । ସାବିତ୍ରୀ କିନ୍ତୁ ଏତେ ସହଜରେ ଛାଡ଼ିବାର ପାତ୍ରୀ ନୁହନ୍ତି । ସେ ସେହିପରି ତାଙ୍କ ପଛେ ପଛେ ଚାଲିବାକୁ ଲାଗିଲେ । ଯମ ଖଣ୍ଡେ ବାଟ ଯାଇ ଆଉ ଥରେ ପଛକୁ ଫେରି ଦେଖିଲେ, ସାବିତ୍ରୀ ଅବିଚଳିତ ପଦରେ ତାଙ୍କର ଅନୁସରଣ କରୁଅଛନ୍ତି । ଏଥର ବାସ୍ତବିକ୍ ଯମଙ୍କର ବଡ଼ ଆଶଙ୍କା ହେଲା । ସେ ସମ୍ମୁଖରେ ଚାହିଁ ଦେଖିଲେ, ଯମପୁରୀ ଆଉ ବେଶୀ ଦୂର ନାହିଁ । ଭାବିଲେ, ଏ କଣ ହେଲା ? ଯେଉଁ ସ୍ଥାନରେ କୌଣସିକାଳେ କୌଣସି ମନୁଷ୍ୟର ପାଦ ପଡ଼ି ନାହିଁ, ସେ ସ୍ଥାନକୁ ସାବିତ୍ରୀ କିପରି ଆସିଲେ ? ଯମରାଜ ଆଉ ଥରେ ସାବିତ୍ରୀଙ୍କୁ ନିରୀକ୍ଷଣ କରି ଦେଖିଲେ, ତାଙ୍କ ଦେହରେ ଏକ ଅପୂର୍ବ ଜ୍ୟୋତି, ସେହି ଜ୍ୟୋତିରେ ସେ ଦଶଦିଗ ଆଲୋକିତ କରି ସ୍ଥିର ପଦରେ ଅଗ୍ରସର ହେଉଅଛନ୍ତି । ଯମ ବୁଝି ପାରିଲେ, ସାବିତ୍ରୀ ଆଜି ପତିଭକ୍ତିର ତେଜରେ ତେଜସ୍ୱିନୀ । ସେହି ବିଶ୍ୱବିଜୟିନୀ ଶକ୍ତିବଳରେ ସେ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ପତିଙ୍କର ଅନୁସରଣ କରୁଅଛନ୍ତି ।

ଯମ ବଡ଼ ବ୍ୟତିବ୍ୟସ୍ତ ହୋଇ କହିଲେ, "ସାବିତ୍ରି, ତୁମେ ଆଉ କୁଆଡ଼େ ଆସୁଅଛ ? ତୁମେ ବୁଝି ପାରୁ ନାହଁ, କି ବିଷମ ସ୍ଥାନରେ ଆସି ତୁମେ ଉପସ୍ଥିତ ହୋଇଅଛ । ଏ ପର୍ଯ୍ୟନ୍ତ କୌଣସି ମନୁଷ୍ୟ ଏତେଦୂର ଆସି ପାରି ନାହିଁ । ତୁମେ କେବଳ ପତିଭକ୍ତିର ବଳରେ ଏପର୍ଯ୍ୟନ୍ତ ଆସିବାକୁ ସମର୍ଥ ହୋଇଅଛ । ତାହା ବୋଲି ତୁମେ ଯେ ଆଉ ଅଗ୍ରସର ହୋଇ ପାରିବ, ଏପରି ମନେ କର ନାହିଁ । ଏହିଠାରେ ଜୀବନର ଶେଷ ସୀମା, ଏହିଠାରୁ ପରପାରର ଆରମ୍ଭ । ସ୍ଥୂଳ ଦେହ ଧରି କୌଣସି

ଜୀବ ଏ ସୀମା ଲଙ୍ଘନ କରିପାରିବ ନାହିଁ । ମନୁଷ୍ୟ ଦେହରେ ସେ ତେଜ ସହ୍ୟ ହେବ ନାହିଁ । ତୁମେ ବୃଥା କାହିଁକି ଅସାଧ୍ୟସାଧନରେ ମନ ବଳାଉଅଛ ? ମୁଁ ବର୍ତ୍ତମାନ ଚକ୍ଷୁ ପଲକରେ ଅଦୃଶ୍ୟ ହୋଇଯିବି । ଭାବି ଦେଖ, ସେତେବେଳେ ତୁମର କି ଦଶା ହେବ । ବର୍ତ୍ତମାନ ସମୟ ଥାଉଁ ଥାଉଁ ଫେର ।''

ସାବିତ୍ରୀ କହିଲେ, ''ପ୍ରଭୋ, ମୁଁ ଯଦି ପ୍ରକୃତ ସାଧ୍ୱୀ ହୋଇଥାଏଁ, ଯଦି ମୋର ଦେବତାଙ୍କଠାରେ ଅଚଳା ଭକ୍ତି ଥାଏ, ତାହାହେଲେ ଆପଣଙ୍କ ଆଶୀର୍ବାଦରେ ମୁଁ ସ୍ୱଚ୍ଛନ୍ଦରେ ପତିଙ୍କର ଅନୁସରଣ କରି ପାରିବି । ଆଉ ଯଦି ବା ମୁଁ ସ୍ଥୂଳଦେହରେ ସେଠାକୁ ଯାଇ ନ ପାରେ, ଯଦିବା ସମସ୍ତଙ୍କର ତେଜରେ ମୋର ଦେହ ଭସ୍ମ ହୋଇଯାଏ, ତେବେ ଭଲ କଥା; ମୁଁ ସୂକ୍ଷ୍ମ ଦେହରେ ସ୍ୱାମୀଙ୍କର ଅନୁସରଣ କରିବି । ଆପଣ ବା ମୋତେ ଛାଡ଼ିକରି ଯିବେ କିପରି ? ଶାସ୍ତ୍ରରେ ଅଛି, ଏକ ସଙ୍ଗରେ ସାତ ପାଦ ଭୂମି ଗଲେ ଏବଂ ସାତୋଟି କଥା କହିଲେ ବନ୍ଧୁତା ହୁଏ । ଆପଣ ବର୍ତ୍ତମାନ ମୋ ନିକଟରେ ସେହି ବନ୍ଧୁତା-ସୂତ୍ରରେ ଆବଦ୍ଧ । ତେବେ ଶାସ୍ତ୍ରବାକ୍ୟ ଲଙ୍ଘନ କରି ଆପଣ ମତେ ଛାଡ଼ି ଦେଉଅଛନ୍ତି କିପରି ?''

ସାବିତ୍ରୀଙ୍କର ଅକାଟ୍ୟ ଯୁକ୍ତି ଶୁଣି ଯମ ସ୍ତବ୍ଧ ହୋଇଗଲେ । ତାଙ୍କର ବଜ୍ର-କଠିନ ହୃଦୟ ତରଳିଗଲା । ସେ ଭାବିଲେ, ଧନ୍ୟ ସାବିତ୍ରୀ ! ତୁମକୁ ପାଇ ତୁମର ବଂଶ, ଦେଶ, ଏପରିକି ସମୁଦାୟ ପୃଥିବୀ ଧନ୍ୟ ହୋଇଅଛି । ପ୍ରକାଶ୍ୟରେ କହିଲେ, ''ସାବିତ୍ରୀ, ମୁଁ ତୁମର ଅମୃତତୁଲ୍ୟ ବାକ୍ୟରେ ଅତିଶୟ ଆନନ୍ଦିତ ହୋଇଅଛି । ତୁମର ଆଉ କିଛି ବର ପ୍ରାର୍ଥନା କରିବାର ଅଛି କର ।''

ସାବିତ୍ରୀ କହିଲେ, ''ମୁଁ ଆଉ ଲୋଭ କରିବି ନାହିଁ । ଲୋଭରୁ ପାପ, ପାପରୁ ମୃତ୍ୟୁ ହୁଏ । କେବଳ ଏହି ଆଶୀର୍ବାଦ କରନ୍ତୁ ଯେ ମୋର ଯେପରି ସର୍ବଦା ଧର୍ମରେ ମତି ରହେ ।''

ଯମ କହିଲେ, ''ସାବିତ୍ରୀ, କିଛି ଭୟ ନାହିଁ; ତୁମେ ସତ୍ୟବାନଙ୍କ ଜୀବନ ଛାଡ଼ି ଅନ୍ୟ ଯେ କୌଣସି ବର ମାଗି ପାର । ତୁମ ପରି ପତିବ୍ରତାକୁ ପାପ ସ୍ପର୍ଶ କରି ନ ପାରେ ।''

ସାବିତ୍ରୀ ଦେଖିଲେ, ଏହି ଉପଯୁକ୍ତ ଅବସର । ସେ ଏଥର ଗୋଟିଏ ବଡ଼ କୂଟ ବର ପ୍ରାର୍ଥନା କଲେ । ସାବିତ୍ରୀ କହିଲେ, ''ପ୍ରଭୁ, ଯଦି ଏତେ ସନ୍ତୁଷ୍ଟ ହୋଇଅଛନ୍ତି, ତାହାହେଲେ ଏହି ବର ଦିଅନ୍ତୁ ଯେ, ସ୍ୱାମୀଙ୍କ ଔରସରେ ମୋର ଶତ ପୁତ୍ରଜାତ ହେବେ ।''

ଯମରାଜଙ୍କର ଆଉ ସେତେବେଳକୁ ସ୍ଥିରଭାବରେ ଭାବିବାର ସମୟ ନାହିଁ । ସେ କୌଣସି ପ୍ରକାରେ ସାବିତ୍ରୀଙ୍କ ହାତରୁ ମୁକ୍ତି ପାଇବାକୁ ବ୍ୟଗ୍ର । ସାବିତ୍ରୀଙ୍କ ପ୍ରାର୍ଥନା ଶୁଣି ସେ ତତ୍କ୍ଷଣାତ୍ କହିଲେ, "ତୁମେ ପରମ ତେଜସ୍ୱୀ ଶତ ପୁତ୍ର ଲାଭ କର । ସେମାନଙ୍କ ଯଶ ଚାରିଦଗରେ ବ୍ୟାପ୍ତ ହେଉ ।"

ଏତିକ କହିଦେଇ ଯମ ଅତି ଶୀଘ୍ର ଅଗ୍ରସର ହେବାକୁ ଲାଗିଲେ । ସାବିତ୍ରୀ ମଧ୍ୟ ମନେ ମନେ ଟିକିଏ ହସି ତାଙ୍କର ଅନୁସରଣ କଲେ । ଯମ ଆଉ ଥରେ ଫେରି ଦେଖିଲେ—ପଛେ ପଛେ ସାବିତ୍ରୀ । ଏଥର ସେ ଅତିଶୟ ବିସ୍ମିତ ହୋଇ କହିଲେ, "ସାବିତ୍ରି, ମୁଁ ତୁମର ସବୁ ଇଚ୍ଛା ପୂରଣ କଲି, ଗୋଟି ଗୋଟି କରି ତୁମକୁ ଚାରି ବର ପ୍ରଦାନ କଲି, ତଥାପି ତୁମେ ସାଙ୍ଗରେ ଆସୁଅଛ କାହିଁକି ? ଯାହା କଦାପି ହୋଇ ନ ପାରେ, ଯାହା ମୋର ଶକ୍ତିର ଅତୀତ, ମୁଁ ତାହା ଦେଇ ପାରିବି କିପରି ? ସାବିତ୍ରି, ତୁମେ ସବୁ ଶାସ୍ତ୍ରରେ ନିପୁଣା; ମୋର ଆଜି ଏତିକି ଅନୁରୋଧ ଯେ, ବିଧାତାଙ୍କର ଚିରନ୍ତନ ନିୟମର ମର୍ଯ୍ୟାଦା ରକ୍ଷାକର— ବର୍ତ୍ତମାନ ଗୃହକୁ ଫେର ।"

ସାବିତ୍ରୀ କହିଲେ, "ଆପଣ ସ୍ୱୟଂ ଧର୍ମରାଜ, ପ୍ରାଣୀର ପାପପୁଣ୍ୟର ବିଚାରକର୍ତ୍ତା । ଆପଣ ଏପରି ଅସଙ୍ଗତ କଥା କହୁଅଛନ୍ତି କିପରି ? ଆପଣଙ୍କ ବାକ୍ୟ କଦାପି ମିଥ୍ୟା ହେବାର ନୁହେଁ । ଆପଣ ବର୍ତ୍ତମାନ ମତେ ବର ଦେଲେ ଯେ, ସ୍ୱାମୀଙ୍କ ଔରସରେ ମୋର ଶତପୁତ୍ର ଜାତ ହେବେ । ଆପଣ ତ ସ୍ୱୟଂ ସ୍ୱାମୀଙ୍କୁ ନେଇ ଯାଉ-ଅଛନ୍ତି, ଆପଣଙ୍କ କଥା ସତ୍ୟ ହେବ କିପରି ? ଆପଣ ନିଜେ ଏହାର ବ୍ୟବସ୍ଥା କରିଯାଆନ୍ତୁ ।"

ସାବିତ୍ରୀଙ୍କ କଥା ଶୁଣି ଯମ ନିର୍ବାକ୍ ହୋଇଗଲେ । ତାଙ୍କର ବୋଧ ହେଲା, ଯେପରି ଏପର୍ଯ୍ୟନ୍ତ ସେ ଏକ ବିଷମ ମୋହଜାଲରେ ଜଡ଼ିତ ଥିଲେ । ସାବିତ୍ରୀଙ୍କ କଥାର କୁହୁକରେ ସେ ନିଜର ଦିବ୍ୟଜ୍ଞାନ ହରାଇ ଯେପରି କେଉଁ ସ୍ୱପ୍ନରାଜ୍ୟରେ ବିଚରଣ କରୁଥିଲେ । ବର୍ତ୍ତମାନ ତାଙ୍କର ଜ୍ଞାନଚକ୍ଷୁ ଫିଟିଲା । ସେ ଦେଖି ପାରିଲେ, ସାବିତ୍ରୀଙ୍କ ହାତରେ ସେ ଗୋଟିଏ କ୍ରୀଡ଼ାପୁତ୍ତଳିକା ପରି ହୋଇଅଛନ୍ତି ।

ଯମରାଜ ଶେଷରେ ସାବିତ୍ରୀଙ୍କ ଆଡ଼କୁ ମୁଗ୍ଧଦୃଷ୍ଟିରେ ଅନାଇ ରହି କହିଲେ, "ସାବିତ୍ରି, ଧର୍ମବଳରେ ତୁମେ ଆଜି ଅସମ୍ଭବ ସମ୍ଭବ କରିଅଛ । ଯାହା କେବେ କେହି

ଶୁଣି ନାହିଁ, ତାହା ତୁମେ ଆଜ ପ୍ରତ୍ୟକ୍ଷ କରିଦେଲ । ତୁମ ଯୋଗୁଁ ଆଜ ଗୋଟାଏ ସନାତନ ପ୍ରଥା ବଦଳିଗଲା । ନିଜେ ଧର୍ମରାଜ ଆଜ ତୁମ ନିକଟରେ ପରାଜିତ ହୋଇଗଲେ । ସାବିତ୍ରି, ଜଗତରେ ତୁମର ତୁଳନା ନାହିଁ । ତୁମେ ଆଜ ଯେଉଁ ଉଚ୍ଚ ଆଦର୍ଶ ସ୍ଥାପନ କଲ, ତାହା ଚିରକାଳ ନାରୀର ଚରମ ଆଦର୍ଶ ହୋଇ ରହିବ । ସତୀଧର୍ମର ଗୌରବ ରକ୍ଷା ଲାଗି ମୁଁ ସତ୍ୟବାନଙ୍କ ଜୀବନ ଫେରାଇ ଦେଉଅଛି, ଗ୍ରହଣ କର । ଆଶୀର୍ବାଦ କରୁଅଛି, ତୁମେ ସ୍ୱାମୀଙ୍କ ସଙ୍ଗେ ଚାରି ଶତ ବର୍ଷ ମର୍ତ୍ତ୍ୟରେ ରହି କାଳଯାପନ କର । ତୁମର ଯଶ ଯୁଗେ ଯୁଗେ ପୃଥିବୀରେ ଘୋଷିତ ହେଉ ଏବଂ ସମସ୍ତେ ତୁମର ଆଦର୍ଶରେ ଜୀବନ ଗଠନ କରି କୃତାର୍ଥ ହୁଅନ୍ତୁ ।"

ଏହା କହି ଯମରାଜ ସାବିତ୍ରୀଙ୍କ ହାତରେ ସତ୍ୟବାନଙ୍କ ଆତ୍ମା ସମର୍ପଣ କରିଦେଇ ଅନ୍ତର୍ହିତ ହୋଇଗଲେ । ସାବିତ୍ରୀ ପରମ ଆନନ୍ଦରେ ସତ୍ୟବାନଙ୍କ ନିକଟକୁ ଫେରି ଆସିଲେ ।



# ଏକାଦଶ ପରିଚ୍ଛେଦ

ସାବିତ୍ରୀ ସ୍ୱାମୀଙ୍କ ମୃତ ଦେହକୁ କୋଡ଼ରେ ଧରି ସେହି ବନ ମଧ୍ୟରେ ବସି ରହିଲେ । କ୍ରମେ ସତ୍ୟବାନଙ୍କର ଶ୍ୱାସପ୍ରଶ୍ୱାସ ଫେରି ଆସିଲା, ଅଙ୍ଗପ୍ରତ୍ୟଙ୍ଗ ଟିକିଏ ସଞ୍ଚାଳିତ ହେବାକୁ ଲାଗିଲା । ସେ ଚକ୍ଷୁ ଖୋଲି ଚାରି ଆଡ଼କୁ ଥରେ ଅନାଇଲେ ଏବଂ ପୁନରାୟ ଚକ୍ଷୁ ବୁଜିଲେ । ଏତେବେଳକେ ସାବିତ୍ରୀଙ୍କ ଦେହରେ ଟିକିଏ ଜୀବନ ପଶିଲା । ସେ ଏ ପର୍ଯ୍ୟନ୍ତ ଯେପରି ଅଚୈତନ୍ୟ ଅବସ୍ଥାରେ ଥିଲେ । ତାଙ୍କର ସଂସାରର କିଛି ଜ୍ଞାନ ନ ଥିଲା । ବର୍ତ୍ତମାନ ନବଜୀବନ ପାଇ ସେ ସ୍ୱାମୀଙ୍କ ଦେହ ମୁଣ୍ଡ ଆଉଁସିବାକୁ ଲାଗିଲେ । ସତ୍ୟବାନ୍ ଆଉ ଥରେ ଚକ୍ଷୁ ଖୋଲି ଉଠିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । କିଛିକ୍ଷଣ ପରେ ତାଙ୍କ ପୂର୍ଣ୍ଣ ଚୈତନ୍ୟ ହେଲା । ସେ ସେହିପରି ସାବିତ୍ରୀଙ୍କ କୋଳରେ ଶୋଇ କହିଲେ, "ସାବିତ୍ରି, ତୁମେ ସେତିକିବେଳୁ କଣ ମୋତେ ସେହିପରି ଧରି ବସିଛ ? ମୁଁ ଅନେକଗୁଡ଼ାଏ ଶୋଇପଡ଼ିଲି । ବର୍ତ୍ତମାନ ଦେହଟା ଟିକିଏ ଭଲ ବୋଧ ହେଉଛି । ମୁଁ କେତେ ଗୁଡ଼ାଏ କଣ ଦୁଃସ୍ୱପ୍ନ ଦେଖିଲି, ଭଲ ମନେ ନାହିଁ । ବର୍ତ୍ତମାନ ରାତି କେତେ ହେବ ?"

ସାବିତ୍ରୀ କହିଲେ, "ରାତି ଅନେକ ହୋଇଗଲାଣି—ପ୍ରାୟ ତୃତୀୟ ପ୍ରହର ହେବ ।"

ସତ୍ୟବାନ୍ ଧଡ଼ପଡ଼ ହୋଇ ଉଠି କହିଲେ, "ସାବିତ୍ରି, ତେବେ ତ ବଡ଼ ଅନର୍ଥ ହେଲା । ଆମ୍ଭମାନଙ୍କୁ ନ ଦେଖି ପିତା ମାତା ବଡ଼ ବ୍ୟସ୍ତ ହେଉଥିବେ । ତୁମେ ମତେ ଟିକିଏ ଆଗରୁ ଉଠାଇ ଦେଲ ନାହିଁ କାହିଁକି ? ଚାଲ ଶୀଘ୍ର ଆଶ୍ରମକୁ ଯିବା । ପିତା ମାତାଙ୍କ ଲାଗି ମୋର ମନ ବଡ଼ ଚଞ୍ଚଳ ହେଉଛି ।"

ସାବିତ୍ରୀ କହିଲେ, "ଅନ୍ଧକାରରେ ପଥର ଚିହ୍ନ ପର୍ଯ୍ୟନ୍ତ ଦେଖାଯାଉ ନାହିଁ । ତାହା ଛଡ଼ା ତୁମେ ବଡ଼ ଦୁର୍ବଳ ହୋଇ ପଡ଼ିଅଛ - ତୁମର ଉଠିବାକୁ ଶକ୍ତି ନାହିଁ । ଏପରି ଅବସ୍ଥାରେ ଏତେ ବାଟ ଚାଲିକରି ଯିବ କିପରି ? ମୁଁ କହୁଛି, ରାତିଟା ଏହି ବଣରେ କଟାଇ ଦେଇ ସକାଳେ ଆଶ୍ରମକୁ ଫେରିବା ।"

ସତ୍ୟବାନ୍ କହିଲେ, "ନା, ସାବିତ୍ରି, ପିତା ମାତା ମତେ କ୍ଷଣେ ନ ଦେଖିଲେ ପାଗଳ ପରି ହୋଇଯାଆନ୍ତି । ଆମ୍ଭେମାନେ ଏତେ ସମୟ ଏଠାରେ ରହିଲେଣି, ଏତେ ବିଳମ୍ବ ଦେଖି ସେମାନେ ବଡ଼ ଅଧୀର ହେଉଥିବେ । ଆଜି କଣ ଯେ ଅନର୍ଥ ହେବ, ଜଣା ନାହିଁ । ମୋର ଆଉ ତିଳେ ଏଠାରେ ରହିବାକୁ ଇଚ୍ଛା ନାହିଁ । ସେଥିଲାଗି ତୁମେ ଚିନ୍ତା କର ନାହିଁ, ମୋର କୌଣସି କଷ୍ଟ ହେବ ନାହିଁ । ଚାଲ, ଗୋଟିଏ ଗୋଟିଏ ଶୀଘ୍ର ଆଶ୍ରମକୁ ଯିବା ।"

ସାବିତ୍ରୀ ଦେଖିଲେ, ସତ୍ୟବାନ୍ ପିତାମାତାଙ୍କ ଭାବନାରେ ଏକାବେଳକେ ବିହ୍ୱଳ ହୋଇ ପଡ଼ିଅଛନ୍ତି, ତାଙ୍କୁ ଆଉ ବାଧା ଦେବା ବୃଥା । ସେ ନିଜେ ମଧ୍ୟ ଶାଶୁ ଶ୍ୱଶୁରଙ୍କର ଉଦ୍‌ବେଗ କଥା ବୁଝି ପାରିଲେ । ସାବିତ୍ରୀ ଆଉ କୌଣସି କଥା ନ କହି ସ୍ୱାମୀଙ୍କ ସଙ୍ଗେ ସଙ୍ଗେ ଅଗ୍ରସର ହେଲେ । ସତ୍ୟବାନ୍ ସାବିତ୍ରୀଙ୍କ କାନ୍ଧରେ ଭର ଦେଇ ଧୀରେ ଧୀରେ ଚାଲିବାକୁ ଲାଗିଲେ ।

ଏଣେ ଅନ୍ଧ ରାଜର୍ଷି ଓ ରାଣୀ ସାବିତ୍ରୀ ସତ୍ୟବାନଙ୍କର ଆସିବାର ବିଳମ୍ବ ଦେଖି ଅତିଶୟ ଚଞ୍ଚଳ ହୋଇ ଉଠିଲେ । ସେମାନଙ୍କର ଉତ୍କଣ୍ଠା କ୍ରମେ ବଢ଼ିବାକୁ ଲାଗିଲା । ସେମାନେ ଦୁଃଖରେ କାତର ହୋଇ ନାନା ଆଶଙ୍କା କରିବାକୁ ଲାଗିଲେ । କ୍ରମେ ରଜନୀ ବେଶି ଗମ୍ଭୀର ହେବାରୁ ସେମାନେ ଅସ୍ଥିର ହୋଇ କ୍ରନ୍ଦନ କରିବାକୁ ଲାଗିଲେ ।

ନିକଟବର୍ତ୍ତୀ କୁଟୀରର ମୁନିମାନେ ରୋଦନଧ୍ୱନି ଶୁଣି ପାରି କାରଣ କଣ ବୁଝିବାକୁ ଆସିଲେ । ସାବିତ୍ରୀ ଓ ସତ୍ୟବାନଙ୍କୁ ସମସ୍ତେ ଆନ୍ତରିକ ସ୍ନେହ ଓ ଶ୍ରଦ୍ଧା କରନ୍ତି— ସେମାନେ ତପୋବନର ପ୍ରାଣସ୍ୱରୂପ । ସେମାନଙ୍କର ଆସିବାରେ ବିଳମ୍ବ ଦେଖି ଋଷିମାନେ ମଧ୍ୟ ଟିକିଏ ବିଚଳିତ ହୋଇ ପଡ଼ିଲେ । ସେମାନେ ବୃଦ୍ଧ ଦମ୍ପତିଙ୍କୁ ନାନା ପ୍ରକାର ପ୍ରବୋଧ ଦେବାକୁ ଚେଷ୍ଟା କଲେ । କିନ୍ତୁ କିଛି ଫଳ ହେଲା ନାହିଁ । ରାଜା ଓ ରାଣୀ କାହାରି କଥା ନ ଶୁଣି କେବଳ ବିଳାପ କରିବାକୁ ଲାଗିଲେ । ଶେଷରେ ବୟୋଜ୍ୟେଷ୍ଠ ମୁନିମାନେ ରାଜାଙ୍କୁ କହିଲେ, "ଆପଣ ଏତେ ଅଧୀର ହେଉଅଛନ୍ତି କାହିଁକି ? ସାବିତ୍ରୀ ସତ୍ୟବାନଙ୍କର କୌଣସି ଅମଙ୍ଗଳ ହେବ ନାହିଁ, ବିଶେଷତଃ ଆପଣଙ୍କ ପୁତ୍ରବଧୂ ପରମା ସାଧ୍ୱୀ । ସେ 'ତ୍ରିରାତ୍ରବ୍ରତ' ପରେ ସ୍ୱାମୀଙ୍କ ସଙ୍ଗେ ସଙ୍ଗେ କବଚସ୍ୱରୂପ ହୋଇ ଯାଇଅଛନ୍ତି । କୌଣସି ବିପଦ ସେମାନଙ୍କୁ ସ୍ପର୍ଶ କରି ପାରିବ ନାହିଁ । ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ବୋଧହୁଏ, କୌଣସି କାରଣରୁ ଟିକିଏ ବିଳମ୍ବ ହୋଇ ଯାଇଅଛି, ସେମାନେ ଶୀଘ୍ର ଫେରି ଆସିବେ ।"

ଦ୍ୟୁମତ୍ସେନ ଟିକିଏ ଶାନ୍ତ ହେଲେ ସତ୍ୟ, କିନ୍ତୁ ଆଶ୍ୱସ୍ତ ହେଲେ ନାହିଁ । ଏପରି ସମୟରେ ସେ ଅକସ୍ମାତ୍ ତାଙ୍କର ଦୃଷ୍ଟିଶକ୍ତି ଫେରି ପାଇଲେ । ବାହ୍ୟପ୍ରକୃତି ଓ ତାଙ୍କ ମଧ୍ୟରେ ଏତେଦିନ ଯାଏ ଯେ ଗୋଟାଏ ଦୁର୍ଭେଦ୍ୟ ପରଦା ପଡ଼ିଥିଲା, ସେଇଟା ଘୁଞ୍ଚିଗଲା । ସେ ପୁନର୍ବାର ପୃଥିବୀର ନିର୍ମଳ ଆଲୋକ ଅନୁଭବ କରି ପାରିଲେ । ଏ ଘଟନା ଦେଖି କାହାରି ବିସ୍ମୟର ସୀମା ରହିଲା ନାହିଁ । ସମସ୍ତେ ଏହାକୁ ଗୋଟିଏ ଶୁଭ ଲକ୍ଷଣ ମନେ କରି ସାବିତ୍ରୀ ସତ୍ୟବାନଙ୍କ ବିଷୟରେ ଟିକିଏ ନିଶ୍ଚିନ୍ତ ହେଲେ । କିନ୍ତୁ ଚକ୍ଷୁ ପାଇ ମଧ୍ୟ ରାଜା ଆନନ୍ଦିତ ହୋଇ ପାରିଲେ ନାହିଁ । ପୁତ୍ର ଓ ପୁତ୍ର-ବଧୂଙ୍କୁ ନ ଦେଖି ସଂସାର ତାଙ୍କ ପକ୍ଷରେ ସେହିପରି ଅନ୍ଧକାର ହୋଇ ରହିଲା । ଏହିପରି ଭାବରେ ରାତି ପ୍ରାୟ ଶେଷ ହୋଇ ଆସିଲା ।

ଉଷାର ପ୍ରଥମ ଆଲୋକ ସଙ୍ଗେ ସଙ୍ଗେ ସାବିତ୍ରୀ ଓ ସତ୍ୟବାନ ଉଜ୍ଜ୍ୱଳ ରଶ୍ମି-ରେଖା ପରି ଆସି ପିତା ମାତାଙ୍କର ଚରଣ ବନ୍ଦନା କଲେ । ରାଜା ପୁତ୍ର ଓ ପୁତ୍ରବଧୂଙ୍କୁ ଏକସଙ୍ଗରେ ଦେଖି ଚକ୍ଷୁ ସାର୍ଥକ କଲେ । ସମସ୍ତଙ୍କ ଉଦ୍‌ବେଗ ଦୂର କରିବା ଲାଗି ସାବିତ୍ରୀ ପୂର୍ବ ରାତ୍ରିର ଘଟନା ସଂକ୍ଷେପରେ ବର୍ଣ୍ଣନା କଲେ । ଏ କଥା ଶୁଣି ସମସ୍ତେ ବିସ୍ମୟରେ ଅବାକ୍ ହୋଇ ରହିଲେ । ପରେ ସମସ୍ତେ ମିଳି ସାବିତ୍ରୀଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ଶାଶୂ ଶ୍ୱଶୁରଙ୍କ ହୃଦୟ ଆନନ୍ଦରେ ପୂର୍ଣ୍ଣ ହୋଇ ଉଠିଲା । ସେମାନେ କେବଳ ନୀରବରେ ସାବିତ୍ରୀଙ୍କୁ ଆଶୀର୍ବାଦ କଲେ । ସତ୍ୟବାନ୍ ନିଜକୁ ପରମ ଭାଗ୍ୟବାନ୍ ମନେ କରି ସାବିତ୍ରୀଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ଏ ଅଦ୍ଭୁତ ସମ୍ବାଦ ଦାବାନଳ ପରି ଦେଶଦେଶାନ୍ତରରେ ବ୍ୟାପ୍ତ ହୋଇଗଲା । ଏ ଶୁଭସମ୍ବାଦ ଶୁଣି ଅଶ୍ୱପତି ଓ ମାଳବୀ ଦେବୀଙ୍କର ଆଉ ଆନନ୍ଦର ସୀମା ରହିଲା ନାହିଁ । ବହୁ ଦିନର ଗୋଟାଏ ଦୁର୍ଭାବନା ସେମାନଙ୍କ ମନରୁ ଅନ୍ତର୍ହିତ ହୋଇଗଲା ।

ସୁଖ ଯେତେବେଳେ ଆସେ, ସମୁଦ୍ରଲହରୀ ପରି ତା ପଛକୁ ତା ପଛକୁ ଆସେ । କିଛିଦିନ ପରେ ଦ୍ୟୁମତ୍ସେନଙ୍କର ପ୍ରାଚୀନ ମନ୍ତ୍ରୀମାନେ ଶତ୍ରୁକୁ ପରାଜିତ କରି ଦ୍ୟୁମତ୍ସେନଙ୍କୁ ପୁନର୍ବାର ସିଂହାସନରେ ବସାଇବେ ବୋଲି ଆସି ତପୋବନରେ ଉପସ୍ଥିତ ହେଲେ । ରାଜଦମ୍ପତି ସାବିତ୍ରୀ ସତ୍ୟବାନଙ୍କୁ ଘେନି ବହୁକାଳପରେ ମନ୍ତ୍ରୀମାନଙ୍କ ସଙ୍ଗେ ରାଜ୍ୟକୁ ଫେରିଆସିଲେ । ତପୋବନର ସମସ୍ତ ମୁନି ଋଷି ସାଶ୍ରୁନୟନରେ ସେମାନଙ୍କୁ ବିଦାୟ ଦେଲେ । ତପୋବନ ପୁଣି ଅନ୍ଧକାରରେ ବୁଡ଼ିଗଲା ।

ଦ୍ୟୁମତ୍‌ସେନଙ୍କୁ ସପରିବାରରେ ପାଇ ପ୍ରଜାମାନେ ଆନନ୍ଦ କୋଳାହଳ କରିବାକୁ ଲାଗିଲେ । ଉତ୍ସବ ଆମୋଦରେ ଶାଲ୍ୱଦେଶ ପୂର୍ଣ୍ଣ ହୋଇଗଲା ।

ଦ୍ୟୁମତ୍‌ସେନ କିନ୍ତୁ ଏ ବୟସରେ ଆଉ ରାଜକାର୍ଯ୍ୟରେ ଲିପ୍ତ ହେବାକୁ ଇଚ୍ଛା କଲେ ନାହିଁ । ସେ ସତ୍ୟବାନଙ୍କୁ ସିଂହାସନରେ ବସାଇ ଦେଇ ପତ୍ନୀଙ୍କ ସଙ୍ଗେ ପୁନର୍ବାର ଯାଇ ତପୋବନରେ ଆଶ୍ରୟ ନେଲେ । ସତ୍ୟବାନ୍ ପୁତ୍ର ପରି ପ୍ରଜାମାନଙ୍କୁ ପାଳନ କରି ସାବିତ୍ରୀଙ୍କ ସଙ୍ଗେ ପରମ ସୁଖରେ କାଳଯାପନ କଲେ । ବିଧାତାଙ୍କର ଉଦ୍ଦେଶ୍ୟ ସାଧିତ ହେଲା ।

ଅଶ୍ୱପତିଙ୍କର ଯଥାସମୟରେ ଶତପୁତ୍ର ଜାତ ହେଲେ । ସାବିତ୍ରୀଙ୍କ ଅଦ୍ଭୁତ ସାଧନାବଳରେ ଉଭୟ କୁଳ ରକ୍ଷା ହେଲା ।

ଧନ୍ୟ ସାବିତ୍ରି ! ଧନ୍ୟ ତୁମ୍ଭର ମହିମା ! ତୁମ୍ଭର ଉଜ୍ଜ୍ୱଳ ଆଦର୍ଶ ଭାରତର ଘରେ ଘରେ ସ୍ଥାପିତ ହେଉ । ପତିତ ଭାରତ ନବଜୀବନ ଲାଭ କରି ପୁନର୍ବାର ନବୀନ ତେଜରେ ଜାଗ୍ରତ ହୋଇ ଉଠୁ ।



# ପ୍ରଥମ ପରିଚ୍ଛେଦ

ଗଙ୍ଗାର ଉତ୍ତର ତଟରେ ଓ ହିମାଚଳର ପାଦଦେଶରେ ଯେଉଁ ପ୍ରଦେଶ ବର୍ତ୍ତମାନ ଉତ୍ତର ବିହାର ବୋଲି ପରିଚିତ, ତାହାର ପ୍ରାଚୀନ ନାମ ମିଥିଳା ଥିଲା । ଏହି ମିଥିଳା ରାଜ୍ୟରେ ଅତି ପୂର୍ବକାଳରେ ଜନକ ନାମରେ ଜଣେ ପ୍ରତାପଶାଳୀ ଓ ପରମଧାର୍ମିକ ନରପତି ଥିଲେ । ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ଭାରତଭୂମିରେ ଏ ରାଜ୍ୟର ତୁଳନା ନ ଥିଲା । ମିଥିଳାର କ୍ଷେତରେ ପ୍ରଚୁର ଶସ୍ୟ, ଉଦ୍ୟାନରେ ଅମୃତ ତୁଲ୍ୟ ଫଳ, ନଦୀରେ ସ୍ଫଟିକଧାରା ପରି ସ୍ୱଚ୍ଛ ଜଳ । ପ୍ରକୃତିର ମଧୁର ହାସ୍ୟରେ ଚତୁର୍ଦ୍ଦିଗ ସର୍ବଦା ଉଜ୍ଜ୍ୱଳ । ଦେଖିଲେ ମନେ ହୁଏ, ଯେପରି କମଳା ଏଠାରେ ନିଜର ସ୍ୱର୍ଣ୍ଣାସନ ସ୍ଥାପନ କରିଅଛନ୍ତି । ଜନକଙ୍କର ଇନ୍ଦ୍ରପୁରୀ ପରି ରାଜଧାନୀ, କୁବେର ଭଣ୍ଡାର ପରି ଧନରାଶି । କିନ୍ତୁ ଏତେ ଭୋଗ୍ୟ ବସ୍ତୁଦ୍ୱାରା ବେଷ୍ଟିତ ହୋଇ ସୁଦ୍ଧା ରାଜା ଭୋଗବିଳାସରେ ଅନାସକ୍ତ, ସାଂସାରିକ ସୁଖରେ ନିଃସ୍ପୃହ । ଏହା ବୋଲି ରାଜକାର୍ଯ୍ୟ ପରିଚାଳନରେ ବା ଗୃହସ୍ଥର କର୍ତ୍ତବ୍ୟ ପାଳନରେ ସେ ଯେ ବିମୁଖ ଥିଲେ ତାହା ନୁହେଁ । ତତ୍ତ୍ୱଜ୍ଞାନୀ ମୁନିଋଷିମାନେ ଶାସ୍ତ୍ରାଲୋଚନା କରିବାକୁ ଯେପରି ତାଙ୍କ ନିକଟକୁ ଆସୁଥିଲେ, ବଡ଼ ବଡ଼ ରାଜମନ୍ତ୍ରୀ ରାଜାମାନେ ସେହିପରି ତାଙ୍କର ରାଜକାର୍ଯ୍ୟର ଭୂୟସୀ ପ୍ରଶଂସା କରୁଥିଲେ ଓ ସାଧାରଣ ଗୃହସ୍ଥମାନେ ତାଙ୍କର ଗମ୍ଭୀର ବିଷୟବୁଦ୍ଧି ଦେଖି ବିସ୍ମିତ ହେଉଥିଲେ । ଜନକ ଏକାଧାରରେ ବ୍ରହ୍ମଜ୍ଞାନୀ ଋଷି, ଆଦର୍ଶ ରାଜା ଓ କର୍ତ୍ତବ୍ୟନିଷ୍ଠ ଗୃହୀ ଥିଲେ । ସେ ବିଶାଳ ରାଜ୍ୟଭାର ଗ୍ରହଣ କରି ସୁଦ୍ଧା ଋଷିବ୍ରତଧାରୀ ଥିଲେ ବୋଲି ଲୋକେ ତାଙ୍କୁ "ରାଜର୍ଷି" ବୋଲି କହୁଥିଲେ । ଏଥିଲାଗି ସେ ଯୁଗେ ଯୁଗେ ଆଦର୍ଶ ସଂସାରୀ ବୋଲି ପରିଚିତ ।

ଜନକ ରାଜାଙ୍କର ସନ୍ତାନାଦି କିଛି ନ ଥିଲେ । କିନ୍ତୁ ସେଥିପାଇଁ ତାଙ୍କ ମନରେ ତିଳେ ମାତ୍ର ଦୁଃଖ ନ ଥିଲା । ପ୍ରବାଦ ଅଛି, ଦିନେ ରାଜର୍ଷି ହଳଦ୍ୱାରା ଯଜ୍ଞକ୍ଷେତ୍ର କର୍ଷଣ କରୁଅଛନ୍ତି, ଏପରି ସମୟରେ ତାଙ୍କ ଲଙ୍ଗଳ ମୁଖରୁ ଗୋଟିଏ କନ୍ୟା ବାହାରିଲା । ଏପରି ଅବସ୍ଥାରେ ସେପରି ଲାବଣ୍ୟମୟୀ ସର୍ବସୁଲକ୍ଷଣା କନ୍ୟାଟିକୁ ଦେଖି ଜନକ ବିସ୍ମିତ ହୋଇଗଲେ । ଦେବତାଙ୍କର ଆଶୀର୍ବାଦ ମନେ କରି ସେ ତତ୍‌କ୍ଷଣାତ୍ ତାହାକୁ କୋଡ଼ରେ ଗ୍ରହଣ କଲେ ଓ ଗୃହକୁ ଯାଇ ସସ୍ନେହରେ ପତ୍ନୀଙ୍କ ନିକଟରେ ଅର୍ପଣ କରିଦେଲେ । ଅପ୍ରତ୍ୟାଶିତରୂପେ ଏପରି କନ୍ୟାରତ୍ନଟିଏ ପାଇ ଜନକପତ୍ନୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ତାକୁ ବହୁ ଯତ୍ନରେ ନିଜର

କନ୍ୟାଠାରୁ ବଳି ଆଦରରେ ଲାଳନ ପାଳନ କରିବାକୁ ଲାଗିଲେ । ଲାଙ୍ଗଳ ମୁଖରୁ ବାହାରି ଥିଲା ବୋଲି ଜନକ ତାହାର ନାମ ଦେଲେ "ସୀତା" ।

ବୟୋବୃଦ୍ଧି ସଙ୍ଗେ ସଙ୍ଗେ ସୀତାଙ୍କର ସୁକୁମାର ଦେହରେ ରୂପଜ୍ୟୋତି ପ୍ରସ୍ଫୁଟିତ ହେବାକୁ ଲାଗିଲା । କେବଳ ଦେହର ବର୍ଣ୍ଣରେ ଓ ଅଙ୍ଗ-ପ୍ରତ୍ୟଙ୍ଗର ଗଠନରେ ସୀତାଙ୍କର ରୂପ ନ ଥିଲା; ସୀତାଙ୍କର ରୂପ ଥିଲା ତାଙ୍କର ଭାବରେ, ତାଙ୍କର ଅପୂର୍ବ ଜ୍ୟୋତିରେ । ତାଙ୍କୁ ଦେଖି ବୋଧ ହେଉଥିଲା, ଯେପରି କୌଣସି ଦେବକନ୍ୟା ଭୂତଳରେ ଅବତୀର୍ଣ୍ଣ ହୋଇଅଛନ୍ତି । ଯେ ତାଙ୍କୁ ଦେଖୁଥିଲା ସେ ଅନିମେଷ ହୋଇ ଚାହିଁ ରହୁଥିଲା ! ସାଧୁ ସନ୍ନ୍ୟାସୀମାନେ ସୀତାଙ୍କୁ ଦେଖି ବିଶ୍ୱଜନନୀଙ୍କର ରୂପ ମନରେ କଳ୍ପନା କରୁଥିଲେ ଓ ଭକ୍ତିରେ ସେମାନଙ୍କର ମସ୍ତକ ସ୍ୱତଃ ଅବନତ ହୋଇ ପଡୁଥିଲା । ବାହ୍ୟ ସୌନ୍ଦର୍ଯ୍ୟ ଅପେକ୍ଷା ତାଙ୍କର ସ୍ୱଭାବର ସୌନ୍ଦର୍ଯ୍ୟ ଆହୁରି ମଧୁର ଓ ଅତୁଳନୀୟ ଥିଲା । ଗୁରୁଜନମାନଙ୍କଠାରେ ଭକ୍ତି, ଦେବଦ୍ୱିଜରେ ଶ୍ରଦ୍ଧା, ଆଶ୍ରିତ ଲୋକ ପ୍ରତି ଦୟା ଯୋଗୁଁ ସେ ସମସ୍ତଙ୍କର ପରମ ଆଦରର ପାତ୍ରୀ ଥିଲେ ।

ରାଜର୍ଷିଙ୍କର ସଭାରେ ମୁନି ଋଷି ଓ ସାଧୁ ସନ୍ନ୍ୟାସୀ କେତେବେଳେ ଛାଡ଼ ନ ଥିଲେ । ସୀତା ସେମାନଙ୍କଠାରୁ ତପୋବନର ବର୍ଣ୍ଣନା ଶୁଣିବାକୁ ଅତ୍ୟନ୍ତ ଭଲ ପାଉଥିଲେ ଓ ଋଷିକନ୍ୟାମାନଙ୍କର ସରଳ ପବିତ୍ର ଜୀବନ-କଥା ଶୁଣି ମୁଗ୍ଧ ହୋଇ ଯାଉଥିଲେ । ପ୍ରାକୃତିକ ଦୃଶ୍ୟ ଦେଖିବାକୁ ସେ ଅତିଶୟ ଆଗ୍ରହ ପ୍ରକାଶ କରୁଥିଲେ ଓ ସମୟ ସମୟରେ ପିତାଙ୍କର ଅନୁମତି ନେଇ ମୁନି ଋଷିମାନଙ୍କ ଆଶ୍ରମ ଦେଖି ଆସୁଥିଲେ । ଅରଣ୍ୟ ମଧ୍ୟରେ ହରିଣ ଶିଶୁ ପରି ନିର୍ଭୀକ ଭାବରେ ବିଚରଣ କରି ସେ ଯେଉଁ ଆନନ୍ଦ ଲାଭ କରୁଥିଲେ, ଆଉ କୌଣସିଥିରେ ତାଙ୍କର ସେପରି ଆନନ୍ଦ ନ ଥିଲା । ତାଙ୍କର ସରଳ ପବିତ୍ର ହୃଦୟରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଛାୟା ପଡ଼ି ଏକ ସ୍ୱର୍ଗୀୟ ଶୋଭାର ସୃଷ୍ଟି କରିଥିଲା ।

ବାଲ୍ୟକାଳରୁ ବାରବ୍ରତ, ଉପବାସ, ଉପାସନା ପ୍ରଭୃତି ଧର୍ମ କାର୍ଯ୍ୟ ପ୍ରତି ସୀତାଙ୍କର ଅତିଶୟ ଆଗ୍ରହ ଥିଲା । ସେ କ୍ରୀଡ଼ା କୌତୁକ ଅପେକ୍ଷା ଏ ସବୁ କାର୍ଯ୍ୟରେ ବେଶି ଆନନ୍ଦ ଲାଭ କରୁଥିଲେ । ଋଷିମାନଙ୍କଠାରୁ ଯୋଗମାର୍ଗରେ ମଧ୍ୟ ସେ କିଛି ଉପଦେଶ ପାଇଥିଲେ । ତାହାର ଫଳରେ ଚିତ୍ତବୃତ୍ତି ନିରୋଧ କରିବା ଓ ବହିଃ-ପ୍ରକୃତିକୁ ଉପେକ୍ଷା କରିବା ବିଷୟରେ ତାଙ୍କର ଅଦ୍ଭୁତ କ୍ଷମତା ଜନ୍ମିଥିଲା । ଅନିଦ୍ରା, ଅନାହାର ଓ ଶୀତାତପରେ ତାଙ୍କର କିଛିମାତ୍ର କଷ୍ଟ ହେଉ ନ ଥିଲା । ବାଳିକା ହେଲେ ସୁଦ୍ଧା ତାଙ୍କର ତେଜ ଦେଖି ସମସ୍ତେ ବିସ୍ମିତ ହେଉଥିଲେ ।

ସୀତା ବାଲ୍ୟଜୀବନ ଅତିକ୍ରମ କରି ଯୌବନ ସୀମାରେ ଆସି ଉପନୀତ ହେଲେ । ମଳୟ ପବନ ଲାଗି କୁସୁମକଳିକା ଯେପରି ଧୀରେ ଧୀରେ ମୁକୁଳିତ ହୁଏ, ତାଙ୍କର ସୌନ୍ଦର୍ଯ୍ୟ ସେହିପରି କ୍ରମେ ବିକଶିତ ହେବାକୁ ଲାଗିଲା । ସମସ୍ତଙ୍କ ମୁଖରୁ ସୀତାଙ୍କ ରୂପଗୁଣର ପ୍ରଶଂସା ଶୁଣି ଜନକ ମନେ ମନେ ଅତିଶୟ ପୁଲକିତ ହେଉଥିଲେ । କିନ୍ତୁ ଏପରି କନ୍ୟାରତ୍ନକୁ କାହା ହାତରେ ଅର୍ପଣ କରିବେ, ଏହି ଭାବନା ତାଙ୍କୁ ଅନେକ ସମୟରେ ଆକୁଳ କରି ଦେଉଥିଲା । ବହୁ ଚେଷ୍ଟା କରି ସୁଦ୍ଧା ଗୋଟିଏ ଉପଯୁକ୍ତ ପାତ୍ରର ସନ୍ଧାନ ନ ପାଇ ଶେଷରେ ଜନକ ଗୋଟିଏ ଅଦ୍ଭୁତ ପଣ ସ୍ଥିର କରି ବସିଲେ । ପୂର୍ବକାଳରେ ରାଜାମାନଙ୍କ ମଧ୍ୟରେ ବଳବୀର୍ଯ୍ୟର ଅତ୍ୟନ୍ତ ସମାଦର ଥିଲା । ସମସ୍ତ ସମୟରେ ସେମାନେ ବଳ ପରୀକ୍ଷା ଦ୍ୱାରା କନ୍ୟାର ପାତ୍ର ନିର୍ବାଚନ କରୁଥିଲେ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯେ ସମସ୍ତଙ୍କ ଦ୍ୱାରା ଶ୍ରେଷ୍ଠ ବିବେଚିତ ହେଉଥିଲା, ତାହା ହସ୍ତରେ କନ୍ୟା ସମର୍ପଣ କରାହେଉଥିଲା । ଏହି ପ୍ରଥାର ଅନୁବର୍ତ୍ତୀ ହୋଇ ରାଜା ଜନକ ବଳପରୀକ୍ଷାଦ୍ୱାରା ସୀତାଙ୍କୁ ସମ୍ପ୍ରଦାନ କରିବାର ସ୍ଥିର କଲେ । ବହୁକାଳ ପୂର୍ବରୁ ଶିବଧନୁ ଜନକଙ୍କ ଗୃହରେ ନ୍ୟାସସ୍ୱରୂପ ରକ୍ଷିତ ଥିଲା । ସେ ପ୍ରତିଜ୍ଞା କଲେ, ଯେ ଏହି ଧନୁରେ ଗୁଣ ଚଢ଼ାଇ ପାରିବ, ସେ ସୀତାଙ୍କୁ ବିବାହ କରିବ ।

କିଛିଦିନ ମଧ୍ୟରେ ଜନକଙ୍କର ପଣ କଥା ଦେଶ ବିଦେଶରେ ପ୍ରଚାରିତ ହୋଇଗଲା । ସୀତାଙ୍କର ଅସାଧାରଣ ରୂପଗୁଣ କଥା ଶୁଣି ମଧୁଲୋଭୀ ଭ୍ରମର ପରି ନାନା ଦେଶର ରାଜାମାନେ ଆସି ମିଥିଳାରେ ଉପସ୍ଥିତ ହେଲେ । କିନ୍ତୁ ଧନୁରେ ଗୁଣ ଚଢ଼ାଇବା ଦୂରେ ଥାଉ, କେହି ତାକୁ ଭୂମିରୁ ଉତ୍ତୋଳନ କରି ନ ପାରି ବିଫଳ-ମନୋରଥ ହୋଇ ନିଜ ନିଜ ରାଜ୍ୟକୁ ବାହୁଡ଼ି ଗଲେ । କିଛିଦିନ ପର୍ଯ୍ୟନ୍ତ ପ୍ରାୟ ମିଥିଳାରେ ପ୍ରତିଦିନ ଏହି ଦୃଶ୍ୟ ଅଭିନୀତ ହେବାକୁ ଲାଗିଲା । ବଳବିକ୍ରମରେ ସୁବିଖ୍ୟାତ ଅନେକ ରାଜା ଯେତେବେଳେ ଏହିପରି ଅକୃତକାର୍ଯ୍ୟ ହୋଇ ଫେରି ଗଲେ, ସୀତାଙ୍କର ବିବାହ ସମ୍ବନ୍ଧରେ ଲୋକମାନଙ୍କ ମନରେ ନାନା ସନ୍ଦେହ ଉପସ୍ଥିତ ହେଲା । ଏପରି ବିଷମ ପ୍ରତିଜ୍ଞା କରିଥିବା ଯୋଗୁଁ ନିଜେ ଜନକଙ୍କଠାରେ ମଧ୍ୟ ଟିକିଏ ଅନୁତାପର ଭାବ ଦେଖାଗଲା ।

ଏହାର କିଛି ସମୟ ପରେ ରାଜର୍ଷି ଜନକ ଗୋଟିଏ ବିପୁଳ ଯଜ୍ଞର ଆୟୋଜନ କଲେ । ନାନା ଦେଶର ମୁନି ଋଷି ଓ ବ୍ରାହ୍ମଣ ପଣ୍ଡିତମାନେ ନିମନ୍ତ୍ରିତ ହୋଇ ଆସିଲେ । ରାଜ୍ୟରେ ଗୋଟିଏ ହୁଲସ୍ଥୂଲ ପଡ଼ିଗଲା । ନାନାଜାତୀୟ ପୁଷ୍ପର

ସୌରଭରେ ଓ ଧୂପ ଗନ୍ଧରେ ମିଥିଳାନଗରୀ ଆମୋଦିତ ହେବାକୁ ଲାଗିଲା । ମହର୍ଷି ବିଶ୍ୱାମିତ୍ର ଯଥାସମୟରେ ଶିଷ୍ୟମାନଙ୍କ ସହିତ ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ । ଜନକ ଯଥାବିଧି ତାଙ୍କର ଅଭ୍ୟର୍ଥନା କରି ବହୁ ସମାଦରରେ ତାଙ୍କୁ ଉପଯୁକ୍ତ ଆସନରେ ବସାଇଲେ । ତାଙ୍କର ସହଚରମାନଙ୍କ ମଧ୍ୟରେ ଅସ୍ତ୍ରଶସ୍ତ୍ରଧାରୀ ଦୁଇଟି ଯୁବକ ଦେଖି ସମସ୍ତେ ଅତ୍ୟନ୍ତ ବିସ୍ମିତ ହେଲେ । ଋଷିକୁମାରଙ୍କ ପରି ସେମାନଙ୍କର କମନୀୟ ରୂପକାନ୍ତି ଓ ବୀରତ୍ୱବ୍ୟଞ୍ଜକ ସୁକୁମାର ମୂର୍ତ୍ତି ଦେଖି ସମସ୍ତଙ୍କର ଦୃଷ୍ଟି ସ୍ୱତଃ ସେହି ଦିଗକୁ ଆକୃଷ୍ଟ ହୋଇଗଲା । ମନେ ହେଲା, ଯେପରି ଭୂତଳରେ ଦୁଇଟି ଦେବତାଙ୍କର ଆବିର୍ଭାବ ହୋଇଅଛି । ଶେଷରେ ରାଜର୍ଷି କୌତୂହଳବଶତଃ ବିନୀତଭାବରେ ବିଶ୍ୱାମିତ୍ରଙ୍କୁ କୁମାରଦ୍ୱୟଙ୍କର ପରିଚୟ ପଚାରିଲେ ।

ବିଶ୍ୱାମିତ୍ର କହିଲେ, "ଏମାନେ ଅଯୋଧ୍ୟାଧିପତି ମହାରାଜ ଦଶରଥଙ୍କର ପୁତ୍ର ରାମଚନ୍ଦ୍ର ଓ ଲକ୍ଷ୍ମଣ । ଦଶରଥ ବହୁ ପୁଣ୍ୟବଳରୁ ଶେଷ ବୟସରେ ଏପରି ପୁତ୍ରଲାଭ କରିଅଛନ୍ତି । ପୁତ୍ରର ଯଶୋଗୁଣ ଯୋଗୁଁ ଯଦି ମନୁଷ୍ୟକୁ ଭାଗ୍ୟବାନ୍ ବୋଲିଯାଏ, ତେବେ ଦଶରଥଙ୍କ ପରି ଭାଗ୍ୟବାନ୍ ଜଗତରେ କେହି ନାହିଁ । ଏମାନଙ୍କର ରୂପ-ଲକ୍ଷଣ ତ ନିଜେ ଦେଖୁଅଛନ୍ତି, ସେ ବିଷୟରେ ମୋର ବେଶୀ କହିବା ଅନାବଶ୍ୟକ । ସେମାନଙ୍କର ଗୁଣାବଳୀ ବିଷୟରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏହି ଅଳ୍ପ ସମୟ ମଧ୍ୟରେ ସେମାନଙ୍କର ପ୍ରଶଂସା କେବଳ ଅଯୋଧ୍ୟା ମଧ୍ୟରେ ନୁହେଁ, ଦେଶ-ଦେଶାନ୍ତରରେ ବ୍ୟାପ୍ତ ହୋଇ ପଡ଼ିଅଛି । ସବୁ ସଦ୍‌ଗୁଣ ଏପରି ଏକତ୍ର ସମାବେଶ ସଚରାଚର ଦେଖାଯାଏ ନାହିଁ । ଏମାନଙ୍କର ବ୍ୟବହାର ଯେପରି ମଧୁର, ଶାନ୍ତ, ବୀର୍ଯ୍ୟ ପରାକ୍ରମ ସେହିପରି ଅଗ୍ନିତୁଲ୍ୟ । କିଛିଦିନ ପୂର୍ବରେ ମୁଁ ଗୋଟିଏ ଯଜ୍ଞ ଆରମ୍ଭ କରିଥିଲି । କାଳେ ଯଜ୍ଞଦ୍ୱେଷୀ ରାକ୍ଷସମାନେ ସେଥିରେ ବିଘ୍ନ ଉତ୍ପାଦନ କରିବେ, ଏଥିଲାଗି ମୁଁ ଦଶରଥଙ୍କ ନିକଟରେ ଉପସ୍ଥିତ ହୋଇ ରାମଚନ୍ଦ୍ରଙ୍କର ସାହାଯ୍ୟ ଲୋଡ଼ିଥିଲି । ଦଶରଥ ପ୍ରଥମରେ ଏ ପ୍ରସ୍ତାବରେ ଅସମ୍ମତ ହେଲେ ସୁଦ୍ଧା ଧର୍ମହାନି ଭୟରେ ଶେଷରେ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ମୋ ସହିତ ସଶସ୍ତ୍ର ଯିବାକୁ ଅନୁମତି ପ୍ରଦାନ କଲେ । ଆମ୍ଭେମାନେ ବହୁ ନଗର, ଜନପଦ, ନଦୀ, ପର୍ବତ ଅତିକ୍ରମ କରି ଶେଷରେ ଶ୍ୱାପଦସଙ୍କୁଳ ଏକ ଭୀଷଣ ଅରଣ୍ୟ ମଧ୍ୟରେ ପ୍ରବେଶ କଲୁ । ଆପଣମାନେ ବୋଧ ହୁଏ ସୁନ୍ଦପତ୍ନୀ ଦୁର୍ବୃତ୍ତା ତାଡ଼କାର ନାମ ଶୁଣି ଅଛନ୍ତି । ସ୍ତ୍ରୀଜାତି ହେଲେ ମଧ୍ୟ ତାହା ଦେହରେ ମତ୍ତହସ୍ତିନୀ ପରି ବଳ । ସେ ଏହି ଅରଣ୍ୟ ମଧ୍ୟରେ ବାସ କରୁଥିଲା । ତାହାର ଅତ୍ୟାଚାରରେ ପଥ ଜନଶୂନ୍ୟ ଓ କେତେକ ଗ୍ରାମ ଧ୍ୱଂସପ୍ରାପ୍ତ ହୋଇ ଯାଇଅଛି । ଆମ୍ଭମାନଙ୍କର ଆଗମନବାର୍ତ୍ତା ଶୁଣି ତାଡ଼କା ଅତିଶୟ କ୍ରୁଦ୍ଧ ହୋଇ

ତର୍ଜନ ଗର୍ଜନ କରି ରାମଚନ୍ଦ୍ରଙ୍କ ଆଡ଼କୁ ଧାବମାନ ହେଲା । ମୁଁ ପୂର୍ବରୁ ସେହି ରାକ୍ଷସୀର ଅତ୍ୟାଚାର କଥା ରାମଙ୍କୁ କଥାଛଳରେ ଜଣାଇଥିଲି । ରାମଚନ୍ଦ୍ର ବର୍ତ୍ତମାନ ସେହି ବିକଟଦର୍ଶନା ରୁଧିରାକ୍ତକଳେବରା ତାଡ଼କାକୁ ସମ୍ମୁଖରେ ଦେଖି ଲୋକହିତାର୍ଥ ତାକୁ ବଧ କରିବାକୁ କୃତସଂକଳ୍ପ ହେଲେ । ମୁହୂର୍ତ୍ତ ମଧ୍ୟରେ ତାଙ୍କର ହସ୍ତନିକ୍ଷିପ୍ତ ଶରଦ୍ୱାରା ରାକ୍ଷସୀର ବକ୍ଷସ୍ଥଳ ବିଦୀର୍ଣ୍ଣ ହୋଇଗଲା ଓ ସେ ବିକଟ ଗର୍ଜନ କରି ଭଗ୍ନୀରଥଙ୍କ ପରି ଭୂମିରେ ପତିତ ହୋଇ ପ୍ରାଣତ୍ୟାଗ କଲା ।

"ଏହାପରେ ଆଶ୍ରମରେ ପହଞ୍ଚି ଋଷିମାନଙ୍କ ସଙ୍ଗେ ମୁଁ ଯଜ୍ଞର ଅନୁଷ୍ଠାନ କରିବାକୁ ଲାଗିଲି । ତାଡ଼କାପୁତ୍ର ମାରୀଚ ଏ ସମ୍ବାଦ ପାଇ ମାତୃହତ୍ୟାର ପ୍ରତିଶୋଧ ନେବାପାଇଁ ଅନେକ ରାକ୍ଷସ ସୈନ୍ୟ ଘେନି ଯଜ୍ଞଭୂମିରେ ଆସି ନାନା ଉତ୍ପାତ ଆରମ୍ଭ କଲା । ଯଜ୍ଞବେଦୀ ଉପରେ ମାଂସ ଓ ରକ୍ତ ବୃଷ୍ଟି ହେବାକୁ ଲାଗିଲା ଓ ଚତୁର୍ଦ୍ଦିଗରେ ନାନା ଭୟଙ୍କର ଶବ୍ଦ ଶୁଣାଗଲା । କିନ୍ତୁ ଅଳ୍ପକ୍ଷଣ ମଧ୍ୟରେ ରାମଚନ୍ଦ୍ର ଅତୁଳ ପ୍ରତାପରେ ରାକ୍ଷସମାନଙ୍କୁ ଆକ୍ରମଣ କରି ଧ୍ୱଂସ କରିବାକୁ ଲାଗିଲେ । ଅସଂଖ୍ୟ ରାକ୍ଷସସୈନ୍ୟ ବିନଷ୍ଟ ହେଲେ । ମାରୀଚ ଆହତ ହୋଇ ପଳାଇଗଲା ଓ ଅନ୍ୟାନ୍ୟ ରାକ୍ଷସମାନେ ପରାସ୍ତ ହୋଇ ଛତ୍ରଭଙ୍ଗ ଦେଲେ । ଏହିରୂପେ ରାମ ଓ ଲକ୍ଷ୍ମଣଙ୍କ ଯୋଗୁଁ ଯଜ୍ଞ ନିର୍ବିଘ୍ନରେ ସମ୍ପନ୍ନ ହେଲା । ଏଥିଲାଗି ସେମାନେ ଚିରକାଳ ମୋର ଆଶୀର୍ବାଦର ପାତ୍ର ।

"ଯଜ୍ଞ ଶେଷ ହେଲା ପରେ ଏଠାରେ ଆପଣଙ୍କର ଯଜ୍ଞ ଦେଖିବା ନିମନ୍ତେ ବାହାରିବାକୁ ମୁଁ ଉଦ୍ୟୋଗ କଲି । ରାମ ଓ ଲକ୍ଷ୍ମଣ ମୋଠାରୁ ହରଧନୁର ବିବରଣ ଶୁଣି ତାହା ଦେଖିବାକୁ ଅତ୍ୟନ୍ତ କୌତୂହଳ ପ୍ରକାଶ କରିବାରୁ ମୁଁ ସେମାନଙ୍କୁ ସଙ୍ଗରେ ଘେନି ଆସିଅଛି । ବାଟରେ ଆସୁ ଆସୁ ମୁଁ ରାମଚନ୍ଦ୍ରଙ୍କର ଯେଉଁ ଅଦ୍ଭୁତ ସତ୍ତ୍ୱଗୁଣର ପରିଚୟ ପାଇଅଛି, ତାହା କହୁଅଛି ଶୁଣନ୍ତୁ । ଗୌତମ-ପତ୍ନୀ ଅହଲ୍ୟା ନିଜର ଦୁଷ୍କୃତ ଯୋଗୁଁ ବହୁକାଳ ହେଲା ମନସ୍ତାପ ଓ ଆତ୍ମଗ୍ଲାନିରେ ଏକାକିନୀ ବାସ କରୁଥିଲେ । ସ୍ୱାମୀ ପୁତ୍ରଙ୍କଦ୍ୱାରା ଉପେକ୍ଷିତା ହୋଇ ସେ ମାୟାମମତାଶୂନ୍ୟ ପାଷାଣ ପରି କାଳାତିପାତ କରୁଥିଲେ । ରାମଚନ୍ଦ୍ର ତାଙ୍କ ଆଶ୍ରମକୁ ଯାଇ ମାତୃସମ୍ମାନରେ ତାଙ୍କୁ ସମ୍ମାନିତ କରିଅଛନ୍ତି । ତାଙ୍କର ମଧୁର ବିନୀତ ବ୍ୟବହାରରେ ଅହଲ୍ୟାଙ୍କର ସବୁ ମନଃକଷ୍ଟ ଦୂର ହୋଇଅଛି । ମରୁଭୂମିରେ ଅମୃତ ସ୍ରୋତ ପ୍ରବାହିତ ହେଲା ପରି

ସେ ନବ ଜୀବନ ଲାଭ କରିଉଠି ଅଛନ୍ତି । ମହର୍ଷି ଗୌତମ ପୁନର୍ବାର ତାଙ୍କୁ ଆଦରରେ ଗ୍ରହଣ କରିଅଛନ୍ତି ।’’

ବିଶ୍ୱାମିତ୍ରଙ୍କ କଥା ଶେଷ ହେଲା ପରେ ସମସ୍ତେ ରାମଚନ୍ଦ୍ରଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ରାମଚନ୍ଦ୍ରଙ୍କର କନ୍ଦର୍ପସଦୃଶ ରୂପ ଦେଖି ଓ ତାଙ୍କର କୀର୍ତ୍ତି-କାହାଣୀ ଶୁଣି ସମସ୍ତଙ୍କ ମନରେ ଏହି ଏକକଥା ଉଦୟ ହେଲା—ରାମ ଏକା ରାଜକୁମାରୀ ସୀତାଙ୍କର ଉପଯୁକ୍ତ ବର; ସେଥିଲାଗି ଯୋଗ୍ୟ ସଙ୍ଗେ ଯୋଗ୍ୟର ମିଳନ ହେବ ବୋଲି ବୋଧ ହୁଏ ବିଧାତା ତାଙ୍କୁ ଏଠାକୁ ପଠାଇଅଛନ୍ତି । କେହି କେହି ଆଗ୍ରହାତିଶଯ୍ୟରେ ଜନକଙ୍କୁ କହିଲେ, “ମହାରାଜ, ଆଉ ଧନୁ ପରୀକ୍ଷାରେ ପ୍ରୟୋଜନ ନାହିଁ । ଏତେଦିନେ ଆସି ଜେମାଦେଈଙ୍କ ଅନୁରୂପ ବର ମିଳିଅଛି—ଶୀଘ୍ର ବିବାହର ଆୟୋଜନ କରନ୍ତୁ ।” ଜନକ ରାମଚନ୍ଦ୍ରଙ୍କ ରୂପଗୁଣରେ ଅତିଶୟ ମୁଗ୍ଧ ହୋଇଥିଲେ ସୁଦ୍ଧା ନିଜର ପ୍ରତିଜ୍ଞାରୁ ବିଚଳିତ ହେଲେ ନାହିଁ ।



# ଦ୍ୱିତୀୟ ପରିଚ୍ଛେଦ

ବିଶ୍ୱାମିତ୍ରଙ୍କ ଅନୁରୋଧକ୍ରମେ ଜନକ ସଭାସ୍ଥଳକୁ ହରଧନୁ ଆଣିବାର ଆଦେଶ ଦେଲେ । ଧନୁ ଆସିବାରୁ ରାମଚନ୍ଦ୍ର ଅଗ୍ରସର ହୋଇ ଅତି ଆଗ୍ରହରେ ତାକୁ ନିରୀକ୍ଷଣ କରିବାକୁ ଲାଗିଲେ । ବିଶ୍ୱାମିତ୍ରଙ୍କ ଆଦେଶ ଅନୁସାରେ ସେ ଏହି ସୁବିଶାଳ ଧନୁକୁ ବିନା ଆୟାସରେ ଧରି ତହିଁରେ ଗୁଣ ଚଢ଼ାଇ ଦେଲେ । ତତ୍ପରେ ତାକୁ ଆକର୍ଷଣ କରନ୍ତୁ କରନ୍ତୁ ବଜ୍ରଗର୍ଜନ ପରି ଏକ ଭୀଷଣ ଶବ୍ଦ କରି ଧନୁଟି ଦୁଇଖଣ୍ଡ ହୋଇଗଲା । ସେ ଶବ୍ଦ ଶୁଣି ସଭାର ସମସ୍ତ ଲୋକ ମୂର୍ଚ୍ଛିତପ୍ରାୟ ହୋଇ ପଡ଼ିଲେ ।

ଜନକଙ୍କର ଏ ବିଷମ ପ୍ରତିଜ୍ଞା ଯେ ରକ୍ଷା ହେବ, ଏ ବିଷୟରେ ତାଙ୍କର ବଡ଼ ସନ୍ଦେହ ଥିଲା । ବର୍ତ୍ତମାନ ତାଙ୍କ ମନରୁ ଅନେକ ଦିନର ଗୋଟିଏ ଗୁରୁତର ଭାର ଖସି ପଡ଼ିଲା । ସେ ଶାନ୍ତିରେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇଲେ । ତାଙ୍କ ହୃଦୟ ଏକ ଅନିର୍ବଚନୀୟ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ହର୍ଷ ଓ ବିସ୍ମୟରେ ଜନକଙ୍କ ମୁଖରୁ କଥା ବାହାରିଲା ନାହିଁ ।

ଚତୁର୍ଦ୍ଦିଗରେ ଜୟକୋଳାହଳ ଉଠିବାକୁ ଲାଗିଲା । କ୍ଷଣକେ ମଧ୍ୟରେ ଏ ଶୁଭ ସମ୍ବାଦ ମିଥିଳାର ଘରେ ଘରେ ପ୍ରଚାରିତ ହୋଇଗଲା । ଯେ ଶୁଣିଲା ସେ ଆନନ୍ଦରେ ଅଧୀର ହୋଇ ଉଠିଲା । ସୁକୁମାରତନୁ ବାଳକ ରାମଚନ୍ଦ୍ର କିପରି ସେ ଦୁର୍ଜ୍ଜୟ ହରଧନୁ ଭଙ୍ଗ କଲେ, ସମସ୍ତଙ୍କର ଏଥିରେ ବିସ୍ମୟର ସୀମା ରହିଲା ନାହିଁ । ସହସ୍ର ମୁଖରେ ଚାରିଆଡ଼େ ସେହି ଏକକଥା ଆଲୋଚିତ ହେବାକୁ ଲାଗିଲା । ସମସ୍ତେ ଏକବାକ୍ୟରେ ରାମଚନ୍ଦ୍ରଙ୍କର ଅଦ୍ଭୁତ ବୀରତ୍ୱର ପ୍ରଶଂସା କରିବାକୁ ଲାଗିଲେ ।

ମହାରାଜ ଦଶରଥଙ୍କୁ ଏ ମଙ୍ଗଳ ସମ୍ବାଦ ଦେଇ ତାଙ୍କୁ ଅବିଳମ୍ବେ ମିଥିଳାକୁ ଆସିବା ନିମନ୍ତେ ଜନକ ବିଶ୍ୱାମିତ୍ରଙ୍କ ଆଦେଶଅନୁସାରେ ଦ୍ରୁତଗାମୀ ରଥରେ ଅଯୋଧ୍ୟାକୁ ଦୂତ ପଠାଇ ଦେଲେ । ଦଶରଥ ଯଥାସମୟରେ ପାତ୍ର ମିତ୍ର ଓ ସ୍ୱଜନବର୍ଗଙ୍କ ସହିତ ମିଥିଳା ରାଜ୍ୟର ସୀମାରେ ଆସି ଉପସ୍ଥିତ ହେଲେ । ଜନକ ମହାସମାରୋହରେ ଯାଇ ଦଶରଥଙ୍କୁ ବହୁ ସମାଦରରେ ଅଭ୍ୟର୍ଥନା କରି ରାଜଧାନୀକୁ ଘେନି ଆସିଲେ । ଦଶରଥ ଜନକଙ୍କର ବାଲ୍ୟସୁହୃଦ୍ । କିନ୍ତୁ ରାଜକାର୍ଯ୍ୟରେ ଲିପ୍ତ ଥିବାରୁ ବହୁଦିନ ହେଲା ସେମାନଙ୍କର ଦେଖା ସାକ୍ଷାତ୍ ନ ଥିଲା, ଉଭୟ

ବନ୍ଧୁଙ୍କର ଆଜ ଏପରି ଅବସ୍ଥାରେ ଏପରି ଭାବରେ ଭେଟ ହେବାରୁ ତାହା ମନରେ କେତେ ଆନନ୍ଦ ହେଲା କଳନା କରିବା ଦୁଷ୍କର ।

ଦଶରଥଙ୍କର ଆଗମନ ପରେ ବିବାହର ଆୟୋଜନ ପୂର୍ଣ୍ଣମାତ୍ରାରେ ଚାଲିଲା । ମିଥିଳାର ଉତ୍ସବ ଆନନ୍ଦ କୋଳାହଳ ପ୍ରାପ୍ତ ହେଲା । କେବଳ ସୀତାଙ୍କ ସଙ୍ଗେ ରାମଚନ୍ଦ୍ରଙ୍କର ନୁହେଁ, ଦୈବଇଚ୍ଛା ଏପରି ଯେ, ଜନକଙ୍କର ଅପର କନ୍ୟା ଉର୍ମିଳାଙ୍କ ସହିତ ଲକ୍ଷ୍ମଣଙ୍କର ଓ ଜନକଙ୍କ କନିଷ୍ଠ ଭ୍ରାତା କୁଶଧ୍ୱଜଙ୍କର କନ୍ୟା ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କ ସହିତ ଯଥାକ୍ରମେ ଭରତ ଓ ଶତ୍ରୁଘ୍ନଙ୍କର ବିବାହ ସମ୍ବନ୍ଧ ସ୍ଥିର ହୋଇଗଲା । ସମଗ୍ର ମିଥିଳାପୁରୀ ଆଜ ଗୋଟିଏ ବିପୁଳ ବିବାହ-ସଭାରେ ପରିଣତ ହୋଇଅଛି । ଉତ୍ସବ ଆମୋଦର କୋଳାହଳରେ ନଗରୀଟି ମୁଖରିତ ହୋଇ ଉଠୁଅଛି । ସ୍ଥାନେ ସ୍ଥାନେ ନୃତ୍ୟ, ଗୀତ, ବାଦ୍ୟର ଆୟୋଜନ ହୋଇଅଛି । ରାଜପଥ ପତ୍ର, ପୁଷ୍ପ, ପତାକା, ତୋରଣାଦିରେ ସଜ୍ଜିତ ହୋଇ ଏକ ଅପୂର୍ବ ଶୋଭା ଧାରଣ କରିଅଛି । ଆଲୋକମାଳାରେ ଭୂଷିତ ହୋଇ ରାଜପୁରୀ ଦେବାଳୟ ପରି ପ୍ରତୀୟମାନ ହେଉଅଛି । ପୁରବାସୀମାନେ ଉତ୍ତମ ପରିଚ୍ଛଦାଦିରେ ମଣ୍ଡିତ ହୋଇ ଉତ୍ସବ-ସ୍ରୋତରେ ନିଜ ନିଜକୁ ଭସାଇ ଦେଇଅଛନ୍ତି । ରାଜଧାନୀର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ଆଜ ସ୍ଥଗିତ ରହିଅଛି । ବିବାହୋତ୍ସବ ଛଡ଼ା କାହା ମନରେ ଅନ୍ୟ ଚିନ୍ତା ନାହିଁ । କେଉଁ ସ୍ଥାନରେ ମୁନି ଋଷିମାନେ ବସି ଧର୍ମ ବିଚାରରେ ମଗ୍ନ ଅଛନ୍ତି । କେଉଁ ସ୍ଥାନରେ ପଣ୍ଡିତମାନଙ୍କର ଭୀଷଣ ବାଗ୍‌ବିତଣ୍ଡାରେ ଗୃହସ୍ଥଳୀ ପ୍ରକମ୍ପିତ ହେଉଅଛି । କେଉଁ ସ୍ଥାନରେ ହାସ୍ୟ-କୌତୁକ କୋଳାହଳରେ ଗଗନ ବିଦୀର୍ଣ୍ଣ ହୋଇ ଯାଉଅଛି ।

ରାମଚନ୍ଦ୍ର ବହୁମୂଲ୍ୟ ବରବେଶରେ ଭୂଷିତ ହୋଇ ବିବାହ-ବେଦୀ ଉଜ୍ଜ୍ୱଳ କରି ବସିଅଛନ୍ତି । ସଭାସ୍ଥ ସମସ୍ତେ ତାଙ୍କର ସେ ନୟନାଭିରାମ ରୂପକୁ ମୁଗ୍ଧନେତ୍ରରେ ଅନାଇ ରହିଅଛନ୍ତି । ଶୁଭଲଗ୍ନ ଉପସ୍ଥିତ ହେବାରୁ ଅପୂର୍ବ ବସ୍ତ୍ରାଳଙ୍କାରପରିହିତା ସୀତାଙ୍କୁ ବେଦୀ ଉପରକୁ ଅଣାହେଲା । ବାଳିକାକଣ୍ଠୋତ୍ଥିତ ହୁଳହୁଳି ଧ୍ୱନି ଓ ମଙ୍ଗଳ-ବାଦ୍ୟରେ ରାଜପୁରୀ ଧ୍ୱନିତ ହୋଇ ଉଠିଲା । ମନେ ହେଲା, ଯେପରି ସୌଦାମିନୀ ଆକାଶ ଛାଡ଼ି ଭୂତଳରେ ଆବିର୍ଭୂତା ହୋଇଅଛନ୍ତି । ପୁରୋହିତମାନେ ବିବାହ ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ । ସମ୍ପ୍ରଦାନ ସମୟ ଉପସ୍ଥିତ ହେବାରୁ ରାଜର୍ଷି ହୋମାଗ୍ନି ସମକ୍ଷରେ ସୀତାଙ୍କ ହସ୍ତ ଧାରଣ କରି ରାମଚନ୍ଦ୍ରଙ୍କୁ ସମ୍ବୋଧନ କରି କହିଲେ, "ଏହି ମୋର କନ୍ୟା ସୀତା ଆଜଠାରୁ ତୁମର ସହଧର୍ମିଣୀ ହେଲେ । ତୁମେ ଏହାଙ୍କୁ ଗ୍ରହଣ କର । ତୁମ୍ଭର ମଙ୍ଗଳ ହେଉ । ସେ ପତିବ୍ରତା ହୋଇ ଚିରକାଳ

ଛାୟା ପରି ତୁମ୍ଭର ଅନୁସରଣ କରନ୍ତୁ ।" ରାମଚନ୍ଦ୍ର ହସ୍ତଦ୍ୱାରା ସୀତାଙ୍କର ହସ୍ତ ଧାରଣ କଲେ । ଉଭୟଙ୍କ ଶରୀର ମଧ୍ୟରେ ଗୋଟିଏ ତଡ଼ିତ୍‌ପ୍ରବାହ ଖେଳିଗଲା, ଦେହ ରୋମାଞ୍ଚିତ ହୋଇ ଉଠିଲା । ଏ ମଧୁର ଦୃଶ୍ୟ ଦେଖି ସମସ୍ତଙ୍କର ନୟନ ମନ ତୃପ୍ତ ହୋଇଗଲା । ଚତୁର୍ଦ୍ଦିଗରୁ ଜୟଧ୍ୱନି ଓ ପୁଷ୍ପବୃଷ୍ଟି ହେବାକୁ ଲାଗିଲା ।

ରାମଚନ୍ଦ୍ରଙ୍କ ବିବାହ ପରେ ଯଥାକ୍ରମେ ଭରତ ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କର ବିବାହ କାର୍ଯ୍ୟ ସୁସମ୍ପନ୍ନ ହୋଇଗଲା । ସମସ୍ତଙ୍କ ମୁଖରେ ଦଶରଥପୁତ୍ରମାନଙ୍କର ରୂପ-ଗୁଣର ପ୍ରଶଂସା କୀର୍ତ୍ତିତ ହେଉଅଛି । ଲୋକେ ଜନକ ଓ ଦଶରଥଙ୍କୁ ପରମ ଭଗବାନ୍ ବୋଲି ଧନ୍ୟ ଧନ୍ୟ କରୁଅଛନ୍ତି । ସାଧାରଣ ଲୋକମାନେ ଭୂରି ଭୋଜନରେ ପରିତୃପ୍ତ ହୋଇ ଓ ଦୀନ ଦୁଃଖିମାନେ ଆଶାତୀତ ଦାନରେ ସନ୍ତୁଷ୍ଟ ହୋଇ ବରକନ୍ୟାମାନଙ୍କୁ ଆଶୀର୍ବାଦ କରି କରି ଘରକୁ ଫେରୁଅଛନ୍ତି ।

କିଛି ଦିନ ମିଥିଳାରେ ଅବସ୍ଥାନ କଲା ପରେ ଦଶରଥ ପୁତ୍ର, ପୁତ୍ରବଧୂମାନଙ୍କୁ ନେଇ ଅଯୋଧ୍ୟାଭିମୁଖରେ ଯାତ୍ରା କଲେ । ରାଜା ଜନକ ଯୌତୁକସ୍ୱରୂପ ଅନେକ ଧନ, ରତ୍ନ, ହସ୍ତୀ, ଅଶ୍ୱ, ଦାସ, ଦାସୀ ପ୍ରଭୃତି ପ୍ରଦାନ କଲେ । ସୀତାଙ୍କ ଅଭାବରେ ମିଥିଳାରାଜପୁରୀ ନିରାନନ୍ଦରେ ବୁଡ଼ି ରହିଲା । ପଶୁପକ୍ଷୀ ବୃକ୍ଷଲତା ପର୍ଯ୍ୟନ୍ତ ସୁଦ୍ଧା କିଛି ଦିନ ଯେପରି ସୀତାଙ୍କ ବିଚ୍ଛେଦ ଅନୁଭବ କଲେ । ରାଜର୍ଷି ବହୁକଷ୍ଟରେ ଶୋକାବେଗ ରୋଧ କରି ଅବିଚଳିତ ହୋଇ ରହିଲେ ।

ଦଶରଥଙ୍କ ଅଯୋଧ୍ୟା ପ୍ରତ୍ୟାଗମନ ପଥରେ ଗୋଟିଏ ମାତ୍ର ବାଧା ଉପସ୍ଥିତ ହୋଇଥିଲା । କ୍ଷତ୍ରିୟକୁଳାନ୍ତକ ପରଶୁରାମ ହରଧନୁ ଭଙ୍ଗ-ବାର୍ତ୍ତା ଶ୍ରବଣରେ ଈର୍ଷ୍ୟାନ୍ୱିତ ହୋଇ ରାମଚନ୍ଦ୍ରଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହୋଇଥିଲେ, କିନ୍ତୁ ତାଙ୍କର ବିକ୍ରମରେ ପରାସ୍ତ ହୋଇ ସ୍ୱସ୍ଥାନକୁ ଫେରିଗଲେ । ପଥରେ ବହୁ ବିପଦ ଅତିବାହିତ କରି ଶେଷରେ ଦଶରଥ ମହାସମାରୋହରେ ଅଯୋଧ୍ୟା ପ୍ରବେଶ କଲେ । ରାଜକୁମାରମାନଙ୍କର ଆଗମନସମ୍ବାଦରେ ଅଯୋଧ୍ୟାର ଗୃହଆଡ଼େ ଗୋଟାଏ ଆନନ୍ଦ ଉତ୍ସବର ଚହଳ ପଡ଼ିଗଲା । କୌଶଲ୍ୟା ପ୍ରଭୃତି ରାଜମହିଷୀମାନେ ଆସି ବହୁ ସମାଦରରେ ପୁତ୍ରବଧୂମାନଙ୍କୁ ଅଭ୍ୟର୍ଥନା କରି ନେଇଗଲେ । ପୁତ୍ରବଧୂମାନଙ୍କର ଅପ୍‌ସରାତୁଲ୍ୟ ରୂପ ଦେଖି ସେମାନଙ୍କର ମନ କିପରି ପୁଲକିତ ହୋଇ ଉଠିଲା, ତାହା ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ ।

ଅଯୋଧ୍ୟାକୁ ଆସି ରାମଚନ୍ଦ୍ରଙ୍କ ସହିତ ସୀତାଙ୍କର ପ୍ରଥମ ସାକ୍ଷାତ୍ ହେଲା । ଯାହା ଦେଖିଲେ, ସୀତାଙ୍କ ହୃଦୟ ସେଥିରେ ଉଚ୍ଛ୍ୱସିତ ହୋଇ ଉଠିଲା । ସେ ମନେ

କଲେ, ଜଗତରେ ଯାହା ଦର୍ଶନୀୟ, ଯାହା ଦୁର୍ଲ୍ଲଭ, ତାହା ମୁଁ ଦେଖିଅଛୁ । ପ୍ରଥମ ଦର୍ଶନରେ ସେ ଉନ୍ନତ ବପୁ, ପ୍ରଶସ୍ତ ଲଲାଟ, ଉଦାର ମୁଖମଣ୍ଡଳ ଓ ଅନୁପମ ଦେବକାନ୍ତି ସୀତାଙ୍କ ହୃଦୟରେ ଦୃଢ଼ଭାବରେ ଅଙ୍କିତ ହୋଇଗଲା । ଉତ୍ତରବୟରେ ତାଙ୍କ ହୃଦୟ ପୂର୍ଣ୍ଣ ହୋ... । ସୀତା ଚିରଦିନପାଇଁ ରାମଚନ୍ଦ୍ରଙ୍କର କିଙ୍କରୀ ହୋଇ ରହିଲେ । ଶିବ... ଧନୁର୍ଭଙ୍ଗ ପଣ କରି ଜନକଙ୍କ ମନରେ ସୀତାଙ୍କ ବିବାହ ସମ୍ବନ୍ଧରେ ବଡ଼ ସନ୍ଦେହ ଜନ୍ମିଥିଲା ଓ ସେଥିପାଇଁ ସେ ବଡ଼ ଚିନ୍ତାକୁଳ ଥିଲେ । ରାମଚନ୍ଦ୍ର ହରଧନୁ ଭଙ୍ଗ କରିଅଛନ୍ତି ଶୁଣି ସୀତା ସ୍ଥିର କଲେ, ଯେ ପିତାଙ୍କୁ ଚିନ୍ତାଜାଲରୁ ମୁକ୍ତ କରିଅଛନ୍ତି, ସେ ଗୁଣବାନ୍ ହୁଅନ୍ତୁ ବା ନିର୍ଗୁଣ ହୁଅନ୍ତୁ, ସ୍ୱରୂପ ହୁଅନ୍ତୁ ବା କୁରୂପ ହୁଅନ୍ତୁ, ତାଙ୍କୁ ପତିଭାବରେ ବରଣ କରି ତାଙ୍କ ଚରଣରେ ମନ ପ୍ରାଣ ସମର୍ପଣ କରିବା ତାଙ୍କର ଅବଶ୍ୟ କର୍ତ୍ତବ୍ୟ । ତାହା ପରେ ଲୋକମୁଖରୁ ରାମଚନ୍ଦ୍ରଙ୍କ ରୂପଗୁଣର ଅଜସ୍ର ପ୍ରଶଂସା ଶୁଣି ତାଙ୍କ ପ୍ରତି ସୀତାଙ୍କର ମନ ଆକୃଷ୍ଟ ହୋଇ ପଡ଼ିଥିଲା । କିନ୍ତୁ ଅଯୋଧ୍ୟାକୁ ଆସି ଯେତେବେଳେ ପ୍ରତ୍ୟକ୍ଷରେ ରାମଚନ୍ଦ୍ରଙ୍କର ସୌମ୍ୟ, ପ୍ରସନ୍ନ ମୂର୍ତ୍ତି ଦେଖିଲେ ଓ ତାଙ୍କର ମହନୀୟ ଚରିତ୍ରର ପରିଚୟ ପାଇଲେ ସେତେବେଳେ ତାଙ୍କ ହୃଦୟ ଯେ ରାମମୟ ହୋଇଯିବ ସେଥିରେ ଆଉ ଆଶ୍ଚର୍ଯ୍ୟ କଣ ?

ରାମଚନ୍ଦ୍ର ମଧ୍ୟ ନବପରିଣୀତା ସୀତାଙ୍କୁ ଥରେ ମାତ୍ର ଦେଖି ହୃଦୟରେ ଏକ ଅନିର୍ବଚନୀୟ ଭାବ ଅନୁଭବ କଲେ । ସୀତାଙ୍କର ସରଳ ପବିତ୍ର ମୂର୍ତ୍ତି ତାଙ୍କ ହୃଦୟ-ପଟରେ ଚିରକାଳ ପାଇଁ ମୁଦ୍ରିତ ହୋଇଗଲା । ସେ ମୂର୍ତ୍ତିକୁ ଅନ୍ତରର ନିଭୃତ ପ୍ରଦେଶରେ ରଖି ରାମଚନ୍ଦ୍ର ଧ୍ୟାନ କରିବାକୁ ଲାଗିଲେ । ବିବାହ ଦିନଠାରୁ ରାମଚନ୍ଦ୍ରଙ୍କ ଚକ୍ଷୁରେ ପୃଥିବୀ ଏକ ନୂତନ ଶୋଭା ଧାରଣ କଲା; ନରନାରୀ ଓ ପଶୁପକ୍ଷୀ ଅଧିକତର ସୁନ୍ଦର ଦେଖାଗଲେ । ଜଳ, ସ୍ଥଳ, ବାୟୁ, ଆକାଶ ସର୍ବତ୍ର ଆନନ୍ଦଧାରା ପ୍ରବାହିତ ହେଲା । ରାମଚନ୍ଦ୍ର ଜୀବନରେ ଏକ ଅଭିନବ ପରିବର୍ତ୍ତନ ଅନୁଭବ କଲେ । ତାଙ୍କର ମନେ ହେଲା, ଜନ୍ମଜନ୍ମାନ୍ତରର ପୁଣ୍ୟ ଫଳରୁ ବିଧାତା ତାଙ୍କୁ ସୀତାଙ୍କ ପରି ସହଧର୍ମିଣୀ ପ୍ରଦାନ କରିଅଛନ୍ତି । ସୀତାଙ୍କୁ ପାଇ ତାଙ୍କର ସ୍ୱାଭାବିକ ସଦ୍‌ଗୁଣଗୁଡ଼ିକ ଆହୁରି ସଜୀବ, ସଜାଗ ହୋଇ ଉଠିଲା । ଶାସ୍ତ୍ରାଲୋଚନାରେ ତାଙ୍କର ଅଧିକତର ଆନନ୍ଦ ଜାତ ହେଲା । ସୀତା ରାମଚନ୍ଦ୍ରଙ୍କର ମନର ଶାନ୍ତି, ବାହୁର ଶକ୍ତି ଓ ହୃଦୟର ଭକ୍ତିସ୍ୱରୂପା ହୋଇ ତାଙ୍କ ଜୀବନର ଗତି ନିର୍ଦ୍ଦେଶ କରିବାକୁ ଲାଗିଲେ । ଅତି ଅଳ୍ପ ଦିନ ମଧ୍ୟରେ ଉଭୟଙ୍କ ଆତ୍ମା ଏକ ହୋଇଗଲା । ଆପଣାର ବୋଲି ଆଉ କାହାର କିଛି ରହିଲା ନାହିଁ । ରାମ ସୀତାଙ୍କର ପ୍ରଣୟ ସାଧାରଣ ପ୍ରଣୟ ନୁହେ । ଯେଉଁ ପ୍ରଣୟ ମନକୁ ମହତ୍ କରେ, ହୃଦୟକୁ ପବିତ୍ର କରେ, ଯେଉଁ ପ୍ରଣୟ ମନୁଷ୍ୟକୁ

ସ୍ୱର୍ଗରାଜ୍ୟର ଅଧିକାଶ୍ତ କରିବେ, ଈଶ୍ୱରଙ୍କୁ ସାହାର ନାମାନ୍ତର ମାତ୍ର—ଏ ସେହି ପ୍ରଶସ୍ତ ।

ଦଶରଥ ସବୁ ପୁତ୍ରମାନଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ସୁଦ୍ଧା ରାମଚନ୍ଦ୍ର ତାଙ୍କର ପ୍ରାଣାଧିକ ପ୍ରିୟତମ ଥିଲେ । କିନ୍ତୁ ସୀତା ଆସି ଏପରି ଭାବରେ ତାଙ୍କର ହୃଦୟ ଅଧିକାର କରି ବସିଲେ ଯେ, ରାମଚନ୍ଦ୍ର ସୁଦ୍ଧା ଯେପରି ଟିକିଏ ଅନ୍ତରାଳରେ ପଡ଼ିଗଲେ । ସୀତାଙ୍କର ସେବା ଯତ୍ନରେ ଦଶରଥ ଏପରି ହୋଇଗଲେ ଯେ ସୀତାଙ୍କୁ ବେଶୀକ୍ଷଣ ନ ଦେଖିଲେ କି ତାଙ୍କର ସୀଣାକଣ୍ଠସ୍ୱର ନ ଶୁଣିଲେ ସେ ଅଧା ପ୍ରାୟ ହୋଇ ଯାଉଥିଲେ, ସବୁ ବିଷୟ ତାଙ୍କୁ ବିସ୍ୱାଦ ବୋଧ ହେଉଥିଲା । କୌଶଲ୍ୟାଙ୍କ ମନର ଭାବ ମଧ୍ୟ ସେହିପରି । ପ୍ରତ୍ୟେକ କାର୍ଯ୍ୟରେ ସୀତା ତାଙ୍କର ଅବଲମ୍ବନ ହୋଇ ଉଠିଲେ । ସୀତା ମଧ୍ୟ ଶାଶୁମାନଙ୍କର ସେବା ଶୁଶ୍ରୂଷା କରି ପାରିଲେ ଅନ୍ତରରେ ନିର୍ମଳ ଆନନ୍ଦ ଅନୁଭବ କରୁଥିଲେ । କେବଳ ଶାଶୁ ଶ୍ୱଶୁର କାହିଁକି, କୁଟୁମ୍ବ ଲୋକମାନଙ୍କଠାରୁ ଆରମ୍ଭ କରି ଦାସ, ଦାସୀ, ପଶୁ, ପକ୍ଷୀ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ଗୁଣରେ ମୁଗ୍ଧ । ଉଚ୍ଚବାଚ୍ୟ ନାହିଁ, ଆଦେଶ ଅନୁରୋଧ ନାହିଁ, ଅଥଚ ସମସ୍ତେ ସୀତାଙ୍କର ପଦେ କଥା ଶୁଣିବାକୁ ଉତ୍କଣ୍ଠିତ, ତାଙ୍କର ଟିକିଏ ପ୍ରିୟକାର୍ଯ୍ୟ କରିଦେବାକୁ ଲାଳାୟିତ । ସୀତାଙ୍କ ନୀରବ ଅଙ୍ଗୁଳି ସଞ୍ଚାଳନରେ ଯେପରି ରାଜପରିବାରଟି ସୁସ୍ଥିରରୂପେ ଚାଲିବାକୁ ଲାଗିଲା । ପୁରବାସୀମାନଙ୍କ ମୁଖରେ ମଧ୍ୟ ସୀତାଙ୍କର ପ୍ରଶଂସାର ସୀମା ନାହିଁ । ଥରେ ତାଙ୍କ ଉପରେ ଯାହାର ଦୃଷ୍ଟି ପଡ଼ିଅଛି, ଥରେ ଯେ ତାଙ୍କର ମଧୁରବାଣୀ ଶୁଣିଅଛି, ସେ ଆପଣାକୁ ପରମକୃତାର୍ଥ ଜ୍ଞାନ କରିଅଛି ।

ଏହିପରି ଭାବରେ ବର୍ଷ ପରେ ବର୍ଷ ଅତିବାହିତ ହେବାକୁ ଲାଗିଲା । ବାରବର୍ଷ ପରେ ସୀତାଙ୍କ ଜୀବନରେ ଗୋଟିଏ ନୂତନ ଅଧ୍ୟାୟର ଆରମ୍ଭ ହେଲା । ମହାରାଜ ଦଶରଥଙ୍କର ବାର୍ଦ୍ଧକ୍ୟ ଉପସ୍ଥିତ ହେବାରୁ ଆଉ ସୁଷ୍ଠୁରୂପେ ରାଜକାର୍ଯ୍ୟ ନିର୍ବାହ କରିବା ତାଙ୍କ ପକ୍ଷରେ କଠିନ ହୋଇ ଉଠିଲା । ରାମଚନ୍ଦ୍ର ପିତାଙ୍କ ନିକଟରେ ରହି ରାଜ୍ୟଶାସନନୀତି ଶିକ୍ଷା କରୁଥିଲେ ଓ ପିତାଙ୍କୁ ମଧ୍ୟ କେତେକ ବିଷୟରେ ସାହାଯ୍ୟ କରୁଥିଲେ । ଜ୍ଞାନ, ବୁଦ୍ଧି, ପରାକ୍ରମରେ ରାମଚନ୍ଦ୍ର ଯେପରି ଅଦ୍ୱିତୀୟ ଥିଲେ, ବିନୟ ଓ ସୌଜନ୍ୟ ମଧ୍ୟ ସେହିପରି ତାଙ୍କ ଚରିତ୍ରର ପ୍ରଧାନ ଅଳଙ୍କାର ଥିଲା । ପ୍ରଜାକୁଳଙ୍କ ହିତସାଧନରେ ସେ ସର୍ବଦା ରତ ଥିଲେ ଓ ତାଙ୍କର ଶାସନ-ପ୍ରଣାଳୀକୁ ସମସ୍ତେ ଶତମୁଖରେ ପ୍ରଶଂସା କରୁଥିଲେ ।

ରାମଚନ୍ଦ୍ରଙ୍କ କାର୍ଯ୍ୟକୁଶଳତା ଦେଖି ଓ ତାଙ୍କର ସୁଖ୍ୟାତି ଶ୍ରବଣ କରି ଦଶରଥଙ୍କ ମନରେ ଆନନ୍ଦର ସୀମା ନ ଥିଲା । ଅବଶେଷରେ ରାମଚନ୍ଦ୍ରଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ କରି ସେ ବାନପ୍ରସ୍ଥ ଅବଲମ୍ବନ କରିବାକୁ ମନେ ମନେ ସ୍ଥିର କଲେ, କିନ୍ତୁ ତାହା କାର୍ଯ୍ୟରେ ପରିଣତ କରିବା ପୂର୍ବରୁ ଜନସାଧାରଣଙ୍କ ମତ ଜାଣିବା ଆବଶ୍ୟକ । ଏଥିନିମନ୍ତେ ସେ ଦିନେ ଦେଶର ପାତ୍ର ମନ୍ତ୍ରୀ ଓ ଅନ୍ୟାନ୍ୟ ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ରାଜ୍ୟସଭାକୁ ଆହ୍ୱାନ କଲେ ଓ ସମବେତ ଭଦ୍ରମଣ୍ଡଳୀ ନିକଟରେ ନିଜର ମନୋଭାବ ବ୍ୟକ୍ତ କଲେ । ଯେ ଆଜୀବନ ପ୍ରଜାମାନଙ୍କୁ ଅପତ୍ୟନିର୍ବିଶେଷରେ ପାଳନ କରି ଆସିଅଛନ୍ତି ଓ ରାଜ୍ୟରେ ସୁଶାସନ ପ୍ରତିଷ୍ଠିତ କରିଅଛନ୍ତି, ତାଙ୍କର ଅବସର ଗ୍ରହଣରେ କେହି ଟିକିଏ ମାତ୍ର ଦୁଃଖିତ ହେଲେ ନାହିଁ । ସମସ୍ତେ ଏକବାକ୍ୟରେ ଦଶରଥଙ୍କ ପ୍ରସ୍ତାବ ଅନୁମୋଦନ କଲେ । "ରାମଚନ୍ଦ୍ରଙ୍କୁ ରାଜ୍ୟଭାର ପ୍ରଦତ୍ତ ହେଲେ ଆମ୍ଭେମାନେ ଅତ୍ୟନ୍ତ ସୁଖୀ ହେବୁଁ" ଏହିକଥା ସମସ୍ତେ ସମସ୍ୱରରେ ମହାରାଜଙ୍କ ନିକଟରେ ନିବେଦନ କଲେ । ରାଜା ଦଶରଥ ପ୍ରୀତ ହୋଇ ତତ୍‌କ୍ଷଣାତ୍ ସର୍ବ-ସମକ୍ଷରେ ରାମଚନ୍ଦ୍ରଙ୍କର ରାଜ୍ୟାଭିଷେକବାର୍ତ୍ତା ଘୋଷଣା କଲେ ଓ ପରଦିନ ଯଥାବିଧି ଅଭିଷେକର ଆୟୋଜନ କରିବାକୁ ଅମାତ୍ୟବର୍ଗଙ୍କୁ ଆଦେଶ ଦେଲେ । ମୁହୂର୍ତ୍ତି ମଧ୍ୟରେ ଏ ସମ୍ବାଦ ଚାରିଆଡ଼େ ପ୍ରଚାରିତ ହୋଇଗଲା । ତାହା ଶ୍ରବଣ କରି ଆବାଳବୃଦ୍ଧବନିତା ସମସ୍ତେ ଆନନ୍ଦରେ ମଗ୍ନ ହେଲେ । ରାମଚନ୍ଦ୍ରଙ୍କର ମଙ୍ଗଳ-କାମନା ନିମନ୍ତେ ସମସ୍ତେ ନାନାବିଧ ଉତ୍ସବ ଅନୁଷ୍ଠାନର ଆୟୋଜନ କଲେ । ଦେଖୁ ଦେଖୁ ଅଯୋଧ୍ୟା ନଗରୀରେ ଗୋଟିଏ ଆନନ୍ଦର ଲହରୀ ଖେଳିଗଲା । ବ୍ରାହ୍ମଣମାନେ ଉଚ୍ଚସ୍ୱରରେ ବେଦଗାନ କରିବାକୁ ଲାଗିଲେ ଓ ରାଜା ରାଜଭଣ୍ଡାର ଉନ୍ମୁକ୍ତ କରି ଦୁଃଖୀ ଦରିଦ୍ରଙ୍କୁ ଅକୁଣ୍ଠିତଭାବରେ ଧନରତ୍ନ ଦାନ କରିବାକୁ ଲାଗିଲେ । କିନ୍ତୁ ବିଧାତାଙ୍କର ଲୀଳା କିଏ ବୁଝିପାରେ ? କିଏ ଜାଣିଥିଲା ଯେ, ଏହି ଆନନ୍ଦପୁରୀରେ ଗୋଟିଏ ବିଷଧର ସର୍ପ ଅଛି ? କିଏ ଜାଣିଥିଲା, ଏ ସୁଖଚନ୍ଦ୍ରକୁ କ୍ଷଣକ ମଧ୍ୟରେ ଗଭୀର ନିରାନନ୍ଦ ଗ୍ରାସ କରିଦେବ ?

ଯେଉଁ ଦିବାଲୋକ ଜଗତରେ ସମସ୍ତଙ୍କର ଚକ୍ଷୁପ୍ରୀତିକର ଓ ଆନନ୍ଦବର୍ଦ୍ଧକ ହୁଏ, ସେହି ଦିବାଲୋକ ପେଚକର ଚକ୍ଷୁଃଶୂଳ ଉତ୍ପାଦନ କରେ । ସେହିପରି ସଂସାରରେ ଏକଜାତୀୟ ଲୋକଅଛନ୍ତି, ଯେଉଁମାନେ ଚକ୍ଷୁରେ ଆନନ୍ଦ ଓ ସୌନ୍ଦର୍ଯ୍ୟ ସହ୍ୟ ହୁଏ ନାହିଁ । ପରର ସୁଖ ଦେଖିଲେ ସେମାନଙ୍କ ମନରେ ଈର୍ଷ୍ୟାବହ୍ନି ପ୍ରଜ୍ୱଳିତ ହୋଇ ଉଠେ । ନିଜର ଦୂଷିତ ନିଃଶ୍ୱାସରେ ସେମାନେ ଜଗତର ପ୍ରତ୍ୟେକ ଜିନିଷକୁ ବିଷାକ୍ତ କରି ଦିଅନ୍ତି । ମନ୍ଥରା ଏହିପରି ଜଘନ୍ୟପ୍ରକୃତିର ସ୍ତ୍ରୀ ଥିଲା । ସେ କୈକେୟୀ ଦେବୀଙ୍କର ପରିଚାରିକା । କୈକେୟୀ ତାହାକୁ ପିତ୍ରାଳୟରୁ ସଙ୍ଗରେ

ଆଣିଥିଲେ, ସେ ସର୍ବଦା କୈକେୟୀଙ୍କର ହିତୈଷିଣୀ । ମନ୍ଥରାର ପରାମର୍ଶ ଅନୁସାରେ କାର୍ଯ୍ୟ କରି କୈକେୟୀ ମହାରାଜ ଦଶରଥଙ୍କର ବିଶେଷ ପ୍ରୀତିଭାଗିନୀ ହୋଇ ଥିଲେ । ସେଥିପାଇଁ ସେ ତାହାର ପରାମର୍ଶ ନ ନେଇ କୌଣସି କାର୍ଯ୍ୟ କରୁ ନ ଥିଲେ । ମନ୍ଥରାର ପିଠିରେ ଗୋଟିଏ କୁଜ ଥିଲା ଓ କୁଜା ଥିବାରୁ ଦେଖିବାକୁ ସେ ଅତ୍ୟନ୍ତ କୁରୂପା ଥିଲା । ତାହାର ଦେହ ଯେପରି କଦାକାର ଥିଲା, ମନ ମଧ୍ୟ ସେହିପରି କୁତ୍ସିତ ଥିଲା । ତାକୁ ଦେଖିଲେ ଲୋକେ ହାସ୍ୟ କରୁଥିଲେ । ସେଥିପାଇଁ ସେ ସଂସାର ଉପରେ ବଡ଼ ବିରକ୍ତ ଥିଲା ।

ରାମଚନ୍ଦ୍ରଙ୍କ ରାଜ୍ୟାଭିଷେକବାର୍ତ୍ତା ପ୍ରସ୍ତୁତ ହେବା ମାତ୍ରକେ ଅଯୋଧ୍ୟା-ନଗରୀରେ ଗୋଟିଏ ମହା ଉତ୍ସବ କୋଳାହଳ ଉଠିଲା । ମନ୍ଥରା କିଛି ଜାଣି ନ ଥିଲା, ପରେ ଏ ଆନନ୍ଦୋତ୍ସବର କାରଣ ଜାଣି ପାରି ହିଂସାରେ ଜର୍ଜ୍ଜରିତ ହୋଇଗଲା । ସେ ଭାବିଲା, ରାମଚନ୍ଦ୍ର ଯୁବରାଜ ହେଲେ ରାଣୀ କୌଶଲ୍ୟା ସର୍ବେସର୍ବା ହୋଇ ଯିବେ, କୈକେୟୀଙ୍କର ଆଉ କିଛି ପ୍ରତିପତ୍ତି ରହିବ ନାହିଁ । ଏହା ଭାବି ତାହାର କ୍ରୋଧ ବୃଦ୍ଧି ପାଇଲା ଓ ମନରେ କେତେ କୁଟବୁଦ୍ଧି ଖେଳିଗଲା । ସେ ତତ୍‌କ୍ଷଣାତ୍ କୈକେୟୀଙ୍କ ନିକଟରେ ଉପସ୍ଥିତ ହୋଇ କହିଲା, "ରାଜାଙ୍କର ପ୍ରିୟତମା ମହିଷୀ ବୋଲି ତୁମ୍ଭର ଭୂଇଁରେ ପାଦ ପଡ଼ୁନାହିଁ, ଏଣେ କଣ ସବୁ ହେଉଛି ତୁମେ ଜାଣିବ କାହୁଁ ? ତୁମର ଆସି ସର୍ବନାଶ ଉପସ୍ଥିତ ।" ଏହା କହି ରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ ସମ୍ବାଦ ଦେବାରୁ ସରଳାହୃଦୟା କୈକେୟୀ ହର୍ଷରେ ଅଧୀର ହୋଇ କଣ୍ଠହାର ଉନ୍ମୋଚନ କରି ମନ୍ଥରାକୁ ପୁରସ୍କାର ଦେଲେ । ମନ୍ଥରା ହାରକୁ ଫିଙ୍ଗିଦେଇ କର୍କଶସ୍ୱରରେ କୈକେୟୀଙ୍କୁ ଭର୍ତ୍ସନା କରି କହିଲା, "ଏ ବୟସରେ ସୁଦ୍ଧା ତୁମର କିଛିଏ ଭଲ ମନ୍ଦ ଜ୍ଞାନ ହେଲା ନାହିଁ ? ତୁମର ସପତ୍ନୀ-ପୁତ୍ର ଯେତେବେଳେ ରାଜା ହେଉଛି, ତୁମକୁ ସାମାନ୍ୟ ଦାସୀ ପରି କୌଶଲ୍ୟାର ଅଧୀନ ହୋଇ ରହିବାକୁ ହେବ, ତୁମର ପୁତ୍ର ରାମଚନ୍ଦ୍ରଙ୍କର କ୍ରୀତଦାସ ହୋଇ ରହିବ । ବେଳ ଥାଉଁ ଥାଉଁ ବନ୍ଧ ବାନ୍ଧ, ନ ହେଲେ ପରେ ସବୁ ବିଫଳ ହେବ ।" ରାମଙ୍କ ପ୍ରତି ସ୍ନେହ ବଶତଃ କୈକେୟୀ ପ୍ରଥମେ ମନ୍ଥରାର ଘୃଣିତ ବାକ୍ୟରେ ବିରକ୍ତ ହୋଇ ତାକୁ ତିରସ୍କାର କଲେ । କିନ୍ତୁ ମନ୍ଥରା ଯେତେବେଳେ କୁତର୍କଜାଲ ବିସ୍ତାର କରି ଗୋଟି ଗୋଟି କରି ସବୁ ବୁଝାଇ ଦେଲା, ତାଙ୍କର ବିବେକ ବୁଦ୍ଧି କୁଆଡ଼େ ଉଭେଇ ଗଲା । କୈକେୟୀଙ୍କ ମନରେ ଖଳବୁଦ୍ଧି ଜାଗ୍ରତ ହୋଇ ଉଠିଲା । ମନ୍ଥରାର କଥା କୈକେୟୀଙ୍କ ହୃଦୟରେ ମନ୍ଦ ବିଷବଲ୍ଲୀ କାର୍ଯ୍ୟ କଲା । ରମଣୀର ସ୍ୱାଭାବିକ ହିଂସା ପ୍ରବୃତ୍ତି ସଙ୍ଗେ ମାତାର ଆଶଙ୍କା ମିଶ୍ରିତ ହୋଇ କୈକେୟୀଙ୍କୁ ବିହ୍ୱଳ କରି ଦେଲା । ସେ ବୁଝିପାରିଲେ, ରାମଚନ୍ଦ୍ର ରାଜା ହେଲେ ତାଙ୍କର ମଙ୍ଗଳ ନାହିଁ ।

ତହୁଁ କୈକେୟୀ ଏ ବିପଦରୁ ମୁକ୍ତ ହେବା ନିମନ୍ତେ ଉପାୟ ଚିନ୍ତା କରିବାକୁ ମନ୍ଥରାକୁ ନାନା ଅନୁନୟ କରି କହିଲେ । ମନ୍ଥରା କହିଲା, "ଉପାୟ ତ ତୁମ ହାତରେ ଅଛି । ଶମ୍ବରାସୁର ସହିତ ଯୁଦ୍ଧରେ କ୍ଷତବିକ୍ଷତ ହୋଇ ରାଜା ଯେତେବେଳେ ତୁମରି ପ୍ରାଣପଣ ସେବାରେ ଆରୋଗ୍ୟ ଲଭ କଲେ, ସେ ପରମ ତୁଷ୍ଟ ହୋଇ ତୁମକୁ ଯେଉଁ ଦୁଇଟି ବର ଦେବେ ବୋଲି ପ୍ରତିଶ୍ରୁତ ହୋଇଥିଲେ, ସେ କଥା କି ତୁମେ ଭୁଲି ଯାଇଅଛ ? ବର୍ତ୍ତମାନ ସେହି ବର ପ୍ରାର୍ଥନା କରିବାର ସମୟ ଆସି ଉପସ୍ଥିତ ହୋଇଅଛି । ଏକ ବରରେ ରାମଚନ୍ଦ୍ରଙ୍କର ଚତୁର୍ଦ୍ଦଶ ବର୍ଷ ବନବାସ ଓ ଅପର ବରରେ ଭରତଙ୍କର ରାଜ୍ୟାଭିଷେକ, ଏହି ଦୁଇ ବର ତୁମେ ମହାରାଜାଙ୍କ ନିକଟରେ ପ୍ରାର୍ଥନା କର, ମହାରାଜ ସତ୍ୟରେ ଆବଦ୍ଧ ଅଛନ୍ତି, ସେ କଦାପି ତୁମର ବାକ୍ୟ ଅନ୍ୟଥା କରିବେ ନାହିଁ ।" ମନୁଷ୍ୟ ମନରେ ଥରେ ପାପବୁଦ୍ଧି ପ୍ରବେଶ କଲେ ସେ ତାକୁ ମନୁଷ୍ୟତାରୁ ବଞ୍ଚିତ ନ କରି ଛାଡ଼େ ନାହିଁ । ମନ୍ଥରାର କଦର୍ଯ୍ୟ ପରାମର୍ଶ କୈକେୟୀ ଆଦରରେ ଗ୍ରହଣ କଲେ ଓ ତାହାର ବୁଦ୍ଧିର ଅଶେଷ ପ୍ରଶଂସା କଲେ ।

ଏଣେ ରାଜା ଦଶରଥ ସନ୍ଧ୍ୟା ଭଙ୍ଗ କରି ସର୍ବାଗ୍ରେ ପ୍ରିୟତମା ମହିଷୀ କୈକେୟୀଙ୍କୁ ରାମଚନ୍ଦ୍ରଙ୍କ ରାଜ୍ୟାଭିଷେକରୂପ ଆନନ୍ଦ ସମାଚାର ପ୍ରଦାନ କରିବାକୁ ପ୍ରଫୁଲ୍ଲମନରେ ଅନ୍ତଃପୁରରେ ପ୍ରବେଶ କଲେ । କୈକେୟୀଙ୍କ କକ୍ଷକୁ ଆସି ଯାହା ଦେଖିଲେ, ସେଥିରେ ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ଦେଖିଲେ, କୈକେୟୀ ମଳିନବସ୍ତ୍ର ପରିଧାନ କରି ଓ ଭୂମିଶଯ୍ୟାରେ ଶୟନ କରି ଚକ୍ଷୁଜଳରେ ଧରାତଳ ସିକ୍ତ କରି ଅଛନ୍ତି । କୈକେୟୀଙ୍କର ଏରୂପ ଅବସ୍ଥା ଦେଖି ରାଜା ବିଚଳିତ ହୋଇ ପଡ଼ିଲେ, ନାନା ମଧୁର ସମ୍ଭାଷଣ କରି ସୁଦ୍ଧା କୌଣସି ପ୍ରତ୍ୟୁତ୍ତର ପାଇଲେ ନାହିଁ । ଅନେକକ୍ଷଣ ଅଭିମାନ କଲା ପରେ ଶେଷରେ କୈକେୟୀ ପୂର୍ବପ୍ରତିଶ୍ରୁତ ବର କଥା ଉତ୍ଥାପନ କଲେ । ପ୍ରେମାନ୍ଧ ବୃଦ୍ଧ ରାଜା କୈକେୟୀଙ୍କର ଦୁରଭିସନ୍ଧି ବୁଝି ନ ପାରି ତାଙ୍କର ମନସ୍ତୁଷ୍ଟି ନିମନ୍ତେ ତତ୍କ୍ଷଣାତ୍ ଦୁଇଟି ବର ପ୍ରଦାନ କରିବାକୁ ସ୍ୱୀକୃତ ହେଲେ । ଏହି ଅବସର ବୁଝି ସୁଚତୁରା କୈକେୟୀ ସତ୍ୟବ୍ରତ ରାଜାଙ୍କ ମସ୍ତକରେ ଦୁଇଟା କଠିନ ବଜ୍ର ନିକ୍ଷେପ କଲେ । ମନ୍ଥରାର ଉପଦେଶ ଅନୁସାରେ କୈକେୟୀ ରାଜାଙ୍କ ନିକଟରେ ରାମଚନ୍ଦ୍ରଙ୍କର ନିର୍ବାସନ ଓ ଭରତଙ୍କ ନିମନ୍ତେ ରାଜପଦ ପ୍ରାର୍ଥନା କଲେ । କୈକେୟୀଙ୍କର ଏରୂପ ନିଦାରୁଣ ପ୍ରାର୍ଥନା ଶୁଣି ଦଶରଥ ବଜ୍ରାହତ ତରୁ ପରି ଭୂତଳଶାୟୀ ହୋଇ ପଡ଼ିଲେ । ସେ ଜାଗ୍ରତ ଅଛନ୍ତି କି ସ୍ୱପ୍ନ ଦେଖୁଅଛନ୍ତି, ଏ ବିଷୟରେ ତାଙ୍କର ସଂଶୟ ଉପସ୍ଥିତ ହେଲା । କୈକେୟୀଙ୍କ ମୁଖରୁ ଯେ ଏପରି ପାପ-କଥା ପ୍ରକାଶିତ ହେବ, ତାହା ତାଙ୍କର କଳ୍ପନାର ସୁଦ୍ଧା ଅଗୋଚର ଥିଲା । ରୋଷ କ୍ଷୋଭରେ ତାଙ୍କର ବାକ୍ରୋଧ ହୋଇ ଆସିଲା ଓ କ୍ରମେ ସଂଜ୍ଞାହୀନ ହୋଇ ପଡ଼ିଲେ ।

କିଛିକ୍ଷଣ ପରେ ସଂଜ୍ଞା ପ୍ରାପ୍ତ ହୋଇ ରାଜା ପ୍ରଥମେ କାତରବାକ୍ୟରେ ଓ ଅଶ୍ରୁପୂର୍ଣ୍ଣଲୋଚନରେ କୈକେୟୀଙ୍କର କୃପାଭିକ୍ଷା କରିବାକୁ ଲାଗିଲେ । ପ୍ରାର୍ଥିତ ବର ପ୍ରତ୍ୟାହାର କରିବାକୁ ସେ କୃତାଞ୍ଜଳିପୁଟରେ ବାରମ୍ବାର କୈକେୟୀଙ୍କୁ ଅନୁରୋଧ କଲେ ଓ ଆଉ ଯାହା ମାଗିବେ ଦେବେ ବୋଲି ସ୍ୱୀକୃତ ହେଲେ । କିନ୍ତୁ କୌଣସିଥିରେ କୈକେୟୀଙ୍କର ପାଷାଣହୃଦୟ ବିଗଳିତ ହେଲା ନାହିଁ । ବରଂ ନାନା ଉପହାସ ଓ କଟୁବାକ୍ୟରେ ସେ ଶୋକସନ୍ତପ୍ତ ଦଶରଥଙ୍କୁ ମର୍ମପୀଡ଼ା ଦେବାକୁ ଲାଗିଲେ । ନାରୀହୃଦୟ ସ୍ୱଭାବତଃ ସ୍ନେହ ଓ କରୁଣାର ଆଧାର, ପବିତ୍ରତାର ଲୀଳାଭୂମି । କିନ୍ତୁ ସେହି ନାରୀ ଯେତେବେଳେ ନିଜର ପ୍ରକୃତି ଭୁଲି ନୀଚବାସନାଦ୍ୱାରା ଚାଳିତ ହୁଏ, ସେତେବେଳେ କାଳଭୁଜଙ୍ଗୀ ରୂପ ଧାରଣ କରି ସେ ଅସାଧ୍ୟ ସାଧନ କରେ; ସେତେବେଳେ ତାହାର ଦୟା ମାୟା, ଧର୍ମ କର୍ମ, ଲଜ୍ଜା ଭୟ ସବୁ ତିରୋହିତ ହୋଇଯାଏ । ଶେଷରେ ଦଶରଥ କ୍ରୋଧରେ କ୍ଷିପ୍ତପ୍ରାୟ ହୋଇ କୈକେୟୀଙ୍କୁ ନାନା ତୀବ୍ର ଭର୍ତ୍ସନା କରିବାକୁ ଲାଗିଲେ, କିନ୍ତୁ ଏଥିରେ ମଧ୍ୟ ସ୍ୱାର୍ଥବିମୂଢ଼ା କୈକେୟୀ ସଂକଳ୍ପ ତ୍ୟାଗ କଲେ ନାହିଁ । ଶେଷରେ ଉପାୟାନ୍ତର ନ ଦେଖି ରାଜା ସତ୍ୟଭଙ୍ଗ ଭୟରେ, "ପାପିୟସି, ତୋର ମନୋବାଞ୍ଛା ପୂର୍ଣ୍ଣ ହେଉ" ଏତିକି ମାତ୍ର କହି ପୁନର୍ବାର ଭୂତଳରେ ପତିତ ହେଲେ ।



# ତୃତୀୟ ପରିଚ୍ଛେଦ

ରଜନୀ ପ୍ରଭାତ ହେଲା । ଊଷାର ବିମଳ ଜ୍ୟୋତି ଅଯୋଧ୍ୟା ଗଗନକୁ କନକ-କିରଣରେ ରଞ୍ଜିତ କରିଦେଲା । ମଧୁରକଣ୍ଠ ପକ୍ଷୀମାନଙ୍କର ସଙ୍ଗୀତଧ୍ୱନିରେ ଅଯୋଧ୍ୟାର ଦିଗ୍‌ଦିଗନ୍ତ ଧ୍ୱନିତ ହୋଇ ଉଠିଲା । ଦେବାଳୟ ଓ ମନ୍ଦିରମାନଙ୍କରୁ ଶୁଭ ଶଙ୍ଖଘଣ୍ଟା-ଧ୍ୱନି ଉତ୍ଥିତ ହେଲା । ପୁରବାସୀମାନେ ଉତ୍ସବରେ ରାତ୍ରି ଯାପନ କରି ପ୍ରଭାତ ନ ହେଉଣୁ ଆସି ଦଳେ ଦଳେ ରାଜଦ୍ୱାରରେ ସମବେତ ହେଲେ । ରାଜସଭା ଲୋକରେ ଲୋକାରଣ୍ୟ । ଆମନ୍ତ୍ରିତ ରାଜନ୍ୟବର୍ଗ ଓ ଋଷିମଣ୍ଡଳୀ ନିଜ ନିଜର ଆସନ ଅଧିକାର କରି ବସିଅଛନ୍ତି । ସମସ୍ତ ଅଭିଷେକସାମଗ୍ରୀ ଯଥାସ୍ଥାନରେ ପ୍ରସ୍ତୁତ ହୋଇ ରହିଅଛି । ଧୂପଦୀପ ଓ ଅନ୍ୟାନ୍ୟ ଗନ୍ଧଦ୍ରବ୍ୟରେ ରାଜପୁରୀ ଆମୋଦିତ ହୋଇ ଯାଉଅଛି । ମହାରାଜ କେତେବେଳେ ରାମଚନ୍ଦ୍ରଙ୍କ ସଙ୍ଗରେ ଘେନି ସଭାକୁ ବିଜେ କରିବେ, ସେଥିପାଇଁ ସମସ୍ତେ ଉତ୍କଣ୍ଠିତ ହୋଇ ଅଛନ୍ତି । କ୍ରମେ ଅଧିକ ବିଳମ୍ବ ହେଉଥିବାର ଦେଖି ବଶିଷ୍ଠ ପ୍ରଭୃତି ଋଷିମାନେ ସୁମନ୍ତ୍ରଙ୍କୁ ଅନ୍ତଃପୁର ମଧ୍ୟକୁ ପଠାଇଲେ, କୈକେୟୀ ସୁମନ୍ତ୍ରଙ୍କୁ ଦେଖି ପ୍ରକୃତ ଘଟଣା ନ ଜଣାଇ କହିଲେ, "ସୁମନ୍ତ୍ର, ମହାରାଜ ଟିକିଏ ଅସୁସ୍ଥ ଅଛନ୍ତି, ତୁମ୍ଭେ ଶୀଘ୍ର ଯାଇ ରାମଚନ୍ଦ୍ରଙ୍କୁ ଏଠାକୁ ଘେନି ଆସ ।" ଆଦେଶ ପାଇବାମାତ୍ରେ ସୁମନ୍ତ୍ର ସେଠାରୁ ପ୍ରସ୍ଥାନ କଲେ ।

ରାମଚନ୍ଦ୍ର ସୀତା ଦେବୀଙ୍କ ସହିତ ଶୁଦ୍ଧ ଓ ସଂଯତ ଚିତ୍ତରେ ଈଶ୍ୱରପୂଜାରେ ନିଶିଯାପନ କରି ଓ ପ୍ରାତଃକୃତ୍ୟାଦି ସମାପନ କରି ପିତାଙ୍କର ଆଦେଶକୁ ଅପେକ୍ଷା କରୁଥିଲେ । ଏପରି ସମୟରେ ସୁମନ୍ତ୍ର ଆସି ତାଙ୍କୁ ରାଜାଙ୍କର ଆଦେଶ ଜଣାଇଲେ । ରାମଚନ୍ଦ୍ର ତତ୍‌କ୍ଷଣାତ୍ ସୁମନ୍ତ୍ରଙ୍କ ସଙ୍ଗେ କୈକେୟୀଙ୍କର ପୁରରେ ଉପସ୍ଥିତ ହେଲେ । ଯାଇ ଯାହା ଦେଖିଲେ, ସେଥିରେ ତାଙ୍କର ଆଉ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । ସେ ଦେଖିଲେ, ରାଜା ଭୂମିରେ ପଡ଼ି ଛଟପଟ ହେଉଅଛନ୍ତି । ତାଙ୍କର ମୁଖ ବିବର୍ଣ୍ଣ ଓ ଦୁଇ ଗଣ୍ଡ ଦେଇ ଅନବରତ ଅଶ୍ରୁଧାରା ବହୁଅଛି । ରାମଚନ୍ଦ୍ର ପିତା ଓ ବିମାତା-ଙ୍କର ଚରଣବନ୍ଦନା କରି କେବଳ ପାର୍ଶ୍ୱରେ ଛିଡ଼ା ହୋଇ ରହିଲେ । ତାଙ୍କୁ ଦେଖି ଦଶରଥଙ୍କର ଶୋକସିନ୍ଧୁ ଉଚ୍ଛୁଳି ପଡ଼ିଲା । ସେ କେବଳ ଥରେ ମାତ୍ର "ରାମ" ଏହି କଥା କହି ବାଳକ ପରି ରୋଦନ କରିବାକୁ ଲାଗିଲେ ।

ପିତାଙ୍କର ଏରୂପ ଅବସ୍ଥା ଦେଖି ରାମଚନ୍ଦ୍ର ସ୍ତମ୍ଭିତ ହୋଇ ରହିଲେ । ତାଙ୍କୁ କୌଣସି କଥା ପଚାରିବାକୁ ତାଙ୍କର ସାହସ ହେଲା ନାହିଁ । ଶେଷରେ ରାମଚନ୍ଦ୍ର ବ୍ୟାକୁଳଭାବରେ କୈକେୟୀଙ୍କୁ ପଚାରିଲେ, "ମା, ପିତାଙ୍କର ଆଜି ଏପରି ଅବସ୍ଥା

କାହିଁକି ? କୌଣସିଠାରୁ କଣ କିଛି ଦୁଃଖ ସମ୍ବାଦ ଆସିଅଛି ? ନା, ମୁଁ କିଛି ଅପରାଧ କରି ତାଙ୍କର ଅସନ୍ତୋଷଭାଜନ ହୋଇଅଛି ?"

କୈକେୟୀ କହିଲେ, "ସେ ସବୁ କିଛି ହୋଇ ନାହିଁ । କେବଳ ତୁମରି ନିମନ୍ତେ ମହାରାଜ ଏତେଦୂର କାତର ହୋଇଅଛନ୍ତି । ତୁମର ପିତା ମତେ ଦୁଇଟି ବର ଦେବା ନିମନ୍ତେ ପ୍ରତିଶ୍ରୁତ ହୋଇଅଛନ୍ତି । ତୁମେ ଯଦି ତାହା ପାଳନ କର, ତାହାହେଲେ ରାଜାଙ୍କର ସତ୍ୟରକ୍ଷା ହେବ । ଏହା ପାଳନ କରିବା କିନ୍ତୁ କ୍ଲେଶ-ସାଧ୍ୟ । ତୁମ ମନରେ କଷ୍ଟ ହେବ ବୋଲି ରାଜା ମୁଖରେ ପ୍ରକାଶ କରିବାକୁ କୁଣ୍ଠିତ ହେଉଅଛନ୍ତି ।"

ରାମଚନ୍ଦ୍ର କହିଲେ, "ମା, ପିତାଙ୍କର ଆଦେଶ କୌଣସି କାର୍ଯ୍ୟ ମୋ ପକ୍ଷରେ କ୍ଲେଶସାଧ୍ୟ ନୁହେ । ପିତାଙ୍କ ଆଦେଶରେ ମୁଁ ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ ଦେଇ ପାରେ । ପିତାଙ୍କ ସତ୍ୟରେ ମୁଁ ନିଜେ ଆବଦ୍ଧ ହେଲି । ରାମର ମୁଖରୁ କଦାପି ମିଥ୍ୟା କଥା ବାହାରି ନାହିଁ । କଣ କରିବାକୁ ହେବ, ଶୀଘ୍ର କହନ୍ତୁ । ସତ୍ୟରକ୍ଷା ନିମନ୍ତେ ମୁଁ ଦଗ୍ଧହଳାହଳ ମଧ୍ୟ ପାନ କରିବାକୁ ପ୍ରସ୍ତୁତ ।"

ରାମଚନ୍ଦ୍ରଙ୍କ କଥା ଶୁଣି ନିଷ୍ଠୁରମତି କୈକେୟୀ ଅମ୍ଳାନବଦନରେ ବର ସଂକ୍ରାନ୍ତ ସମସ୍ତ କଥା ପ୍ରକାଶ କଲେ । ପିତୃପରାୟଣ ରାମଚନ୍ଦ୍ର ଅଣୁମାତ୍ର ବିଚଳିତ ନ ହୋଇ ପୂର୍ବବତ୍ ପ୍ରସନ୍ନମୁଖରେ କହିଲେ, "ମା, ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ । ମୁଁ ମାତା କୌଶଲ୍ୟାଙ୍କ ନିକଟରୁ ବିଦାୟ ଗ୍ରହଣ କରି ଏହି ମୁହୂର୍ତ୍ତରେ ଅରଣ୍ୟଯାତ୍ରା କରୁଅଛି । ଆପଣ ପିତାଙ୍କୁ ପ୍ରସନ୍ନ କରନ୍ତୁ । ପିତାଙ୍କୁ ସତ୍ୟପାଶରୁ ମୁକ୍ତ କରି ମୁଁ ଅଜି ନିଜକୁ ଧନ୍ୟ ମଣୁଅଛି । ଆଉ ମଧ୍ୟ ପ୍ରିୟତମ ଭରତ ଉପରେ ରାଜ୍ୟଭାର ଅର୍ପିତ ହେଲା, ଏହା ମୋର କମ୍ ଆନନ୍ଦର ବିଷୟ ନୁହେ ।" ଏହା କହି ରାମଚନ୍ଦ୍ର ପିତା ଓ ବିମାତାଙ୍କ ଚରଣବନ୍ଦନା କରି କକ୍ଷ ତ୍ୟାଗ କଲେ ।

ଦଶରଥଙ୍କ ଚକ୍ଷୁସମକ୍ଷରେ ଏହି ହୃଦୟବିଦାରକ ଦୃଶ୍ୟର ଅଭିନୟ ହୋଇଗଲା । ସେ ଉଦାସ ନୟନରେ କେବଳ ଅନାଇ ରହିଲେ । ଏ ସବୁ ଘଟନା ତାଙ୍କୁ ପ୍ରହେଳିକା ତୁଲ୍ୟ ପ୍ରତୀୟମାନ ହେଲା । ରାମଚନ୍ଦ୍ର ବିଦାୟ ନେଇ ଚାଲି ଯିବା ପରେ ବୃଦ୍ଧ ନରପତି "ହା ରାମ, ହା ରାମ" କହି ଭୂତଳଶାୟୀ ହେଲେ ।

କୈକେୟୀଙ୍କ ଭବନରୁ ବାହାରି ରାମଚନ୍ଦ୍ର କୌଶଲ୍ୟା ଦେବୀଙ୍କ ନିକଟରେ ଉପସ୍ଥିତ ହେଲେ । କୌଶଲ୍ୟା ସେ ସମୟରେ ପୁତ୍ରର ମଙ୍ଗଳ-କାମନା ନିମନ୍ତେ

ଦେବପୂଜା ଓ ଦୀନଦରିଦ୍ରମାନଙ୍କୁ ଧନ ବିତରଣରେ ନିଯୁକ୍ତ ଥିଲେ । ରାମ ଆସିବାର ଦେଖି ସେ ପୁତ୍ରଙ୍କୁ ସ୍ନେହାଲିଙ୍ଗନପୂର୍ବକ ଆଶୀର୍ବାଦ କରିବାକୁ ଲାଗିଲେ । ହାୟ ! ସେତେବେଳେ ମୁଗ୍ଧା ସେ ଜାଣନ୍ତି ନାହିଁ ଯେ, କି ଦାରୁଣ ବଜ୍ର ତାଙ୍କ ମସ୍ତକ ଉପରେ ପଡ଼ିବାକୁ ଉଦ୍ୟତ ହୋଇଅଛି । ରାମଚନ୍ଦ୍ରଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଛିନ୍ନମୂଳ ଲତା ପରି ଭୂମିରେ ପତିତ ହେଲେ । ଏହା ପରେ ରାମଚନ୍ଦ୍ର କପରି ମାତାଙ୍କର ଚୈତନ୍ୟ ସମ୍ପାଦନ କରି ନାନା ପ୍ରବୋଧବାକ୍ୟଦ୍ୱାରା ତାଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ ଓ ଶେଷରେ ମାତାଙ୍କଠାରୁ ବିଦାୟ ଘେନି ଆସିବା ସମୟରେ କୌଶଲ୍ୟାଙ୍କ ମନରେ କପରି ମର୍ମାନ୍ତିକ ଯନ୍ତ୍ରଣା ହେଲା, ତାହା ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ ।

ମେଘମୁକ୍ତ ନୀଳ ଆକାଶରୁ ବଜ୍ର ପଡ଼ିଲେ ଲୋକେ ଯେପରି ଚକିତ ହୁଅନ୍ତି, ରାମଚନ୍ଦ୍ରଙ୍କ ନିର୍ବାସନ ସମ୍ବାଦ ଶୁଣି ଅଯୋଧ୍ୟାବାସୀ ସେହିପରି ସ୍ତମ୍ଭିତ ହୋଇଗଲେ । ଘରଆଡ଼େ ହାହାକାର ପଡ଼ିଲେ । ଅଯୋଧ୍ୟାର ଯୁବକ ଯୁବତୀ, ବାଳ ବୃଦ୍ଧ ସମସ୍ତେ ଶିରରେ କରାଘାତ କରି ରୋଦନ କଲେ ଓ କୈକେୟୀଙ୍କ ଉପରେ ଅଭିସମ୍ପାତ ବର୍ଷଣ କରିବାକୁ ଲାଗିଲେ । ରଜନୀରେ ଯେଉଁଠାରେ ଆନନ୍ଦ ଉତ୍ସବର ରୋଳ ଉଠୁଥିଲା, ରଜନୀ ଶେଷରେ ସେଠାରେ ମର୍ମଭେଦୀ କ୍ରନ୍ଦନଧ୍ୱନି ଉଠିବାକୁ ଲାଗିଲା । ଲକ୍ଷ୍ମଣ କ୍ରୋଧରେ ଉନ୍ମତ୍ତ ପ୍ରାୟ ହୋଇ ପିତାଙ୍କର ନିନ୍ଦାବାଦ କରିବାକୁ ଲାଗିଲେ ଓ ବୁଦ୍ଧିଭ୍ରଷ୍ଟ ରାଜାଙ୍କର ଆଦେଶ ଅମାନ୍ୟ କଲେ ଧର୍ମହାନି ହେବ ନାହିଁ ବୋଲି ସ୍ପଷ୍ଟ ପ୍ରକାଶ କଲେ । କିନ୍ତୁ ସୁଧୀର ରାମ ଲକ୍ଷ୍ମଣଙ୍କୁ ମୃଦୁମଧୁର ତିରସ୍କାର କରି କହିଲେ, “ପିତା ସାକ୍ଷାତ୍ ଧର୍ମ, ପିତାଙ୍କର ଆଦେଶ ଲଙ୍ଘନଠାରୁ ବଳି ପାପ ଜଗତରେ ନାହିଁ । ସତ୍ୟପାଳନ ନିମନ୍ତେ ସୂର୍ଯ୍ୟବଂଶ ଚିରପ୍ରସିଦ୍ଧ । ସାମାନ୍ୟ ରାଜ୍ୟଲୋଭରେ ସତ୍ୟଭ୍ରଷ୍ଟ ହୋଇ ଅକଳଙ୍କ କୁଳରେ କଳଙ୍କ ଦେବା ଅତି ମୂଢ଼ତାର କାର୍ଯ୍ୟ ।” ଅବଶେଷରେ ଲକ୍ଷ୍ମଣ ଯେତେବେଳେ ବୁଝି ପାରିଲେ ଯେ ରାମଚନ୍ଦ୍ର ପିତୃସତ୍ୟ ପାଳନ କରିବାକୁ କୃତସଙ୍କଳ୍ପ ହୋଇଅଛନ୍ତି, ସେତେବେଳେ ସେ ନିଜେ ତାଙ୍କ ସହିତ ବନଗମନ ନିମନ୍ତେ ଉଦ୍ୟତ ହେଲେ । ରାମଚନ୍ଦ୍ର ଯେତେ ବାରଣ କରି ଯେତେ ବୁଝାଇ ମଧ୍ୟ ତାଙ୍କୁ ନିବୃତ୍ତ କରି ପାରିଲେ ନାହିଁ, ଲକ୍ଷ୍ମଣଙ୍କର ସଂକଳ୍ପ ଅଟଳ ରହିଲା ।

ଏହାପରେ ରାମଚନ୍ଦ୍ର ବିଦାୟ ନେବା ନିମନ୍ତେ ସୀତାଙ୍କ ନିକଟରେ ଉପସ୍ଥିତ ହେଲେ । ଏପର୍ଯ୍ୟନ୍ତ ରାମଙ୍କ ବଦନମଣ୍ଡଳ ପିତୃସତ୍ୟରକ୍ଷାରୂପ ସାଧୁସଂକଳ୍ପରେ ପ୍ରଦୀପ୍ତ ଥିଲା । କିନ୍ତୁ ସୀତାଙ୍କୁ ଦେଖି ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା, ମୁଖରୁ କିଛି କଥା

ବାହାରକୁ ନାହିଁ । ସୀତା ଦେବୀ ଅଭିଷେକ ଆନନ୍ଦରେ ଉନ୍ମତ୍ତ ଥାଇ ସ୍ୱାମୀଙ୍କର ଆଗମନ ପ୍ରତୀକ୍ଷା କରୁଥିଲେ । ମେଘାବୃତ ଗଗନ ପରି ରାମଚନ୍ଦ୍ରଙ୍କର ଧୀର ଗମ୍ଭୀର ମୂର୍ତ୍ତି ଦେଖି ତାଙ୍କର ହୃଦୟ କମ୍ପିତ ହୋଇ ଉଠିଲା । ସେ ବ୍ୟାକୁଳସ୍ୱରରେ ପଚାରିଲେ, "ନାଥ, ଆଜି ଏ ଶୁଭଦିନରେ ତୁମର ମୁଖ ଏତେ ମଳିନ କାହିଁକି ? ସହସା ତୁମର ଏପରି ଭାବାନ୍ତର ଘଟିବାର କାରଣ କଣ ? ରାଜପରିବାରର ସମସ୍ତ କୁଶଳ ତ ?"

ରାମଚନ୍ଦ୍ର କହିଲେ, "ପିତା ମତେ ଚଉଦ ବର୍ଷ ଅରଣ୍ୟବାସର ଆଦେଶ ଦେଇଅଛନ୍ତି ।" ଏହା କହି ସେ ଆନୁପୂର୍ବିକ ସମସ୍ତ ଘଟଣା ସୀତାଙ୍କ ନିକଟରେ ବିବୃତ କଲେ । ସବୁ କଥା ଶୁଣି ସୀତାଦେବୀ କିନ୍ତୁ ମାତ୍ର ବିଚଳିତ ହେଲେ ନାହିଁ; କେବଳ କ୍ଷଣକାଳ ନୀରବ ହୋଇ ରହିଲେ ।

ରାମଚନ୍ଦ୍ର କହିଲେ, "ପିତାଙ୍କ ଆଦେଶରେ ମତେ ଆଜି ଅଯୋଧ୍ୟା ପରିତ୍ୟାଗ କରିବାକୁ ହେବ । ସେଥିପାଇଁ ତୁମ ନିକଟରୁ ବିଦାୟ ନେବାକୁ ଆସିଛି । ମୋ ପାଇଁ କିଛି ଚିନ୍ତା କର ନାହିଁ । ପ୍ରାଣର ଭାଇ ଲକ୍ଷ୍ମଣ ମୋ ସାଙ୍ଗରେ ବନକୁ ଯାଉଅଛନ୍ତି । ମୋର କୌଣସି କଷ୍ଟ ହେବ ନାହିଁ; କେବଳ ମୋର ଏତିକି ଅନୁରୋଧ ଯେ, ମୁଁ ଏଠାରେ ନ ଥିଲେ ସୁଦ୍ଧା ପରିବାରର କର୍ତ୍ତବ୍ୟ ପାଳନରେ ତୁମର ଯେପରି କିଛି ମାତ୍ର ତ୍ରୁଟି ନ ହୁଏ । ବୃଦ୍ଧ ପିତା ମାତା ମତେ ନ ଦେଖି ଅଛଗ୍ରାସ୍ତ ହୋଇପଡ଼ିବେ । ସେମାନଙ୍କର ସେବା ଓ ସାନ୍ତ୍ୱନାର ଭାର ତୁମରି ଉପରେ । ତୁମେ ବୁଦ୍ଧିମତୀ ଓ ସର୍ବଶାସ୍ତ୍ରନିପୁଣା, ତୁମକୁ ଆଉ ଅଧିକ କଣ କହିବି ? ଭଗବାନ୍ ତୁମର ମଙ୍ଗଳ କରନ୍ତୁ । ମତେ ବର୍ତ୍ତମାନ ସହାସ୍ୟ ମୁଖରେ ବିଦାୟ ଦିଅ ।"

ରାମଚନ୍ଦ୍ରଙ୍କ କଥା ଶୁଣି ସୀତାଦେବୀ ମନେ ମନେ ବଡ଼ ବ୍ୟଥା ପାଇଲେ । ସେ ମନେ କଲେ, ମୋର ସ୍ୱାମୀ କଣ ଏତେଦିନରେ ସୁଦ୍ଧା ମତେ ଚିହ୍ନି ପାରିଲେ ନାହିଁ ? ଇତର ନାରୀ ପରି ମତେ କଣ ଘରେ ରହିବାକୁ କହିଲେ ! ଏହିପରି ଭାବି ସେ କହିଲେ, "ନାଥ, ତୁମେ କଣ ଭାବି ମତେ ଏପରି କହୁଅଛ ? ତୁମେ ପରିହାସ କରୁଅଛ କି ପ୍ରକୃତରେ ତୁମର ମନର ଭାବ ଏହିପରି, ମୁଁ ବୁଝି ପାରୁ ନାହିଁ । କି ଉଦ୍ଦେଶ୍ୟରେ ତୁମେ ମୋତେ ଘରେ ରହିବାକୁ କହୁଅଛ ? କି ସମ୍ପଦରେ କି ବିପଦରେ କି ଗୃହରେ କି ଅରଣ୍ୟରେ, ସ୍ତ୍ରୀ ସ୍ୱାମୀର ସହଚରୀ । କି ସୁଖ ଆଶାରେ ମୁଁ ରାଜଭବନରେ ରହିବି ? ଏପରି ଅସଙ୍ଗତ କଥା ତୁମ ପରି ଶାସ୍ତ୍ରଜ୍ଞ ରାଜପୁତ୍ରର ସମ୍ପୂର୍ଣ୍ଣ ଅଯୋଗ୍ୟ । ପିତା, ମାତା, ଭ୍ରାତା, ପୁତ୍ର ସମସ୍ତେ ନିଜ ନିଜର କର୍ମଫଳ ପ୍ରାପ୍ତ ହୁଅନ୍ତି, କିନ୍ତୁ କେବଳ ଭାର୍ଯ୍ୟା ହିଁ ସ୍ୱାମୀର ଭାଗ୍ୟ ଭୋଗ କରେ । ସୁତରାଂ ତୁମର ଅରଣ୍ୟବାସ ଆଦେଶ

ହେବା ସଙ୍ଗେ ସଙ୍ଗେ ମୋ ପ୍ରତି ମଧ୍ୟ ସେହି ଆଦେଶ ହୋଇଅଛି । ମୋର ଐଶ୍ୱର୍ଯ୍ୟ ଲୋଡ଼ା ନାହିଁ କି ରାଜସମ୍ଭୋଗ ଲୋଡ଼ା ନାହିଁ । କେବଳ ଯେପରି ମୁଁ ତୁମର ଚରଣଛାୟାରୁ ବଞ୍ଚିତ ନ ହୁଏ ଏତିକି ମୋର ପ୍ରାର୍ଥନା । ତୁମକୁ ଛାଡ଼ି ସିଂହାସନର ଅଧୀଶ୍ୱରୀ ହେବାକୁ ସୁଦ୍ଧା ମୁଁ ଇଚ୍ଛା କରେ ନାହିଁ । ମୁଁ କେବେହେଁ ତୁମର କୌଣସି କଥା ଅମାନ୍ୟ କରିନାହିଁ । କିନ୍ତୁ ମତେ ଆଜି ବାଧା ଦିଅ ନାହିଁ । ପିତୃସତ୍ୟ ପାଳନ ନିମନ୍ତେ ସବୁ ସୁଖ ଐଶ୍ୱର୍ଯ୍ୟ ତ୍ୟାଗ କରି ତୁମେ ବନକୁ ଯାଉଅଛ, ଏହା ତ ମୋ ପକ୍ଷରେ ଅତି ଗୌରବର କଥା । ଏ ଗୌରବର ଭାଗୀ ହୋଇ ମୁଁ କାହିଁକି ତୁମର ଅନୁସରଣ କରିବି ନାହିଁ ?”

ରାମଚନ୍ଦ୍ର କହିଲେ, “ଦୁଃଖ କଷ୍ଟ କଣ ତୁମେ ଜାଣିନାହଁ । ତୁମର ଅଙ୍ଗରେ ଅରଣ୍ୟବାସ କ୍ଲେଶ କିପରି ସହ୍ୟ ହେବ ? ଅରଣ୍ୟ ଯେ କି ଭୟଙ୍କର ସ୍ଥାନ, ତାହା ତୁମକୁ ଜଣା ନାହିଁ । ସେଠାରେ ଜନମାନବର ସଞ୍ଚାର ନାହିଁ । ଚତୁର୍ଦ୍ଦିଗରେ ରାକ୍ଷସ ଓ ହିଂସ୍ର ଜନ୍ତୁମାନେ ବିଚରଣ କରୁଅଛନ୍ତି, ପଥସବୁ କଣ୍ଟକାବୃତ, ବୃକ୍ଷ ଲତାମାନଙ୍କର ଘନ ସନ୍ନିବେଶ ଯୋଗୁଁ ଦିବାଭାଗରେ ସୁଦ୍ଧା ରାତିପରି ବୋଧ ହୁଏ । ପଦେ ପଦେ ବିପଦର ଆଶଙ୍କା । ଫଳମୂଳ ଓ ନଦୀ ନିର୍ଝରିଣୀର ଜଳ ଛଡ଼ା ଅନ୍ୟ କିଛି ଖାଦ୍ୟ ନାହିଁ । ତାହା ମଧ୍ୟ ସବୁ ସମୟରେ ମିଳିବା ଦୁଷ୍କର । ଅତଏବ ତୁମେ ଆଉ ସେ ଦିଗକୁ ମନ ବଳାଅ ନାହିଁ । ସେଠାରେ ବାସ କରିବା ପୁରୁଷ ପକ୍ଷରେ ସୁଦ୍ଧା ନିରାପଦ ନୁହେଁ । ତୁମେ ନାରୀ, ତୁମେ କେଉଁ ସାହସରେ ସେଠାକୁ ଯିବାକୁ ଉଦ୍ୟତ ହେଉଅଛ ?”

ସୀତା କହିଲେ, “ବନବାସ ଦୁଃଖ ବର୍ଣ୍ଣନା କରି ମତେ ଭୁଲାଇବାକୁ ଚେଷ୍ଟା କରିବା ବୃଥା । ସ୍ୱାମୀ ସନ୍ନିକଟରେ ଥିଲେ ରମଣୀ ଏହାର ଶତଗୁଣ କ୍ଲେଶ ହାସ୍ୟବଦନରେ ସହ୍ୟ କରି ପାରେ, ଏ କଷ୍ଟ କେଉଁ ଛାର ? ସାମାନ୍ୟ କ୍ଲେଶ ଭୟରେ ଯେ ସ୍ୱାମୀର ସୁଖଦୁଃଖଭାଗିନୀ ହେବାକୁ କୁଣ୍ଠିତ ହୁଏ, ସେ ନାରୀନାମର ସମ୍ପୂର୍ଣ୍ଣ ଅଯୋଗ୍ୟା । ମୋ ପାଇଁ ତୁମେ କୌଣସି ଚିନ୍ତା କର ନାହିଁ । ମୁଁ ଯେତେବେଳେ ସ୍ୱତଃପ୍ରବୃତ୍ତ ହୋଇ ବନବାସ କାମନା କରୁଅଛି, ସେତେବେଳେ ବନବାସ ଦୁଃଖ ସବୁ ମୋର କଷ୍ଟକର ନ ହୋଇ ବରଂ ପ୍ରୀତିକର ହେବ । ତୁମେ ବୋଧହୁଏ ଜାଣ ଅରଣ୍ୟଭ୍ରମଣ ମୋର ଅତ୍ୟନ୍ତ ପ୍ରିୟ । ବିଶେଷତଃ ତୁମ ସହିତ ବନବାସ, ଏହା ତ ମୋ ପକ୍ଷରେ ପରମ ସୌଭାଗ୍ୟର ବିଷୟ । ରାଜଭବନରେ ଥାଇ ଏକାନ୍ତରେ ତୁମର ସେବା କରିବାର ସୁଯୋଗ ମୁଁ ପାଇ ପାରି ନାହିଁ । ମୋର ବଡ଼ ଇଚ୍ଛା, ଅରଣ୍ୟରେ ତୁମର ପ୍ରାଣପଣ ସେବା କରି ନିଜକୁ କୃତାର୍ଥ କରିବି । ତୁମେ ଯେତେବେଳେ ପଥଶ୍ରାନ୍ତ ହୋଇ ଫେରି ଆସିବ, ମୁଁ ନଦୀରୁ ଜଳ ଆଣି ତୁମର ପାଦ ପ୍ରକ୍ଷାଳନ କରି ଦେବି;

ତୁମେ ଅରଣ୍ୟରୁ ଯାହା ସଂଗ୍ରହ କରି ଆଣିବ, ତାହା ସ୍ୱହସ୍ତରେ ରନ୍ଧନ କରି ତୁମକୁ ପରିବେଷଣ କରିବି; ନବ ଦୂର୍ବାଦଳ ଓ କୋମଳ ପତ୍ରରେ ତୁମଲାଗି ଶଯ୍ୟା ରଚନା କରି ତୁମର ପାଦସେବା କରିବି । ସ୍ୱାମୀ ଦେଖ, ନାରୀ ପକ୍ଷରେ ଏହାଠାରୁ ବଳି ଅଧିକ ଗୌରବର ବିଷୟ ଆଉ କଣ ଅଛି ?"

ସୀତାଙ୍କର ସମସ୍ତ ଯୁକ୍ତି ତର୍କ ଅନୁନୟ ବିନୟ ବିଫଳ ହେଲା । ରାମଚନ୍ଦ୍ର କୌଣସି ପ୍ରକାରେ ସୀତାଙ୍କୁ ସଙ୍ଗରେ ନେବାକୁ ସମ୍ମତ ହେଲେ ନାହିଁ । ରାମଚନ୍ଦ୍ର ନାନା ଯୁକ୍ତି ଦେଖାଇ ଅଯୋଧ୍ୟାରେ ରହିବା ପାଇଁ ସୀତାଙ୍କୁ ଯେତେକ ବୁଝାଇବାକୁ ଲାଗିଲେ ସୀତାଙ୍କ ମନରେ ସେତିକି ବେଶୀ କଷ୍ଟ ହେଲା । ସୀତା କାତର ସ୍ୱରରେ କହିଲେ, "ଯେଉଁ ଭରତଙ୍କ ଲାଗି ତୁମେ ରାଜ୍ୟଲାଭରୁ ବଞ୍ଚିତ ହୋଇ ବନବାସ କରିବାକୁ ଯାଉଅଛ, ସେହି ଭରତଙ୍କ ଅଧୀନରେ ରହି ଜୀବନ ଯାପନ କରିବାକୁ ତୁମେ କିପରି ମତେ ପରାମର୍ଶ ଦେଉଅଛ ? ଭରତ ଯେ ମୋ ସହିତ କୌଣସି ମନ୍ଦ ବ୍ୟବହାର କରିବେ, ସେ କଥା ମୁଁ କହୁ ନାହିଁ । କିନ୍ତୁ ମୋର ମନର ଅବସ୍ଥା କଣ ଟିକିଏ ମାତ୍ର ବୁଝି ପାରୁଥିଲେ ମୋତେ ଏଠାରେ ଛାଡ଼ି ବନକୁ ଯିବାକୁ ତୁମେ ଉଦ୍ୟତ ହୁଅନ୍ତ ନାହିଁ । ତୁମେ ଅରଣ୍ୟ କାନ୍ତାରରେ ବୁଲି ବୁଲି ଦିନାତିପାତ କରୁଥିବ, ତୁମର ଟିକିଏ ସେବା କରିବାକୁ ପାଖରେ କେହି ନଥିବେ, ଆଉ ମୁଁ ଦାସଦାସୀପରିବୃତା ହୋଇ ରାଜ-ଭବନରେ ସୁଖରେ ଦିନ କଟାଉଥିବି, ଏକଥା ଭାବିଲାବେଳକୁ ମୋର ମନ କଣ ହେବ କହିଲ ଦେଖି ? ନାଥ ! ସତ କହୁଛି, ତାର ଛିଣ୍ଡିଗଲେ ବୀଣା ଯେପରି ନୀରବ ହୋଇଯାଏ, ଚକ ନ ଥିଲେ ରଥ ଯେପରି ଅଚଳ ହୋଇଯାଏ, ମୋର ଅବସ୍ଥା ସେହିପରି ହେବ । ତୁମ ପାଖରେ ଥିଲେ ମୁଁ ସକଳ ଦୁଃଖ ଅକ୍ଳେଶରେ ସହ୍ୟ କରି ପାରିବି, କିନ୍ତୁ ତୁମ ବିଚ୍ଛେଦରେ ମୁଁ ଏକ ମୁହୂର୍ତ୍ତ ମାତ୍ର ଜୀବନ ଧାରଣ କରି ପାରିବି ନାହିଁ । ବେଗରେ ହେଉ କି ଗରଳରେ ହେଉ, ଶୀଘ୍ର ମୋର ଜୀବନଦୀପ ନିର୍ବାପିତ ହୋଇଯିବ ।"

ଏହା କହୁ କହୁ ସୀତାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇ ଆସିଲା । ସେ ଆଉ କଥା କହି ପାରିଲେ ନାହିଁ; ରାମଚନ୍ଦ୍ରଙ୍କ ପଦଯୁଗଳ ଧରି ଭୂମିରେ ଲୁଣ୍ଠିତ ହୋଇ ପଡ଼ିଲେ । ରାମଚନ୍ଦ୍ର ସସ୍ନେହରେ ପ୍ରିୟତମାଙ୍କୁ ଉତ୍ତୋଳନ କରି ବକ୍ଷରେ ଧାରଣ କଲେ । ସୀତା ଆଉ ସମ୍ଭାଳି ନ ପାରି ବ୍ୟାକୁଳଭାବରେ ରୋଦନ କରିବାକୁ ଲାଗିଲେ । ରାମଚନ୍ଦ୍ର ସୀତାଙ୍କର କଣ୍ଠାଲିଙ୍ଗନ କରି କହିଲେ, "ପ୍ରିୟେ, ସୀତା ଭିନ୍ନ ରାମର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ସୀତା ରାମର ସୁଖ, ସୀତା ରାମର ଶାନ୍ତି । କେବଳ ତୁମର କଷ୍ଟ ହେବ ବୋଲି ମୁଁ ତୁମକୁ ଗୃହରେ ରଖି ବନକୁ ଯିବାକୁ ଉଦ୍ୟତ ହୋଇଥିଲି, ନ ହେଲେ ତୁମ ଅଭାବରୁ ମୋର ଯେ କି ମରଣାପନ୍ନ ଯନ୍ତ୍ରଣା ହୋଇ-ଥାନ୍ତା, ତାହା ବାକ୍ୟରେ ପ୍ରକାଶ କରି ହେବ ନାହିଁ । ତୁମ ମନରେ କଷ୍ଟ ଦେଇ

ମୁଁ ସ୍ୱର୍ଗ କାମନା ମଧ୍ୟ କରେ ନାହିଁ । ତୁମେ ଯେତେବେଳେ ଯିବାକୁ କୃତସଂକଳ୍ପ ହୋଇଅଛ, ମୁଁ ନିଷେଧ କରିବି ନାହିଁ । ଯାଅ, ବର୍ତ୍ତମାନ ବନଗମନ ନିମନ୍ତେ ପ୍ରସ୍ତୁତ ହୁଅ । ଆମ୍ଭମାନଙ୍କର ଧନରତ୍ନ, ବସ୍ତ୍ରଭୂଷଣ ଯାହା ଅଛି ସବୁ ଦରିଦ୍ରମାନଙ୍କୁ ବିତରଣ କର ଓ ଗୁରୁଜନମାନଙ୍କ ନିକଟରୁ ବିଦାୟ ନେଇ ଆସ । ଆଉ ବିଳମ୍ବରେ ପ୍ରୟୋଜନ ନାହିଁ ।”

ପ୍ରେମର ଜୟ ହେଲା । ସୀତାଙ୍କ ମନରେ ଆଉ ଆନନ୍ଦର ସୀମା ରହିଲା ନାହିଁ । ସେ ହୃଷ୍ଟଚିତ୍ତରେ ଯାଇ ଅମ୍ଳାନବଦନରେ ସମସ୍ତ ଧନରତ୍ନ ବିତରଣ କରିବାକୁ ଲାଗିଲେ । ସୀତାଙ୍କର ବନଗମନ ସମ୍ବାଦ ଶୁଣି କୌଶଲ୍ୟା ଦେବୀଙ୍କର ହୃଦୟ ଶତଧା ବିଦୀର୍ଣ୍ଣ ହୋଇଗଲା । ସେ ମସ୍ତକରେ କରାଘାତ କରି ଅଧୀରଭାବରେ ରୋଦନ କରିବାକୁ ଲାଗିଲେ । ଏ ଦୁଃଖରେ ମଧ୍ୟ କୌଶଲ୍ୟାଙ୍କ ମନରେ ଟିକିଏ ସାନ୍ତ୍ୱନା ମିଳିଲା ଯେ, ପୁତ୍ର ସାଧ୍ୱୀ ପୁତ୍ରବଧୂର ସେବାରୁ ବଞ୍ଚିତ ହେବ ନାହିଁ । ସେ ସୀତାଙ୍କୁ ଆଲିଙ୍ଗନ କରି ଅଶ୍ରୁପୂର୍ଣ୍ଣଲୋଚନରେ କେତୋଟି ଉପଦେଶ ଦେଲେ । ସୀତା କୌଶଲ୍ୟାଙ୍କ ଉପଦେଶ ଶିରୋଧାର୍ଯ୍ୟ କରି ଓ ତାଙ୍କର ଚରଣଧୂଳି ମସ୍ତକରେ ଧାରଣ କରି ବିଦାୟ ଗ୍ରହଣ କଲେ ।

ରାମ, ଲକ୍ଷ୍ମଣ ଓ ସୀତା ସମସ୍ତଙ୍କ ନିକଟରୁ ବିଦାୟ ଗ୍ରହଣ କରି ରଥରେ ଆରୋହଣ କଲେ । ଅଯୋଧ୍ୟାନଗରୀ ତୀବ୍ର ଶୋକସାଗରରେ ନିମଗ୍ନ ହେଲା । ରାଜପୁରୀ ଭୀଷଣ ଆର୍ତ୍ତଧ୍ୱନିରେ ପୂର୍ଣ୍ଣ ହୋଇଗଲା । ଅଯୋଧ୍ୟାବାସୀମାନେ ନିଜକୁ ଅନାଥ ମନେ କରି ହାହାକାର ଶବ୍ଦରେ ରଥର ଅନୁଗମନ କଲେ । ଏ କରୁଣ ଦୃଶ୍ୟ ଦେଖି ରାମଙ୍କର କୋମଳହୃଦୟ ବିଦୀର୍ଣ୍ଣ ହୋଇଗଲା । ଏଣେ ଦଶରଥ ଉନ୍ମତ୍ତ ପରି ରାମଚନ୍ଦ୍ରଙ୍କ ପଶ୍ଚାତରେ ଧାବମାନ ହେଲେ । ଏହା ଦେଖି ଦ୍ରୁତଗତିରେ ରଥ ଚଳାଇବାକୁ ରାମ ସୁମନ୍ତ୍ରଙ୍କୁ ଆଦେଶ ଦେଲେ । ଦେଖୁ ଦେଖୁ ରଥ ଦୃଷ୍ଟି-ପଥରୁ ଅତୀତ ହୋଇଗଲା । ରାଜା ଦଶରଥ ମୂର୍ଚ୍ଛିତ ହୋଇ ଭୂତଳରେ ପତିତ ହେଲେ । ପୁରବାସିଙ୍କର ମର୍ମଭେଦୀ କରୁଣ ଚିତ୍କାରରେ ଗଗନ ବିଦୀର୍ଣ୍ଣ ହୋଇଗଲା । ସମସ୍ତେ କୈକେୟୀଙ୍କୁ ଶତଧିକ୍କାର କରି "ଏ ପାପପୁରୀରେ ଆମ୍ଭେମାନେ ଆଉ ଦଣ୍ଡେ ରହିବୁ ନାହିଁ" ବୋଲି ପ୍ରକାଶ କଲେ ।



# ଚତୁର୍ଥ ପରିଚ୍ଛେଦ

ବହୁ ପଥ ଅତିକ୍ରମ କରି ରାମ, ଲକ୍ଷ୍ମଣ ଓ ସୀତା ଦିବାବସାନରେ ତମସା-ତୀରରେ ଉପନୀତ ହେଲେ । ଅନ୍ଧକାରରେ ଆଉ ବେଶୀ ଦୂର ଅଗ୍ରସର ହେବା ସୁବିଧାଜନକ ନୁହେଁ ବୁଝି ପୁଣ୍ୟତୋୟା ତମସା-ତୀରରେ ନିଶା ଯାପନ କରିବାର ମନସ୍ଥ କଲେ । ସନ୍ଧ୍ୟାର ତାମସୀ ଛାୟା ଅବତୀର୍ଣ୍ଣ ହୋଇ କ୍ରମେ ସମସ୍ତ ପୃଥିବୀକୁ ଆଚ୍ଛନ୍ନ କରିଦେଲା । ଅଯୋଧ୍ୟାର ଅସଂଖ୍ୟ ସ୍ମୃତି ରାମଚନ୍ଦ୍ରଙ୍କ ମନରେ ଜାଗ୍ରତ ହୋଇ ଉଠିଲା । ବୃଦ୍ଧ ପିତାମାତାଙ୍କର ବିଷାଦ-ମଳିନ ମୂର୍ତ୍ତି ଓ ପୌରବର୍ଗଙ୍କର ଅକୃତ୍ରିମ ସ୍ନେହ ସ୍ମରଣ କରି ସେ ଶୋକରେ ଅଭିଭୂତ ହୋଇ ପଡ଼ିଲେ ।

ରାମଚନ୍ଦ୍ରଙ୍କର ସାନୁନୟ ନିଷେଧ ସତ୍ତ୍ୱେ ଅଯୋଧ୍ୟାର ଶୋକାର୍ତ୍ତ ପ୍ରଜାଗଣ ରଥର ଅନୁସରଣ କରି ଶେଷରେ ସେହି ତମସା-କୂଳରେ ଉପସ୍ଥିତ ହେଲେ । ସେମାନଙ୍କୁ ଦେଖି ରାମଚନ୍ଦ୍ର ଆହୁରି ବିଚଳିତ ହୋଇ ପଡ଼ିଲେ । ବହୁକଷ୍ଟରେ ଶୋକ ସମ୍ବରଣ କରି ସେ ସାୟଂକୃତ୍ୟାଦି ସମାପନ କଲେ । କିନ୍ତୁ ବନବାସର ପ୍ରଥମ ରଜନୀ ସେ କୌଣସି ଫଳମୂଳାଦି ଭକ୍ଷଣ ନ କରି କେବଳ ଜଳ ପାନ କରି ରହିଲେ । ଲକ୍ଷ୍ମଣ ଓ ସୁମନ୍ତ୍ର ପର୍ଣ୍ଣଶଯ୍ୟା ରଚନା କରିଦେଲେ । ମୁକ୍ତ ଆକାଶ ତଳେ ରାମଚନ୍ଦ୍ର ସୀତାଙ୍କ ସହିତ ସେହି ଶଯ୍ୟାରେ ଶୟନ କଲେ । ପଥଶ୍ରାନ୍ତ ଅଯୋଧ୍ୟାବାସୀମାନେ ସେହି ରମଣୀୟ ନଦୀତଟରେ ଗଭୀର ନିଦ୍ରାରେ ମଗ୍ନ ହେଲେ ।

ଅତି ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରି ରାମଚନ୍ଦ୍ର ଦେଖିଲେ ଯେ, ପ୍ରଜାପୁଞ୍ଜ ଗାଢ଼ ନିଦ୍ରାରେ ଅଚେତନ ଅଛନ୍ତି । ଏହି ଉପଯୁକ୍ତ ଅବସର ଦେଖି ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କ ସହିତ ରଥାରୋହଣ କରି ସେ ସ୍ଥାନ ପରିତ୍ୟାଗ କଲେ । ପଥରେ ରାମଚନ୍ଦ୍ରଙ୍କର ବାଲ୍ୟସଖା ଗୁହକ ଚଣ୍ଡାଳର ରାଜ୍ୟ ପଡ଼ିଲା । ଗୁହକର ଅନୁରୋଧରେ ରାମ ସୀତା ସେ ଦିନ ତାଙ୍କର ରାଜଧାନୀରେ ଅବସ୍ଥାନ କଲେ । ତତ୍ପରେ ଗୁହକ ସେମାନଙ୍କର ଗଙ୍ଗା ପାର ହେବାର ସମସ୍ତ ସୁବନ୍ଦୋବସ୍ତ କରିଦେଲେ । ପିତାଙ୍କ ଆଦେଶକ୍ରମେ ରାମ ଏପର୍ଯ୍ୟନ୍ତ ରଥାରୋହଣ କରି ଆସିଥିଲେ, କିନ୍ତୁ ଏହିଠାରୁ ସେ ପଦବ୍ରଜରେ ଗମନ କରିବାକୁ ମନସ୍ଥ କରି ସୁମନ୍ତ୍ରଙ୍କୁ ଅଯୋଧ୍ୟାକୁ ଫେରିଯିବାକୁ ଅନୁରୋଧ କଲେ । ସୁମନ୍ତ୍ର କ୍ରନ୍ଦନ କରି ଶୂନ୍ୟ ହୃଦୟରେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ । ତତ୍ପରେ ରାମଚନ୍ଦ୍ର ଓ ଲକ୍ଷ୍ମଣ ବଟନିର୍ଯ୍ୟାସଦ୍ୱାରା ମସ୍ତକରେ ଜଟା ରଚନା

କରି ଗୁହକଙ୍କ ନିକଟରୁ ବିଦାୟ ଗ୍ରହଣ କଲେ ଏବଂ ନୌକାରୋହଣପୂର୍ବକ ଗଙ୍ଗା ଉତ୍ତୀର୍ଣ୍ଣ ହେଲେ ।

ବର୍ତ୍ତମାନ ରାମଚନ୍ଦ୍ର ଦୁର୍ଗମ ଅରଣ୍ୟମାର୍ଗରେ ଅଗ୍ରସର ହେବାକୁ ଲାଗିଲେ । କୁସୁମକୋମଳା ସୀତା କିପରି ଏ ପଥଶ୍ରମ ବହନ କରିବେ, ଏହା ହେଲା ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କର ପ୍ରଧାନ ଦୁଶ୍ଚିନ୍ତାର ବିଷୟ । ଅନ୍ୟ କୌଣସି ବିପଦ ଆଶଙ୍କାରେ ମଧ୍ୟ ସେମାନେ ସୀତାଙ୍କୁ ମଧ୍ୟବର୍ତ୍ତିନୀ କରି ପଥ ଅତିକ୍ରମ କରିବାକୁ ଲାଗିଲେ । ସୀତା ଏପରି କ୍ଳେଶରେ ଧର୍ମାକ୍ତ ଅନଭ୍ୟସ୍ତା ଥିଲେ ସୁଦ୍ଧା ଅତୁଳନୀୟ ପତି-ଭକ୍ତି ବଳରେ ପ୍ରସନ୍ନବଦନରେ ସବୁ ସହ୍ୟ କଲେ । ଯେତେ କ୍ଳାନ୍ତି ବୋଧ କଲେ ସୁଦ୍ଧା ରାମଚନ୍ଦ୍ରଙ୍କର ମୁଖଦର୍ଶନ କଲା ମାତ୍ରକେ ତାଙ୍କର ସବୁ କଷ୍ଟ କୁଆଡ଼େ ଦୂର ହୋଇଯାଏ ।

ଏହିପରି ଭାବରେ ସମସ୍ତ ଦିନ ପର୍ଯ୍ୟଟନ କରି ସନ୍ଧ୍ୟା ସମୟରେ ସେମାନେ ଭରଦ୍ୱାଜମୁନିଙ୍କର ପବିତ୍ର ଆଶ୍ରମରେ ଉପନୀତ ହେଲେ । ଋଷିପ୍ରବର ଯଥେଷ୍ଟ ସମାଦର କରି ରାମଚନ୍ଦ୍ରଙ୍କୁ ଆଶ୍ରମ ଭିତରକୁ ନେଇଗଲେ ଓ ନାନା କଥାବାର୍ତ୍ତା ପରେ ବନବାସ କାଳ ସେହି ରମଣୀୟ ଆଶ୍ରମରେ ଅତିବାହିତ କରିବାକୁ ରାମଚନ୍ଦ୍ରଙ୍କୁ ଅନୁରୋଧ କଲେ । କିନ୍ତୁ ରାମଚନ୍ଦ୍ର ଏଥିରେ ସମ୍ମତ ହେଲେ ନାହିଁ । ସେ କହିଲେ, "ଭଗବାନ୍, ଏ ଆଶ୍ରମର ଅନତିଦୂରରେ ଲୋକାଳୟ ଅଛି । କୌଣସି ଜନଶୂନ୍ୟ ସ୍ଥାନରେ ବାସ କରିବା ଆମ୍ଭମାନଙ୍କର ଇଚ୍ଛା । ଆପଣ ଯଦି ଏପରି ଗୋଟିଏ ଉତ୍ତମ ସ୍ଥାନ କହି ଦିଅନ୍ତି, ତାହାହେଲେ ଆମ୍ଭେମାନେ ଯାଇଁ ସେହିଠାରେ ବାସ କରିବୁ ।" ଭରଦ୍ୱାଜ ଚିନ୍ତା କରି ସେମାନଙ୍କର ରହିବା ନିମିତ୍ତ ଚିତ୍ରକୂଟ ପର୍ବତ ନିର୍ଦ୍ଦେଶ କରିଦେଲେ । ତତ୍ପରେ ସେମାନେ ମହର୍ଷିଙ୍କ ନିକଟରୁ ବିଦାୟ ଗ୍ରହଣ କରି ଯମୁନା ପାର ହୋଇ ଚିତ୍ରକୂଟ ଅଭିମୁଖରେ ଯାତ୍ରା କଲେ ।

କିଛିଦୂରରେ ଶ୍ୟାମ ନାମକ ଏକ ବିଶାଳ ବଟବୃକ୍ଷ ସେମାନଙ୍କର ଦୃଷ୍ଟି-ପଥାରୂଢ ହେଲା । ଏ ମହାନ୍ ଦୃଶ୍ୟ ଦେଖି ସୀତାଙ୍କର ହୃଦୟ ଭକ୍ତି ଓ ବିସ୍ମୟରେ ପୂର୍ଣ୍ଣ ହୋଇଗଲା । ସେ କୃତାଞ୍ଜଳିପୁଟରେ ବୃକ୍ଷବରକୁ ପ୍ରଣାମ କରି ସ୍ୱାମୀ କିପରି ନିର୍ବିଘ୍ନରେ ବ୍ରତ ପାଳନ କରି ଚତୁର୍ଦ୍ଦଶ ବର୍ଷ ପରେ ଅଯୋଧ୍ୟାକୁ ଫେରି ଆସି ପୁନର୍ବାର ରାଜ୍ୟ ଗ୍ରହଣ କରିବେ, ଏରୂପ ପ୍ରାର୍ଥନା ଜଣାଇଲେ । ଗଙ୍ଗା ଓ ଯମୁନା ପାର ହେବା ସମୟରେ ମଧ୍ୟ ସେ ନଦୀଦ୍ୱୟଙ୍କୁ ସେହିପରି ପ୍ରାର୍ଥନା କରିଥିଲେ । ସରଳ ହୃଦୟର କି ସୁନ୍ଦର ଅଭିବ୍ୟକ୍ତି ସୀତାଙ୍କର ଏ ପ୍ରାର୍ଥନା !

ଚିତ୍ରକୂଟ ଅତି ରମଣୀୟ ସ୍ଥାନ । ସେଠାରେ ପ୍ରକୃତି ଦେବୀ ଯେପରି ତାଙ୍କର ସବୁ ଶୋଭାସମ୍ଭାର ମେଲି ଦେଇ ବସିଅଛନ୍ତି । ବନସ୍ଥଳୀର ବିଚିତ୍ର ସୌନ୍ଦର୍ଯ୍ୟରେ ମୁଗ୍ଧ

ହୋଇ ସୀତା ହୃଦୟରେ ଅଭୂତପୂର୍ବ ଆନନ୍ଦ ଅନୁଭବ କଲେ ଓ ପଥଶ୍ରମଜନିତ କ୍ଳେଶ ସମ୍ପୂର୍ଣ୍ଣରୂପେ ବିସ୍ମୃତ ହୋଇଗଲେ । ଲକ୍ଷ୍ମଣ ସ୍ୱହସ୍ତରେ ସେଠାରେ ଗୋଟିଏ ସୁନ୍ଦର କୁଟୀର ନିର୍ମାଣ କଲେ ଓ ସେହି କୁଟୀରରେ ସେମାନେ ଏକତ୍ର ବାସ କରିବାକୁ ଲାଗିଲେ । ସୀତାଦେବୀ ଏହି କୁଟୀରକୁ ରାଜପ୍ରାସାଦ ତୁଲ୍ୟ ଜ୍ଞାନ କରି ପ୍ରୀତି-ପ୍ରଫୁଲ୍ଲଚିତ୍ତରେ ଦିନଯାପନ କଲେ ।

ଏଣେ ସୁମନ୍ତ ଶୂନ୍ୟ ରଥ ଘେନି ଅଯୋଧ୍ୟାରେ ଉପସ୍ଥିତ ହେବାରୁ ଆଉ ଥରେ ପୁରବାସୀମାନଙ୍କର ଶୋକ ବନ୍ୟା ପ୍ରବଳ ହୋଇ ଉଠିଲା । ରାମଚନ୍ଦ୍ରଙ୍କର ଅଯୋଧ୍ୟା ତ୍ୟାଗ ପରେ ଦଶରଥ ଅନ୍ନ, ଜଳ, ନିଦ୍ରା, ସବୁ ପରିହାର କରିଥିଲେ । ବର୍ତ୍ତମାନ ସୁମନ୍ତଙ୍କଠାରୁ ସବୁ ଶୁଣି ସେ ଅଚେତନ ହୋଇ ପଡ଼ିଲେ । ଏହା ପରେ ତାଙ୍କର ଆଉ ପୂର୍ଣ୍ଣ ଚୈତନ୍ୟ ହେଲା ନାହିଁ । ସେହିଦିନ ରାତିରେ ରାମଚନ୍ଦ୍ରଙ୍କ ନାମ ଉଚ୍ଚାରଣ କରି ସେ ଇହଧାମ ପରିତ୍ୟାଗ କଲେ । ପ୍ରଭାତରେ ଏ ସମ୍ବାଦ ଯେତେବେଳେ ପ୍ରଚାରିତ ହେଲା, ରାଜ୍ୟର ଚାରିଆଡ଼େ ହାହାକାର ପଡ଼ିଗଲା । ରାମଙ୍କର ବନବାସ, ତାହାପରେ ରାଜାଙ୍କର ମୃତ୍ୟୁ ଏଥିରେ ଅଯୋଧ୍ୟା-ପୁରୀ ଯେପରି ଶ୍ମଶାନରେ ପରିଣତ ହୋଇଗଲା । ରାମ ଲକ୍ଷ୍ମଣ ବନବାସୀ, ଭରତ ଓ ଶତ୍ରୁଘ୍ନ ମାତୁଳାଳୟରେ ଅଛନ୍ତି, ସୁତରାଂ ଦଶରଥଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ କରିବାର ଲୋକ କେହି ନାହିଁ । ଅମାତ୍ୟବୃନ୍ଦ ଭରତ, ଶତ୍ରୁଘ୍ନଙ୍କୁ ଆଣିବା ନିମନ୍ତେ ତତ୍‌କ୍ଷଣାତ୍ ଲୋକ ପ୍ରେରଣ କଲେ ଏବଂ ରାଜାଙ୍କ ମୃତଦେହକୁ ତୈଳପୂର୍ଣ୍ଣ ଦ୍ରୋଣୀରେ ସ୍ଥାପନ କରି ରଖିଲେ ।

ଭରତ ଓ ଶତ୍ରୁଘ୍ନ ଯଥାସମୟରେ ଆସି ଅଯୋଧ୍ୟାର ଦଶା ଦେଖି ସ୍ତମ୍ଭିତ ହୋଇଗଲେ; ଦେଖିଲେ, ଅମାନିଶା ପରି ଗୋଟିଏ ଗମ୍ଭୀର ଶୋକର ଛାୟା ପୁରୀକୁ ଆଛନ୍ନ କରି ରଖିଅଛି । ଅଳ୍ପକ୍ଷଣ ମଧ୍ୟରେ ସମସ୍ତ ବୃତ୍ତାନ୍ତ ଶୁଣି ଭରତଙ୍କ ମସ୍ତକରେ ବଜ୍ରାଘାତ ହେଲା । ସେ କ୍ରୋଧରେ ଅଧୀର ହୋଇ ପଡ଼ିଲେ । ନିଜର ମାତା ଏ ସବୁ ଅନର୍ଥର ମୂଳ ବୁଝି ଭରତ ଲଜ୍ଜା, କ୍ଷୋଭ ଓ ଘୃଣାରେ ମ୍ରିୟମାଣ ହୋଇଗଲେ । କୈକେୟୀ ବାରମ୍ବାର ଅନୁରୋଧ କଲେ ମଧ୍ୟ ସେ କୌଣସି ପ୍ରକାରେ ରାଜ୍ୟ ଗ୍ରହଣ କରିବାକୁ ସମ୍ମତ ହେଲେ ନାହିଁ । ପିତାଙ୍କର ଅନ୍ତ୍ୟେଷ୍ଟି କାର୍ଯ୍ୟ ସମ୍ପନ୍ନ କରି ମହାମତି ଭରତ ପୁରବାସୀ ଓ ଅମାତ୍ୟବର୍ଗଙ୍କ ସହିତ ଜ୍ୟେଷ୍ଠ ଭ୍ରାତାଙ୍କ ଅନ୍ୱେଷଣରେ ବହିର୍ଗତ ହେଲେ ଓ ବହୁ ସ୍ଥାନ ପର୍ଯ୍ୟଟନ କରି ଶେଷରେ ଯାଇ ଚିତ୍ରକୂଟରେ ରାମଚନ୍ଦ୍ରଙ୍କର ସାକ୍ଷାତ୍ ପାଇଲେ ।

ରାମ, ଲକ୍ଷ୍ମଣ ଓ ସୀତାଙ୍କର ଜଟାବଲ୍କଳବିଭୂଷିତ ସନ୍ନ୍ୟାସୀ ବେଶ ଓ ପର୍ଣ୍ଣକୁଟୀର ଦର୍ଶନ କରି ଭରତଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା; ପୁରବାସୀମାନଙ୍କ

ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇ ଉଠିଲା । ଭରତ ରାମଚନ୍ଦ୍ରଙ୍କ ଚରଣ ଧରି ଗୃହକୁ ଫେରି ଯାଇ ରାଜ୍ୟଭାର ଗ୍ରହଣ କରିବା ନିମନ୍ତେ କାତର ଭାବରେ ଅନୁରୋଧ କରିବାକୁ ଲାଗିଲେ; ନୟନ-ଜଳରେ ତାହାଙ୍କର ବକ୍ଷଃସ୍ଥଳ ସିକ୍ତ ହୋଇଗଲା । ରାମଚନ୍ଦ୍ର ଭରତଙ୍କୁ କୋଡ଼ରେ ଗ୍ରହଣ କରି ସବୁ କଥା ବୁଝାଇ କହିଲେ, "ପିତୃ-ସତ୍ୟ ପାଳନ ନିମନ୍ତେ ମୋତେ ଚତୁର୍ଦ୍ଦଶ ବର୍ଷକାଳ ବନବାସ କରିବାକୁ ହେବ । ଚନ୍ଦ୍ର ଜ୍ୟୋତ୍ସ୍ନା ହରାଇ ପାରେ, ହିମାଳୟ ତୁଷାର ଶୂନ୍ୟ ହୋଇଯାଇ ପାରେ ଓ ସାଗର ବେଳା ଲଂଘନ କରିପାରେ, କିନ୍ତୁ ରାମ କଦାପି ସତ୍ୟ ଲଂଘନ କରିବ ନାହିଁ । ମୁଁ ଜାଣେ, ଏ ରାଜ୍ୟଭାର ଗ୍ରହଣ କରିବାକୁ ତୁମେ ଅସମର୍ଥ ନୁହଁ । ଅଯୋଧ୍ୟା ତ କ୍ଷୁଦ୍ର; ସସାଗରା ପୃଥିବୀକୁ ତୁମେ ଅବଲୀଳାକ୍ରମେ ଶାସନ କରି ପାର । ଅଯୋଧ୍ୟାର ପୁରୋହିତ, ପ୍ରବୀଣ ଓ ବିଶ୍ୱାସୀ ମନ୍ତ୍ରୀଗଣ ତୁମର ସହାୟତା କରିବେ ।" ଭରତ ଯେତେ ଅନୁନୟ କରି କହିଲେ ସୁଦ୍ଧା ରାମଚନ୍ଦ୍ର ପ୍ରତ୍ୟାବର୍ତ୍ତନ କରିବାକୁ ସମ୍ମତ ହେଲେ ନାହିଁ । ଅବଶେଷରେ ଭରତ ରାମଚନ୍ଦ୍ରଙ୍କର ପାଦୁକାଯୁଗଳ ନ୍ୟାସ ସ୍ୱରୂପ ପ୍ରାର୍ଥନା କଲେ ଓ ସେହି ପାଦୁକା ମସ୍ତକରେ ଧାରଣ କରି ପ୍ରତ୍ୟାବୃତ୍ତ ହେଲେ । ଅଯୋଧ୍ୟାରେ ବାସ କରିବା ତାଙ୍କ ପକ୍ଷରେ ଅତିଶୟ କ୍ଲେଶକର ହେଲା । ରାମଚନ୍ଦ୍ରଙ୍କ ସ୍ମୃତିଚିହ୍ନ ସବୁ ଅଗ୍ନିଶିଖା ପରି ଭରତଙ୍କର ନେତ୍ର ଦଗ୍ଧ କରିଦେଲା । ସେ ନନ୍ଦୀ-ଗ୍ରାମରେ ରାଜଧାନୀ ସ୍ଥାପନ କରି ସିଂହାସନ ଉପରେ ରାମଚନ୍ଦ୍ରଙ୍କ ପାଦୁକା ପ୍ରତିଷ୍ଠିତ କଲେ ଓ ତପସ୍ୱୀ ବେଶରେ ସେହି ସିଂହାସନ ତଳେ ବସି ପ୍ରତିନିଧି ପରି ରାଜକାର୍ଯ୍ୟ କରିବାକୁ ଲାଗିଲେ । ରାମଚନ୍ଦ୍ର ଅରଣ୍ୟରେ ଯେପରି ଭାବରେ ଜୀବନ ଯାପନ କରୁଥିଲେ, ଭରତ ରାଜଭବନରେ ରହି ସ୍ୱେଚ୍ଛାରେ ଜଟା ବଲ୍କଳ ଧାରଣ କରି ଓ ଫଳମୂଳ ମାତ୍ର ଭୋଜନ କରି ଦିନ ଯାପନ କଲେ । ଧନ୍ୟ ଭରତ ! ଧନ୍ୟ ତୁମର ପବିତ୍ର ଭ୍ରାତୃପ୍ରେମ ! ଧନ୍ୟ ତୁମ୍ଭର କଠୋର ଆତ୍ମସଂଯମ !



## ପଞ୍ଚମ ପରିଚ୍ଛେଦ

ଭରତଙ୍କୁ ବିଦାୟ ଦେଇ ରାମଚନ୍ଦ୍ର କିଛିଦିନ ଚିତ୍ରକୂଟରେ ଅବସ୍ଥାନ କଲେ । କିନ୍ତୁ ଅଳ୍ପଦିନ ମଧ୍ୟରେ ସେଠାରେ ରାକ୍ଷସମାନଙ୍କର ଭୀଷଣ ଉପଦ୍ରବ ଆରମ୍ଭ ହେଲା । ଚିତ୍ରକୂଟବାସୀ ଋଷିମାନଙ୍କର ତପସ୍ୟାରେ ବିଘ୍ନ ଉପସ୍ଥିତ ହେବାରୁ ସେମାନେ ସ୍ଥାନାନ୍ତରକୁ ଯିବାକୁ ସ୍ଥିର କଲେ । ରାମଚନ୍ଦ୍ର ମଧ୍ୟ ଦେଖିଲେ, ଆଉ ସେଠାରେ ବାସ କରିବା ନିରାପଦ ନୁହେଁ । ବିଶେଷତଃ ଚିତ୍ରକୂଟ ଅଯୋଧ୍ୟାର ଅଧିକ ଦୂରରେ ନୁହେ । ସେଠାରେ ରହିଲେ ଅଯୋଧ୍ୟାବାସୀମାନେ ସ୍ନେହବଶତଃ ମଧ୍ୟେ ମଧ୍ୟେ ତାହାଙ୍କୁ ଦେଖିବାକୁ ଆସିବେ । ଏହାଦ୍ୱାରା ତାଙ୍କର ଶାନ୍ତିରେ ବ୍ୟାଘାତ ଘଟି ପାରେ । ଏହି ସବୁ କାରଣରୁ ରାମଚନ୍ଦ୍ର ଅଯୋଧ୍ୟାରୁ ବହୁଦୂରବର୍ତ୍ତୀ ଗୋଟିଏ କୌଣସି ଜନଶୂନ୍ୟସ୍ଥାନରେ ଯାଇ ବାସ କରିବାକୁ ସଙ୍କଳ୍ପ କଲେ । ନାନା ସ୍ଥାନ ଭ୍ରମଣ କରି ରାମ, ଲକ୍ଷ୍ମଣ ଓ ସୀତା ଶେଷରେ ଦଣ୍ଡକାରଣ୍ୟରେ ଉପସ୍ଥିତ ହେଲେ । ଦଣ୍ଡକାରଣ୍ୟ ମଧ୍ୟରେ ପଞ୍ଚବଟୀ ଗୋଟିଏ ଅତ୍ୟନ୍ତ ରମଣୀୟ ସ୍ଥାନ । ସ୍ୱଚ୍ଛତୋୟା ଗୋଦାବରୀ ସର୍ବଦା ପ୍ରବାହିତ ହେଉଅଛି । ଚତୁର୍ଦ୍ଦିଗରେ ଅନନ୍ତ କାନନଶ୍ରେଣୀ । ବିବିଧ ତରୁରାଜି କୁସୁମିତ ଲତା-ଜାଲରେ ବେଷ୍ଟିତ ହୋଇ ଅପୂର୍ବ ଶୋଭା ବିସ୍ତାର କରିଅଛନ୍ତି । ସୁକଣ୍ଠ ପକ୍ଷି-ମାନଙ୍କର ମଧୁର କଳଧ୍ୱନିରେ ସ୍ଥାନଟି ସର୍ବଦା ମୁଖରିତ । ମୃଗ ଓ ଅନ୍ୟାନ୍ୟ ଅରଣ୍ୟ-ଚାରୀ ଜନ୍ତୁମାନେ ଚତୁର୍ଦ୍ଦିଗରେ ବିଚରଣ କରୁଅଛନ୍ତି । ସରୋବରସମୂହ ନାନାବିଧ ପୁଷ୍ପରେ ମଣ୍ଡିତ ହୋଇ ରହିଅଛି । କିଛିଦୂରରେ ପର୍ବତଶ୍ରେଣୀ ମେଘମାଳା ପରି ଶୋଭା ପାଉଅଛି । ପଞ୍ଚବଟୀର ଶୋଭା ଦେଖି ସୀତାଦେବୀ ପରମ ସନ୍ତୋଷ ଲାଭ କଲେ । ସୀତାଙ୍କର ଆଗ୍ରହ ଦେଖି ଏହିଠାରେ ବନବାସକାଳ ଅତିବାହିତ କରିବା ନିମନ୍ତେ ରାମଚନ୍ଦ୍ର ସ୍ଥିର କଲେ । ଗୋଦାବରୀ ତୀରରେ ଲକ୍ଷ୍ମଣ ବହୁ ଯତ୍ନରେ ଗୋଟିଏ ସୁନ୍ଦର କୁଟୀର ନିର୍ମାଣ କଲେ । ମନୋରମ କୁଟୀରଟି ଦେଖି ସୀତା ହୃଦୟରେ ବିମଳ ଆନନ୍ଦ ଅନୁଭବ କଲେ । ସୀତା ବନଦେବୀ ପରି କାନନଭୂମି ଆଲୋକିତ କରି ସେଠାରେ ସୁଖରେ ବାସ କରିବାକୁ ଲାଗିଲେ ।

ପଞ୍ଚବଟୀକୁ ଆସି ସୀତାଙ୍କ ମନରୁ ଅଯୋଧ୍ୟାର ସୁଖସ୍ମୃତି କ୍ରମେ ଅନ୍ତର୍ହିତ ହୋଇଗଲା । ସେ ସେହି ପର୍ଣ୍ଣକୁଟୀରକୁ ରାଜପ୍ରାସାଦ ତୁଲ୍ୟ ଜ୍ଞାନ କରି ସ୍ୱାମୀ ଓ ଦେବରଙ୍କ ସହିତ ନୂତନ ସଂସାର ଆରମ୍ଭ କଲେ । ସୀତାଙ୍କର ଅମାନୁଷୀ ମୂର୍ତ୍ତି ଓ ମଧୁର ସ୍ୱଭାବ ଦେଖି ବନର ପଶୁପକ୍ଷୀ ତାଙ୍କର ଅନୁଗତ ହୋଇ ପଡ଼ିଲେ । ସୀତା

କୁରଙ୍ଗ ଶାବକମାନଙ୍କୁ ସ୍ୱହସ୍ତରେ ସୁକୋମଳ ତୃଣାହାର ଦେଉଥିଲେ ଓ ସେମାନେ ଗୃହପାଳିତ ପଶୁ ପରି ତାଙ୍କ ପଛେ ପଛେ ଗୋଡ଼ାଉଥିଲେ । ସୀତା କୁଟୀରପ୍ରାଙ୍ଗଣରେ ପକ୍ଷିମାନଙ୍କ ନିମନ୍ତେ ଶସ୍ୟଗୁଚ୍ଛ ରଖି ଦେଉଥିଲେ ଓ ନାନାବିଧ ମନୋହର ପକ୍ଷୀ ସୁଲଳିତ ଗାନରେ ସୀତାଙ୍କ କର୍ଣ୍ଣକୁହରରେ ଅମୃତଧାରା ବର୍ଷଣ କରୁଥିଲେ । ଅରଣ୍ୟର ତରୁଲତାମାନଙ୍କୁ ସେ ପୁତ୍ରକନ୍ୟାସ୍ଥାନୀୟ ମନେ କରି ସେମାନଙ୍କ ବିଷୟରେ ସ୍ୱାମୀଙ୍କ ସଙ୍ଗେ କେତେ ରହସ୍ୟାଳାପରେ ମତ୍ତ ହେଉଥିଲେ । ସୀତା କେବେ କେବେ ସ୍ୱାମୀଙ୍କ ସହିତ ଅରଣ୍ୟରେ ଭ୍ରମଣ କରି କେତେ ବନପୁଷ୍ପ ଚୟନ କରୁଥିଲେ ଓ ସେହି ପୁଷ୍ପରେ କେତେ ପ୍ରକାରର ଭୂଷଣ ରଚନା କରି ଅଙ୍ଗରେ ଧାରଣ କରୁଥିଲେ । ସ୍ୱାମୀଙ୍କର ସେବା କରି ଓ ତାହାଙ୍କର ପ୍ରୀତି ଓ ଆଦରରେ ବର୍ଦ୍ଧିତ ହୋଇ ସେ ଯେଉଁ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରୁଥିଲେ, କୌଣସି ରାଜମହିଷୀର ଭାଗ୍ୟରେ ତାହା ସୁଲଭ ନୁହେ । ଭ୍ରାତୃ ବତ୍ସଳ ଲକ୍ଷ୍ମଣ ଧନୁର୍ବାଣହସ୍ତରେ କୁଟୀରକୁ ସମସ୍ତ ବିପଦରୁ ରକ୍ଷା କରୁଥିଲେ, ଓ ରାମ ସୀତାଙ୍କ ପରିଚର୍ଯ୍ୟାରେ ସର୍ବଦା ନିଯୁକ୍ତ ରହୁଥିଲେ । ସୀତାଦେବୀ ତାଙ୍କର ସେବାରେ ସନ୍ତୁଷ୍ଟ ହୋଇ ସ୍ୱାମୀଙ୍କ ନିକଟରେ ଲକ୍ଷ୍ମଣଙ୍କର ଅଜସ୍ର ପ୍ରଶଂସା କରୁଥିଲେ । ରାମଚନ୍ଦ୍ର ମଧ୍ୟ ଲକ୍ଷ୍ମଣଙ୍କ ପ୍ରତି ସୀତାଙ୍କର ଅକୃତ୍ରିମ ସ୍ନେହ ଦେଖି ଅତ୍ୟନ୍ତ ପୁଲକିତ ହେଉଥିଲେ ।

ଏହିପରି ପରମ ସୁଖରେ ପଞ୍ଚବଟୀରେ କିଛିଦିନ ଅତିବାହିତ ହୋଇଗଲା । କିନ୍ତୁ ସୁଖଭୋଗପାଇଁ ସୀତାଙ୍କର ଜନ୍ମ ନୁହେ । ହଠାତ୍ ଗୋଟିଏ ଗୁରୁତର ବିପଦର ଛାୟା ଆସି ତାଙ୍କର ସୁଖ-ଶଶୀକୁ ଆଚ୍ଛନ୍ନ କରି ଦେଲା । ଦିନେ ରାମ, ଲକ୍ଷ୍ମଣ ଓ ସୀତା କୁଟୀରରେ ବସିଅଛନ୍ତି,ଏପରି ସମୟରେ ସୂର୍ପଣଖା ନାମ୍ନୀ ଏକ ରାକ୍ଷସୀ ଅରଣ୍ୟ ଭ୍ରମଣ କରୁ କରୁ ସେଠାରେ ଉପସ୍ଥିତ ହେଲା । ରାମ ଓ ଲକ୍ଷ୍ମଣଙ୍କର ଅନୁପମ ରୂପଲାବଣ୍ୟ ଦେଖି ବାଳବିଧବା ସୂର୍ପଣଖାର ହୃଦୟରେ ଲାଳସାର ବହ୍ନି ଜଳି ଉଠିଲା । ନିଜେ କୁରୂପା ହେଲେ ସୁଦ୍ଧା ସେମାନଙ୍କ ମଧ୍ୟରୁ ଜଣକୁ ପତିରୂପରେ ବରଣ କରିବାକୁ ସେ ବ୍ୟାକୁଳ ହୋଇ ପଡ଼ିଲା । ଶେଷରେ ସମ୍ଭାଳି ନ ପାରି ସେ ରାମ ଲକ୍ଷ୍ମଣଙ୍କ ନିକଟରେ ନିର୍ଲଜ୍ଜଭାବରେ ନିଜର ମନୋଗତ ଭାବ ବ୍ୟକ୍ତ କଲା । ରାମ ଓ ଲକ୍ଷ୍ମଣ ତାହାର ନୀଚ ବାସନା ଦେଖି ଅବଜ୍ଞା ସହକାରେ ତାକୁ ସେଠାରୁ ଦୂର ହୋଇ ଯିବାକୁ ଆଦେଶ ଦେଲେ । କାମୋନ୍ମତ୍ତା ସୂର୍ପଣଖା ଏଥିରେ ଅପମାନ ବୋଧ କରି ମୁଖ ବିସ୍ତାର କରି ସୀତାଙ୍କୁ ଗ୍ରାସ କରିବାକୁ ଉଦ୍ୟତ ହେଲା । ଲକ୍ଷ୍ମଣ ଆଉ କାଳବିଳମ୍ବ ନ କରି ଦୁର୍ବୃତ୍ତାକୁ ସମୁଚିତ ଶାସ୍ତି ଦେବା ଉଦ୍ଦେଶ୍ୟରେ ଖଡ୍ଗଦ୍ୱାରା ତାହାର ନାସା କର୍ଣ୍ଣ ଛେଦନ କଲେ । ସୂର୍ପଣଖା ଯନ୍ତ୍ରଣାରେ ଚିତ୍କାର କରି ସେଠାରୁ ପଳାୟନ କଲା ।

ଶୂର୍ପଣଖା ସବଳପରାକ୍ରାନ୍ତ ଲଙ୍କାଧିପତି ରାକ୍ଷସରାଜ ରାବଣର କନିଷ୍ଠା ଭଗିନୀ । ସେ ସେହି ସମୟରେ ପଞ୍ଚବଟୀର ଅଦୂରରେ ପରିଜନବର୍ଗଙ୍କ ସହିତ ବାସ କରୁଥିଲା । ରାବଣ ଭଗିନୀର ରକ୍ଷଣାବେକ୍ଷଣ ନିମନ୍ତେ ଚତୁର୍ଦ୍ଦଶ ସହସ୍ର ସୈନ୍ୟ ସହ ଖରଦୂଷଣନାମକ ଦୁଇ ଭ୍ରାତାଙ୍କୁ ନିୟୋଗ କରିଥିଲେ । ଶୂର୍ପଣଖାର ଦାରୁଣ ଅପମାନ ଦେଖି ଖର ଦୂଷଣ କ୍ରୋଧ-ପ୍ରଜ୍ୱଳିତ ହୋଇ ଅନୁଚରବର୍ଗଙ୍କ ସହ ରାମ ଓ ଲକ୍ଷ୍ମଣଙ୍କୁ ଆକ୍ରମଣ କଲେ । ରାମଚନ୍ଦ୍ର ଏଥିରେ ଭ୍ରୂକ୍ଷେପ ନ କରି ଅଟଳ ଭୂଧର ପରି ସ୍ଥିରଭାବରେ କୁଟୀରଦ୍ୱାରରେ ଦଣ୍ଡାୟମାନ ହୋଇ ଅବିଶ୍ରାନ୍ତ ଅସ୍ତ୍ର ନିକ୍ଷେପ କରିବାକୁ ଲାଗିଲେ । ରାମଚନ୍ଦ୍ରଙ୍କ ଶରାନଳରେ ରାକ୍ଷସ ସୈନ୍ୟ ଭସ୍ମୀଭୂତ ହୋଇଗଲେ । ଶେଷରେ ଖର ଦୂଷଣ ରାମଚନ୍ଦ୍ରଙ୍କ ବାଣରେ ନିହତ ହୋଇ ଶରନିଦ୍ରାରେ ଶାୟିତ ହେଲେ । ଯୁଦ୍ଧଶେଷରେ ସୀତା ସ୍ୱାମୀଙ୍କର ଅତୁଳ ବିକ୍ରମ ଦେଖି ବିସ୍ମିତ ହୋଇଗଲେ ଓ ତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ-ଧାରା ବିଗଳିତ ହେଲା ।

ଅପମାନିତା ଶୂର୍ପଣଖା ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ସୁଦୂର ଲଙ୍କାକୁ ଯାଇ ରାବଣ ନିକଟରେ ନିଜର ଦୁର୍ଦ୍ଦଶା ଓ ଖର ଦୂଷଣ ପ୍ରଭୃତିଙ୍କର ନିଧନବୃତ୍ତାନ୍ତ ବର୍ଣ୍ଣନା କଲା । ଭଗିନୀର ଅପମାନର ଚିହ୍ନ ସ୍ୱଚକ୍ଷୁରେ ଦେଖି ରାବଣର କୋପାଗ୍ନି ପ୍ରଜ୍ୱଳିତ ହେଲା । ରାବଣ ପରି ଦୁରାତ୍ମା ରାଜା ସେ ସମୟରେ ଆଉ କେହି ନ ଥିଲେ । ତାହାର ଭୟରେ ସମସ୍ତେ କମ୍ପିତ ହେଉଥିଲେ । ଏପରି ଅନ୍ୟାୟ ବା ପାପ କାର୍ଯ୍ୟ ନ ଥିଲା, ଯାହା କରିବାକୁ ସେ କୁଣ୍ଠିତ ହେଉଥିଲା । ପୃଥିବୀ ମଧ୍ୟରେ ଅଦ୍ୱିତୀୟ ବୀର ବୋଲି ତାହାର ମନରେ ଗୋଟିଏ ଅହଙ୍କାର ଥିଲା । ଅତଏବ ନିଜର ପ୍ରତିପତ୍ତି ରକ୍ଷା ନିମିତ୍ତ ସେ ରାମ ଲକ୍ଷ୍ମଣଙ୍କୁ ଉପଯୁକ୍ତ ଦଣ୍ଡ ଦେବାର ମନସ୍ଥ କଲା । ରାବଣକୁ ଉତ୍ତେଜିତ କରିବା ଲାଗି ଶୂର୍ପଣଖା କହିଲା, "ସୀତା ପରି ଅନୁପମା ରୂପବତୀ ନାରୀ ଜଗତରେ ଦୁର୍ଲ୍ଲଭ । ତୁମ୍ଭେ ଅନେକ ପରମା ସୁନ୍ଦରୀ ଆଣି ପାଖରେ ରଖିଅଛ । କିନ୍ତୁ ସେମାନେ କେହି ସୀତାର ଦାସୀ ହେବାର ଯୋଗ୍ୟ ନୁହନ୍ତି । କେବଳ ସୀତାହିଁ ତୁମ୍ଭ ପରି ଦିଗ୍‌ବିଜୟୀ ବୀରର ସଙ୍ଗିନୀ ହେବାର ଯୋଗ୍ୟା ।" ରାବଣ ଲୋକମୁଖରୁ ସୀତା-ଦେବୀଙ୍କର ଅତୁଳ ରୂପର ପ୍ରଶଂସା ଶୁଣିଥିଲା । ବର୍ତ୍ତମାନ ଶୂର୍ପଣଖାର କଥା ଶୁଣି ଦୁର୍ବୃତ୍ତର ମନରେ ସୀତାଲାଭର ବାସନା ବଳବତୀ ହୋଇ ଉଠିଲା । ରାମଚନ୍ଦ୍ରଙ୍କ ବଳବୀର୍ଯ୍ୟ ତାକୁ ସମ୍ପୂର୍ଣ୍ଣ ଅବିଦିତ ନ ଥିଲା । କି ଉପାୟରେ କାର୍ଯ୍ୟ ସିଦ୍ଧ ହେବ, ରାବଣ ସେହି ଚିନ୍ତାରେ ନିମଗ୍ନ ହେଲା । ଶୂର୍ପଣଖା କହିଲା, "କୌଶଳରେ କାର୍ଯ୍ୟୋଦ୍ଧାର କରିବାକୁ ହେବ, ଯୁଦ୍ଧାଦିରେ ବିଶେଷ କିଛି ଫଳ ହେବ ନାହିଁ । ତୁମ୍ଭେ ଯଦି କୌଣସି ଉପାୟରେ ସୀତାକୁ ଅପହରଣ କରି ଆଣି ପାର, ତାହାହେଲେ ତୁମ୍ଭର ସୀତାଲାଭ ଓ ବୈରନିର୍ଯ୍ୟାତନ ଉଭୟ ସିଦ୍ଧ ହେବ, କାରଣ ସୀତାଗତପ୍ରାଣ ରାମ

ସୀତା ଶୋକରେ ନିଶ୍ଚୟ ପ୍ରାଣତ୍ୟାଗ କରିବ ଓ ଲକ୍ଷ୍ମଣ ମଧ୍ୟ ଭ୍ରାତୃଶୋକରେ ପ୍ରାଣ-ଧାରଣ କରିବ ନାହିଁ । ଭଗିନୀର କଥା ଶୁଣି ରାବଣ ତତ୍‌କ୍ଷଣାତ୍ ଲଙ୍କା ପରିତ୍ୟାଗ କରି ଜନସ୍ଥାନ ଅଭିମୁଖରେ ଯାତ୍ରା କଲା । ଏହି ସ୍ଥାନରେ ମାରୀଚ ନାମକ ଏକ ମାୟାବୀ ରାକ୍ଷସ ବାସ କରୁଥିଲା; ରାବଣ ମାରୀଚ ନିକଟରେ ଉପସ୍ଥିତ ହୋଇ ନିଜର ଦୁରଭିସନ୍ଧି ବ୍ୟକ୍ତ କରି କହିଲା, "ଦେଖ, ରାକ୍ଷସକୁଳର ମାନମର୍ଯ୍ୟାଦା ଲୋପ ପାଇବାକୁ ବସିଅଛି, ଏ ସମୟରେ ତୁମ୍ଭେ ସାହାଯ୍ୟ ନ କଲେ ଆଉ ଉପାୟ ନାହିଁ ।" ତାଡ଼କା-ପୁତ୍ର ମାରୀଚକୁ ରାମଚନ୍ଦ୍ରଙ୍କର ଅମିତ ପରାକ୍ରମ ଉତ୍ତମରୂପେ ବିଦିତ ଥିଲା । ସେ ନାନା ଯୁକ୍ତି ଦେଖାଇ ଏ ପାପ ସଂକଳ୍ପରୁ ବିରତ ହେବା ନିମନ୍ତେ ରାବଣକୁ ବାରମ୍ବାର ପ୍ରବର୍ତ୍ତାଇବାକୁ ଲାଗିଲା । କିନ୍ତୁ ଆସନ୍ନମୃତ୍ୟୁ ରୋଗୀ ଯେପରି ଔଷଧ ସେବନ କରେ ନାହିଁ, ରାବଣ ସେହିପରି ମାରୀଚର କଥାରେ କର୍ଣ୍ଣପାତ କଲା ନାହିଁ । ବରଂ ରାବଣ କ୍ରୁଦ୍ଧ ହୋଇ ତାକୁ ମରଣ ଭୟ ଦେଖାଇବାକୁ ଲାଗିଲା । ମାରୀଚ ବୁଝି ପାରିଲା ଯେ ରାମ ହସ୍ତରେ ହେଉ ବା ରାବଣ ହସ୍ତରେ ହେଉ ତାହାର ମୃତ୍ୟୁ ନିଶ୍ଚିତ । ସୁତରାଂ ରାମଙ୍କ ହସ୍ତରେ ମୃତ୍ୟୁ ଶ୍ରେୟସ୍କର ମନେ କରି ସେ ରାବଣର କାର୍ଯ୍ୟ ସାଧନ କରିବାକୁ ସମ୍ମତ ହେଲା । ଶେଷରେ ସ୍ଥିର ହେଲା ଯେ, ମାରୀଚ ସ୍ୱର୍ଣ୍ଣମୃଗ ରୂପ ଧାରଣ କରି ସୀତାଙ୍କ ସମ୍ମୁଖରେ ବିଚରଣ କରିବ । ତାହାହେଲେ ସୀତା ତାକୁ ପାଇବାଲାଗି ସ୍ୱାମୀଙ୍କୁ ଅନୁରୋଧ କଲେ ରାମଚନ୍ଦ୍ର ତାଙ୍କର ଅନୁରୋଧ ଭାଙ୍ଗି ନ ପାରି ମୃଗକୁ ଧରିବାକୁ ବାହାରିବେ । ଏହି ସମୟରେ ମାରୀଚ ରାମଙ୍କୁ ପ୍ରଲୋଭିତ କରି ଦୁର୍ଗମ ଅରଣ୍ୟ ମଧ୍ୟକୁ ଘେନିଯିବ ଓ ହଠାତ୍ "ହା ଲକ୍ଷ୍ମଣ, ହା ସୀତା" ଏହିପରି କରୁଣ ଚିତ୍କାର କରି ପଳାୟନ କରିବ । ତାହା ପରେ ଯାହା କର୍ତ୍ତବ୍ୟ ରାବଣ ନିଜେ ସ୍ଥିର କରିବ ।

ଏଣେ ସୀତାଦେବୀ କୁଟୀର ସନ୍ନିକଟରେ ପୁଷ୍ପ ଚୟନ କରୁଅଛନ୍ତି, ଏପରି ସମୟରେ ସେ ଦେଖି ପାରିଲେ ଯେ, ଗୋଟିଏ ଅତି ମନୋହର ସ୍ୱର୍ଣ୍ଣମୃଗ ଅଳ୍ପ-ଦୂରରେ ବିଚରଣ କରୁଅଛି । କେତେବେଳେ ସେ ଲତାନ୍ତରାଳରେ ଅଦୃଶ୍ୟ ହୋଇ ଯାଉଅଛି ଓ କେତେବେଳେ ତାହାର କମନୀୟ ମୂର୍ତ୍ତି ସୀତାଙ୍କ ନୟନପଥରେ ପତିତ ହେଉଅଛି । ଅଭୂତପୂର୍ବ ମୃଗଟିକୁ ଦେଖି ତାହାକୁ ପାଖରେ ରଖି ପାଳନ କରିବା ନିମନ୍ତେ ତାଙ୍କର ବଡ଼ ଆଗ୍ରହ ହେଲା । ସେ ତତ୍‌କ୍ଷଣାତ୍ ରାମ ଓ ଲକ୍ଷ୍ମଣଙ୍କୁ ସେଠାକୁ ଡାକି ମୃଗଟିକୁ ଦେଖାଇ ଦେଲେ ଓ ତାହାକୁ ଧରି ଦେବା ନିମନ୍ତେ ରାମଚନ୍ଦ୍ରଙ୍କୁ ଅନୁନୟ କରି କହିଲେ । ଏପରି ଅଦୃଷ୍ଟପୂର୍ବ ବିଚିତ୍ର ମୃଗ ଦେଖି ଲକ୍ଷ୍ମଣଙ୍କ ମନରେ ସନ୍ଦେହ ଜାତ ହେବାରୁ ସେ ରାମଚନ୍ଦ୍ରଙ୍କୁ ତାହା ଜଣାଇଲେ ।

ଲକ୍ଷ୍ମଣଙ୍କର ସନ୍ଦେହ ସତ୍ୟ ହେଲେ ସୁଦ୍ଧା ରାମ ସେଥିରେ ଭୟର କିଛି କାରଣ ଦେଖି ନ ପାରି ସୀତାଙ୍କ ଅନୁରୋଧ ରକ୍ଷା ନିମନ୍ତେ ଧନୁର୍ବାଣ ହସ୍ତରେ ମୃଗର ପଶ୍ଚାଦ୍ଧାବନ କଲେ । ଯିବା ସମୟରେ ସେ ଲକ୍ଷ୍ମଣଙ୍କୁ ସତର୍କଭାବରେ ସୀତାଙ୍କ ନିକଟରେ ରହିବାକୁ ବାରମ୍ବାର ଉପଦେଶ ଦେଇଗଲେ । ମୃଗର ଅନୁସରଣ କରି ରାମଚନ୍ଦ୍ର କ୍ରମେ ଦୁର୍ଗମ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ସେ ଯେତେବେଳେ ଦେଖିଲେ ଯେ ଜୀବିତାବସ୍ଥାରେ ତାହାକୁ ଧରିବା ଅସମ୍ଭବ, ତତ୍‌କ୍ଷଣ ନାରାଚଦ୍ୱାରା ସେ ତାହାର ବକ୍ଷସ୍ଥଳ ବିଦୀର୍ଣ୍ଣ କଲେ । ମାରୀଚ ' ହା ଲକ୍ଷ୍ମଣ, ହା ସୀତା'' ଏହିପରି ଯନ୍ତ୍ରଣାସୂଚକ ଚିତ୍କାର କରି ଭୂମିରେ ପଡ଼ି ପ୍ରାଣତ୍ୟାଗ କଲା । ରାମଚନ୍ଦ୍ର ରାକ୍ଷସର କପଟ ଚିତ୍କାର ଶୁଣି ସ୍ତମ୍ଭିତ ହୋଇଗଲେ । ତାଙ୍କର ମନ ଚଞ୍ଚଳ ହୋଇ ଉଠିଲା ।

ସୀତା ଓ ଲକ୍ଷ୍ମଣ କୁଟୀରରେ ବସି ଉତ୍କଣ୍ଠିତ ଭାବରେ ରାମଚନ୍ଦ୍ରଙ୍କ ଆଗମନ ପ୍ରତୀକ୍ଷା କରୁଥିଲେ । ସହସା ଅରଣ୍ୟ ଭେଦ କରି "ହା ସୀତା, ହା ଲକ୍ଷ୍ମଣ" ଏହି ଦାରୁଣ ଆର୍ତ୍ତନାଦ ସେମାନଙ୍କର କର୍ଣ୍ଣଗୋଚର ହେଲା । ଉଭୟେ ଚମକି ଉଠିଲେ, ସ୍ୱାମୀ କୌଣସି ବିଷମ ବିପଦରେ ପତିତ ହୋଇଅଛନ୍ତି ଭାବି ସୀତା ଅତ୍ୟନ୍ତ ଅଧୀର ହୋଇ ପଡ଼ିଲେ । ତାଙ୍କର ଗଣ୍ଡସ୍ଥଳ ଚକ୍ଷୁଜଳରେ ପ୍ଳାବିତ ହୋଇଗଲା । ଅଧୈର୍ଯ୍ୟ ହୋଇ ରାମଙ୍କ ସାହାଯ୍ୟ ନିମିତ୍ତ ଯିବାକୁ ସେ ଲକ୍ଷ୍ମଣଙ୍କୁ ଅନୁରୋଧ କଲେ । ଲକ୍ଷ୍ମଣ ସୀତା ଦେବୀଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଆପଣ ଅଧୀର ହୁଅନ୍ତୁ ନାହିଁ । ଭୟର କିଛି କାରଣ ନାହିଁ । ସଶସ୍ତ୍ର ରାମଙ୍କୁ ପରାଜିତ କରି ବିପନ୍ନ କରି ପାରିବ ପୃଥିବୀରେ ଏପରି କେହି ବୀର ନାହିଁ । ଆପଣ ଦେଖିବେ, ଭାଇ ଏହିକ୍ଷଣି ସୁସ୍ଥ ଶରୀରରେ ଫେରି ଆସିବେ । ମୁଁ ନିଶ୍ଚୟ କରି କହୁଅଛି, ଏ କଦାପି ଭାଇଙ୍କର କଣ୍ଠସ୍ୱର ନୁହେ । ବୋଧ ହୁଏ, କୌଣସି ମାୟାବୀ ରାକ୍ଷସ କିଛି କୁ-ଅଭିପ୍ରାୟ ରଖି ଆମ୍ଭମାନଙ୍କୁ ବିଭ୍ରମିତ କରିବା ଲାଗି ଏପରି ଚିତ୍କାର କରୁଅଛି । ଏ ସମୟରେ ଆପଣଙ୍କୁ ଏକାକିନୀ ରଖି ମୋର ଯିବା ଉଚିତ ହେବ ନାହିଁ ।'' କିନ୍ତୁ ଲକ୍ଷ୍ମଣଙ୍କ କଥାରେ ସୀତାଙ୍କ ମନ ଆଦୌ ପ୍ରବୋଧ ମାନିଲା ନାହିଁ । ରାମଚନ୍ଦ୍ର ନିଶ୍ଚୟ କୌଣସି ବିପଦରେ ପଡ଼ି ସାହାଯ୍ୟ ଲୋଡ଼ୁଅଛନ୍ତି ଭାବି ସେ ଆକୁଳଭାବରେ ରୋଦନ କରିବାକୁ ଲାଗିଲେ । ଲକ୍ଷ୍ମଣ ଯେତେ ବୁଝାଇଲେ ସୁଦ୍ଧା ସେ ଆଶ୍ୱସ୍ତ ହେଲେ ନାହିଁ । ସ୍ୱାମୀଙ୍କର ବିପଦ ଆଶଙ୍କାରେ ପତିପ୍ରାଣାଙ୍କର ମନ ଅତ୍ୟନ୍ତ ବିଚଳିତ ହୋଇ ଉଠିଲା, ତାଙ୍କର ହିତାହିତ ଜ୍ଞାନ ଲୁପ୍ତ ହେଲା । ପତିଙ୍କର ଅମଙ୍ଗଳ ଆଶଙ୍କା ଦେଖାଦେଲେ ସତୀର ଧୈର୍ଯ୍ୟ, ବିବେକ ରହେ ନାହିଁ । ଲକ୍ଷ୍ମଣ କୌଣସି ଦୂରଭିସନ୍ଧିର ବଶବର୍ତ୍ତୀ ହୋଇ ଏ ଦାରୁଣ ବିପଦରେ ସୁଦ୍ଧା ଭ୍ରାତାଙ୍କ ସାହାଯ୍ୟ ନିମନ୍ତେ ଅଗ୍ରସର ହେଉ ନାହାନ୍ତି ଭାବି ସୀତା ଆତ୍ମବିସ୍ମୃତ ହୋଇ

ଲକ୍ଷ୍ମଣଙ୍କୁ ଭର୍ତ୍ସନା କରି କହିଲେ, "କାପୁରୁଷ ! ନରାଧମ ! ତୋର ପିତୃତୁଲ୍ୟ ଭ୍ରାତା ମରଣାପନ୍ନ ସ୍ୱରରେ ପୁଣି ତୋତେ ଆହ୍ୱାନ କରୁଅଛନ୍ତି, ଆଉ ତୁ ପଦମାତ୍ର ଅଗ୍ରସର ନ ହୋଇ ଚିତ୍ରପୁତ୍ତଳିକା ପରି ଏଠାରେ ଛିଡ଼ା ହୋଇ ରହିଅଛୁ ! ତୋର ପୌରୁଷକୁ ଧିକ୍ ! ତୁ କି ଉଦ୍ଦେଶ୍ୟରେ କପଟ ଭ୍ରାତୃପ୍ରେମ ଦେଖାଇ ଏକାକୀ ରାମଙ୍କର ଅନୁସରଣ କରୁଅଛୁ, ତାହା ମୁଁ ଉତ୍ତମରୂପେ ବୁଝି ପାରିଅଛି । କିନ୍ତୁ ତୋର ମନୋରଥ କଦାପି ସଫଳ ହେବ ନାହିଁ । ରାମଙ୍କ ବିନା ମୁଁ ଦଣ୍ଡେ ସୁଦ୍ଧା ଜୀବିତ ରହିବି ନାହିଁ । ତୋହର ସମକ୍ଷରେ ପ୍ରାଣତ୍ୟାଗ କରିବି ।"

ସୀତାଙ୍କର ବାକ୍ୟ ତପ୍ତ ଲୌହଶଳାକା ପରି ଲକ୍ଷ୍ମଣଙ୍କ ବକ୍ଷସ୍ଥଳରେ ବିଦ୍ଧ ହୋଇଗଲା । ସେ ସ୍ତମ୍ଭୀଭୂତ ହୋଇ ରହିଲେ । ତାଙ୍କ ମୁଖରୁ ବାକ୍ସ୍ଫୂର୍ତ୍ତି ହେଲା ନାହିଁ । ଯେଉଁ ସୀତାଙ୍କର ପଦେ କଟୁ କଥା କେହି କେବେ ଶୁଣି ନାହିଁ, ତାଙ୍କ ମୁଖରୁ ଯେ ଏପରି ପରୁଷ ବାକ୍ୟ ନିର୍ଗତ ହେବ, ଏହା ଲକ୍ଷ୍ମଣ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ସେ ମନେ କଲେ, ନିଶ୍ଚୟ ଆଜି କୌଣସି ଘୋର ବିପଦ ଉପସ୍ଥିତ ହେବ, ନୋହିଲେ ସ୍ନେହ ଓ କୋମଳତାର ଆଧାର ମାତୃସ୍ୱରୂପିଣୀ ସୀତାଙ୍କ ମୁଖରୁ ଏପରି ଅସଙ୍ଗତ ନିଷ୍ଠୁର ବାକ୍ୟ ଉଚ୍ଚାରିତ ହୁଅନ୍ତା କିପରି ? ଯେଉଁ ଲକ୍ଷ୍ମଣ ନିଜର ସବୁ ସୁଖସମ୍ଭୋଗରେ ଜଳାଞ୍ଜଳି ଦେଇ ଆହାର ନିଦ୍ରା ବର୍ଜିତ ହୋଇ ରାମ ସୀତାଙ୍କର ସେବାକୁ ଜୀବନର ଏକମାତ୍ର ବ୍ରତ କରିଅଛନ୍ତି, ତାଙ୍କ ଉପରେ ଏହି ଜଘନ୍ୟ ଦୋଷାରୋପ କରିବା ସୀତାଙ୍କର ଅଦୂରଦୃଷ୍ଟି ଛଡ଼ା ଆଉ କିଛି ନୁହେ । ନୋହିଲେ ଅକସ୍ମାତ୍ ତାଙ୍କର ଏପରି ବୁଦ୍ଧିବିପର୍ଯ୍ୟୟ ଘଟିବ କାହିଁକି ?

ସୀତାଙ୍କର ବିଷମୟ ବାକ୍ୟ ଲକ୍ଷ୍ମଣଙ୍କ ହୃଦୟକୁ ଦଗ୍ଧ କରିଦେଲେ ସୁଦ୍ଧା ସେ ଅତିକଷ୍ଟରେ ଆତ୍ମସଂଯମ କରି କହିଲେ, "ମୋର ଉଦ୍ଦେଶ୍ୟ ଭଲ କି ମନ୍ଦ ଅନ୍ତର୍ଯାମୀ ଜାଣନ୍ତି । ଭ୍ରାତାଙ୍କ ଆଦେଶକ୍ରମେ ତୁମ୍ଭଙ୍କୁ ଏକାକିନୀ ରଖି ମୁଁ ଅନ୍ୟତ୍ର ଯିବାକୁ ସାହସ କଲି ନାହିଁ । ରାମଙ୍କର ଯେପରି କିଛି ଅନିଷ୍ଟାଶଙ୍କା ଦେଖିଥିଲେ ମୁଁ ପ୍ରାଣପାତ କରି ତାଙ୍କର ସାହାଯ୍ୟ କରିବାକୁ କୁଣ୍ଠିତ ହୋଇ ନ ଥାନ୍ତି । ସ୍ତ୍ରୀସୁଲଭ ମୋହର ବଶବର୍ତ୍ତିନୀ ହୋଇ ତୁମ୍ଭେ ମୋ ପ୍ରତି ଯେଉଁ ଅଯଥା କଟୂକ୍ତି କଲ, ତାହା ମୋହର ନିତାନ୍ତ ଅସହ୍ୟ ହେଉଅଛି । ବିଧି ନିଶ୍ଚୟ ତୁମ୍ଭର ପ୍ରତିକୂଳ, ନ ହେଲେ ତୁମ୍ଭର ଏପରି ବିପରୀତ ବୁଦ୍ଧି ହୁଅନ୍ତା କାହିଁକି ? ତୁମ୍ଭର ମଙ୍ଗଳ ହେଉ, ମୁଁ ବର୍ତ୍ତମାନ ରାମଙ୍କ ନିକଟକୁ ବାହାରିଲି । ବନଦେବତାମାନେ ତୁମ୍ଭଙ୍କୁ ରକ୍ଷା କରନ୍ତୁ ।" ଏହା କହି ଲକ୍ଷ୍ମଣ ସୀତାଙ୍କୁ ପ୍ରଣାମ କରି ଧନୁର୍ବାଣହସ୍ତରେ କୁଟୀରରୁ ବହିର୍ଗତ ହେଲେ ।

ଲକ୍ଷ୍ମଣ ଅଦୃଶ୍ୟ ହେଲା ପରେ ଅପର ଗୋଟିଏ ଅଜ୍ଞାତ ଭୟରେ ଗ୍ରସ୍ତା ସୀତାଙ୍କ ହୃଦୟକୁ ଆଚ୍ଛନ୍ନ କରିଦେଲା । ବନସ୍ଥଳୀ ତାଙ୍କୁ ଅତ୍ୟନ୍ତ ଭୟାବହ ବୋଧ ହେଲା । ଟିକିଏ ସାମାନ୍ୟ ଶବ୍ଦ ଶୁଣିଲା ମାତ୍ରେ ତାଙ୍କର ବକ୍ଷସ୍ଥଳ ସ୍ପନ୍ଦିତ ହେବାକୁ ଲାଗିଲା ।

ଏହିପରି କିଛିକ୍ଷଣ ଅତୀତ ହେଲା ପରେ ସୀତା ଦେଖିଲେ, ଦଣ୍ଡକମଣ୍ଡଳୁଧାରୀ ଜଟାବଲ୍କଲଭୂଷିତ ଜଣେ ତେଜଃପୁଞ୍ଜ ସନ୍ନ୍ୟାସୀ କୁଟୀର ନିକଟକୁ ଆଗମନ କରୁଅଛନ୍ତି । କୁଟୀରଦ୍ୱାରରେ ଉପସ୍ଥିତ ହୋଇ ସନ୍ନ୍ୟାସୀ ଭିକ୍ଷା ପ୍ରାର୍ଥନା କରିବାରୁ ସୀତା କୁଟୀର ମଧ୍ୟରେ ଥାଇ ଉତ୍ତର କଲେ, "ପ୍ରଭୋ ! ମୋର ସ୍ୱାମୀ ଓ ଦେବର ମୃଗୟା ନିମନ୍ତେ ବନମଧ୍ୟକୁ ଯାଇଅଛନ୍ତି; ଏହିକ୍ଷଣି ଫେରି ଆସିବେ । ମୁଁ ଏଠାରେ ଏକାକିନୀ ଅଛି । ସେମାନେ ଫେରି ଆସିଲେ ଆପଣଙ୍କୁ ଯଥାବିଧି ଆଭ୍ୟର୍ଥନା କରିବେ । ଆପଣ କ୍ଷଣକାଳ ଅପେକ୍ଷା କରନ୍ତୁ ।"

ସନ୍ନ୍ୟାସୀ ରୁଷ୍ଟ ହୋଇ କହିଲେ, "ଏତେ ସମୟ ଅପେକ୍ଷା କରିବାକୁ ମୋର ଅବସର ନାହିଁ । ତୁମ୍ଭେ ଯଦି ଭିକ୍ଷା ନ ଦେବ, ମୁଁ ଫେରି ଯାଉଅଛି । ଅତିଥିକୁ ବିଫଳମନୋରଥ କରି ଫେରାଇ ଦେବା ପାପରେ ତୁମ୍ଭେ ଭାଗିନୀ ହେବ ।" ଏହା କହି ସନ୍ନ୍ୟାସୀ ପ୍ରସ୍ଥାନ କରିବାକୁ ଉଦ୍ୟତ ହେଲେ । ଅରଣ୍ୟରେ ଥାଇ ସୁଦ୍ଧା ବ୍ରାହ୍ମଣ ସନ୍ନ୍ୟାସୀଙ୍କ ନିମନ୍ତେ ସୀତାଙ୍କର ସଦାବ୍ରତର ଦ୍ୱାର ସର୍ବଦା ଉନ୍ମୁକ୍ତ ଥିଲା । କୌଣସି ଅତିଥି ତାଙ୍କ କୁଟୀରକୁ ଆସି ରିକ୍ତ ହସ୍ତରେ ଫେରି ଯାଉ ନ ଥିଲେ । ସନ୍ନ୍ୟାସୀଙ୍କ କଥା ଶୁଣି ସୀତାଙ୍କ ହୃଦୟ କମ୍ପିତ ହେଲା । ଅଧର୍ମାଚରଣ ଭୟରେ ଲକ୍ଷ୍ମଣଙ୍କର ନିଷେଧ ସତ୍ତ୍ୱେ ସେ କୁଟୀରରୁ ବହିର୍ଗତ ହୋଇ କିଛି ଫଳମୂଳ ଦେଇ ସନ୍ନ୍ୟାସୀଙ୍କର ପାଦ ବନ୍ଦନା କଲେ । ସୀତାଦେବୀଙ୍କର ଅଲୋକସାମାନ୍ୟ ରୂପ ଦେଖି ସନ୍ନ୍ୟାସୀ ବିସ୍ମିତ ହୋଇଗଲେ ଏବଂ ଆତ୍ମପରିଚୟ ଦେଇ କହିଲେ, "ସୁନ୍ଦରି ! ଯାହାର ପ୍ରତାପରେ ତ୍ରିଭୁବନ ସର୍ବଦା କମ୍ପମାନ, ମୁଁ ସେହି ରାକ୍ଷସରାଜ ରାବଣ ! ଲୋକମୁଖରୁ ତୁମ୍ଭର ଅଲୌକିକ ସୌନ୍ଦର୍ଯ୍ୟ କଥା ଶୁଣି ମୁଁ ତୁମ୍ଭର ଅନୁସନ୍ଧାନରେ ଆସିଥିଲି । ମୁଁ ତୁମର ରୂପ ଦେଖି ବିମୋହିତ ହୋଇଅଛି । ବର୍ତ୍ତମାନ ତୁମ୍ଭେ କୃପାଦୃଷ୍ଟି କଲେ ମୁଁ କୃତାର୍ଥ ହେବି । ସମୁଦ୍ର-ପରିବେଷ୍ଟିତା ଲଙ୍କାପୁରୀ ମୋର ରାଜଧାନୀ । ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ଜଗତରେ ତାହାର ତୁଳନା ନାହିଁ । ମୋତେ ଭଜନ କଲେ ମୁଁ ତୁମ୍ଭଙ୍କୁ ସେହି ଲଙ୍କାପୁରୀର ଅଧୀଶ୍ୱରୀ କରିଦେବି । ଅସଂଖ୍ୟ ଦାସୀପରିବୃତା ହୋଇ ଇନ୍ଦ୍ରାଣୀ ପରି ପରମ ସୁଖରେ ତୁମ୍ଭେ ସେଠାରେ କାଳାତିପାତ କରିବ ।

ରାଜ୍ୟବିତାଡ଼ିତ ଭିକାରୀ ରାମ ତୁମ୍ଭର ପତି ହେବାର ଉପଯୁକ୍ତ ନୁହେ । ସର୍ବାଂଶରେ ତୁମ୍ଭେ ମୋର ରାଜମହିଷୀ ହେବାର ଉପଯୁକ୍ତ ।"

ଅକସ୍ମାତ ଏରୂପ କଥା ଶୁଣି ସୀତାଦେବୀ ପଦଦଳିତା ସର୍ପିଣୀ ପରି ଗର୍ଜ୍ଜନ କରି ଉଠିଲେ । କ୍ରୋଧରେ ତାଙ୍କ ଚକ୍ଷୁରୁ ଅଗ୍ନିସ୍ଫୁଲିଙ୍ଗ ନିର୍ଗତ ହେଲା ଓ ସର୍ବାଙ୍ଗ ପ୍ରକମ୍ପିତ ହେବାକୁ ଲାଗିଲା । ସେ କହିଲେ, "ପାପିଷ୍ଠ ! ଦୁରାଚାର ! ତୋର ଭାଗ୍ୟକୁ ରାମ ଓ ଲକ୍ଷ୍ମଣ କେହି ଉପସ୍ଥିତ ନାହାନ୍ତି । କୋହିଲେ ଏତେବେଳକୁ ତୋହର ମସ୍ତକ ଦେହଚ୍ୟୁତ ହୋଇ ଭୂମିରେ ଲୁଣ୍ଠିତ ହେଉଥାନ୍ତା । ସାମାନ୍ୟ ଶୃଗାଳ ହୋଇ ତୁ ସିଂହୀର ଅଭିଳାଷ କରୁଅଛୁ ? ସାମାନ୍ୟ ନାରୀ ମନେ କରି ତୁ ମୋ ନିକଟରେ ଏପରି ଘୃଣିତ ପ୍ରସ୍ତାବ କରିବାକୁ ସାହସ କରିଅଛୁ ! ତୁ ବୋଧ ହୁଏ ଜାଣୁ ନାହିଁ, ରାଜର୍ଷି ଜନକ ମୋର ପିତା, ମହାରାଜ ଦଶରଥ ମୋର ଶ୍ୱଶୁର ଓ ବୀରମୁକୁଟମଣି ରାମଚନ୍ଦ୍ର ମୋର ସ୍ୱାମୀ । ଆଉ କ୍ଷଣକାଳ ଅପେକ୍ଷା କର । ରାମ ଲକ୍ଷ୍ମଣ ଆସି ତୋର ଦୁରାକାଙ୍କ୍ଷାର ସମୁଚିତ ପୁରସ୍କାର ଦେବେ ।"

ସୀତାଙ୍କ କଥା ଶୁଣି ରାବଣ ବୁଝି ପାରିଲା ଯେ, ଲୋଭ ଦେଖାଇ ବା କଥାରେ ଭୁଲାଇ ସୀତାଙ୍କୁ କରଗତ କରିବା ଅସମ୍ଭବ । ଏଣେ ମଧ୍ୟ କାଳବିଳମ୍ବ କଲେ ରାମ ଲକ୍ଷ୍ମଣ ଆସି ଉପସ୍ଥିତ ହୋଇ ପାରନ୍ତି । ସେ ତହିଁ ବଳପ୍ରୟୋଗଦ୍ୱାରା କାର୍ଯ୍ୟୋଦ୍ଧାର କରିବାର ସ୍ଥିର କଲା ଏବଂ ଛଦ୍ମବେଶ ପରିତ୍ୟାଗ କରି ଭୟଙ୍କର ରାକ୍ଷସମୂର୍ତ୍ତି ଧାରଣ କଲା । ରାବଣର ନିଜ ମୂର୍ତ୍ତି ଦେଖି ସୀତାଦେବୀଙ୍କର ହୃତ୍‌କମ୍ପ ଉପସ୍ଥିତ ହେଲା । ଘର୍ଘର ଶବ୍ଦ କରି ଖଣ୍ଡିଏ ସୁସଜ୍ଜିତ ରଥ କୁଟୀର ସମ୍ମୁଖରେ ଉପସ୍ଥିତ ହେଲା । ରାବଣ ତତ୍‌କ୍ଷଣାତ୍ ବଳପୂର୍ବକ ସୀତାଙ୍କୁ ଧରି ରଥ ଉପରେ ସ୍ଥାପନ କଲା । ସୀତା ପ୍ରାଣପଣ ଚେଷ୍ଟା କରି ସୁଦ୍ଧା ରାବଣର କବଳରୁ ରକ୍ଷା ପାଇ ପାରିଲେ ନାହିଁ । ଅନନ୍ୟୋପାୟ ହୋଇ ଶେଷରେ ସେ ବିଳାପଧ୍ୱନିରେ ଗଗନ ପୂର୍ଣ୍ଣ କରିଦେଲେ । ଦୁର୍ବୃତ୍ତ ରାବଣ ଲଙ୍କାଭିମୁଖରେ ରଥ ଚଳାଇ ନେଲା । ବାୟୁବେଗରେ ରଥ ଆକାଶପଥରେ ଧାବମାନ ହେବାକୁ ଲାଗିଲା । ସୀତା ରାମ ଓ ଲକ୍ଷ୍ମଣଙ୍କ ନାମ ଧରି ବାରମ୍ବାର ଆର୍ତ୍ତନାଦ କରିବାକୁ ଲାଗିଲେ । ସେ ଆର୍ତ୍ତଧ୍ୱନିରେ ବନଭୂମି ଆକୁଳ ହୋଇ ଉଠିଲା । ବାୟୁର ଗତି ଯେପରି ସ୍ଥଗିତ ହୋଇଗଲା; ବୃକ୍ଷଲତା ନିଷ୍ପନ୍ଦ ହୋଇ ରହିଲେ । ମୃଗମାନେ ତୃଣାହାର ଛାଡ଼ି ରଥ ଆଡ଼କୁ ଅନାଇ ରହିଲେ । ମନସ୍ୱିନୀ ସୀତା ସ୍ୱର୍ଗର ଦେବତା-ମାନଙ୍କଠାରୁ ଆରମ୍ଭ କରି ବନର ପଶୁ ପକ୍ଷୀ ତରୁଲତା ପର୍ଯ୍ୟନ୍ତ ସମସ୍ତଙ୍କୁ ସମ୍ବୋଧନ କରି ସାହାଯ୍ୟ ଭିକ୍ଷା କଲେ । କିନ୍ତୁ କେହି ଆଜି ତାଙ୍କ କରୁଣ ଚିତ୍କାରରେ କର୍ଣ୍ଣପାତ କଲେ ନାହିଁ । ପୁଣ୍ୟ ଉପରେ ପାପର ଏ ଦାରୁଣ ଅତ୍ୟାଚାର ସମସ୍ତେ ନୀରବରେ ସହ୍ୟ

କରି ବସିଲେ । ଲକ୍ଷ୍ମଣଙ୍କୁ ଅଯଥା କଟୂକ୍ତି କରିଥିବାଯୋଗୁଁ ସୀତାଙ୍କ ମନରେ ଗଭୀର ମନସ୍ତାପ ଉପସ୍ଥିତ ହେଲା । ରାବଣକର୍ତ୍ତୃକ ନିଜର ଅପମାନକୁ ସେ ନିଜର ଦୁଷ୍କୃତର ଫଳ ମନେକରି ଆତୁର ବ୍ୟାକୁଳସ୍ୱରରେ କ୍ରନ୍ଦନ କଲେ । ସହସା ଗୃଧ୍ରରାଜ ବୃଦ୍ଧ ଜଟାୟୁ ନାରୀ-କଣ୍ଠ-ନିଃସୃତ ବିଳାପଧ୍ୱନି ଶୁଣି ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଖିଲେ, ରାବଣ ସୀତା ଦେବୀଙ୍କୁ ହରଣ କରି ଗଗନମାର୍ଗରେ ପଳାୟନ କରୁଅଛି । ଏ ଦୃଶ୍ୟ ତାଙ୍କର ଅସହ୍ୟ ହେଲା । ସେ ତତ୍‌କ୍ଷଣାତ୍ ଆକାଶକୁ ଉଠି ରାବଣ ସଙ୍ଗେ ଭୀଷଣ ଯୁଦ୍ଧରେ ପ୍ରବୃତ୍ତ ହେଲେ । ବହୁକ୍ଷଣ ରାବଣ ସଙ୍ଗେ ଅମିତବିକ୍ରମରେ ଯୁଦ୍ଧ କଲା ପରେ ଜଟାୟୁ କ୍ଷତ-ବିକ୍ଷତ କଳେବର ହୋଇ ସେହିଠାରେ ପଡ଼ି ରହିଲେ ।

ପଥରେ ଆଉ କିଛି ବାଧା ଘଟିବା ଆଶଙ୍କାରେ ରାବଣ ସୀତାଙ୍କୁ ଧରି ଦ୍ରୁତ-ଗତିରେ ଲଙ୍କାଭିମୁଖରେ ଅଗ୍ରସର ହେଲା । ଏପର୍ଯ୍ୟନ୍ତ ସୁଦ୍ଧା ସୀତାଙ୍କର ଆଶା ଥିଲା ଯେ, ରାମ ଲକ୍ଷ୍ମଣ ଆସି ଦୁରାତ୍ମା ରାବଣକୁ ସମୁଚିତ ଶାସ୍ତି ଦେଇ ତାଙ୍କୁ ମୁକ୍ତ କରିଦେବେ । କିନ୍ତୁ ଏଣିକି କ୍ରମେ ତାଙ୍କର ସବୁ ଆଶା ଲୋପ ପାଇଲା । ସେ ଅତ୍ୟନ୍ତ ଅଧୀର ହୋଇ କ୍ରନ୍ଦନ କରିବାକୁ ଲାଗିଲେ । ଶେଷରେ ନିରୁପାୟ ହୋଇ ସେ ଅଙ୍ଗରୁ ସମସ୍ତ ଅଳଙ୍କାରାଦି କାଢ଼ି ରାମଙ୍କ ସଙ୍କେତ ନିମନ୍ତେ ପଥରେ ସ୍ଥାନେ ସ୍ଥାନେ ନିକ୍ଷେପ କରିବାକୁ ଲାଗିଲେ । ଦେଖୁ ଦେଖୁ ନୀଳୋର୍ମିଶୋଭିତ ମହାସାଗର ସୀତାଙ୍କର ନୟନଗୋଚର ହେଲା । ସେ ଶୋକବିହ୍ୱଳ ହୋଇ ନିଜର କେତେ କଣ ମନୋଭାବ ସାଗର ନିକଟରେ ନିବେଦନ କଲେ । ରାବଣ କ୍ରମେ ସମୁଦ୍ର ଅତିକ୍ରମ କରି ବିଜୟଗର୍ବରେ ସ୍ୱର୍ଣ୍ଣଲଙ୍କାପୁରୀରେ ପ୍ରବେଶ କଲା ।



# ଷଷ୍ଠ ପରିଚ୍ଛେଦ

ମୃଗରୂପୀ ମାରୀଚ ଲକ୍ଷ୍ମଣ ଓ ସୀତାଙ୍କ ନାମ ଧରି କପଟ ଚିତ୍କାର କରିବାରୁ ଶ୍ରୀ ରାମଚନ୍ଦ୍ରଙ୍କ ମନରେ ଅତ୍ୟନ୍ତ ଦୁର୍ଭାବନା ଉପସ୍ଥିତ ହେଲା । ସେ ସ୍ପଷ୍ଟ ବୁଝି ପାରିଲେ ଯେ ଦୁର୍ବୃତ୍ତ ରାକ୍ଷସମାନେ ସେମାନଙ୍କୁ ବିପଦରେ ପକାଇବା ନିମନ୍ତେ ଏହି ମାୟାଜାଲ ବିସ୍ତାର କରିଅଛନ୍ତି । ଏହା ଭାବି ତାଙ୍କର ବୀରହୃଦୟ ମଧ୍ୟ ଚଞ୍ଚଳ ହୋଇ ଉଠିଲା । ସୀତାଙ୍କ ସମ୍ବନ୍ଧରେ ନାନା ଆଶଙ୍କା ତାଙ୍କ ହୃଦୟକୁ ଆଲୋଡ଼ିତ କରିଦେଲା । କିନ୍ତୁ କୁଟୀରକୁ ପ୍ରତ୍ୟାବର୍ତ୍ତନ କରିବା ପଥରେ ସେ ଯେତେବେଳେ ଲକ୍ଷ୍ମଣଙ୍କୁ ଦେଖି ପାଇଲେ ତାଙ୍କର ଉଦ୍‌ବେଗ ଦ୍ୱିଗୁଣ ବୃଦ୍ଧି ପାଇଲା । ଲକ୍ଷ୍ମଣଙ୍କ-ଠାରୁ ଆନୁପୂର୍ବିକ ସମସ୍ତ ବୃତ୍ତାନ୍ତ ଶ୍ରୀ ରାମଚନ୍ଦ୍ର ଅତ୍ୟନ୍ତ ଚିନ୍ତିତ ହୋଇ ଉଠିଲେ । ସୀତାଙ୍କର ଏପରି ଅସମ୍ଭାବିତ ବ୍ୟବହାର ଯେ କୌଣସି ଘୋର ବିପଦର ପୂର୍ବାଭାସ, ଏ ବିଷୟରେ ତାଙ୍କ ମନରେ ଆଉ ସନ୍ଦେହ ରହିଲା ନାହିଁ । ଉଭୟେ ଶଙ୍କିତ ହୃଦୟରେ ସତ୍ୱର କୁଟୀରାଭିମୁଖରେ ଧାବିତ ହେଲେ । ପଥରେ ନାନା ଦୁର୍ନିମିତ୍ତ ଦେଖି ରାମଚନ୍ଦ୍ରଙ୍କ ମନ ଆହୁରି ଉତ୍କଣ୍ଠିତ ହୋଇ ଉଠିଲା ।

କୁଟୀରଦ୍ୱାରରେ ଉପସ୍ଥିତ ହୋଇ ରାମ ଦେଖିଲେ କୁଟୀର ଶୂନ୍ୟ । ଚତୁର୍ଦ୍ଦିଗକୁ ଥରେ ଦୃଷ୍ଟି ନିକ୍ଷେପ କରି ଦେଖିଲେ, ସୀତା କେଉଁଠାରେ ନାହାନ୍ତି । ତାଙ୍କୁ ବିଶ୍ୱବ୍ରହ୍ମାଣ୍ଡ ଅନ୍ଧକାରମୟ ଦେଖାଗଲା, ତାଙ୍କ ମସ୍ତିଷ୍କ ଘୂର୍ଣ୍ଣିତ ହୋଇଗଲା । ରାମଚନ୍ଦ୍ର ବାତାହତ କଦଳୀ ବୃକ୍ଷ ପରି ଭୂମିରେ ପତିତ ହେଲେ । ଲକ୍ଷ୍ମଣ ତାଙ୍କୁ ଭୂମିରୁ ଉଠାଇ ଅନେକ ସାନ୍ତ୍ୱନା ଦେଲେ ଓ ବନମଧ୍ୟରେ ସୀତାଙ୍କର ଅନ୍ୱେଷଣ କରିବା କଥା କହିଲେ । କୁଟୀର ସମ୍ମୁଖରେ ଅତିଥି ସତ୍କାର-ଯୋଗ୍ୟ ଫଳମୂଳ ଓ ରଥଚକ୍ରର ଚିହ୍ନ ପଡ଼ିଥିବାର ଦେଖି ରାମ ଲକ୍ଷ୍ମଣଙ୍କର ପ୍ରକୃତ ଅବସ୍ଥା ଅନୁମାନ କରିବାକୁ ବିଳମ୍ବ ହେଲା ନାହିଁ । ରାମଚନ୍ଦ୍ର "ସୀତା" "ସୀତା" ବୋଲି ଚିତ୍କାର କରି ଅତି ଆକୁଳଭାବରେ ରୋଦନ କରିବାକୁ ଲାଗିଲେ । ସେ ଶୋକରେ ଉନ୍ମତ୍ତ ପ୍ରାୟ ହୋଇ ଲକ୍ଷ୍ମଣଙ୍କ ସହିତ ସୀତାଙ୍କର ଅନ୍ୱେଷଣ କରିବାକୁ ବାହାରିଲେ ।

ଯେଉଁସବୁ ସ୍ଥାନ ସୀତାଦେବୀଙ୍କର ପ୍ରିୟ, ଯେଉଁସବୁ ସ୍ଥାନରେ ସେ ଭ୍ରମଣ କରିବାକୁ ଭଲ ପାଆନ୍ତି, ପ୍ରଥମେ ରାମଲକ୍ଷ୍ମଣ ସେହିସବୁ ସ୍ଥାନକୁ ଯାଇ ସୀତାଙ୍କର ଅନ୍ୱେଷଣ କଲେ, କିନ୍ତୁ ତାଙ୍କର ଦର୍ଶନ ପାଇଲେ ନାହିଁ । ତତ୍ପରେ ସେମାନେ ବନ, ଉପବନ, ନଦୀତୀର, ଗିରିଗୁହା, ସକଳ ସ୍ଥାନ ତନ୍ନ ତନ୍ନ କରି ଅନୁସନ୍ଧାନ

କଲେ । ଥରେ ଅନୁସନ୍ଧାନ କରି ତୃପ୍ତି ହୁଏ ନାହିଁ, ଆହୁରି ଥରେ, ପୁଣି ଆହୁରି ଥରେ, ଏହିପରି ଭାବରେ ପାଞ୍ଚ ଥର, ଦଶ ଥର ଗଲେ । କିନ୍ତୁ କିଛି ଫଳ ହେଲା ନାହିଁ । ତତ୍ପରେ ଉଭୟେ ଅସ୍ତବ୍ୟସ୍ତ ଧରି ରଥଚକ୍ରର ଚିହ୍ନ ଅନୁସରଣ କରି ଦକ୍ଷିଣାଭିମୁଖରେ ଯାତ୍ରା କଲେ । ପଞ୍ଚବଟୀରୁ ସେମାନଙ୍କର ସୁଖମୟ ଆବାସ ଭଙ୍ଗ ହେଲା ।

ପଥରେ ରାମଚନ୍ଦ୍ର ଯାହାକୁ ଦେଖନ୍ତି, ତାକୁ ସୀତାଙ୍କ କଥା ପଚାରନ୍ତି । କିନ୍ତୁ କେହି କୌଣସି ସନ୍ଧାନ କହି ଦେଇ ପାରନ୍ତି ନାହିଁ । ସମୟ ସମୟରେ ସୀତାଶୋକ ଯେତେବେଳେ ପ୍ରବଳ ହୋଇ ଉଠେ, ସେତେବେଳେ ସେ ଉଦ୍‌ଭ୍ରାନ୍ତ-ଭାବରେ ପଶୁପକ୍ଷୀ ବୃକ୍ଷଲତା ସମସ୍ତଙ୍କୁ ଅତି କାତରଭାବରେ ସୀତାଙ୍କ ସମ୍ବାଦ ପଚାରନ୍ତି; କିନ୍ତୁ କାହାରିଠାରୁ କିଛି ସଦୁତ୍ତର ପାଆନ୍ତି ନାହିଁ । ଯେଉଁଠାରେ ସେ ସୀତାଙ୍କର ପ୍ରିୟବସ୍ତୁଟିଏ ଦେଖନ୍ତି, ସୀତାଙ୍କର ଲାବଣ୍ୟ ପ୍ରତିମାଟି ତାଙ୍କର ହୃଦୟ-ପଟରେ ଉଦ୍ଭାସିତ ହୋଇ ଉଠେ । ସୀତାଙ୍କର ଗୁଣାବଳୀ ସ୍ମରଣ କରି ସେ "ସୀତା" "ସୀତା" ବୋଲି ଉନ୍ମତ୍ତଭାବରେ ଚିତ୍କାର କରି ଉଠନ୍ତି ।

ଏହିପରି ଭାବରେ କିଛିଦୂର ଅତିକ୍ରମ କରି ସେମାନେ ଏକସ୍ଥାନରେ ଦେଖିଲେ ବିହଙ୍ଗରାଜ ଜଟାୟୁ ମୃତପ୍ରାୟ ହୋଇ ପଡ଼ିଅଛନ୍ତି । ଜଟାୟୁଙ୍କଠାରୁ ସେମାନେ ଅବଗତ ହେଲେ ଯେ, ରାବଣ ସୀତାଙ୍କୁ ହରଣ କରି ଲଙ୍କାକୁ ନେଇ ଯାଇଅଛି ଓ ସୀତାଙ୍କୁ ଉଦ୍ଧାର କରିବାକୁ ଚେଷ୍ଟା କରି ଜଟାୟୁଙ୍କର ଏପରି ଦୁର୍ଦ୍ଦଶା ହୋଇଅଛି । ଏହା ଶୁଣି ରାମଚନ୍ଦ୍ରଙ୍କ ମନରେ ପ୍ରତିହିଂସାବହ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ସେ କ୍ରୋଧରେ ଅଧୀର ହୋଇ ରାବଣକୁ ସମୁଚିତ ଦଣ୍ଡ ଦେବେ ବୋଲି ପ୍ରତିଜ୍ଞା କଲେ । ରାମଚନ୍ଦ୍ରଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ସାରିବା ସଙ୍ଗେ ସଙ୍ଗେ ଜଟାୟୁ ପ୍ରାଣତ୍ୟାଗ କଲେ । ତାଙ୍କର ଯଥାବିଧି ସତ୍କାର କରି ରାମ ଲକ୍ଷ୍ମଣ ସୀତାଙ୍କ ଉଦ୍ଦେଶ୍ୟରେ ଦକ୍ଷିଣାଭିମୁଖରେ ଯାତ୍ରା କଲେ ।

ବହୁପଥ ଅତିକ୍ରମ କରି ରାମଲକ୍ଷ୍ମଣ ଶେଷରେ ପମ୍ପା ସରୋବର ନିକଟରେ ଉପସ୍ଥିତ ହେଲେ । ପମ୍ପାର ନିର୍ମଳଜଳରେ କୁମୁଦ କମଳ ପ୍ରଭୃତି ବିବିଧ ପୁଷ୍ପରାଜି ପ୍ରସ୍ଫୁଟିତ ହୋଇ ଜନମନ ହରଣ କରୁଅଛି । ସରୋବର ମଧ୍ୟରେ ହଂସ ଚକ୍ରବାକ ପ୍ରଭୃତି ଜଳଚର ପକ୍ଷୀସବୁ ସ୍ୱଚ୍ଛନ୍ଦରେ କ୍ରୀଡ଼ା କରୁଅଛନ୍ତି । ଏହାର ଶ୍ୟାମଳ ତୀରଭୂମି କୁସୁମିତ ତରୁଲତାଦ୍ୱାରା ପରିଶୋଭିତ ହୋଇଅଛି, ମୃଗଯୂଥ ଚତୁର୍ଦ୍ଦିଗରେ ସୁଖରେ ବିଚରଣ କରୁଅଛନ୍ତି । ପମ୍ପାର ରମଣୀୟ ଶୋଭା ଦେଖି ରାମଚନ୍ଦ୍ରଙ୍କର ସୀତାଶୋକ ଦ୍ୱିଗୁଣିତ ହୋଇ ଉଠିଲା । ପୂର୍ବସ୍ମୃତି ଜାଗରିତ ହୋଇ ତାଙ୍କ ମନକୁ

ଅତ୍ୟନ୍ତ ବ୍ୟାକୁଳ କରି ଦେଲା । ପ୍ରିୟତମା ଜାନକୀଙ୍କ ବିରହରେ ସେ ବାଳକ ପରି ରୋଦନ କଲେ । ସ୍ଥିରବୁଦ୍ଧି ଲକ୍ଷ୍ମଣ ମିଷ୍ଟବାକ୍ୟରେ ତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ ।

ଏହିପରି ଭାବରେ କିଛିଦିନ ଅତିବାହିତ କରି ସେମାନେ ଋଷ୍ୟମୂକ ପର୍ବତରେ ଉପସ୍ଥିତ ହୋଇ ସେଠାରେ ଗିରିକନ୍ଦର ବନଝାଡ଼ର ପାଖେ ଖଞ୍ଚି ବାନର ମୂର୍ତ୍ତି ଦେଖି ପାରିଲେ । ସେମାନଙ୍କଠାରୁ ସୀତାଙ୍କର କିଛି ସମ୍ବାଦ ମିଳି ପାରିବ କି ନାହିଁ ରାମ ଓ ଲକ୍ଷ୍ମଣ ଏହି କଥା ବିଚାର କରୁଅଛନ୍ତି, ଏପରି ସମୟରେ ସେମାନଙ୍କ ମଧ୍ୟରୁ ହନୁମାନ୍ ନାମକ ଗୋଟିଏ ମହାବଳ ବୁଦ୍ଧିମାନ୍ ବାନର ନିକଟବର୍ତ୍ତୀ ହୋଇ ସେମାନଙ୍କର ପରିଚୟ ପଚାରିଲେ । ରାମ ଓ ଲକ୍ଷ୍ମଣ ସ୍ୱୀୟ ପରିଚୟ ପ୍ରଦାନ କରି ତାଙ୍କ ନିକଟରେ ନିଜର ଦୁଃଖକାହାଣୀ ବର୍ଣ୍ଣନା କଲେ । ରାମଚନ୍ଦ୍ରଙ୍କର ବିନୟ-ମଧୁର କଥା ଶୁଣି ଓ ତାଙ୍କର ମହୋଦାର ଭାବ ଦେଖି ହନୁମାନ୍ ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ ଓ ସଙ୍କୋଚ ପରିତ୍ୟାଗ କରି ନିଜର ଓ ତାଙ୍କର ସହଚର ବାନରମାନଙ୍କର ପରିଚୟ ପ୍ରଦାନ କଲେ । ସେ କହିଲେ, କିଷ୍କିନ୍ଧ୍ୟାଧିପତି ବୀର-କେଶରୀ ବାଳୀ ତାଙ୍କର କନିଷ୍ଠ ଭ୍ରାତା ସୁଗ୍ରୀବଙ୍କୁ ରାଜ୍ୟରୁ ବହିଷ୍କୃତ କରି ଦେଇଥିବାରୁ ସେ ତାଙ୍କର ମିତ୍ରବର୍ଗଙ୍କ ସହିତ ମନୋଦୁଃଖରେ ଏହି ପର୍ବତରେ ଅବସ୍ଥାନ କରୁ-ଅଛନ୍ତି । ତାଙ୍କରି ନିୟୋଗରେ ହନୁମାନ୍ ରାମ ଲକ୍ଷ୍ମଣଙ୍କ ନିକଟକୁ ସେମାନଙ୍କର ବିଚରଣ ଅବଗତ ହେବା ନିମନ୍ତେ ଆଗମନ କରିଅଛନ୍ତି । ଏହା କହି ହନୁମାନ୍ ମହାବୀର ସୁଗ୍ରୀବଙ୍କର ଅଶେଷ ଗୁଣ କୀର୍ତ୍ତନ କରିବାକୁ ଲାଗିଲେ । ହନୁମାନଙ୍କ କଥା ଶୁଣି ରାମଚନ୍ଦ୍ର ସୁଗ୍ରୀବଙ୍କ ସହିତ ମୈତ୍ରୀ ସ୍ଥାପନ କରିବାର ଇଚ୍ଛା ପ୍ରକାଶ କଲେ । ଲକ୍ଷ୍ମଣଙ୍କଠାରୁ ରାମଚନ୍ଦ୍ରଙ୍କର ଅଦ୍ଭୁତ ବୀରତ୍ୱ ଓ ଅଲୌକିକ ସ୍ୱାର୍ଥତ୍ୟାଗ କଥା ଶୁଣି ହନୁମାନ୍ ମୁଗ୍ଧ ହୋଇଗଲେ ଓ ପ୍ରାଣପଣେ ତାଙ୍କର ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ ।

ରାମ ଓ ଲକ୍ଷ୍ମଣ ହନୁମାନଙ୍କ ସହିତ ସୁଗ୍ରୀବଙ୍କ ନିକଟରେ ଉପନୀତ ହେଲେ । ସୁଗ୍ରୀବ ହନୁମାନଙ୍କ ମୁଖରୁ ରାମଚନ୍ଦ୍ରଙ୍କ ଗୁଣାବଳୀ ଶ୍ରବଣ କରି ତାଙ୍କ ସହିତ ବନ୍ଧୁତା ସ୍ଥାପନ କରିବାକୁ ଆଗ୍ରହ ପ୍ରକାଶ କଲେ । ରାମଚନ୍ଦ୍ର ସାଦରରେ ସୁଗ୍ରୀବଙ୍କ ହସ୍ତ ଧାରଣ କରି ତାଙ୍କୁ ଆଲିଙ୍ଗନ କଲେ । ରାମ ଓ ସୁଗ୍ରୀବ ଅଗ୍ନିଙ୍କୁ ସାକ୍ଷୀ କରି ପରସ୍ପର ସହିତ ମିତ୍ରତା ସୂତ୍ରରେ ଆବଦ୍ଧ ହେଲେ ।

ଏହାପରେ ଉଭୟେ ଏକାସନରେ ବସି ନାନା ସୁଖଦୁଃଖ କଥାବାର୍ତ୍ତା ହେବାକୁ ଲାଗିଲେ । ସୀତାହରଣ କଥା ଶୁଣି ସୁଗ୍ରୀବ ଅତ୍ୟନ୍ତ ଦୁଃଖ ପ୍ରକାଶ

କଲେ ଓ ମଧୁରବାକ୍ୟରେ ଶୋକସନ୍ତପ୍ତ ରାମଚନ୍ଦ୍ରଙ୍କୁ ପ୍ରବୋଧ ଦେବାକୁ ଲାଗିଲେ । ହଠାତ୍ ତାଙ୍କର ସ୍ମରଣ ହେଲା, ଦିନେ ସେ ସଖାବୃନ୍ଦଙ୍କ ସହିତ ପର୍ବତଶିଖରରେ ବସି ଦେଖି ପାରିଥିଲେ ଯେ ରାବଣ ବଳପୂର୍ବକ ଗୋଟିଏ ରମଣୀକୁ ଧରି ଆକାଶ-ପଥରେ ପଳାୟନ କରୁଅଛି; ରମଣୀ ମର୍ମଭେଦୀ ଆର୍ତ୍ତନାଦ କରି ନିଜର ଉତ୍ତରୀୟ ଓ ଅଙ୍ଗର ଅଳଙ୍କାର ସବୁ ଦୂରକୁ ନିକ୍ଷେପ କରି ଦେଉଅଛନ୍ତି । ସୁଗ୍ରୀବ ରାମଚନ୍ଦ୍ରଙ୍କ ନିକଟରେ ସମସ୍ତ କଥା ନିବେଦନ କରି ଶେଷରେ କହିଲେ, "ସେହି ଅଳଙ୍କାର-ଗୁଡ଼ିକ ମୁଁ ଯତ୍ନରେ ରଖିଅଛି । ସମ୍ଭବତଃ ସେଗୁଡ଼ିକ ସୀତାଙ୍କର ।" ଏହା କହି ସୁଗ୍ରୀବ ଗୋଟିଏ ଗୁହାରୁ ଉତ୍ତରୀୟ ଓ ଅଳଙ୍କାର ଆଣି ରାମଚନ୍ଦ୍ରଙ୍କ ସମ୍ମୁଖରେ ସ୍ଥାପନ କଲେ । ରାମଚନ୍ଦ୍ର ସେଗୁଡ଼ିକ ସବୁ ସୀତାଙ୍କର ବୋଲି ଚିହ୍ନିପାରି ତାହାକୁ ବାରମ୍ବାର ହୃଦୟରେ ସ୍ଥାପନ କଲେ ଓ ଶୋକବିହ୍ୱଳ ହୋଇ ରୋଦନ କରିବାକୁ ଲାଗିଲେ । ସୁଗ୍ରୀବ ରାମଙ୍କୁ ଆଶା ଓ ଉତ୍ସାହ ପ୍ରଦାନ କରି କହିଲେ, "ଆପଣ ଶୋକ ପରିତ୍ୟାଗ କରନ୍ତୁ । ସୀତା ସ୍ୱର୍ଗ ମର୍ତ୍ତ୍ୟ ରସାତଳ ଯେଉଁଠାରେ ଥାଆନ୍ତୁ, ମୁଁ ନିଶ୍ଚୟ ତାଙ୍କୁ ଆଣି ଆପଣଙ୍କ ହସ୍ତରେ ସମର୍ପଣ କରିଦେବି ।"

ରାମଚନ୍ଦ୍ର କହିଲେ, "ସଖେ ! ତୁମର ଆଶ୍ୱାସବାକ୍ୟରେ ମୁଁ ଆପ୍ୟାୟିତ ହେଲି । ବିପଦ କାଳରେ ତୁମ ପରି ବନ୍ଧୁ ଲାଭ ଅତ୍ୟନ୍ତ ଦୁର୍ଘଟ । ବର୍ତ୍ତମାନ ମୋଦ୍ୱାରା ତୁମର କି ଉପକାର ହୋଇ ପାରେ ସରଳଭାବରେ କହ ।"

ସୁଗ୍ରୀବ କହିଲେ, "ମୁଁ ରାଜ୍ୟ-ତାଡ଼ିତ, ବନବାସୀ । ତୁମେ ଯଦି ବାଲୀକି ପରାସ୍ତ କରି ମତେ କିଷ୍କିନ୍ଧ୍ୟା ରାଜ୍ୟ ଦେଇ ପାର, ତେବେ ମୁଁ ପ୍ରାଣପାତ କରି ତୁମର କାର୍ଯ୍ୟ ସାଧନ କରିବି ।" ଏହା କହି ସେ ବାଲୀ ସହିତ ତାଙ୍କର ଶତ୍ରୁତାର କାରଣ ଆନୁପୂର୍ବିକ ସବୁ ବର୍ଣ୍ଣନା କଲେ । ସୁଗ୍ରୀବଙ୍କ କଥା ଶୁଣି ରାମଚନ୍ଦ୍ର ବାଲୀ-ବଧପାଇଁ ପ୍ରତିଜ୍ଞା କଲେ ।

ଏହା ପରେ ସୁଗ୍ରୀବ ନିଜର ସ୍ୱଳ୍ପ ବାନର ସୈନ୍ୟ ଘେନି କିଷ୍କିନ୍ଧ୍ୟାରାଜାଙ୍କ ପୁରଦ୍ୱାରରେ ଉପନୀତ ହେଲେ ଓ ସିଂହନାଦ କରି ବାଲୀ ରାଜାଙ୍କୁ ଯୁଦ୍ଧ ନିମିତ୍ତ ଆହ୍ୱାନ କଲେ । କ୍ରମେ ଉଭୟ ଭ୍ରାତା ତୁମୁଳ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଶେଷରେ ରାମଚନ୍ଦ୍ରଙ୍କର ଅତୁଳନୀୟ ରଣକୌଶଳରେ ବାଲୀ ପରାଜିତ ଓ ଯୁଦ୍ଧକ୍ଷେତ୍ରରେ ନିହତ ହେଲେ । ରାମଙ୍କ ଆଦେଶରେ ସୁଗ୍ରୀବ କିଷ୍କିନ୍ଧ୍ୟାର ସିଂହାସନ ଆରୋହଣ କଲେ ଓ ବାଲୀପୁତ୍ର ଅଙ୍ଗଦ ଯୁବରାଜପଦରେ ଅଭିଷିକ୍ତ ହେଲେ ।

ଏହି ସମୟରେ ବର୍ଷାକାଳ ଉପସ୍ଥିତ ହେବାରୁ ଯୁଦ୍ଧର ଆୟୋଜନ ଶରତ୍‌କାଳ ପର୍ଯ୍ୟନ୍ତ ସ୍ଥଗିତ ରଖାଗଲା । ରାମଚନ୍ଦ୍ର ସୁଗ୍ରୀବଙ୍କୁ ନିଜର ରାଜପ୍ରାସାଦରେ

ଅବସ୍ଥାନ କରିବାକୁ ଅନୁମତି ଦେଇ ନିଜେ ଲକ୍ଷ୍ମଣଙ୍କ ସହିତ ପ୍ରସ୍ରବଣ ପର୍ବତରେ ବର୍ଷା ଯାପନ କଲେ ।

କ୍ରମେ ବର୍ଷା ଯାଇ ଶରତ୍ ଉପସ୍ଥିତ ହେଲା, ଧରିତ୍ରୀ ଫଳପୁଷ୍ପରେ ସୁଶୋଭିତ ହୋଇ ଉଠିଲା । ଆକାଶ ମେଘଶୂନ୍ୟ, ଜଳ ନିର୍ମଳ ଓ ସର୍ବସ୍ଥଳ ପରିଷ୍କୃତ ହୋଇଗଲା । ପୃଥିବୀରେ କିପରି ଗୋଟିଏ ଦିବ୍ୟ ଆନନ୍ଦଧାରା ପ୍ରବାହିତ ହେଲା । କିନ୍ତୁ ସୀତାବିରହରେ ଏ ସୁଖାନୁଭୂତି ରାମଚନ୍ଦ୍ରଙ୍କ ହୃଦୟକୁ ଅଧିକତର ଶୋକାଚ୍ଛନ୍ନ କରି ଦେଲା । ଏଣେ ସୁଗ୍ରୀବ ବିଳାସସୁଖରେ ମଗ୍ନ ହୋଇ ସୀତା ଅନ୍ୱେଷଣ ନିମନ୍ତେ ବିଶେଷ କୌଣସି ଉଦ୍ୟୋଗ କଲେ ନାହିଁ । ଶେଷରେ ଲକ୍ଷ୍ମଣ କ୍ରୋଧରେ ଅଗ୍ନିପ୍ରାୟ ହୋଇ ସୁଗ୍ରୀବଙ୍କୁ ଦଣ୍ଡ ଦେବା ନିମନ୍ତେ ଧନୁର୍ବାଣହସ୍ତରେ କିଷ୍କିନ୍ଧ୍ୟାରେ ଉପସ୍ଥିତ ହେଲେ । ସୁଗ୍ରୀବ ବିନୀତ ଓ ମିଷ୍ଟ ବାକ୍ୟରେ ଲକ୍ଷ୍ମଣଙ୍କୁ ସନ୍ତୁଷ୍ଟ କରି ଚତୁର୍ଦିଗରେ ସୈନ୍ୟ ସଂଗ୍ରହର ଆଦେଶ ପ୍ରଚାର କରିଦେଲେ । କ୍ରମେ ଅସଂଖ୍ୟ ବାନରସୈନ୍ୟ କିଷ୍କିନ୍ଧ୍ୟାରେ ଆସି ସମବେତ ହେଲେ । ସୁଗ୍ରୀବ ସେମାନଙ୍କୁ ପ୍ରଧାନ ପ୍ରଧାନ ବାନରଙ୍କର ନେତୃତ୍ୱାଧୀନରେ ସୀତାଙ୍କ ଅନ୍ୱେଷଣ ନିମିତ୍ତ ବିଭିନ୍ନ ଦିଗକୁ ପ୍ରେରଣ କଲେ ।

ବହୁ ଅନ୍ୱେଷଣ ପରେ ସମସ୍ତେ ବିଫଳମନୋରଥ ହୋଇ ଫେରି ଆସିଲେ । କେବଳ ଅଙ୍ଗଦ ହନୁମାନ୍ ପ୍ରଭୃତି ଶ୍ରେଷ୍ଠ ବାନରମାନଙ୍କର ଫେରିବାର ବିଳମ୍ବ ହେଲା । ସେମାନେ ଦକ୍ଷିଣ ଦିଗକୁ ଯିବାର ଭାର ଗ୍ରହଣ କରିଥିଲେ । କିନ୍ତୁ ଅନେକ ଯତ୍ନ ଓ ପରିଶ୍ରମ ପରେ ସେମାନେ ସୀତାଙ୍କର କୌଣସି ଉଦ୍ଦେଶ୍ୟ ନ ପାଇ ଶେଷରେ ହତାଶ ହୃଦୟରେ ଆସି ଦକ୍ଷିଣ ସମୁଦ୍ରତଟରେ ଉପନୀତ ହେଲେ । ସେଠାରେ ସୌଭାଗ୍ୟକ୍ରମେ ଗୋଟିଏ ପର୍ବତ ଉପରେ ସମ୍ପାତି ନାମକ ବିହଗରାଜଙ୍କ ସହିତ ସେମାନଙ୍କର ଭେଟ ହେଲା । ସମ୍ପାତିଙ୍କଠାରୁ ସେମାନେ ସମ୍ବାଦ ପାଇଲେ ଯେ ରାବଣ ସୀତାଙ୍କୁ ନେଇ ସମୁଦ୍ର ପରପାରବର୍ତ୍ତୀ ଲଙ୍କାଦ୍ୱୀପରେ ରଖିଅଛି । ଏହା ଶୁଣି ବାନରଗଣ ହର୍ଷକୋଳାହଳ କରି ସାଗର ଲଙ୍ଘନ କରିବାର ପରାମର୍ଶ କରିବାକୁ ଲାଗିଲେ । କିନ୍ତୁ ଏହି ଦୁରୂହ କାର୍ଯ୍ୟ ସାଧନ କରିବାକୁ କେହି ସାହସ କରି ଅଗ୍ରସର ହେଲେ ନାହିଁ । ସମସ୍ତଙ୍କୁ ହତୋଦ୍ୟମ ହେବାର ଦେଖି ମହାବୀର ହନୁମାନ୍ ନିଜର ବିପଦ ପ୍ରତି ଭ୍ରୂକ୍ଷେପ ନ କରି ସମୁଦ୍ର ପାର ହେବାକୁ କୃତସଂକଳ୍ପ ହେଲେ । ଶେଷରେ ହନୁମାନ୍ ଗୋଟିଏ ଉଚ୍ଚ ପର୍ବତ ଶୃଙ୍ଗରେ ଆରୋହଣ କରି ଅତୁଳ ବିକ୍ରମରେ ଶୂନ୍ୟମାର୍ଗକୁ ଲମ୍ଫ ପ୍ରଦାନ କଲେ । ବାନର ସୈନ୍ୟଗଣ ବିସ୍ମୟ ଓ ଆନନ୍ଦରେ ଜୟଜୟକାର କରିବାକୁ ଲାଗିଲେ । ଦେଖୁ ଦେଖୁ ହନୁମାନ୍ ଆକାଶ-ପଥରେ ଅଦୃଶ୍ୟ ହୋଇଗଲେ ।

●

# ସପ୍ତମ ପରିଚ୍ଛେଦ

ସମୁଦ୍ରତୀରବର୍ତ୍ତୀ ସୁବେଲ ପର୍ବତଚୂଡ଼ାରେ ରାକ୍ଷସରାଜ ରାବଣର ରାଜଧାନୀ ପ୍ରତିଷ୍ଠିତ । ଏହାର ତିନଦିଗ ସୁଦୃଢ଼ ପ୍ରାଚୀରଦ୍ୱାରା ବେଷ୍ଟିତ ଓ ଅପର ଦିଗରେ ଅନନ୍ତ ସାଗର ପରିଖାରୂପରେ ବିଦ୍ୟମାନ । ଲଙ୍କା ଅତ୍ୟନ୍ତ ରମଣୀୟ ସ୍ଥାନ । ଏହାକୁ ପ୍ରକୃତିଦେବୀଙ୍କର ଲୀଳାଭବନ କହିଲେ ଅତ୍ୟୁକ୍ତି ହେବ ନାହିଁ । କେଉଁଠାରେ ମନୋହର କାନନ, କେଉଁଠାରେ ପୁଷ୍ପିତ ଉପବନ, କେଉଁଠାରେ ସ୍ୱଚ୍ଛନୀର ନଦୀ, କେଉଁଠାରେ ମେଘଚୁମ୍ବୀ ଶୈଳମାଳା କେଉଁଠାରେ ସୁବିସ୍ତୃତ ସମତଳ ଭୂମି ଲଙ୍କାର ଶୋଭା ବର୍ଦ୍ଧନ କରୁଅଛି । ଐଶ୍ୱର୍ଯ୍ୟବିଭବରେ ଲଙ୍କାପୁରୀ ଅମରାବତୀକୁ ପରାସ୍ତ କରିଥିଲା । ସୁପ୍ରଶସ୍ତ ରାଜପଥର ଉଭୟ ପାର୍ଶ୍ୱରେ ସୁଦୃଶ୍ୟ ଅଟ୍ଟାଳିକାଶ୍ରେଣୀ ବିରାଜିତ । ସ୍ଥାନେ ସ୍ଥାନେ ନାଟ୍ୟଶାଳା, କ୍ରୀଡ଼ାଭୂମି ଓ ପାନଗୃହ । ସର୍ବୋପରି ରାବଣ ନିଜର ମହିଷୀଗଣଙ୍କ ସହିତ ଭୋଗବିଳାସରେ ଦେବରାଜ ଇନ୍ଦ୍ରଙ୍କ ପରି ବାସ କରେ । ରାବଣ ସୀତାଙ୍କୁ ହରଣ କରି ଆଣି ପଲଙ୍କ ପରି ତାଙ୍କର ରୂପବହ୍ନିରେ ଦଗ୍ଧୀଭୂତ ହେବାକୁ ଲାଗିଲା । କିନ୍ତୁ ସେ କୌଣସିପ୍ରକାରେ ସୀତାଙ୍କୁ ବଶୀଭୂତ କରି ପାରିଲା ନାହିଁ । ସୀତାଙ୍କର ଧର୍ମବଳ ନିକଟରେ ତାହାର ପାପବାସନା ପରାଜିତ ହେଲା । ଧନ, ରତ୍ନ, ଐଶ୍ୱର୍ଯ୍ୟ, ପରାକ୍ରମ ପ୍ରଭୃତି ନାନା ପ୍ରଲୋଭନ ଦେଖାଇ ରାବଣ ସୀତାଙ୍କୁ ସ୍ୱାୟତ୍ତ କରିବାକୁ ଚେଷ୍ଟା କଲା, କିନ୍ତୁ କୌଣସିଥିରେ ସୀତାଙ୍କର ମନ ବିଚଳିତ ହେଲା ନାହିଁ । ସୀତା ଯେତିକି ପ୍ରତ୍ୟାଖ୍ୟାନ କରିବାକୁ ଲାଗିଲେ, ରାବଣ କ୍ଷୁଧିତ ସିଂହ ପରି ସେତିକି ଆକୁଳ ହୋଇ ଉଠିଲା । ରାବଣ ଶେଷରେ ବୁଝି ପାରିଲା ଯେ ସୀତା ଅତ୍ୟନ୍ତ ତେଜସ୍ୱିନୀ ଓ ପତିପରାୟଣା ! ବଳ ପ୍ରୟୋଗ କଲେ ସେ ନିଶ୍ଚୟ ପ୍ରାଣ ବିସର୍ଜ୍ଜନ କରିବେ । ସୁତରାଂ ତାଙ୍କୁ ବଶୀଭୂତ କରିବା ସହଜସାଧ୍ୟ ନୁହେଁ; ଛଳ କୌଶଳରେ କିଛି ହେଲେ ହୋଇପାରେ, ଏହା ଭାବି ରାବଣ ସୀତାଙ୍କୁ ଏକ ବର୍ଷ ସମୟ ଦେଲା ଓ ଅଶୋକ ବନରେ ସୀତାଙ୍କର ବାସସ୍ଥାନ ନିର୍ଦ୍ଦିଷ୍ଟ କରିଦେଲା । ଏହି ଏକ ବର୍ଷ ମଧ୍ୟରେ ସୀତା ଯଦି ରାବଣର ପ୍ରସ୍ତାବରେ ରାଜି ନ ହୁଅନ୍ତି, ତେବେ ତାଙ୍କର ଆଉ ଜୀବନ ରକ୍ଷା ହେବ ନାହିଁ । ରାବଣ ମନେ କଲା, ସୀତା ବର୍ତ୍ତମାନ ସଦ୍ୟସ୍ୱାମୀବିରହରେ କାତର ଅଛନ୍ତି । କିଛି ସମୟ ପରେ ତାଙ୍କର ଶୋକାବେଗ ମନ୍ଦୀଭୂତ ହୋଇଗଲେ ସେ କ୍ରମେ ରାମଚନ୍ଦ୍ରଙ୍କୁ ବିସ୍ମୃତ ହୋଇଯିବେ ଓ ଉଦ୍ଧାରର କୌଣସି ଆଶା ନ ଦେଖି ବାଧ୍ୟ ହୋଇ ଶେଷରେ ତାହାର ବଶ୍ୟତା ସ୍ୱୀକାର କରିବେ ।

ଅଶୋକବନ ଗୋଟିଏ ଅତି ସୁନ୍ଦର ଓ ନିକାଞ୍ଚନ ସ୍ଥାନ । ଏହାର ଏକ ଦିଗରେ ସମୁଦ୍ର ଓ ଅନ୍ୟ ଦିଗରେ ପ୍ରସ୍ତରନିର୍ମିତ ଦୁର୍ଭେଦ୍ୟ ପ୍ରାଚୀର । ଏଠାକୁ ଆସି ସୀତା ଦେବୀ ରାକ୍ଷସୀଗଣଙ୍କଦ୍ୱାରା ପରିବୃତା ହୋଇ ବନ୍ଦିନୀ ହରିଣୀ ପରି ଅତିକଷ୍ଟରେ କାଳଯାପନ କରିବାକୁ ଲାଗିଲେ । କେତେବେଳେ ସୁଖର ପ୍ରଲୋଭନ ଦେଖାଇ, କେତେବେଳେ କର୍କଶ ବାକ୍ୟରେ, କେତେବେଳେ ଭୟପ୍ରଦର୍ଶନ କରି ରାକ୍ଷସୀମାନେ ରାବଣର ଅସାଧୁ ପ୍ରସ୍ତାବରେ ସମ୍ମତ କରାଇବା ନିମନ୍ତେ ସୀତାଙ୍କ ଉପରେ ନାନା ରୂପ ନିର୍ଯ୍ୟାତନା ଆରମ୍ଭ କଲେ । କିନ୍ତୁ ସୀତା ଅବିଚଳିତ ହୋଇ ନୀରବରେ ସବୁ ସହ୍ୟ କରିବାକୁ ଲାଗିଲେ । ରାବଣ ଦୁଇ ତିନୋଟି ସୁଚତୁରା ରମଣୀଙ୍କ ଉପରେ ସୀତାଙ୍କୁ ବଶୀଭୂତ କରିବାର ଭାର ବିଶେଷ ଭାବରେ ଅର୍ପଣ କରିଥିଲେ । ରାବଣ କେତେ ଅବଳା ନାରୀଙ୍କୁ ଯେ ବଳାତ୍କାରରେ ହରଣ କରି ଆଣି ନିଜର ଅନ୍ତଃପୁରରେ ରଖିଥିଲେ, ତାହାର ସୀମା ନାହିଁ । ପ୍ରଥମରେ ସେ ସେତେ ପ୍ରତିକୂଳାଚରଣ କଲେ ସୁଦ୍ଧା ଏହି କେତୋଟି ରମଣୀଙ୍କର କୌଶଳ ଓ ବାକ୍-ପଟୁତାରେ ସମସ୍ତେ ରାବଣ ନିକଟରେ ଆତ୍ମବିକ୍ରୟ କରିଅଛନ୍ତି । କିନ୍ତୁ ସେମାନଙ୍କର ସମସ୍ତ କୌଶଳ ଓ ହାବଭାବ ସୀତାଙ୍କ ନିକଟରେ ନିଷ୍ଫଳ ହେଲା । ଯାହାର ଭୋଗ-ସୁଖରେ ଆସକ୍ତି ନାହିଁ, ନିଜର ଆପଦ ବିପଦ ପ୍ରତି ଭ୍ରୂକ୍ଷେପ ନାହିଁ, ଏପରି କି, ମରଣଭୟ ଯାହାଠାରେ ଅତି ତୁଚ୍ଛ, ତାକୁ କିଏ କି ପ୍ରଲୋଭନ ଦେଖାଇ ଆୟତ୍ତ କରି ପାରେ ? ସେମାନେ ବିଫଳମନୋରଥ ହୋଇ ଶେଷରେ ରାବଣ ନିକଟରେ କହିଲେ, "ମହାରାଜ ! ଆମ୍ଭେମାନେ ଅନେକ ରମଣୀ ଦେଖିଅଛୁଁ, କିନ୍ତୁ ସୀତା 'ପରି ସତୀ ଦେଖିବା ଦୂରେ ଥାଉ କାନରେ ସୁଦ୍ଧା ଶୁଣି ନାହୁଁ । ଆମ୍ଭେମାନେ ଏତେଦିନ ପର୍ଯ୍ୟନ୍ତ ଏତେ ଉପାୟ ଅବଲମ୍ବନ କଲୁଁ, ନାନା ପରୀକ୍ଷା କରି ଦେଖିଲୁ, କିନ୍ତୁ ଏପର୍ଯ୍ୟନ୍ତ ଆଶାର ଅଙ୍କୁରୋଦ୍‌ଗମ ସୁଦ୍ଧା ଦେଖି ପାରିଲୁଁ ନାହିଁ । ସୀତାଙ୍କର ତେଜ ଦେଖି ଆମ୍ଭେମାନେ ବାସ୍ତବିକ ବିସ୍ମୟରେ ସ୍ତବ୍ଧ ହୋଇ ଯାଇଅଛୁଁ । ଏପରି ପତିବ୍ରତା ରମଣୀ ଯେ ଜଗତରେ ଥାଇ ପାରନ୍ତି, ଏହା ଆମ୍ଭମାନଙ୍କର ଧାରଣାର ଅତୀତ ଥିଲା । ମହାରାଜ ! ଆପଣଙ୍କ ମଙ୍ଗଳ ନିମନ୍ତେ କହୁଅଛୁଁ, ଆପଣ ସୀତାର ଆଶା ପରିତ୍ୟାଗ କରନ୍ତୁ । ପଶ୍ଚିମଦିଗରେ ସୂର୍ଯ୍ୟୋଦୟ ହେବା ଯେପରି ଅସମ୍ଭବ, ସୀତାଙ୍କୁ ବଶୀଭୂତ କରିବା ସେହିପରି ଅସମ୍ଭବ ।" ରାବଣ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ଦୂତୀମାନଙ୍କୁ ବିଦାୟ ଦେଲେ, କିନ୍ତୁ ମନେ ମନେ କହିଲେ, "ଜୀବନ ଥାଉ ଥାଉ ସୀତାର ଆଶା ତ୍ୟାଗ କରି ପାରିବି ନାହିଁ । ନିଜ ଚେଷ୍ଟାରେ କେତେଦୂର କଣ ହେଉଅଛି, ଦେଖାଯାଉ ।"

ରାବଣ ସୀତାଙ୍କୁ ଏକ ବର୍ଷର ସମୟ ଦେଇଥିଲେ ସୁଦ୍ଧା ମଧ୍ୟେ ମଧ୍ୟେ ଅଶୋକବନକୁ ଆସି ସୀତାଙ୍କ ନିକଟରେ ଦାରୁଣ ଯନ୍ତ୍ରଣା ଦେଇ ଯାଉଥିଲା । ରାବଣକୁ

ଆସିବାର ଦେଖିପାରିଲେ ସୀତାଙ୍କ ଦେହରୁ ଅଧା ରକ୍ତ ଶୁଖିଯାଏ । ରାବଣ ନାନା ସ୍ତୁତି କଥା କହି, ନାନା ପ୍ରଲୋଭନ ଦେଖାଇ ସୀତାଙ୍କୁ ଭୁଲାଇବାକୁ ଚେଷ୍ଟା କରେ । ସୀତା ଦେବୀ ରାବଣର କୌଣସି କଥାରେ ଉତ୍ତର ଦିଅନ୍ତି ନାହିଁ, କିମ୍ବା ମୁହଁ ଟେକି ତାହା ଆଡ଼କୁ ଚାହାନ୍ତି ନାହିଁ, କେବଳ ନୀରବରେ ଅଶ୍ରୁପାତ କରନ୍ତି । ସୀତାଙ୍କର ଏପରି ଭାବ ଦେଖି ରାବଣ କ୍ରୋଧରେ ଅଧୀର ହୋଇ ହତାଶ ଭାବରେ ଫେରିଯାଏ । ଆଧ୍ୟାତ୍ମିକ ବଳ ନିକଟରେ ପାଶବ ବଳ ପରାସ୍ତ ହୁଏ ।

ଏହିପରି ଦୁଃଖକଷ୍ଟରେ ସୀତାଦେବୀ ଅଶୋକବନରେ ଦଶମାସ ଅତିବାହିତ କଲେ । ରାମଙ୍କ ବିରହରେ ସେ ଦିନକୁ ଦିନ ମଳିନ ଓ ଅସ୍ଥିଚର୍ମସାର ହୋଇଗଲେ । କ୍ରମେ ତାଙ୍କ ମନରୁ ଆଶା ଓ ଉତ୍ସାହ ତିରୋହିତ ହେବାକୁ ବସିଲା । ସେ ରାମ ନାମକୁ ଜପାମାଳ କରି କେବଳ ପତିଙ୍କ ଦର୍ଶନ ପାଇବା ଆଶାରେ କୌଣସି ପ୍ରକାରେ ଜୀବିତ ରହିଲେ ।

ଦିନେ ପ୍ରଭାତ ହେବାର କିଛି ପୂର୍ବରୁ ସୀତା ଦେବୀ ବୃକ୍ଷତ୍ଵଙ୍ଗ ଯୋଗୁ ଶଯ୍ୟା ତ୍ୟାଗ କରି ଗୋଟିଏ ପ୍ରସ୍ତର ବେଦୀ ଉପରେ ଉପବିଷ୍ଟ ଥିଲେ । ସେସମୟରେ ଚେଡ଼ୀ-ଗଣଙ୍କ ମଧ୍ୟରୁ କାହାରି ନିଦ୍ରାଭଙ୍ଗ ହୋଇ ନାହିଁ । ଚତୁର୍ଦ୍ଦିଗ ନୀରବ ନିସ୍ତବ୍ଧ । କିନ୍ତୁ ସମ୍ମୁଖରେ ନୀଳୋର୍ମିମୟ ଅନନ୍ତ ସମୁଦ୍ର ଗର୍ଜନ କରୁଅଛି । ସୀତା ଏକଦୃଷ୍ଟିରେ ସମୁଦ୍ରଆଡ଼କୁ ଚାହିଁ ଭାବୁଅଛନ୍ତି, "ଇହଜନ୍ମରେ ଆଉ କଣ ପ୍ରଭୁଙ୍କର ଦର୍ଶନ ପାଇବି ? ଏ ଅକୂଳ ସାଗର ପାରି ହୋଇ ସତେ କଣ ସେ ଏଠାକୁ ଆସି ପାରିବେ ? ଦଶ ମାସ ତ ବିତି ଗଲା, କାହିଁ ଏଥି ମଧ୍ୟରେ ତ ରାମ ଲକ୍ଷ୍ମଣଙ୍କର କୌଣସି ସମ୍ବାଦ ପାଇଲି ନାହିଁ । ତେବେ କଣ ଆଉ ସେମାନେ ଇହଜଗତରେ ନାହାନ୍ତି, ଏ ଅଭାଗିନୀଶୋକରେ ପ୍ରାଣତ୍ୟାଗ କରିଅଛନ୍ତି ? ତାହାହେଲେ ମୋର ଏ ପୋଡ଼ା ଜୀବନରେ ଆଉ ଫଳ କଣ ? କିନ୍ତୁ ମୃତ୍ୟୁ ସହଜ ଅଛି କାହିଁ ? ନା, ମୃତ୍ୟୁ ତ ମୋର ହାତରେ ଅଛି କିନ୍ତୁ ମଲେ ତ ତାଙ୍କୁ ଆଉ ଦେଖି ପାରିବି ନାହିଁ । ଆତ୍ମହତ୍ୟାପାପରେ ପରକାଳରେ ସୁଦ୍ଧା ତାଙ୍କ ସହିତ ମିଳନର ଆଶା ରହିବ ନାହିଁ । ନା, ନା. ମୋର ସ୍ୱାମୀ ଅଦ୍ୱିତୀୟ ବୀର । ସେ ନିଶ୍ଚୟ ଆସି ରାବଣକୁ ସବଂଶରେ ବିନାଶ କରିବେ । କିନ୍ତୁ ମୁଁ ମରିଗଲେ ପାପିଷ୍ଠକୁ ଦଣ୍ଡ ଦେବାକୁ ବୋଧ ହୁଏ ତାଙ୍କର ସେପରି ଆଗ୍ରହ ରହିବ ନାହିଁ । ଆହୁରି ତ ଏତିକିଣି ଦୁଇ ମାସ ଅଛି । ଏଥିମଧ୍ୟରେ ମୋର ପ୍ରଭୁ ଯେ ଆସି ମତେ ଉଦ୍ଧାର ନ କରିବେ, ଏ କଥା କିଏ କହି ପାରେ ?" ସୀତାଦେବୀ ଏହିପରି ଚିନ୍ତା କରୁଅଛନ୍ତି, ଏପରି ସମୟରେ ପକ୍ଷୀମାନଙ୍କର ଆକସ୍ମିକ କଳରବରେ ଅଶୋକ-ବନ ମୁଖରିତ ହୋଇ ଉଠିଲା । ସେ ଦେଖି ପାରିଲେ ଅରଣ୍ୟର ତରୁଲତା ଆଲୋକିତ

କରି ଗୋଟାଏ ମହାକାୟ ଅଦ୍ଭୁତ ଜୀବ ତାଙ୍କର ଆଡ଼କୁ ଅଗ୍ରସର ହେଉଅଛି ଓ ତାହାର ଆଗମନରେ ପକ୍ଷୀସବୁ ନୀଡ଼ ପରିତ୍ୟାଗ କରି ପଳାୟନ କରୁଅଛନ୍ତି । ଏହା ଦେଖି ସୀତାଙ୍କ ମନରେ ଭୟର ସଞ୍ଚାର ହେଲା । ସେ ମନେ କଲେ, ବୋଧ ହୁଏ ରାବଣର ଚର ଛଦ୍ମବେଶ ଧାରଣ କରି କୌଣସି ଦୁରଭିସନ୍ଧିରେ ତାଙ୍କ ନିକଟକୁ ଆସୁଅଛି । ଆଗନ୍ତୁକ ଆଉ କେହି ନୁହନ୍ତି, ସ୍ୱୟଂ ହନୁମାନ ।

ହନୁମାନ୍ ଲଙ୍କାରେ ଉପସ୍ଥିତ ହୋଇ ଛଦ୍ମବେଶରେ ପୁରୀ ମଧ୍ୟରେ ପ୍ରବେଶ କଲେ ଏବଂ ନାନା ସ୍ଥାନରେ ସୀତାଙ୍କର ଅନୁସନ୍ଧାନ କଲେ । ରାବଣର ଅନ୍ତଃପୁରରେ ସେ ଅନେକ ମହାର୍ଘବସ୍ତ୍ର-ଭୂଷଣ ମଣ୍ଡିତା ରୂପବତୀ ରମଣୀ ଦେଖି ପାରିଲେ । କିନ୍ତୁ ସେମାନଙ୍କ ମଧ୍ୟରୁ କାହାରିକୁ ତାଙ୍କର ସୀତା ବୋଲି ମନେ ହେଲା ନାହିଁ । ରାମମୟ-ପ୍ରାଣା ଜାନକୀ ଯେ ବିଳାସତରଙ୍ଗରେ ଅଙ୍ଗ ଭସାଇ ଦେଇ ନିଶ୍ଚିନ୍ତ ମନରେ ରାବଣଗୃହରେ ରହିବେ, ଏକଥା ସେ ବିଶ୍ୱାସ କରି ପାରିଲେ ନାହିଁ । ରାମ ଲକ୍ଷ୍ମଣଙ୍କଠାରୁ ହନୁମାନ ସୀତାଙ୍କର ବର୍ଣ୍ଣନା ଶୁଣିଥିଲେ, କିନ୍ତୁ ତାହା ସହିତ କୌଣସି ରମଣୀର ଆକୃତି ମିଳିଲା ନାହିଁ । ଏହିପରି ନାନାସ୍ଥାନ ଭ୍ରମଣ କରି କରି ଶେଷରେ ସେ ଅଶୋକବନରେ ଉପନୀତ ହୋଇ ଦେଖିଲେ, ମଳିନବସ୍ତ୍ର ପରିହିତା ଗୋଟିଏ ରମଣୀ ଧ୍ୟାନମଗ୍ନା ହୋଇ ବସିଅଛନ୍ତି । ଗ୍ରହଗ୍ରସ୍ତ ଚନ୍ଦ୍ରମା ବା ଭସ୍ମାଚ୍ଛାଦିତ ଅଗ୍ନି ପରି ତାଙ୍କର ସୁନ୍ଦର ମୁଖମଣ୍ଡଳରେ ଗୋଟିଏ ବିଷାଦର ଛାୟା ପତିତ ହୋଇଅଛି । ଅନାହାରରେ ତାଙ୍କର ଦେହ କ୍ଷୀଣ, ଅସଂସ୍କାରରେ ତାଙ୍କର ବର୍ଣ୍ଣ ମଳିନ, ଚିନ୍ତାରେ ତାଙ୍କର କପୋଳଦ୍ୱୟ ପାଣ୍ଡୁବର୍ଣ୍ଣ; କିନ୍ତୁ ତଥାପି ତାଙ୍କର କାନ୍ତିରେ ଅଶୋକବନ ଉଜ୍ଜ୍ୱଳ ହୋଇ ରହିଅଛି । ହନୁମାନ୍ ବୁଝି ପାରିଲେ, ଏହି ରମଣୀହିଁ ସୀତା । ହନୁମାନ୍ ତାଙ୍କର ନିକଟବର୍ତ୍ତୀ ହେବାକୁ ଚେଷ୍ଟା କଲେ, କିନ୍ତୁ ପ୍ରଭାତ ହୋଇଯିବାରୁ ଚେଟୀବୃନ୍ଦଙ୍କର ନିଦ୍ରାଭଙ୍ଗ ହେଲା ଓ ଓ ସେମାନେ ସୀତାଙ୍କୁ ଶଯ୍ୟାରେ ନ ଦେଖି ଦଳେ ଦଳେ ଆସି ସୀତାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ନାନାପ୍ରକାର ଭର୍ତ୍ସନା କରିବାକୁ ଲଗିଲେ । ଅଭ୍ୟାସବଶତଃ ସୀତା ସବୁ ନୀରବରେ ସହ୍ୟକଲେ । ଏହି ଅବସରରେ ହନୁମାନ୍ ଗୋଟିଏ ଶିଂଶପା-ବୃକ୍ଷରେ ଆରୋହଣ କରି ପତ୍ରାନ୍ତରାଳରେ ଲୁଚି ରହିଲେ ।

ଏହି ସମୟରେ "ମହାରାଜ ବିଜେ କରୁଅଛନ୍ତି, ମହାରାଜ ବିଜେ କରୁ-ଅଛନ୍ତି" ବୋଲି କୋଳାହଳ ଶୁଣାଗଲା । ଚତୁର୍ଦ୍ଦିଗରୁ ମଙ୍ଗଳବାଦ୍ୟ ଓ ଗୀତଧ୍ୱନି ଉତ୍ଥିତ ହେଲା । ଏହା ଶୁଣି ସୀତାଦେବୀଙ୍କର ହୃତ୍‌କମ୍ପ ଉପସ୍ଥିତ ହେଲା । ସେ ସ୍ୱସ୍ଥାନକୁ ଯାଇ ନିଜର ଜୀର୍ଣ୍ଣ ବସ୍ତ୍ରଦ୍ୱାରା କୌଣସିପ୍ରକାରେ ଲଜ୍ଜା ନିବାରଣ କରି

ଅଧୋବଦନରେ ଭୂମିରେ ଉପବିଷ୍ଟା ହୋଇ ରହିଲେ । କ୍ରମେ ରାବଣ ଅସଂଖ୍ୟ ରମଣୀ-ପରିବେଷ୍ଟିତ ହୋଇ ଧୀରେ ଧୀରେ ସୀତାଙ୍କ ନିକଟରେ ଉପସ୍ଥିତ ହେଲା ଓ ମୃଗ୍‌ଧ-ନେତ୍ରରେ ତାଙ୍କୁ ନିରୀକ୍ଷଣ କରି କହିଲା, "ଜାନକି, ତୁମକୁ ଦେଖି ମୋ ମନରେ ବଡ଼ କଷ୍ଟ ହେଉଅଛି । ଚିନ୍ତା, ଉପବାସ ଓ ଅନିଦ୍ରାରେ ତୁମର କନକକାନ୍ତି ମଳିନ ପଡ଼ିଗଲାଣି । ଏପରି ଭାବରେ ତୁମେ ଆଉ କେତେଦିନ ରହିବ ? ଧରିତଳରେ ଶୟନ, ମଳିନ ବସ୍ତ୍ର ପରିଧାନ, ଏ ସବୁ ତୁମର ଉପଯୁକ୍ତ ହେଉ ନାହିଁ । ବୃଥାରେ ଶରୀରଟାକୁ ଯନ୍ତ୍ରଣା ଦେଇ ଫଳ କଣ ? ମୁଁ ମୋହର ରାଜ୍ୟ; ଧନ, ଐଶ୍ୱର୍ଯ୍ୟ ସବୁ ତୁମକୁ ଅର୍ପଣ କରୁଅଛି, ତୁମେ ମୋ ପ୍ରତି ପ୍ରସନ୍ନ ହୁଅ । ପୃଥିବୀ ମଧ୍ୟରେ ତୁମର ଅଭିଳଷିତ ବସ୍ତୁ କଣ ଅଛି ମୋତେ କହ । ମୁଁ ସଙ୍ଗେ ସଙ୍ଗେ ତାହା ପୂରଣ କରି ଦେବି । ମୋ ପରି ଭୁବନବିଜୟୀ ବୀରର ଜଗତରେ ଅସାଧ୍ୟ କିଛି ନାହିଁ । ମୋର ମହିଷୀ ଦେବୀ, ଗନ୍ଧର୍ବୀ ମାନବୀ, କେହି ଯେଉଁ ସୁଖ କେବେ ଭୋଗ କରି ନାହିଁ, ତୁମେ ତାହାର ଅଧିକାରିଣୀ ହେବ । ଆଉ ଯେଉଁ ଭିକାରୀ ରାମକୁ ଚିନ୍ତା ତୁମେ ଏବେ ଭାବୁଅଛ, ସେ କେଉଁ ବିଷୟରେ ମୋହର ସମକକ୍ଷ ? ତୁମେ କଣ ମନେ କରୁଅଛ, ଜଣେ ସାମାନ୍ୟ ମାନବ ଏହି ଦୁସ୍ତର ସାଗର ଅତିକ୍ରମ କରି ଆସି ମୋ ହସ୍ତରୁ ତୁମକୁ ଉଦ୍ଧାର କରିବ ? ସ୍ୱପ୍ନରେ ସୁଦ୍ଧା ଏ କଥା ମନରେ ସ୍ଥାନ ଦିଅ ନାହିଁ । ଶୋକ ପରିତ୍ୟାଗ କରି ମୋ ସହିତ ତୁମେ ଆସ, ମୁଁ ତୁମକୁ ସ୍ୱର୍ଣ୍ଣଲଙ୍କାପୁରୀର ଅଧୀଶ୍ୱରୀ କରି ଦେଇ କୃତାର୍ଥ ହୁଏଁ ।"

ରାବଣର କଥା ଶୁଣି ସୀତାଦେବୀ କ୍ରୋଧରେ ଅଧୀର ହୋଇ କହିଲେ, "ପାପିଷ୍ଠ, ଏପର୍ଯ୍ୟନ୍ତ କଣ ତୁ ବୁଝି ପାରିଲୁ ନାହିଁ ଯେ, ମୁଁ କିଏ ? ତୋର ଅଭୀଷ୍ଟ କଦାପି ସିଦ୍ଧ ହେବ ନାହିଁ । ଐଶ୍ୱର୍ଯ୍ୟର ପ୍ରଲୋଭନ ଦେଖାଇ ତୁ ମତେ ଭୁଲାଇବାକୁ ଚେଷ୍ଟା କରୁଅଛୁ ? କିନ୍ତୁ ମୋର ସ୍ୱାମୀଙ୍କ ପଦତଳର ଗୋଟିଏ ରେଣୁକଣା ନିକଟରେ ତୋହର ସମସ୍ତ ଐଶ୍ୱର୍ଯ୍ୟକୁ ମୁଁ ତୁଚ୍ଛ ମନେ କରେ । ତୋର ଭଲ ନିମନ୍ତେ କହୁଅଛି, ତୁ ଏ ପାପସଂକଳ୍ପ ତ୍ୟାଗ କର । ସତୀର ସତୀତ୍ୱନାଶଠାରୁ ବଳି ପାପ ଆଉ ସଂସାରରେ ନାହିଁ । ଯଦି ଭଲ ଚାହୁଁ, ତେବେ ରାମଚନ୍ଦ୍ରଙ୍କ ଚରଣତଳେ ମତେ ଅର୍ପଣ କରି ଦେଇ ତାଙ୍କର କ୍ଷମା ଭିକ୍ଷା କର । ନ ହେଲେ ତୋର ଆଉ ରକ୍ଷା ନାହିଁ । ମୁଁ କହି ଦେଉଅଛି, ରାମଚନ୍ଦ୍ର ନିଶ୍ଚୟ ଆସି ତୋତେ ସବଂଶରେ ସଂହାର କରିବେ; ତୋର ଏ ସୁନ୍ଦର ପୁରୀ ଶ୍ମଶାନ ହୋଇ ଧ୍ୱଂସମୁଖରେ ପତିତ ହେବ । ସମସ୍ତ ଆଉ ଥାଉ ଏହାର ଉପାୟ କର ।"

ସୀତାଙ୍କ କଥା ଶୁଣି ରାବଣର ଧୈର୍ଯ୍ୟ-ଚ୍ୟୁତି ହେଲା । ସେ କ୍ରୋଧରେ ଭୀଷଣ ମୂର୍ତ୍ତି ଧାରଣ କରି ସୀତାଙ୍କୁ ବଧ କରିବା ନିମନ୍ତେ ଉଦ୍ୟତ ହେଲା । ସେ ମୂର୍ତ୍ତି ଦେଖି

ସମସ୍ତେ ଅତ୍ୟନ୍ତ ଭୀତ ହେଲେ, କିନ୍ତୁ ସୀତା ଶବ୍ଦମାତ୍ର ବିଚଳିତ ହେଲେ ନାହିଁ । ସେ ପଦେ ମାତ୍ର ନ ପାଞ୍ଚି ଦୃଢ଼ପଦରେ ସେହିଠାରେ ଛିଡା ହୋଇ ରହିଲେ । ତାଙ୍କର ଦୁଇ ଚକ୍ଷୁରୁ ଅଗ୍ନିଶିଖା ନିର୍ଗତ ହେବାକୁ ଲାଗିଲା । ସେ କହିଲେ, "କାପୁରୁଷ, ତୁ ଅସହାୟା ନାରୀ ଉପରେ ଅତ୍ୟାଚାର କରି ପୁଣି ବୀର ବୋଲି ଗର୍ବ କରୁଅଛୁ ? ଧିକ୍ ତୋର ବୀରତ୍ୱକୁ ! କିନ୍ତୁ ତୁ ମତେ ଯେତେ ଅସହାୟା ବୋଲି ମନେ କରୁଅଛୁ, ମୁଁ ତାହା ନୁହେଁ । ମୁଁ ଯଦି ପ୍ରକୃତ ସତୀ ହୋଇଥାଏଁ, ତାହାହେଲେ ମୋହର କେଶାଗ୍ର ସ୍ପର୍ଶ କରିବା ପୂର୍ବରୁ ତୋର କି ଦଶା ହେବ ବୁଝି ପାରବୁ ।"

ସୀତାଙ୍କର ତେଜୋଗର୍ବିତ ଅମାନୁଷୀ ମୂର୍ତ୍ତି ଦେଖି ରାବଣ ଚହଟିଗଲା ପରି ମନ୍ତ୍ରମୁଗ୍ଧ ହୋଇ ରହିଲା । କପରି ଗୋଟିଏ ଅଦ୍ଭୁତ ଶକ୍ତି ବଳରେ ତାହାର ସର୍ବାଙ୍ଗ ଅବଶ ହୋଇଗଲା । ଏହି ସମୟରେ ଧାନ୍ୟମାଳିନୀ ନାମକ ରାବଣର ଜଣେ ମହିଷୀ ପଶ୍ଚାତରୁ ଆସି ଭୁବନବିଜୟୀ ବୀର ହୋଇ ସ୍ତ୍ରୀବଧରୂପ ଘୃଣିତ କାର୍ଯ୍ୟ ଯେ ରାବଣ ପକ୍ଷରେ ସମ୍ପୂର୍ଣ୍ଣ ଅନୁପଯୁକ୍ତ, ଏକଥା ବୁଝାଇ ଦେଇ କୌଶଳକ୍ରମେ ରାବଣକୁ ସେଠାରୁ ନେଇଗଲେ । ରାବଣ କ୍ରୋଧରେ ସେ ସ୍ଥାନ ପରିତ୍ୟାଗ କଲା ପରେ ଚେଟୀବୃନ୍ଦ ମଧ୍ୟ ତାହାର ଅନୁଗମନ କଲେ ।

ହନୁମାନ୍ ଅଶୋକବନକୁ ଆସି ରାବଣର ଆଗମନ ସମୟଠାରୁ ଏପର୍ଯ୍ୟନ୍ତ ସମସ୍ତ ଘଟନା ଦେଖୁଥିଲେ । ସୀତାଙ୍କର ସତୀତ୍ୱମହିମା ଦର୍ଶନରେ ତାଙ୍କର ନେତ୍ରଦ୍ୱୟ ଅଶ୍ରୁପୂର୍ଣ୍ଣ ହୋଇଗଲା ଓ ସୀତାଙ୍କର ଦୁଃଖ ଦେଖି ତାଙ୍କ ହୃଦୟ ଅତ୍ୟନ୍ତ ବ୍ୟଥିତ ହୋଇ ଉଠିଲା । ସୀତାଙ୍କୁ ଏକାକିନୀ ଦେଖି ହନୁମାନ୍ ବୃକ୍ଷରୁ ଓହ୍ଲାଇ କୃତାଞ୍ଜଳି-ପୁଟରେ ସୀତାଙ୍କର ଚରଣ ବନ୍ଦନା କଲେ । ସୀତା ଦେବୀ ପ୍ରତ୍ୟକ୍ଷରେ ଯେଉଁ ବିକଟକାୟ ପୁରୁଷକୁ ଦେଖିଥିଲେ, ତାଙ୍କୁ ବର୍ତ୍ତମାନ ସମ୍ମୁଖରେ ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସୀତା ତାଙ୍କର ପରିଚୟ ପଚାରିବାରୁ ହନୁମାନ୍ କହିଲେ "ମୁଁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ଦାସ, ମୋର ନାମ ହନୁମାନ୍ ।" ଏହା କହି ହନୁମାନ୍ ରାମଲକ୍ଷ୍ମଣସମ୍ବନ୍ଧୀୟ ସମସ୍ତ କଥା ସୀତାଙ୍କ ନିକଟରେ ନିବେଦନ କଲେ । ତଥାପି ସୀତାଙ୍କର ସମ୍ପୂର୍ଣ୍ଣ ପ୍ରତ୍ୟୟ ନ ହେବାରୁ ହନୁମାନ୍ ରାମପ୍ରଦତ୍ତ ଅଙ୍ଗୁରୀୟ ସୀତାଙ୍କ ହସ୍ତରେ ପଦାନ କଲେ । ସୀତାଦେବୀ ବାରମ୍ବାର ଅଙ୍ଗୁରୀୟଟିକୁ ଉତ୍ତମରୂପେ ପରୀକ୍ଷା କରି ଶେଷରେ ତାଙ୍କ ହୃଦୟରେ ଓ ମସ୍ତକରେ ସ୍ଥାପନ କଲେ । ଆନନ୍ଦରେ ସୀତାଙ୍କର ବହୁକାଳରୁଦ୍ଧ ଶୋକବାରି ଉଚ୍ଛ୍ୱସିତ ହୋଇ ଉଠିଲା । ସେ ରାମଲକ୍ଷ୍ମଣଙ୍କ ବିଷୟରେ

ହନୂମାନଙ୍କୁ ନାନା ପ୍ରଶ୍ନ କରି ଶେଷରେ ନିଜର ଦୁରବସ୍ଥାର କାହାଣୀ ବର୍ଣ୍ଣନା କରି ଅଭିମାନରେ ରୋଦନ କରିବାକୁ ଲାଗିଲେ ।

ହନୂମାନ କହିଲେ, "ମା ଆଉ ବିଳମ୍ବ ନାହିଁ । ରାମଚନ୍ଦ୍ର ଶୀଘ୍ର ଆସି ଆପଣଙ୍କୁ ଉଦ୍ଧାର କରିବେ । କିନ୍ତୁ ଦୁର୍ବୃତ୍ତ ରାବଣ ନିକଟରେ ଆପଣଙ୍କୁ ଛାଡ଼ିଯିବାକୁ ମୋର ସାହସ ହେଉ ନାହିଁ । ଆପଣ ଯଦି ଅନୁମତି ଦିଅନ୍ତି, ତାହାହେଲେ ମୁଁ ଆପଣଙ୍କୁ ପୃଷ୍ଠରେ ଘେନି ଏହିକ୍ଷଣି ଏସ୍ଥାନ ତ୍ୟାଗ କରିବି ।"

ସୀତା କହିଲେ, "ବତ୍ସ ! ତୁମେ ପୁତ୍ରସ୍ଥାନୀୟ ହେଲେ ସୁଦ୍ଧା ପରପୁରୁଷ । ତୁମର ଅଙ୍ଗସ୍ପର୍ଶ କରିବା ମୋର ଉଚିତ ନୁହେ । ମୋର ଭର୍ତ୍ତା ଆସି ମୋତେ ଉଦ୍ଧାର କରି ନ ନେଲେ ମୋର ଆଉ ଗୌରବ କଣ ?"

ସୀତାଙ୍କ କଥା ଶୁଣି ହନୂମାନଙ୍କ ହୃଦୟ ଭକ୍ତିପୂର୍ଣ୍ଣ ହୋଇ ଉଠିଲା । ହନୂମାନ୍ ସୀତାଦେବୀଙ୍କ ଚରଣତଳେ ପ୍ରଣାମ କରି ବିଦାୟ ପ୍ରାର୍ଥନା କଲେ । ସୀତା ନିଜ ମସ୍ତକରୁ ଗୋଟିଏ ମଣି ବାହାର କରି ହନୂମାନଙ୍କ ହସ୍ତରେ ଦେଇ କହିଲେ, "ଏହି ମଣିଟି ପ୍ରଭୁଙ୍କର ଚରଣତଳେ ଅର୍ପଣ କରି କହିବ, ସୀତା କେବଳ ତାଙ୍କର ଦର୍ଶନ ଲାଭ ଆଶାରେ ପ୍ରାଣ ଧାରଣ କରି ରହିଅଛି ।"

ହନୂମାନ ଏହି ଅଭିଜ୍ଞାନଟି ଘେନି ସୀତାଙ୍କଠାରୁ ବିଦାୟ ଗ୍ରହଣ କଲେ । ଯିବା ସମୟରେ ସେ ଭାବିଲେ, ଲଙ୍କା ପରିତ୍ୟାଗ କରିବା ପୂର୍ବରୁ ରାବଣକୁ ଟିକିଏ ନିଜଶକ୍ତିର ପରିଚୟ ଦେଇ ଯିବା ଉଚିତ; ସେ ବୁଝନ୍ତୁ ଯେ, ରାମଚନ୍ଦ୍ର ତ ଦୂରର କଥା, ତାଙ୍କର ଜଣେ ସାମାନ୍ୟ ଦୂତର ପରାକ୍ରମ କେତେଦୂର । ଏହା ଭାବି ହନୂମାନ୍ ରାବଣର ସୁନ୍ଦର ଅଶୋକବନକୁ ନଷ୍ଟ କରିବାକୁ ଲାଗିଲେ । ଦେଖୁ ଦେଖୁ ଉପବନଟି ଶୋଭାହୀନ ହୋଇ ପଡ଼ିଲା । ଏ ସମ୍ବାଦ ପାଇ ରାକ୍ଷସବୃନ୍ଦ ଦଳେ ଦଳେ ଆସି ହନୂମାନଙ୍କୁ ବେଷ୍ଟନ କରି ତାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ହନୂମାନ୍ ଭୀଷଣ ମୂର୍ତ୍ତି ଧାରଣ କରି ସେମାନଙ୍କୁ ଆକ୍ରମଣ କଲେ ଓ ଏକାକୀ ସମସ୍ତଙ୍କୁ ପରାଜିତ କରି ଦେଲେ । ତାଙ୍କର ଦାରୁଣ ଆଘାତରେ ଅସଂଖ୍ୟ ସୈନ୍ୟ ଆହତ ଓ ନିହତ ହେଲେ । ରାବଣର ଗୋଟିଏ ତରୁଣବୟସ୍କ ପୁତ୍ର ମଧ୍ୟ ହନୂମାନଙ୍କ ହସ୍ତରେ ପ୍ରାଣ ହରାଇଲା । ଶେଷରେ ରାବଣ ପୁତ୍ର ଇନ୍ଦ୍ରଜିତ୍ ତାଙ୍କୁ ଦମନ କରିବା ନିମନ୍ତେ ଅସଂଖ୍ୟ ରାକ୍ଷସ ସୈନ୍ୟ ସହିତ ସେଠାରେ ଉପସ୍ଥିତ ହେଲେ । ହନୂମାନ୍ ଦେଖିଲେ, କୌଶଳ ଅବଲମ୍ବନ ନ କଲେ ଆଉ ଉପାୟ ନାହିଁ । ଏହା ଭାବି ସେ ଇନ୍ଦ୍ରଜିତ୍ ନିକଟରେ

ପରାଜୟ ସ୍ୱୀକାର କଲେ । ତହୁଁ ରାକ୍ଷସମାନେ ତାଙ୍କୁ ବନ୍ଧନ କରି ରାବଣ ନିକଟକୁ ନେଇ ଗଲେ । ରାମଦୂତ ବୋଲି ତାଙ୍କର ପରିଚୟ ପାଇ ରାବଣ କ୍ରୁଦ୍ଧ ହୋଇ ପ୍ରାଣଦଣ୍ଡର ଆଜ୍ଞା ଦେଲେ । ପରେ ଦୂତ ଅବଧ୍ୟ ବୋଲି ବୁଝିପାରି ରାବଣ ତାଙ୍କୁ ବିକଳାଙ୍ଗ କରି ଛାଡ଼ି ଦେବାକୁ ଆଦେଶ ଦେଲେ । ରାକ୍ଷସମାନେ ଏହା ଶୁଣି ହନୁମାନଙ୍କ ଲାଙ୍ଗୁଳରେ ବସ୍ତ୍ରଗୁଡ଼ାଇ ତହିଁରେ ଅଗ୍ନି ସଂଯୋଗ କଲେ । ହନୁମାନ ଏପର୍ଯ୍ୟନ୍ତ ମୂର୍ଚ୍ଛାର ଛଳନା କରି ମୃତବତ୍ ପଡ଼ି ରହିଥିଲେ । ଏ ସୁଯୋଗ ପାଇ ସେ ଗୋଟିଏ କୁଦା ମାରି ନିକଟବର୍ତ୍ତୀ ଗୃହଚୂଡ଼ା ଉପରେ ଆରୋହଣ କଲେ ଓ ସେଠାରେ ଅଗ୍ନି ସଂଯୋଗ କରି ଦେଇ ଅନ୍ୟ ଗୃହ ଉପରକୁ ଉଠିଲେ । ଏହିପରି ଲଙ୍କାର ଘରେ ଘରେ ଅଗ୍ନି ଜଳି ଉଠିଲା । କ୍ରମେ ଚତୁର୍ଦ୍ଦିଗରେ ହାହାକାର ପଡ଼ିଗଲା । ଅସଂଖ୍ୟ ନରନାରୀ ଓ ପଶୁପକ୍ଷୀ କାଳଗ୍ରାସରେ ପତିତ ହେଲେ । ଦେଖୁ ଦେଖୁ ମନୋହର ଗୃହଗୁଡ଼ିକ ଭସ୍ମସାତ୍ ହୋଇଗଲେ ଓ ଲଙ୍କାପୁରୀ ଶ୍ରୀଭ୍ରଷ୍ଟ ହୋଇ ଶ୍ମଶାନରେ ପରିଣତ ହେଲା । ଏ ଲୋମହର୍ଷଣ କାଣ୍ଡ ଘଟାଇ ଦେଇ ହନୁମାନ ଅଲକ୍ଷିତ ଭାବରେ ଅଦୃଶ୍ୟ ହୋଇଗଲେ ।



# ଅଷ୍ଟମ ପରିଚ୍ଛେଦ

ହନୂମାନ୍ ଅବିଳମ୍ବରେ ଲଙ୍କା ତ୍ୟାଗ କରି ରାମଚନ୍ଦ୍ରଙ୍କ ସମୀପରେ ଉପସ୍ଥିତ ହେଲେ ଓ ସୀତାଙ୍କ ଅଭିଜ୍ଞାନ ତାଙ୍କ ହସ୍ତରେ ପ୍ରଦାନ କରି ସକଳ ବୃତ୍ତାନ୍ତ ନିବେଦନ କଲେ । ଏହା ସଙ୍ଗେ ନିଜର ଲଙ୍କାଦାହକୀର୍ତ୍ତି ମଧ୍ୟ ଉଲ୍ଲେଖ କରିବାକୁ ଭୁଲିଲେ ନାହିଁ । ଏହି ସମ୍ବାଦ ପାଇ ବାନରମଣ୍ଡଳ ମଧ୍ୟରେ ହର୍ଷକୋଳାହଳ ଉତ୍ଥିତ ହେଲା । ଏହା ପରେ ଅଦମ୍ୟ ଉତ୍ସାହରେ ସୈନ୍ୟସମାବେଶ ଆରମ୍ଭ ହେଲା ଓ ଅଳ୍ପକାଳ ମଧ୍ୟରେ ବିପୁଳ ବାନରବାହିନୀ ଧୂଳିଜାଳରେ ନଭୋମଣ୍ଡଳ ଆଚ୍ଛନ୍ନ କରି ଦକ୍ଷିଣଦିଗକୁ ଯାତ୍ରା କଲେ । ରାମଚନ୍ଦ୍ର ସସୈନ୍ୟରେ ସାଗର କୂଳରେ ଉପନୀତ ହୋଇ ସମୁଦ୍ର ପାର ହେବାର ଉପାୟ ଚିନ୍ତା କରିବାକୁ ଲାଗିଲେ । ସମୁଦ୍ରତଟରେ ସେନାନିବାସ ସ୍ଥାପିତ ହେଲା ଓ ସୁଗ୍ରୀବ, ନଳ, ହନୂମାନ୍ ପ୍ରଭୃତି ବୀରମାନେ ସାଗର ବନ୍ଧନର ଉଦ୍ୟୋଗ କରିବାକୁ ଲାଗିଲେ । ରାମଚନ୍ଦ୍ରଙ୍କ ଆଗମନ ସମ୍ବାଦ ଲଙ୍କାରେ ପହଞ୍ଚିବା ମାତ୍ରେ ସମସ୍ତଙ୍କ ମନରେ ଗୋଟାଏ ଆତଙ୍କ ଉପସ୍ଥିତ ହେଲା । ରାବଣ ଚିନ୍ତାକୁଳ ହୋଇ ଜ୍ଞାତି ବନ୍ଧୁ ପାରିଷଦବର୍ଗଙ୍କ ସହିତ କର୍ତ୍ତବ୍ୟ ଅବଧାରଣ କରିବାକୁ ଲାଗିଲେ । କେହି କେହି ରାବଣଙ୍କୁ ଯୁଦ୍ଧନିମନ୍ତେ ଉତ୍ସାହିତ କଲେ ଓ କେହି କେହି ଏ ଦୁରୂହ କାର୍ଯ୍ୟରୁ ବିରତ ହେବା ନିମନ୍ତେ ତାଙ୍କୁ ଉପଦେଶ ଦେଲେ । ଶେଷରେ ଧର୍ମପରାୟଣ ବିଭୀଷଣ କହିଲେ, "ମହାରାଜ, ଆପଣ ମୋର ଅଗ୍ରଜ ଓ ପୂଜ୍ୟ ବ୍ୟକ୍ତି । ଆପଣଙ୍କୁ କିଛି ଉପଦେଶ ଦେବା ମୋ ପକ୍ଷରେ ଧୃଷ୍ଟତା ମାତ୍ର । କିନ୍ତୁ ରାମଚନ୍ଦ୍ରଙ୍କୁ ଶତ୍ରୁ ମନେ କରି ଅବଜ୍ଞା କରନ୍ତୁ ନାହିଁ । ଯେ ହରଧନୁ-ଭଙ୍ଗ କରି ଭାରତର ରାଜନ୍ୟବର୍ଗଙ୍କ ନିକଟରେ କୀର୍ତ୍ତିଧ୍ୱଜା ସ୍ଥାପନ କରିଅଛନ୍ତି, ଯେ ଏକାକୀ ଖର ଦୂଷଣପ୍ରମୁଖ ଅସଂଖ୍ୟ ରାକ୍ଷସସୈନ୍ୟଙ୍କୁ ନିପାତ କରିଅଛନ୍ତି, ଯେ ସନ୍ନ୍ୟାସୀ ହୋଇ ସୁଦ୍ଧା ପ୍ରବଳ ବାନରସୈନ୍ୟ ସଂଗ୍ରହ କରି ଦୁର୍ଲଂଘ୍ୟ ସାଗରକୁ ବନ୍ଧନ କରିବାକୁ ଆରମ୍ଭ କରିଅଛନ୍ତି, ତାଙ୍କ ସହିତ ଶତ୍ରୁତା କରିବା କଦାପି ଶ୍ରେୟସ୍କର ହେବ ନାହିଁ ।"

ରାବଣ କହିଲ, "ଏହି ବାହୁବଳରେ ମୁଁ ତ୍ରିଭୁବନ ଜୟ କରିଅଛି; ସ୍ୱର୍ଗର ଦେବଗଣ ସୁଦ୍ଧା ମୋର ଭୟରେ ସର୍ବଦା ତ୍ରସ୍ତ । ବର୍ତ୍ତମାନ ମୁଁ ଗୋଟିଏ ସାମାନ୍ୟ ମନୁଷ୍ୟକୁ ଭୟ କରି ଆତ୍ମସମର୍ପଣ କରିବି ! ପ୍ରାଣ ଥାଉ ଥାଉ ଏହା ହୋଇ ପାରିବ ନାହିଁ । ନର ବାନର ତ ଆମ୍ଭ ଖାଦ୍ୟ ମଧ୍ୟରେ ଗଣ୍ୟ । ସେମାନଙ୍କ ପାଇଁ ଏତେ ଭୟର କାରଣ କଣ ?"

ବିଭୀଷଣ ବିନୀତଭାବରେ କହିଲେ, "ମହାରାଜ, ଆପଣ ବୁଦ୍ଧିମାନ୍ ହୋଇ ଅବିବେକ ପରି କାହିଁକି କଥା କହୁଅଛନ୍ତି ? ମୁଁ ମଧ ଦିବ୍ୟଚକ୍ଷୁରେ ଦେଖି ପାରୁଅଛି, ଏ ଯୁଦ୍ଧରେ ଅମଙ୍ଗଳ ଛଡ଼ା ମଙ୍ଗଳ ନାହିଁ । ରାମଚନ୍ଦ୍ରଙ୍କ ସହିତ ବିବାଦ କଲେ ଏ ସ୍ୱର୍ଣ୍ଣଲଙ୍କାପୁରୀ ଧ୍ୱଂସସ୍ତୂପରେ ପରିଣତ ହେବ । ରାମଚନ୍ଦ୍ରଙ୍କ ହସ୍ତରେ ସୀତା-ଦେବୀଙ୍କୁ ସମର୍ପଣ କରି ତାଙ୍କର ଶରଣାପନ୍ନ ହୁଅନ୍ତୁ, ନ ହେଲେ ଆଉ ରକ୍ଷା ନାହିଁ ।"

ଏକଥା ଶୁଣି ରାବଣ କ୍ରୋଧରେ ପ୍ରଜ୍ୱଳିତ ହୋଇ ଉଠିଲା । ସେ ବିଭୀଷଣଙ୍କୁ ନାନା କଟୂକ୍ତି କରି କହିଲା, 'ତୁ ରାକ୍ଷସକୁଳର ଅଧମ, ନ ହେଲେ ତୋ ମୁଖରୁ ଏପରି କାପୁରୁଷ ବାକ୍ୟ ଉଚ୍ଚାରିତ ହୁଅନ୍ତା ନାହିଁ । ତୋର ଯଦି ପ୍ରାଣ ପ୍ରତି ଏତେ ମାୟା ଅଛି, ତେବେ ତୁ ଲଙ୍କାପୁରୀ ତ୍ୟାଗ କରି ଯାଇ ସେହି ଭିକାରୀ ରାମର ଶରଣାପନ୍ନ ହୋଇ ରହ ।"

ବିଭୀଷଣ କହିଲେ, "ବିପଦକାଳରେ ଆପଣଙ୍କର ବୁଦ୍ଧି-ବିପର୍ଯ୍ୟୟ ଘଟିଅଛି । ନ ହେଲେ ହିତବାକ୍ୟ ଆପଣଙ୍କୁ କଟୁ ବୋଧ ହୁଅନ୍ତା କାହିଁକି ? ନିଜ ଦୋଷରୁ ଆପଣ ସବଂଶରେ ନିହତ ହେବେ । ବତୀ ଦେବାକୁ କୁଳରେ କେହି ରହିବେ ନାହିଁ ।"

ବିଭୀଷଣଙ୍କ ବାକ୍ୟ ରାବଣର କ୍ରୋଧରେ ଆହୁତି ପ୍ରଦାନ କଲା । ସେ ଉନ୍ମତ୍ତ ପରି ହୋଇ ବିଭୀଷଣଙ୍କୁ ପଦାଘାତ କରି ରାଜସଭାରୁ ବିତାଡ଼ିତ କରି ଦେଲା । ରାବଣର ମୃତ୍ୟୁ ଅତି ସନ୍ନିକଟ ଜାଣି ମହାମତି ବିଭୀଷଣ ସାଗର ପାର ହୋଇ ରାମଚନ୍ଦ୍ରଙ୍କର ଆଶ୍ରୟ ଗ୍ରହଣ କଲେ । ରାମଚନ୍ଦ୍ର ବିଭୀଷଣଙ୍କର ସମସ୍ତ କଥା ଶୁଣି ତାଙ୍କ ସହିତ ମିତ୍ରତାସୂତ୍ରରେ ଆବଦ୍ଧ ହେଲେ । ବିଭୀଷଣ ମଧ ତାଙ୍କର ଯଥାସାଧ୍ୟ ସହାୟତା କରିବାକୁ ପ୍ରତିଶ୍ରୁତ ହେଲେ । ବିଭୀଷଣ ପରି ମିତ୍ର ଲାଭ କରି ରାମଚନ୍ଦ୍ରଙ୍କ ମନରେ ଜୟଲାଭର ଆଶା ବଳବତୀ ହୋଇ ଉଠିଲା । ଜଗତରେ ଚେଷ୍ଟାର ଅସାଧ୍ୟ କିଛି ନାହିଁ । ସେନାପତି ନଳ ବାନରଗଣଙ୍କ ସାହାଯ୍ୟରେ ଅଳ୍ପ ସମୟ ମଧ୍ୟରେ ବୃକ୍ଷ ପ୍ରସ୍ତରଦ୍ୱାରା ଗୋଟିଏ ସୁଦୃଢ଼ ଓ ବିଶାଳ ସେତୁ ନିର୍ମାଣ କରି ଦେଲେ ।

ଏଣେ ସୀତାଦେବୀ ଚେଟୀବୃନ୍ଦଙ୍କଦ୍ୱାରା ବେଷ୍ଟିତ ହୋଇ ଅଶୋକବନରେ ବନ୍ଦିନୀ ପରି ଥିଲେ ସୁଦ୍ଧା ନିତାନ୍ତ ସହାୟଶୂନ୍ୟା ନ ଥିଲେ । ବିଭୀଷଣ ପତ୍ନୀ ସରମା ଓ ତ୍ରିଜଟାନାମ୍ନୀ ଆଉ ଗୋଟିଏ ରାକ୍ଷସୀ ସୀତାଙ୍କର ମଧୁର ଚରିତ୍ର ଯୋଗୁଁ ତାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତା ଥିଲେ । ଏହି ଦୁଇଜଣହିଁ ରାକ୍ଷସପୁରୀରେ ସୀତାଙ୍କର ଏକ-ମାତ୍ର ଅବଲମ୍ବନ ଥିଲେ ଓ ଦୁଃଖଶୋକରେ ତାଙ୍କୁ ସାନ୍ତ୍ୱନା ପ୍ରଦାନ କରୁଥିଲେ । ଦିନେ ପ୍ରଭାତରେ ତ୍ରିଜଟା ଆସି ସୀତାଙ୍କୁ କହିଲା, "ଦେବି, ମୁଁ ଗତରାତ୍ରିରେ ସ୍ୱପ୍ନ

ଦେଖିଥିଲି ଯେ ପ୍ରଭୁ ରାମଚନ୍ଦ୍ର ତୁମ୍ଭଙ୍କୁ ଉଦ୍ଧାର କରିବାକୁ ଆସୁଅଛନ୍ତି । ବାସ୍ତବିକ୍ ମୋର ସ୍ୱପ୍ନ ସଫଳ ହୋଇଅଛି । ରାମଚନ୍ଦ୍ର ସମୁଦ୍ରରେ ସେତୁବନ୍ଧନ କରି ଅସଂଖ୍ୟ ବାନର ସହିତ ଲଙ୍କାର ପଶ୍ଚିମଦ୍ୱାରରେ ଉପନୀତ ହୋଇ ଅଛନ୍ତି । ତୁମ୍ଭର ଉଦ୍ଧାରର ଆଉ ବେଶୀ ବିଳମ୍ବ ନାହିଁ ।" ଏହା କହି ସେ ବିଭୀଷଣଙ୍କର ଅପମାନ ଓ ରାମଚନ୍ଦ୍ରଙ୍କ ସହିତ ତାଙ୍କର ମିତ୍ରତା ସ୍ଥାପନ କଥା ସୀତାଙ୍କ ନିକଟରେ ବର୍ଣ୍ଣନ କଲେ । ଏହି ସମୟରେ ସହସ୍ର ସହସ୍ର କଣ୍ଠନିଃସୃତ "ଜୟ ରାମଚନ୍ଦ୍ରଙ୍କର ଜୟ" ଶବ୍ଦ ଅଶୋକ-ବନରେ ପ୍ରବେଶ କଲା । ଏ ଜୟଧ୍ୱନି ସୀତାଦେବୀଙ୍କ କର୍ଣ୍ଣରେ ଅମୃତ ବର୍ଷଣ କଲା । ଆନନ୍ଦରେ ତାଙ୍କର ସର୍ବ ଶରୀର ରୋମାଞ୍ଚିତ ଓ ଚକ୍ଷୁଦ୍ୱୟ ଅଶ୍ରୁସିକ୍ତ ହୋଇଗଲା ।

ଯୁଦ୍ଧ ଆରମ୍ଭ ପୂର୍ବରୁ ରାମଚନ୍ଦ୍ର ବାଳିପୁତ୍ର ଅଙ୍ଗଦଙ୍କୁ ଥରେ ରାବଣ ନିକଟକୁ ପ୍ରେରଣ କଲେ । ଅଙ୍ଗଦ ରାବଣର ସଭାରେ ଉପସ୍ଥିତ ହୋଇ ରାମଚନ୍ଦ୍ରଙ୍କ ହସ୍ତରେ ସୀତାଙ୍କୁ ପ୍ରତ୍ୟର୍ପଣ କରି ତାଙ୍କର କୃପାଭିକ୍ଷା କରିବା ନିମନ୍ତେ ରାବଣକୁ ଉପଦେଶ ଦେଲେ । ରାବଣ ଏ ପ୍ରସ୍ତାବରେ ରୁଷ୍ଟ ହୋଇ ଅଙ୍ଗଦଙ୍କ ପ୍ରତି ଅପମାନସୂଚକ ବାକ୍ୟ ପ୍ରୟୋଗ କରି ବିଦାୟ ଦେଲେ । ଅଙ୍ଗଦଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ରାମଚନ୍ଦ୍ର ସମରସଜ୍ଜା କରିବାକୁ ଆଦେଶ ଦେଲେ । ଅଳ୍ପ ସମୟ ମଧ୍ୟରେ ବାନରସୈନ୍ୟଙ୍କ କୋଳାହଳରେ ଲଙ୍କା ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ଯୁଦ୍ଧ ଅନିବାର୍ଯ୍ୟ ଜାଣି କପଟାଚାରୀ ରାବଣ ବିନା ସୈନ୍ୟକ୍ଷୟରେ କିପରି ରାମଙ୍କୁ ପରାଜୟ କରିପାରିବ ତାହାର ଉପାୟ ଚିନ୍ତା କରିବାକୁ ଲାଗିଲା । ଶେଷରେ ସ୍ଥିର ହେଲା ଯେ ମାୟା ବଳରେ ରାମଙ୍କର ଛିନ୍ନମୁଣ୍ଡ ଓ ଶରାସନ ପ୍ରସ୍ତୁତ କରି ତାହା ସୀତାଙ୍କୁ ଦେଖାଇଲେ ଉଦ୍ଧାରର ଆଉ ଉପାୟ ନ ଦେଖି ସୀତା ରାବଣର ନିକଟରେ ଆତ୍ମସମର୍ପଣ କରିବେ । ଏ ସମ୍ବାଦ ପାଇଲେ ରାମଚନ୍ଦ୍ର ମନୋଦୁଃଖରେ ଲଙ୍କା ଛାଡ଼ି ପଳାୟନ କରିବେ; ତାହାହେଲେ ବିନାଯୁଦ୍ଧରେ ରାବଣର ଉଦ୍ଦେଶ୍ୟ ସାଧିତ ହେବ ।

ମାୟାମୁଣ୍ଡ ଓ ଶରାସନ ପ୍ରସ୍ତୁତ ହୁଅନ୍ତେ ରାବଣ ଅଶୋକବନରେ ଉପସ୍ଥିତ ହୋଇ ଯୁଦ୍ଧରେ ନିଜର ଜୟଲାଭ ଓ ରାମଚନ୍ଦ୍ରଙ୍କ ବିନାଶ ସମ୍ବାଦ ଦର୍ପରେ ସୀତାଙ୍କ ନିକଟରେ ବିବୃତ କଲା ଏବଂ ମୁଣ୍ଡ ଓ ଶରାସନ ତାଙ୍କ ସମ୍ମୁଖରେ ସ୍ଥାପନ କଲା । ସୀତା ଏହି ମାୟାମୁଣ୍ଡକୁ ପ୍ରକୃତ ମୁଣ୍ଡ ମନେ କରି ପତିଶୋକରେ ମୂର୍ଚ୍ଛିତା ହୋଇ ଭୂତଳରେ ପତିତ ହେଲେ । କିଛିକ୍ଷଣ ପରେ ଚେତନା ଲାଭ କରି ଉନ୍ମାଦିନୀ ପରି ହୋଇ କହିଲେ, "ପାପିଷ୍ଠ, ତୁ ମୋର ଯେଉଁ ଦୁର୍ଦ୍ଦଶା କଲୁ, ସେଥିପାଇଁ ତୁ ଶୀଘ୍ର ଉଚିତ ଫଳ ଭୋଗ କରିବୁ । ତୁ ଯେ ମନେ କରିଅଛୁ, ଏଣିକି ମୁଁ ତୋହଠାରେ

ଆତ୍ମସମର୍ପଣ କରିବି, ଏହା ଅସମ୍ଭବ । ଏ ଶରୀରରେ ପ୍ରାଣ ଥାଉ ଥାଉ ହୋଇ ପାରିବ ନାହିଁ ।'' ରାବଣ ଯେଉଁ ଉଦ୍ଦେଶ୍ୟରେ ଏହି କୌଶଳର ଆଶ୍ରୟ ନେଇଥିଲା, ତାହା ସଫଳ ହେବାର କୌଣସି ଆଶା ନ ଦେଖି କ୍ରୋଧରେ ଅଧୀର ହୋଇ ସେ ସ୍ଥାନ ପରିତ୍ୟାଗ କଲା ।

ରାବଣ ଚାଲିଯିବା ପରେ ସରମା ସେଠାରେ ଉପସ୍ଥିତ ହେଲେ । ସେ ସୀତାଙ୍କୁ ଅତ୍ୟନ୍ତ ଶୋକାକୁଳା ଦେଖି ତାଙ୍କ ନିକଟରେ ମାୟାମୁଣ୍ଡ ରହସ୍ୟ ବିସ୍ତୃତ ଭାବରେ ବ୍ୟାଖ୍ୟା କଲେ ଓ ମଧୁର ବାକ୍ୟରେ ତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ । ଏତି ସମୟରେ ବାନର ଶିବିରର ଜୟ କୋଳାହଳ ଶ୍ରୁତିଗୋଚର ହେଲା । ଏହା ଶୁଣି ସୀତାଦେବୀ ଆଶ୍ୱସ୍ତା ହେଲେ ଓ ତାଙ୍କର ଭ୍ରମ ଦୂରୀଭୂତ ହେଲା ।

ଏହା ପରେ ରାମଚନ୍ଦ୍ରଙ୍କ ସହିତ ରାବଣର ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ସେ ଅତି ଭୟଙ୍କର ଯୁଦ୍ଧ । ରଣଭୂମି ରକ୍ତରେ କର୍ଦ୍ଦମାକ୍ତ ଓ ମୃତ ଦେହରେ ସମାଚ୍ଛନ୍ନ ହୋଇଗଲା । ଉଭୟ ପକ୍ଷରୁ ଅସଂଖ୍ୟ ସୈନ୍ୟ ନିହତ ହେଲେ, କିନ୍ତୁ ତଥାପି ତୁଲ୍ୟ ଉତ୍ସାହରେ ଯୁଦ୍ଧ ଚାଲିବାକୁ ଲାଗିଲା । ରାକ୍ଷସ ପକ୍ଷରୁ ଯେଉଁମାନେ ଯୁଦ୍ଧକ୍ଷେତ୍ରକୁ ଯାନ୍ତି, କେହି ଆଉ ଗୃହକୁ ପ୍ରତ୍ୟାବର୍ତ୍ତନ କରନ୍ତି ନାହିଁ; କେବଳ ରାବଣ ଓ ତାହାର ପୁତ୍ର କେତେବେଳେ ଜୟୀ ବା କେତେବେଳେ ପରାଜିତ ହୋଇ ଫେରି ଆସନ୍ତି । ଲଙ୍କାର ପ୍ରହସ୍ତ, ଅତିକାୟ, କୁମ୍ଭ, ନିକୁମ୍ଭ, ତ୍ରିଶିରା, ମକରାକ୍ଷ, ବୀରବାହୁ, କୁମ୍ଭକର୍ଣ୍ଣ ପ୍ରଭୃତି ଯେତେ ବଡ଼ ବଡ଼ ବୀର ଥିଲେ, ସମସ୍ତେ ଗୋଟି ଗୋଟି ହୋଇ ପ୍ରାଣ ବିସର୍ଜନ କଲେ, ଲଙ୍କା ବୀରଶୂନ୍ୟ ହେଲା । ଚାରିଆଡ଼େ ହାହାକାର ପଡ଼ିଗଲା । ଲଙ୍କାପୁରୀ ପୁତ୍ରହୀନା ମାତା ଓ ପତିହୀନା ରମଣୀଙ୍କ ବିଳାପଧ୍ୱନିରେ ପୂର୍ଣ୍ଣ ହୋଇଗଲା । ରାବଣ ବର୍ତ୍ତମାନ ବୁଝି ପାରିଲା ଯେ ଏ କାଳସମରରେ କାହାରି ଅବ୍ୟାହତି ନାହିଁ । ଏ ସବୁ ଆତ୍ମକୃତ ଦୁଷ୍କୃତିର ଫଳ ବୁଝି ପାରି ସେ ଅତ୍ୟନ୍ତ ମର୍ମାହତ ହେଲେ । କିନ୍ତୁ ଏତେବେଳେ ଆଉ ଅନୁଶୋଚନା ବୃଥା । ଘଟଣାର ଗତି ବଦଳାଇବା ବର୍ତ୍ତମାନ କାହାରି କ୍ଷମତାଧୀନ ନୁହେଁ । ସୀତାଙ୍କୁ ପ୍ରତ୍ୟର୍ପଣ କରି ରାମଚନ୍ଦ୍ରଙ୍କର କ୍ଷମା ଭିକ୍ଷା କରିବାକୁ ବିଭୀଷଣ ଯେଉଁ ପରାମର୍ଶ ଦେଇଥିଲେ, ତାହା ରାବଣର ସ୍ମରଣ ହେଲା । କିନ୍ତୁ ବର୍ତ୍ତମାନ ଇନ୍ଦ୍ରିୟ ଲାଳସା ଅପେକ୍ଷା ନୈରାଶ୍ୟ ଏଥିରେ ଅଧିକତର ଅନ୍ତରାୟ ହେଲା । ରାବଣ ବୁଝି ପାରିଲା ଯେ ସେ ପ୍ରବୃତ୍ତିର ମୋହରେ ଯେଉଁ ଦୁଷ୍କର୍ମ କରିଅଛି, ଯୁଦ୍ଧରେ ଜୀବନ ଦାନ କରି ତାକୁ ତାହାର ପ୍ରାୟଶ୍ଚିତ କରିବାକୁ ହେବ ।

ଇନ୍ଦ୍ରଜିତ୍ ବର୍ତ୍ତମାନ ରାବଣର ଏକମାତ୍ର ସହାୟ । ସେ ଇନ୍ଦ୍ରଜାଲ ବିଦ୍ୟାବଳରେ ଆକାଶମାର୍ଗରେ ରହି ଏପରି କୌଶଳରେ ଅସ୍ତ୍ରବର୍ଷଣ କରେ ଯେ କେହି ତାକୁ ଦେଖି ପାରନ୍ତି ନାହିଁ । ଶେଷରେ ବିଭୀଷଣ କହିଲେ, ଇନ୍ଦ୍ରଜିତ୍

ଲଙ୍କାରେ ନିକୁମ୍ଭିଳା ଯଜ୍ଞ ଆରମ୍ଭ କରିଅଛି; ଯଜ୍ଞରେ ଆହୁତି ପ୍ରଦାନ କଲା ପରେ ପୃଥିବୀରେ କାହାର ସାଧ୍ୟ ନାହିଁ ଯେ ତାକୁ ପରାସ୍ତ କରି ପାରିବ । ଏହି ସମ୍ବାଦ ପାଇ ଲକ୍ଷ୍ମଣ ବିଭୀଷଣଙ୍କ ସହିତ ଗୋପନଭାବରେ ଯଜ୍ଞଶାଳାରେ ପ୍ରବେଶ କରି ଦେଖିଲେ ଯେ ଇନ୍ଦ୍ରଜିତ୍ ଯଜ୍ଞକାର୍ଯ୍ୟରେ ରତ ଅଛି । ଉପଯୁକ୍ତ ଅବସର ପାଇ ଲକ୍ଷ୍ମଣ ଅତର୍କିତଭାବରେ ତାକୁ ଆକ୍ରମଣ କଲେ । ସହସା ଏପରି ଅସହାୟ ଅବସ୍ଥାରେ ଲକ୍ଷ୍ମଣଙ୍କୁ ଦେଖି ଇନ୍ଦ୍ରଜିତ୍ ଅତ୍ୟନ୍ତ ଶଙ୍କିତ ହେଲା । କିନ୍ତୁ ସେ ନିରସ୍ତ୍ର ହେଲେ ସୁଦ୍ଧା ବୀର ପରି ଯୁଦ୍ଧ କରି କରି ଯଜ୍ଞସ୍ଥଳରେ ପ୍ରାଣତ୍ୟାଗ କଲା ।

ଇନ୍ଦ୍ରଜିତ୍-ମରଣ-ବାଣୀ ଶୁଣି ରାବଣର ମସ୍ତକରେ ବଜ୍ରପାତ ହେଲା । ସେ ମୂର୍ଚ୍ଛିତ ହୋଇ ଭୂମିରେ ପତିତ ହେଲା ଓ ପୁତ୍ରର ଗୁଣାବଳୀ ସ୍ମରଣ କରି ଅଧୀରଭାବରେ କ୍ରନ୍ଦନ କରିବାକୁ ଲାଗିଲା । ପ୍ରାଣରୂପୀ ପୁତ୍ରର ମୃତ୍ୟୁରେ ରାବଣର ଦକ୍ଷିଣ ବାହୁ ଛିନ୍ନ ହୋଇଗଲା । ସେ ଶୋକରେ ଉନ୍ମତ୍ତବତ୍ ହୋଇ ଭୀଷଣ ମୂର୍ତ୍ତି ଧାରଣ କଲା ଓ ପୁତ୍ରହନ୍ତାର ରକ୍ତରେ ହୃଦୟଜ୍ୱାଳା ନିର୍ବାପିତ କରିବ ବୋଲି ସଂକଳ୍ପ କଲା । ବିପୁଳ ରଣସଜ୍ଜା କରି ରାବଣ ଧୂମକେତୁ ପରି ସମରାଙ୍ଗଣରେ ଉପସ୍ଥିତ ହେଲା ଓ ଅତୁଳ ବିକ୍ରମରେ ଯୁଦ୍ଧ କରି ଶତ୍ରୁସୈନ୍ୟଙ୍କୁ ଅସ୍ତବ୍ୟସ୍ତ କରି ଦେଲା । ଶେଷରେ ଲକ୍ଷ୍ମଣ ରାବଣର ନିଦାରୁଣ ଶକ୍ତିଶେଳରେ ମୂର୍ଚ୍ଛିତ ହୋଇ ଧରାଶାୟୀ ହେଲେ । ମୁହୂର୍ତ୍ତ ମଧ୍ୟରେ ବାନରସୈନ୍ୟ ମଧ୍ୟରେ ହାହାକାର ଉତ୍ଥିତ ହେଲା । ରାମଚନ୍ଦ୍ର ଲକ୍ଷ୍ମଣଙ୍କ ଗତାସୁ ମନେ କରି ଅଧୀର ହୋଇ କ୍ରନ୍ଦନ କରିବାକୁ ଲାଗିଲେ । ଶେଷରେ ବୀରବର ହନୁମାନ୍ ସୁଦୂର ଗନ୍ଧମାଦନ ପର୍ବତରୁ ଦୁର୍ଲଭ ଔଷଧ ସଂଗ୍ରହ କରି ଆଣି ଲକ୍ଷ୍ମଣଙ୍କର ପ୍ରାଣ ରକ୍ଷା କଲେ । ବୀରମାନଙ୍କର ଜୟ-ଧ୍ୱନିରେ ପୁନର୍ବାର ଲଙ୍କାପୁରୀ କମ୍ପିତ ହେବାକୁ ଲାଗିଲା । ଏହି ଜୟଧ୍ୱନିର କାରଣ ଜାଣି ପାରି ରାବଣ ଅତ୍ୟନ୍ତ ବ୍ୟାକୁଳ ହେଲା ଓ ବୁଝି ପାରିଲା ଯେ ଯୁଦ୍ଧରେ ଆଉ ତାହାର ନିସ୍ତାର ନାହିଁ ।

ଶେଷରେ ରାବଣ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ରାମଚନ୍ଦ୍ରଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲା । ସେ ଯୁଦ୍ଧର ତୁଳନା ନାହିଁ । ଦୁଇଖଣ୍ଡ ମେଘର ଭୀଷଣ ସଂଘର୍ଷଣ ହେଲା ପରି ଉଭୟ ଯୋଦ୍ଧାଙ୍କର ମିଳନ ହେଲା । ରାମ ଓ ରାବଣ ଉଭୟେ ଯୁଦ୍ଧରେ ତୁଲ୍ୟ ବିଶାରଦ । ବହୁକ୍ଷଣ ପର୍ଯ୍ୟନ୍ତ କେହି କାହାଙ୍କୁ ପରାସ୍ତ କରି ପାରିଲେ ନାହିଁ । ଶେଷରେ ରାବଣ ରାମଚନ୍ଦ୍ରଙ୍କର ରୁଦ୍ର ଅସ୍ତ୍ରାଘାତରେ ଭୂତଳରେ ପଡ଼ି ପ୍ରାଣ ବିସର୍ଜନ କଲା । ସତୀର ଅପମାନର ପୂର୍ଣ୍ଣ ପ୍ରାୟଶ୍ଚିତ୍ତ ହେଲା । ଯେଉଁ ରାବଣ ସ୍ୱୀୟ ବାହୁବଳରେ ତ୍ରିଭୁବନ ଜୟ କରି ଅତୁଳ ବିଭବର ଅଧିକାରୀ ହୋଇଥିଲା, ସେ ଅଦମ୍ୟ ଇନ୍ଦ୍ରିୟ-ଲାଳସା-ବହ୍ନିରେ ପଡ଼ି ପତଙ୍ଗ ପରି ପ୍ରାଣ ତ୍ୟାଗ କଲା । ରାବଣର

ବିଶାଳ ପରିବାର ମଧ୍ୟରୁ କେହି ଜଣେ କୁଳରେ ବତୀ ଦେବାକୁ ରହିଲେ ନାହିଁ । ଜଣକର ଦୋଷରେ ସମସ୍ତ ଦୈତ୍ୟକୁଳ ବିନଷ୍ଟ ହେଲ ।

ଯୁଦ୍ଧାବସାନରେ ବାନରସୈନ୍ୟ ବିଜୟୋଲ୍ଲାସରେ ମଗ୍ନ ହେଲେ । ହନୁମାନ୍ ରାମଚନ୍ଦ୍ରଙ୍କଠାରୁ ଅନୁମତି ପାଇ ସୀତାଙ୍କୁ ରାବଣବଧ ସମ୍ବାଦ ଜ୍ଞାପନ କରିବା ନିମନ୍ତେ ଅଶୋକବନକୁ ଯାତ୍ରା କଲେ । ସୀତାଙ୍କର ଚରଣ ବନ୍ଦନା କରି ହନୁମାନ୍ ଯେତେବେଳେ ରାବଣର ନିଧନବାର୍ତ୍ତା ପ୍ରଦାନ କଲେ, ସୀତାଙ୍କ ହୃଦୟରୁ ଯେପରି ପର୍ବତ ତୁଲ୍ୟ ଭାର ଅପସାରିତ ହେଲ । ସେ ହର୍ଷୋତ୍‌ଫୁଲ୍ଲ-ଚିତ୍ତରେ ହନୁମାନଙ୍କୁ କହିଲେ, "ବତ୍ସ ତୁମ୍ଭେ ଆଜି ଯେଉଁ ସମ୍ବାଦ ପ୍ରଦାନ କଲ, ତାହାର ପ୍ରତିଦାନ ସାମଗ୍ରୀ ପୃଥିବୀରେ ନାହିଁ । ତୁମେ କେବଳ ମୋର ଆନ୍ତରିକ ଆଶୀର୍ବାଦ ଗ୍ରହଣ କର ।"

ତାଙ୍କର ସକଳ ଦୁଃଖର ମୂଳ ରାବଣ ଯୁଦ୍ଧରେ ନିହତ ହେବାରୁ ସୀତାଙ୍କର ମନରେ ଆନନ୍ଦ ହେଲ ସତ୍ୟ, କିନ୍ତୁ ସେହି ସଙ୍ଗେ ସଙ୍ଗେ ଲଙ୍କାର ଦୁର୍ଦ୍ଦଶା ଦେଖି ତାଙ୍କର କୋମଳ ହୃଦୟ ଅତ୍ୟନ୍ତ ବ୍ୟଥିତ ହୋଇ ଉଠିଲ । କେତେ ନିରପରାଧା ରମଣୀ ପତିପୁତ୍ରହୀନା ହେଲେ, କେତେ ଅପୋଗଣ୍ଡ ଶିଶୁ ଅନାଥ ହୋଇଗଲେ । କନକ ଲଙ୍କାପୁରୀ ଛାରଖାର ହୋଇଗଲ । ଏସବୁ ଦେଖି ସୀତାଙ୍କ ମନରେ ଘୋର ଅନୁତାପ ଜାତ ହେଲ ।

ହନୁମାନ୍ ଅଶୋକବନରେ ସୀତାଙ୍କ ଉପରେ ରାକ୍ଷସୀମାନଙ୍କର ଅତ୍ୟାଚାର ସ୍ୱଚକ୍ଷୁରେ ଦେଖିଥିଲେ । ସେ ବର୍ତ୍ତମାନ ସୁଯୋଗ ପାଇ ସେମାନଙ୍କୁ ଶାସ୍ତି ଦେବା ନିମନ୍ତେ ସୀତାଦେବୀଙ୍କ ଅନୁମତି ପ୍ରାର୍ଥନା କରନ୍ତେ, ଜାନକୀ କହିଲେ, "ବତ୍ସ, ସେମାନଙ୍କର କିଛି ଦୋଷ ନାହିଁ । ସେମାନେ ରାବଣର ଆଶ୍ରିତା ଦାସୀ; ସୁତରାଂ ସେମାନେ ଯାହା କରିଅଛନ୍ତି, ତାହାର ଆଜ୍ଞାନୁବର୍ତ୍ତୀ ହୋଇ କରିଅଛନ୍ତି । ଯେଉଁ-ମାନେ ଆଜ୍ଞାବହ ମାତ୍ର ହୋଇ ପାପାଚରଣ କରନ୍ତି, ବିଜ୍ଞଲୋକ ସେମାନଙ୍କର ଦଣ୍ଡବିଧାନ କରନ୍ତି ନାହିଁ । ଅତଏବ ତୁମ୍ଭେ ଏ ଅଭିପ୍ରାୟ ତ୍ୟାଗ କର ।"

"ରାମଚନ୍ଦ୍ର-ଗୃହିଣୀଙ୍କର ଏହା ଉପଯୁକ୍ତ ଉତ୍ତର" ମନେ ମନେ ଏହି କଥା କହି ହନୁମାନ୍ ସୀତାଙ୍କର ଚରଣ ବନ୍ଦନା କରି ଅଶୋକବନ ତ୍ୟାଗ କଲେ ।



# ନବମ ପରିଚ୍ଛେଦ

ହନୁମାନଙ୍କ ମୁଖରୁ ସକଳ ବୃତ୍ତାନ୍ତ ଅବଗତ ହୋଇ ରାମଚନ୍ଦ୍ର ସୀତାଙ୍କୁ ଆନୟନ କରିବା ନିମନ୍ତେ ବିଭୀଷଣଙ୍କୁ ପ୍ରେରଣ କଲେ । ବିଭୀଷଣ ଅଶୋକବନରେ ଉପସ୍ଥିତ ହୋଇ ସୀତାଙ୍କୁ ରାମଚନ୍ଦ୍ରଙ୍କର ଇଚ୍ଛା ଜଣାଇଲେ ଓ ନାନାବିଧ ଉତ୍କୃଷ୍ଟ ଅଙ୍ଗରାଗ ଓ ମହାର୍ଘ ବସ୍ତ୍ରଭୂଷଣ ଆଣି ତାଙ୍କ ନିକଟରେ ସ୍ଥାପନ କଲେ । ସୀତାଙ୍କର ଇଚ୍ଛା ଥିଲା, ସେ ଯେଉଁ ଅବସ୍ଥାରେ ଅଛନ୍ତି, ସେହି ଅବସ୍ଥାରେ ଯାଇ ରାମଚନ୍ଦ୍ରଙ୍କୁ ଦର୍ଶନ କରିବେ । ବହୁକାଳ ପରେ ସେ ସ୍ୱାମୀଦର୍ଶନ ନିମନ୍ତେ ଯାଉଅଛନ୍ତି, ତାଙ୍କର ଆଉ ବସ୍ତ୍ରାଲଙ୍କାରରେ ପ୍ରୟୋଜନ କଣ ? କିନ୍ତୁ ବିଭୀଷଣଙ୍କଠାରୁ ସ୍ୱାମୀଙ୍କର ଅଭିପ୍ରାୟ ବୁଝି ପାରି ସେ ଆଉ ଦ୍ୱିରୁକ୍ତି ନ କରି ସୁସଜ୍ଜିତା ହୋଇ ଶିବିକାରୋହଣ କଲେ ।

ସୀତାଙ୍କ ହୃଦୟରେ ଆଜି ଯେ କେତେ ଭାବତରଙ୍ଗ ଉତ୍ଥିତ ହେଉଅଛି, ତାହାର ଇୟତ୍ତା ନାହିଁ । ସେ ଦୁରାତ୍ମାର ରାବଣର କବଳରୁ ମୁକ୍ତ ହୋଇ ପୁନର୍ବାର ରାମଚନ୍ଦ୍ରଙ୍କ ସହିତ ମିଳିତ ହେବେ, ଏ ଆଶା ତାଙ୍କର ଏକପ୍ରକାର ଲୁପ୍ତ ହୋଇଥିଲା । ବର୍ତ୍ତମାନ ଦୀର୍ଘ ବିଚ୍ଛେଦ ପରେ ସତକୁ ସତ ସ୍ୱାମୀଙ୍କୁ ଦର୍ଶନ କରିବାକୁ ଯାଉଅଛନ୍ତି, ଏହା ତାଙ୍କୁ ସ୍ୱପ୍ନ ତୁଲ୍ୟ ପ୍ରତୀୟମାନ ହେଲା । ଶୀଘ୍ର ପ୍ରାଣେଶ୍ୱରଙ୍କ ସହିତ ମିଳନ ହେବ, ଏକଥା ଭାବିଲା ବେଳକୁ ସୀତାଙ୍କର ବକ୍ଷଦେଶ କମ୍ପିତ ହୋଇ ଉଠିଲା । ସେ ଆନନ୍ଦାଶ୍ରୁ ବିସର୍ଜନ କରି ମନେ ମନେ ସବୁ ଦେବତାଙ୍କୁ ହୃଦୟର ଆନ୍ତରିକ କୃତଜ୍ଞତା ଜଣାଇଲେ ।

ଇତିମଧ୍ୟରେ ଶିବିକା ରାମଚନ୍ଦ୍ରଙ୍କ ଶିବିର ନିକଟରେ ଉପନୀତ ହେଲା । ରାମଚନ୍ଦ୍ରଙ୍କ ଆଦେଶକ୍ରମେ ସୀତାଦେବୀ ସଭାସ୍ଥଳରେ ଶିବିକାରୁ ଅବତରଣ କଲେ । ମନେ ହେଲା, ଯେପରି ଭୂତଳରେ ଶରୀରିଣୀ ବିଦ୍ୟୁଲ୍ଲତା ଅବତୀର୍ଣ୍ଣ ହେଲେ । ସମସ୍ତେ ଏକଦୃଷ୍ଟିରେ ସୀତାଙ୍କ ଆଡ଼କୁ ଅନାଇ ରହିଲେ । ସୀତାଙ୍କର ଦୃଷ୍ଟି କିନ୍ତୁ ଅନ୍ୟ ଦିଗକୁ ନାହିଁ । ସେ ରାମଚନ୍ଦ୍ରଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଅନିମେଷଲୋଚନରେ ସ୍ୱାମୀଙ୍କର ପ୍ରଶାନ୍ତ ଚନ୍ଦ୍ରମୁଖ ନିରୀକ୍ଷଣ କରିବାକୁ ଲାଗିଲେ । ଯେ ସ୍ୱପ୍ନ ଓ ଜାଗରଣରେ ସୀତାଙ୍କର ଧ୍ୟାନର ବିଷୟ ଥିଲେ, ଯାହାଙ୍କୁ ହୃଦୟରେ ଭକ୍ତି-ପୁଷ୍ପାଞ୍ଜଳି ଦେଇ ସୀତା ଦେବତା ପରି ପୂଜା କରୁଥିଲେ, ସୁଦୀର୍ଘ କାଳ ପରେ ସେହି ହୃଦୟବଲ୍ଲଭଙ୍କୁ ଦେଖି ସୀତା ଭାବରେ ବିହ୍ୱଳ ହୋଇ ପଡ଼ିଲେ । କିନ୍ତୁ ଏତେ ଦିନ ପରେ ସୀତାଙ୍କୁ

ଦେଖି ରାମଚନ୍ଦ୍ର ଆନନ୍ଦରେ ଅଧୀର ହେବେ କଣ, ସ୍ଥିର ଭାବରେ ଆସନରେ ଉପବିଷ୍ଟ ହୋଇ ରହିଲେ । ସୀତାଙ୍କୁ ଦେଖି ତାଙ୍କର କି ଭାବାନ୍ତର ଉପସ୍ଥିତ ହେଲା କେଜାଣି, ରାମଚନ୍ଦ୍ର ଧୀର ଅଥଚ ଦୃଢ଼ତାବ୍ୟଞ୍ଜକ ସ୍ୱରରେ କହିଲେ, "ଭଦ୍ରେ, ରାବଣର ସଂହାର ଓ ତୁମ୍ଭର ଉଦ୍ଧାର ସାଧନ କରି ମୁଁ ମୋହର କର୍ତ୍ତବ୍ୟ ପାଳନ କରିଅଛି । ମୋର କ୍ଳେଶ ସାର୍ଥକ ହୋଇଅଛି, ରଘୁବଂଶର ଗୌରବ ରକ୍ଷା ହୋଇଅଛି । ତୁମ୍ଭେ ଏତେ ଦିନ ପର୍ଯ୍ୟନ୍ତ ସ୍ୱାମୀ, ପିତା ବା ଅନ୍ୟ କୌଣସି ଆତ୍ମୀୟଙ୍କର ଆଶ୍ରୟରେ ନ ରହି ଏକାକିନୀ ରାବଣର ଗୃହରେ ବାସ କରିଥିଲ । ଏପରି ଅବସ୍ଥାରେ ସ୍ତ୍ରୀକୁ ଗ୍ରହଣ କରିବା କୌଣସି ସତ୍‌କୁଳଜାତ ପୁରୁଷର କର୍ତ୍ତବ୍ୟ ନୁହେ । ମୁଁ କେବେ ତୁମ୍ଭଙ୍କୁ କିପରି ଗ୍ରହଣ କରିବ ? ତୁମ୍ଭେ ବର୍ତ୍ତମାନ ଯଥା ଇଚ୍ଛା ତଥା ଗମନ କରି ପାର । ଯେଉଁ କର୍ତ୍ତବ୍ୟ ଅନୁରୋଧରେ ମୁଁ ତୁମ୍ଭଙ୍କୁ ଉଦ୍ଧାର କଲି, ସେହି କର୍ତ୍ତବ୍ୟ ଅନୁରୋଧରେ ବର୍ତ୍ତମାନ ତୁମ୍ଭଙ୍କୁ ପରିତ୍ୟାଗ କରିବାକୁ ବାଧ୍ୟ ହେଉଅଛି ।"

ସୀତାଙ୍କ ମସ୍ତକରେ ସହସା ଅଶନିପାତ ହୋଇଥିଲେ ସେ ଏତେଦୂର ବିସ୍ମିତ ହୋଇ ନ ଥାନ୍ତେ । ରାମଚନ୍ଦ୍ରଙ୍କର କଠୋର ବାକ୍ୟ ଶୁଣି ସୀତା କ୍ଷଣକାଳ ସ୍ତମ୍ଭିତା ହୋଇ ରହିଲେ । ଲଜ୍ଜା ଓ ଦୁଃଖରେ ତାଙ୍କର ହୃଦୟ ଶତଧା ବିଦୀର୍ଣ୍ଣ ହୋଇଗଲା । ହାୟ ! ଏହା ଅପେକ୍ଷା ପୃଥିବୀ ଦ୍ୱିଧା ହୋଇ ତାଙ୍କୁ ଗ୍ରାସ କଲା ନାହିଁ କାହିଁକି ? ରାବଣଗୃହରେ ମୃତ୍ୟୁ ତ ଏହା ଅପେକ୍ଷା ସହସ୍ର ଗୁଣରେ ଶ୍ରେୟସ୍କର ହୋଇଥାନ୍ତା ! ଯାହାଙ୍କ କଥା ଛଡ଼ା ଅନ୍ୟ ଚିନ୍ତା ତାଙ୍କ ମନରେ ପ୍ରବେଶ କରି ନ ଥିଲା; ଯାହାଙ୍କର ଦର୍ଶନ ପାଇବା ନିମନ୍ତେ ଶତ ନିର୍ଯ୍ୟାତନ ସହ୍ୟ କରି ମଧ୍ୟ ସେ ପ୍ରାଣ ଧାରଣ କରି ରହିଥିଲେ, ସେହି ସ୍ୱାମୀଙ୍କ ମୁଖରୁ ଏହି ସମ୍ଭାଷଣ ! ମୁହୂର୍ତ୍ତେ ମଧ୍ୟରେ ସୀତାଙ୍କର ସୁଖ ସ୍ୱପ୍ନ ଭୁଆଁଡ଼େ ଅନ୍ତର୍ହିତ ହୋଇଗଲା । ସେ ଶୋକବିମୂଢ଼ା ହୋଇ ନିଷ୍ପନ୍ଦଭାବରେ ଛିଡ଼ା ହୋଇ ରହିଲେ । ସମବେତ ଜନମଣ୍ଡଳୀ ଏ ଅଭାବନୀୟ ଦୃଶ୍ୟ ଦେଖି ଚିତ୍ରପ୍ରତିମା ପରି ନିର୍ବାକ୍ ବିସ୍ମୟରେ ଅନାଇ ରହିଲେ; କାହାରି ମୁଖରୁ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ ।

ସୀତା ଲଜ୍ଜା ଓ ଅପମାନରେ ବ୍ୟଥିତ ହେଲେ ସତ, କିନ୍ତୁ ବିଚଳିତ ହେଲେ ନାହିଁ । ପତିବ୍ରତାତେଜରେ ତାଙ୍କ ବଦନମଣ୍ଡଳ ପ୍ରଦୀପ୍ତ ହୋଇ ଉଠିଲା । ସେ ଧୀର ବିନୀତଭାବରେ କହିଲେ, "ପ୍ରଭୋ, ନୀଚ ଲୋକ ଇତର ନାରୀ ପ୍ରତି ଯେପରି ରୂଢ଼ ବାକ୍ୟ ପ୍ରୟୋଗ କରେ, ମୋ ପ୍ରତି ସେହିପରି ବ୍ୟବହାର କରିବା କଣ ରଘୁକୁଳ-ତିଳକଙ୍କର ଉପଯୁକ୍ତ ହୋଇଅଛି ? ମୁଁ ରାବଣଗୃହରେ କିପରି କାଳ ଯାପନ କରିଅଛି, ତାହା ଅନୁସନ୍ଧାନ କରିବା କିଂ ନ୍ୟାୟପର ବିଚାରକର କର୍ତ୍ତବ୍ୟ ନ ଥିଲା ? ଦୁର୍ବୃତ୍ତ

ରାବଣ ମତେ ବଳପୂର୍ବକ ହରଣ କରି ଆବଦ୍ଧ କରି ରଖିଥିଲା ସତ୍ୟ, କିନ୍ତୁ ମୁଁ ସେତେବେଳେ ନିରୁପାୟ । ଆତ୍ମରକ୍ଷା କରିବାର ଅକ୍ଷମତା କିଣ ମୋର ଅପରାଧ ମଧ୍ୟରେ ଗଣ୍ୟ ହେଲା ? ଯାହା ମୋର ଆୟତ୍ତ, ସେହି ମନ ଉପରେ କେହି ହସ୍ତକ୍ଷେପ କରି ପାରିବ ନାହିଁ । ତାହା କେବଳ ଆପଣଙ୍କର ଅନୁରାଗୀ ହୋଇ ରହିଅଛୁ । ଏତେ ଦୀର୍ଘକାଳ ସହବାସ ପରେ ମୁଦ୍ଧା ଆପଣ ମୋର ହୃଦୟ ଚିହ୍ନି ପାରିଲେ ନାହିଁ ? ଆପଣଙ୍କ ପ୍ରତି ମୋର ଭକ୍ତି ଓ ପ୍ରୀତିର କିଛି ମୂଲ୍ୟ ରହିଲା ନାହିଁ ? ମୁଁ କୃପାଭିକ୍ଷା କରିବା ଲାଗି ଏ ସବୁ କଥା କହୁ ନାହିଁ । ଯେଉଁ ମୁହୂର୍ତ୍ତରେ ଆପଣ ମୋ ପ୍ରତି ସନ୍ଦେହ କରିଅଛନ୍ତି, ସେହି ମୁହୂର୍ତ୍ତରେ ମୋର ମୃତ୍ୟୁଦଣ୍ଡ ହୋଇଅଛୁ । ବତ୍ସ ଲକ୍ଷ୍ମଣ, ତୁମ୍ଭ ପ୍ରତି ଯେଉଁ ଦୁର୍ବାକ୍ୟ ପ୍ରୟୋଗ କରିଥିଲି, ତାହାର ପ୍ରାୟଶ୍ଚିତ୍ତ ଏ ପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ତୁମ୍ଭେ ଅଗ୍ନିକୁଣ୍ଡ ପ୍ରସ୍ତୁତ କର, ଏ ଅବମାନିତ ଜୀବନ ବହନ କରିବାକୁ ମୋର ଆଉ ତିଳେମାତ୍ର ଇଚ୍ଛା ନାହିଁ ।"

ସୀତା ଦେବୀଙ୍କର ଏହି ନିଦାରୁଣ ଆଦେଶ ଶ୍ରବଣ କରି ଲକ୍ଷ୍ମଣ କ୍ଷୋଭ ଓ କ୍ରୋଧରେ ମର୍ମାହତ ହୋଇ ରାମଚନ୍ଦ୍ରଙ୍କ ଆଡ଼କୁ ଚାହିଁ ରହିଲେ ଓ ତାଙ୍କର ଆକାର ଇଙ୍ଗିତରୁ ବୁଝି ପାରିଲେ ଯେ, ଏ କଠୋର ପରୀକ୍ଷାର ସେ ବିରୋଧୀ ନୁହନ୍ତି ।

ଅଳ୍ପକ୍ଷଣ ମଧ୍ୟରେ ଗୋଟିଏ ବିଶାଳ ଅଗ୍ନିକୁଣ୍ଡ ରଚିତ ହେଲା ଓ ଶତ ଜିହ୍ୱା ବିସ୍ତାର କରି ହୁତାଶନ ପ୍ରଜ୍ୱଳିତ ହୋଇ ଉଠିଲା । ରାମଚନ୍ଦ୍ରଙ୍କର ଅଟଳ ଗାମ୍ଭୀର୍ଯ୍ୟ ଦେଖି ସମସ୍ତେ ସ୍ତମ୍ଭିତ ହୋଇ ରହିଲେ; ପଦେ କଥା କହିବାକୁ କାହାର ସାହସ ହେଲା ନାହିଁ । ସହସ୍ର ସହସ୍ର ନୟନରୁ ନୀରବରେ ଅଶ୍ରୁବିନ୍ଦୁ ପତିତ ହେଲା । ସୀତାଙ୍କ ମୁଖରେ ଭୟ, ଦୁଃଖ ବା ଉଦ୍‌ବେଗର ଚିହ୍ନ କିଛି ମାତ୍ର ନାହିଁ । ସେ ପ୍ରଥମେ ରାମଚନ୍ଦ୍ରଙ୍କର ଚରଣ ବନ୍ଦନା କରି ଧୀର ପଦବିକ୍ଷେପରେ ଚିତା ପ୍ରଦକ୍ଷିଣ କଲେ ଓ ରଘୁକୁଳଦେବତାଙ୍କୁ ପ୍ରଣାମ କଲେ । ତତ୍ପରେ କୃତାଞ୍ଜଳିପୁଟରେ ଅଗ୍ନି ସମକ୍ଷରେ କହିଲେ, "ହେ ଅଗ୍ନିଦେବ, ତୁମ୍ଭେ ପ୍ରାଣିମାନଙ୍କର ସମସ୍ତ ବୃତ୍ତିର ସାକ୍ଷୀ, କି ସ୍ୱପ୍ନରେ ଜାଗରଣରେ କାୟମନବାକ୍ୟରେ ମୋର ଯଦି ରାମଚନ୍ଦ୍ରଙ୍କ ଛଡ଼ା ଅନ୍ୟ କାହାଠାରେ ପତିଭାବ ଥାଏ, ତେବେ ମୋର ଦେହ ଦଗ୍ଧ କରିଦିଅ ।" * ଏହା କହି ସୀତା ଦେବୀ ପ୍ରଜ୍ୱଳିତ ଅଗ୍ନିକୁଣ୍ଡ ମଧ୍ୟରେ ପ୍ରବେଶ କଲେ । ଦେଖୁ

---

* "ମନସି ବଚସି କାୟେ ଜାଗରେ ସ୍ୱପ୍ନସଙ୍ଗେ
ଯଦି ମମ ପତିଭାବୋ ରାଘବାଦନ୍ୟପୁଂସି ।
ତଦିହ ଦହ ମମାଙ୍ଗଂ ପାବନଂ ପାବକେଦଂ
ସୁକୃତଦୁରିତଭାଜଂ ତ୍ୱଂ ହି କର୍ମୈକସାକ୍ଷୀ ।"

ଦେଖୁ ତାଙ୍କର ସୁକୁମାର ତନୁ ଜ୍ୱଳନ୍ତ ଅଗ୍ନିଶିଖା ଓ ଧୂମରାଶି ମଧ୍ୟରେ ଅଦୃଶ୍ୟ ହୋଇଗଲା । ଏହି ସମୟରେ ସମସ୍ତେ ବିସ୍ମିତ ହୋଇ ଦେଖିଲେ, ସ୍ୱୟଂ ଅଗ୍ନିଦେବ ଜାନକୀଙ୍କୁ ଅଙ୍କରେ ଧାରଣ କରି ଚିତା ମଧ୍ୟରୁ ସମୁଦ୍ଭୂତ ହେଲେ । ସୀତାଙ୍କର ପବିତ୍ର ମୂର୍ତ୍ତି କାଞ୍ଚନପ୍ରତିମା ପରି ଦୀପ୍ୟମାନ ଦେଉଅଛି । ତାଙ୍କ ମସ୍ତକର ଗୋଟିଏ କେଶ ବା ବସ୍ତ୍ରର ଗୋଟିଏ ସୂତ୍ର ସୁଦ୍ଧା ଦଗ୍ଧ ହୋଇ ନାହିଁ; ଏମନ୍ତ କି, ତାଙ୍କର ପୁଷ୍ପମାଳ୍ୟ ସୁଦ୍ଧା ଟିକିଏ ମ୍ଳାନ ହୋଇ ନାହିଁ । ସତୀର ଗୌରବ ରକ୍ଷା ନିମନ୍ତେ ପ୍ରକୃତି ବୋଧ ହୁଏ ଆଜି ତାଙ୍କର ଧର୍ମ ଭୁଲିଗଲେ । ଅଗ୍ନିଦେବ ରାମଚନ୍ଦ୍ରଙ୍କ ହସ୍ତରେ ଜାନକୀଙ୍କୁ ସମର୍ପଣ କରି ଦେଇ କହିଲେ, "ରାମ, ତୁମ୍ଭେ ନିଃସଙ୍କୋଚରେ ସୀତାଙ୍କୁ ଗ୍ରହଣ କର । ମୁହୂର୍ତ୍ତିକ ପାଇଁ ସୁଦ୍ଧା ପାପ ଏହାଙ୍କ ହୃଦୟକୁ ସ୍ପର୍ଶ କରି ନାହିଁ । ରାକ୍ଷସୀମାନେ ଏହାଙ୍କୁ ନାନା ପ୍ରଲୋଭନ ଦେଖାଇଅଛନ୍ତି, ନାନା ଯନ୍ତ୍ରଣା ଦେଇ-ଅଛନ୍ତି, କିନ୍ତୁ ତାଙ୍କର ମନ ସର୍ବଦା କେବଳ ତୁମ୍ଭଠାରେ ଅଟଳ ରହିଅଛି । ସୀତାଙ୍କର ଚରିତ୍ର ଅତି ପବିତ୍ର ଓ ନିଷ୍କଳଙ୍କ । ସେ ରମଣୀକୁଳର ମୁକୁଟମଣି । ମୁଁ ଆଦେଶ ଦେଉଅଛି, ତୁମ୍ଭେ ଅଣୁମାତ୍ର ସନ୍ଦେହ ନ କରି ଏହାଙ୍କୁ ଗ୍ରହଣ କର ।" ଏହା କହି ଅଗ୍ନିଦେବ ଅନ୍ତର୍ହିତ ହେଲେ ।

ଅଗ୍ନିଦେବଙ୍କ କଥା ଶୁଣି ରାମଚନ୍ଦ୍ରଙ୍କର ମୁଖ ରାହୁମୁକ୍ତ ଶଶଧର ପରି ଶୋଭା ପାଇଲା ଓ ତାଙ୍କର ନୟନଯୁଗଳ ଆନନ୍ଦରେ ଦୀପ୍ତ ହୋଇ ଉଠିଲା । ସେ ଭାବ-ଗଦ୍‌ଗଦ୍ ହୋଇ କହିଲେ, "ବିବାହବେଦୀରେ ପ୍ରଥମ ଦର୍ଶନ ସମୟଠାରୁ ଏପର୍ଯ୍ୟନ୍ତ ମୁଁ ସୀତାଙ୍କ ଚରିତ୍ରରେ ସନ୍ଦେହ କରି ନାହିଁ । ମୋର ନିଜର ଅସ୍ତିତ୍ୱରେ ଯେପରି ବିଶ୍ୱାସ, ତାଙ୍କର ବିଶୁଦ୍ଧତାରେ ମୋର ସେହିପରି ବିଶ୍ୱାସ । କେବଳ ଜଗତ୍ ଦେଖୁ ଯେ, ସେ ବିଶୁଦ୍ଧା ଓ କଳଙ୍କରହିତା, ଏଥିପାଇଁ ମୁଁ କଠୋର ପରୀକ୍ଷାର ଅନୁମୋଦନ କରିଅଛି । ବର୍ତ୍ତମାନ ସମସ୍ତେ ବୁଝନ୍ତୁ ଯେ ରାବଣ ତ୍ରିଭୁବନ ଜୟ କରି ସୁଦ୍ଧା ଗୋଟିଏ ରମଣୀର ହୃଦୟ ଜୟ କରି ପାରି ନ ଥିଲା ।" ଏହା କହି ଅନୁତପ୍ତ ରାମ ସଜଳ-ନୟନରେ ସୀତାଙ୍କର କର ଧାରଣ କଲେ । ପତିପ୍ରାଣା ସୀତା ସବୁ ଅପମାନ, ସବୁ କଠୋର ବାକ୍ୟ ଭୁଲି ଯାଇ ରାମଚନ୍ଦ୍ରଙ୍କ ପଦଧୂଳି ମସ୍ତକରେ ଧାରଣ କଲେ; ତାଙ୍କର ହୃଦୟ ଅପାର୍ଥିବ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ରାମ ସୀତାଙ୍କର ଏ ଅପୂର୍ବ ମିଳନ ଦେଖି ଅଯୁତ କଣ୍ଠରୁ "ଜୟ ସୀତାଙ୍କର ଜୟ" ଏହି ହର୍ଷଧ୍ୱନି ଉତ୍‌ଥିତ ହେଲା । ସ୍ୱର୍ଗରୁ ଦେବତାମାନେ କୁସୁମ ବୃଷ୍ଟି ଓ ଦୁନ୍ଦୁଭି ଧ୍ୱନି କରିବାକୁ ଲାଗିଲେ ।

*

ରାମଚନ୍ଦ୍ରଙ୍କ ବନବାସ କାଳ ଶେଷ ହୋଇଥିଲା । ସୁତରାଂ ସେ ବିଭୀଷଣଙ୍କୁ ଲଙ୍କାର ରାଜପଦରେ ଅଭିଷିକ୍ତ କରି ଅଯୋଧ୍ୟା ପ୍ରତ୍ୟାଗମନ କରିବାକୁ

ଅଦୃଶ୍ୟ ଯୋଗ କଲେ । ଶୁଭଦିନରେ ରାମଚନ୍ଦ୍ର ସୀତା ଓ ଲକ୍ଷ୍ମଣଙ୍କ୍ ସେହି ରାକ୍ଷସ ଓ ବାନରଙ୍କ ସହିତ ଆକାଶଗାମୀ ପୁଷ୍ପକ ରଥରେ ଆରୂଢ଼ ହୋଇ ଲଙ୍କା ପରିତ୍ୟାଗ କଲେ । ରଥ ବିମାନମାର୍ଗରେ ଧାବିତ ହେଲା । ରାମଚନ୍ଦ୍ର ସୀତାଙ୍କୁ ଗୋଟି ଗୋଟି କରି ପଥର ପରିଚୟ ଦେବାକୁ ଲାଗିଲେ । ପୂର୍ବ ପରିଚିତ ସ୍ଥାନ ସବୁ କ୍ରମେ ସେମାନଙ୍କର ନୟନଗୋଚର ହେଲା । ଯେଉଁ ଯେଉଁ ସ୍ଥାନରେ ରାମଚନ୍ଦ୍ର ସୀତାଙ୍କର ଅନ୍ୱେଷଣ କରିଥିଲେ, ଯେଉଁ ସ୍ଥାନରେ ତାଙ୍କର ସୁଗ୍ରୀବ ପ୍ରଭୃତିଙ୍କ ସହିତ ସାକ୍ଷାତ୍ ହୋଇଥିଲା, ସେହି ସେହି ସ୍ଥାନ ରାମଚନ୍ଦ୍ର ଅଙ୍ଗୁଳି ନିର୍ଦ୍ଦେଶ କରି ସୀତାଙ୍କୁ ଦେଖାଇ ଦେଲେ । ଯେଉଁ ସ୍ଥାନରୁ ରାବଣ ସୀତାଦେବୀଙ୍କୁ ହରଣ କରି ନେଇ ଯାଇଥିଲା, ସେହି ସ୍ଥାନ ସମ୍ମୁଖରେ ପଡ଼ିବାରୁ ପୂର୍ବକଥା ମନେ ପଡ଼ି ସେମାନଙ୍କ ମନରେ ଭାବାନ୍ତର ଜାତ ହେଲା । ରଥ ଅଳ୍ପ ସମୟରେ ଅଯୋଧ୍ୟାର ନିକଟବର୍ତ୍ତୀ ହେଲା । ଭରତଙ୍କୁ ସମ୍ବାଦ ଦେବା ନିମନ୍ତେ ରାମଚନ୍ଦ୍ର ଆଗରୁ ହନୁମାନଙ୍କୁ ନନ୍ଦିଗ୍ରାମକୁ ପ୍ରେରଣ କଲେ ।

ରାମଚନ୍ଦ୍ର ସ୍ୱଦେଶକୁ ଆସୁଅଛନ୍ତି ବୋଲି ଶୁଣି ଚତୁର୍ଦ୍ଦିଗରେ ଆନନ୍ଦ କୋଳାହଳ ଉଠିଥିଲା ହେଲା । ସ୍ତ୍ରୀ, ପୁରୁଷ, ବାଳକ, ବୃଦ୍ଧ ସମସ୍ତେ ତାଙ୍କୁ ଅଭ୍ୟର୍ଥନା କରିବାକୁ ବାହାରିଲେ । ଜଟାବଲ୍କଳଧାରୀ ଭରତ କିଛିଦୂର ଅଗ୍ରସର ହୋଇ ରାମଚନ୍ଦ୍ରଙ୍କର ଚରଣ ବନ୍ଦନା କଲେ । ରାମଚନ୍ଦ୍ର ସସ୍ନେହରେ ତାଙ୍କୁ ଆଲିଙ୍ଗନ କରି କୁଶଳ ପ୍ରଶ୍ନ କଲେ । ଏହା ପରେ ରାମ ଲକ୍ଷ୍ମଣ ଓ ସୀତା ଅନ୍ତଃପୁରମଧ୍ୟରେ ପ୍ରବେଶ କଲେ । ରାଜପୁରୀ ମଧ୍ୟରେ ମିଳନର ଯେଉଁ ସ୍ୱର୍ଗୀୟ ଆନନ୍ଦଧାରା ପ୍ରବାହିତ ହେବ, ତାହା ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ । କୌଶଲ୍ୟା ଓ ସୁମିତ୍ରା ଦେବୀ ଅନ୍ଧ ଚକ୍ଷୁ ପାଇଲା ପରି ଆନନ୍ଦରେ ବିହ୍ୱଳ ହୋଇ ଲୋତକର ବେଗ ରୋଧ କରି ପାରିଲେ ନାହିଁ । କୈକେୟୀ ମନସ୍ତାପରେ ଜୀବନ୍ମୃତ ହୋଇଥିଲେ । ରାମଚନ୍ଦ୍ର ମଧୁର ବାକ୍ୟରେ ସାନ୍ତ୍ୱନା କରି ତାଙ୍କର କ୍ଳେଶ ଦୂର କଲେ ।

ରାମଚନ୍ଦ୍ରଙ୍କ ଆଗମନ ସଙ୍ଗେ ସଙ୍ଗେ ଅଯୋଧ୍ୟାର ପୂର୍ବଶ୍ରୀ ଫେରି ଆସିଲା । ମଧୁର ହାସ୍ୟରେ ତାହାର ମୁଖ ସମୁଜ୍ଜ୍ୱଳ ହୋଇ ଉଠିଲା । ଅଯୋଧ୍ୟାର ଘରେ ଘରେ ଗୋଟିଏ ଆନନ୍ଦର ସ୍ପନ୍ଦନ ଅନୁଭୂତ ହେଲା ।

# ଦଶମ ପରିଚ୍ଛେଦ

ଶୁଭଦିନ ଶୁଭଲଗ୍ନରେ ରାମଚନ୍ଦ୍ର ଅଯୋଧ୍ୟାର ସିଂହାସନରେ ପ୍ରତିଷ୍ଠିତ ହେଲେ । ବଶିଷ୍ଠ ବାମଦେବ ପ୍ରଭୃତି ଋଷିବୃନ୍ଦ ବହୁ ତୀର୍ଥସଲିଳଦ୍ୱାରା ରାମଚନ୍ଦ୍ର-ଙ୍କର ଅଭିଷେକକ୍ରିୟା ସମ୍ପନ୍ନ କଲେ । ସୀତାଦେବୀ ରାମଚନ୍ଦ୍ରଙ୍କ ପାର୍ଶ୍ୱରେ ସିଂହାସନରେ ଉପବିଷ୍ଟା ହେଲେ । ଭରତ ସ୍ୱହସ୍ତରେ ରାଜଛତ୍ର ଧାରଣ କଲେ: ଲକ୍ଷ୍ମଣ ଓ ଶତ୍ରୁଘ୍ନ ଚାମର ବ୍ୟଜନ କରିବାକୁ ଲାଗିଲେ । ଅଯୋଧ୍ୟାବାସୀ ଏ ଅପୂର୍ବ ଶୋଭା ଦର୍ଶନ କରି ନିଜ ନିଜର ନୟନ ସାର୍ଥକ କଲେ; ସେମାନଙ୍କର ସମସ୍ତ ଦୁଃଖ, ସମସ୍ତ ଅଭାବ ଦୂରୀଭୂତ ହେଲା । ପୁରବାସୀ ସମସ୍ତେ ଅଭିଷେକୋତ୍ସବରେ ମତ୍ତ ହେଲେ । କିଛିଦିନ ପରେ ରାମଚନ୍ଦ୍ର ସୁଗ୍ରୀବ, ବିଭୀଷଣ ହନୁମାନ୍ ପ୍ରଭୃତି ସୁହୃଦ୍‌ବର୍ଗଙ୍କୁ ଯଥାଯୋଗ୍ୟ ଉପହାର ଦେଇ ବିଦାୟ ଦେଲେ । ରାମଚନ୍ଦ୍ର ହୃଷ୍ଟମନରେ ଧର୍ମାନୁସାରେ ରାଜ୍ୟ ଶାସନ କରିବାକୁ ଲାଗିଲେ ।

ରାମଚନ୍ଦ୍ରଙ୍କର ସୁଦକ୍ଷ ରାଜ୍ୟଶାସନ ଓ ଅପତ୍ୟନିର୍ବିଶେଷରେ ପ୍ରଜାପାଳନ ଦେଖି ସମସ୍ତେ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ଅଯୋଧ୍ୟାର ସୁଖସମୃଦ୍ଧି ଉତ୍ତରୋତ୍ତର ବୃଦ୍ଧି ପାଇଲା । ଶସ୍ୟସମ୍ଭାରରେ ଧରିତ୍ରୀ ପୂର୍ଣ୍ଣ ହୋଇ ଉଠିଲା । ବୃକ୍ଷଲତାମାନେ ଋତୁପର୍ଯ୍ୟାୟକ୍ରମେ ବିବିଧ ଫଳପୁଷ୍ପରେ ପୃଥିବୀକୁ ମଣ୍ଡିତ କଲେ । କର୍ମଠ ପ୍ରଜାକୁଳଙ୍କର ନିପୁଣ ହସ୍ତରେ କୃଷି, ଶିଳ୍ପ, ବାଣିଜ୍ୟାଦି ଚରମ ଉନ୍ନତି ଲାଭ କଲା । ଶଠ ଦସ୍ୟୁ ତସ୍କରାଦି ଉଷାଗମରେ ଅନ୍ଧକାର ତୁଲ୍ୟ ରାଜ୍ୟରୁ ବିଦୂରିତ ହେଲେ । ରୋଗ, ଶୋକ, ଅପମୃତ୍ୟୁ ଅଯୋଧ୍ୟାର ପ୍ରଜାମାନଙ୍କ ନିକଟରେ ପ୍ରବେଶ କରି ପାରିଲା ନାହିଁ । ରାଜ୍ୟର ସର୍ବତ୍ର ଶାନ୍ତି, ସନ୍ତୋଷ ଓ ସଦ୍‌ଭାବ ବିରାଜମାନ କଲା । ରାମଚନ୍ଦ୍ରଙ୍କ ରାଜତ୍ୱରେ ପ୍ରଜାମାନେ ଏତେ ସୁଖସ୍ୱାଚ୍ଛନ୍ଦ୍ୟରେ ଥିଲେ ଯେ ଏପର୍ଯ୍ୟନ୍ତ ସୁଦ୍ଧା "ରାମରାଜ୍ୟ" ସୁଶାସନର ଉଦାହରଣସ୍ୱରୂପ ହୋଇ ରହିଅଛି ।

ସୀତା ଦେବୀ ବର୍ତ୍ତମାନ ରାଜମହିଷୀ । ସ୍ୱାମୀ ସମଗ୍ର ସାମ୍ରାଜ୍ୟର ଅଧୀଶ୍ୱର, ଭ୍ରାତୃବୃନ୍ଦ, ଅମାତ୍ୟବୃନ୍ଦ ଓ ଶତଶତ ରାଜା ରାମଙ୍କର ଅନୁଗତ; ରାମଚନ୍ଦ୍ର ନିଜେ ସୁଖ୍ୟାତି ସହିତ ରାଜ୍ୟଶାସନ ଓ ପ୍ରଜାପାଳନ କରୁଅଛନ୍ତି, ଏହାଠାରୁ ବଳି ଗୌରବର ବିଷୟ ଆଉ କଣ ଅଛି ? କିନ୍ତୁ ଏତେ ବଡ଼ ଗୌରବର ଅଧିକାରିଣୀ ହୋଇ ସୁଦ୍ଧା ତାଙ୍କ ମନରେ ଟିକିଏ ମାତ୍ର ଅହଙ୍କାର ନାହିଁ । ବିପୁଳ ଐଶ୍ୱର୍ଯ୍ୟଭୋଗ ପରିତ୍ୟାଗ

କଣ ଦାରୁଣ ଅରଣ୍ୟବାସକ୍ଲେଶରେ ସୀତାଙ୍କ ଜୀବନରେ ଯେପରି କିଛି ପରିବର୍ତ୍ତନ ଲକ୍ଷିତ ହୋଇ ନ ଥିଲା, ବର୍ତ୍ତମାନ ରାଜମହିଷୀ ହୋଇ ମଧ୍ୟ ତାଙ୍କର ସେ ମଧୁର ଓ ପବିତ୍ର ସ୍ୱଭାବରେ କିଛିମାତ୍ର ପରିବର୍ତ୍ତନ ନାହିଁ । ସେ ସ୍ୱାମୀ ଓ ଶ୍ୱଶ୍ରୂବୃନ୍ଦଙ୍କର ଯେପରି ସେବା-ପରାୟଣା ଥିଲେ, ଦାସଦାସୀ ଓ କୁଟୁମ୍ବ ପରିଜନମାନଙ୍କର ସନ୍ତୋଷ-ବିଧାନରେ ସେହିପରି ତତ୍ପର ଥିଲେ ।

ଏହିପରି କିଛିଦିନ ଅତିବାହିତ ହେଲା ପରେ ସମସ୍ତେ ବୁଝି ପାରିଲେ ସେ ସୀତା ଦେବୀ ପ୍ରଜାବତୀ ହୋଇଅଛନ୍ତି । ଏ ସମ୍ବାଦ ପାଇ ଅଯୋଧ୍ୟାବାସୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ପୌତ୍ରମୁଖଦର୍ଶନ ଆଶାରେ ଉତ୍ଫୁଲ୍ଲ ହୋଇ ବୃଦ୍ଧା ମହିଷୀଙ୍କର ଭୂମିରେ ପାଦ ପଡ଼ିଲା ନାହିଁ । ସୀତାଙ୍କ ପ୍ରତି ରାମଚନ୍ଦ୍ରଙ୍କର ଅନୁରାଗ ଯେପରି ଆହୁରି ଘନୀଭୂତ ହୋଇ ଉଠିଲା । ସେ ବିବିଧ ଉପାୟରେ ସୀତାଙ୍କର ମନୋରଞ୍ଜନ କରିବାକୁ ଲାଗିଲେ । ଦିନେ ରାମଚନ୍ଦ୍ର ସୀତାଙ୍କୁ ଅଙ୍କରେ ଧାରଣ କରି ପଚାରିଲେ, "ପ୍ରିୟେ, ତୁମ୍ଭର ବର୍ତ୍ତମାନ କଣ ଇଚ୍ଛା ହେଉଛି, ନିଃସଙ୍କୋଚରେ ମତେ କୁହ ।" ବ୍ରୀଡ଼ାବନତମୁଖୀ ସୀତା ମୃଦୁହାସ୍ୟ କରି କହିଲେ, "ନାଥ, ବର୍ତ୍ତମାନ ତପସ୍ୱିମାନଙ୍କର ପବିତ୍ର ଆଶ୍ରମକୁ ଗମନ କରି ବନର ଶୋଭା ଦର୍ଶନ କରିବାକୁ ଓ ଋଷିପତ୍ନୀମାନଙ୍କ ସହିତ କଥୋପକଥନ କରିବାକୁ ମୋର ଅତ୍ୟନ୍ତ ଇଚ୍ଛା ହେଉଅଛି ।" ପ୍ରିୟତମାଙ୍କର ଏହି ସରଳ ପ୍ରାର୍ଥନା ଶୁଣି ରାମଚନ୍ଦ୍ର ପୁଲକିତ ମନରେ ସମ୍ମତି ପ୍ରଦାନ କଲେ ଓ ପରଦିନ ସୀତାଙ୍କର ତପୋବନ-ଯାତ୍ରାର ଆଦେଶ ଦେଇ କାର୍ଯ୍ୟାନ୍ତରରେ ଗମନ କଲେ । ସୀତା ମଧ୍ୟ ସ୍ୱାମୀଙ୍କ କଥା ଶୁଣି ପରମ ଆନନ୍ଦିତା ହୋଇ ଯାତ୍ରାର ଆୟୋଜନ କରିବାକୁ ଲାଗିଲେ ।

ପ୍ରଜାମାନଙ୍କର ସୁଖ ଦୁଃଖ, ଅଭାବ ଅଭିଯୋଗ ଓ ରାଜ୍ୟଶାସନ ସମ୍ବନ୍ଧରେ ସେମାନଙ୍କର ମନର ଭାବ ଗୋପନରେ ଅବଗତ ହେବା ନିମନ୍ତେ ରାମଚନ୍ଦ୍ର ବିଶ୍ୱାସୀ ଗୁପ୍ତଚର ନିଯୁକ୍ତ କରିଥିଲେ । ସେମାନେ ପ୍ରତିଦିନ ଯାହା ଦେଖୁଥିଲେ ବା ଶୁଣୁଥିଲେ, ତାହା ଆସି ରାଜସନ୍ନିଧାନରେ ନିବେଦନ କରୁଥିଲେ । ସେ ଦିନ ରାମଚନ୍ଦ୍ର ସୀତାଙ୍କ ମନ୍ଦିରରୁ ବହିର୍ଗତ ହୋଇ ଶୁଣିଲେ ସେ ଦୁର୍ମୁଖ ନାମକ ଗୁପ୍ତଚର ତାଙ୍କୁ ଅପେକ୍ଷା କରି ରହିଅଛି । ରାମଚନ୍ଦ୍ର ତତ୍କ୍ଷଣାତ୍ ଦୁର୍ମୁଖକୁ ନିଭୃତ କକ୍ଷକୁ ଡକାଇ ପ୍ରଶ୍ନ କଲେ, "ଆଜିର ସମ୍ବାଦ କଣ ?" ଦୁର୍ମୁଖ କୃତାଞ୍ଜଳି-ପୁଟରେ କହିଲା, "ପ୍ରଭୁ, ସମସ୍ତେ ଏକମୁଖରେ କହୁଛନ୍ତି ସେ ଆପଣଙ୍କ ଶାସନପାଳନ ଗୁଣରେ ସମସ୍ତେ ପରମସୁଖରେ ବାସ କରୁଅଛନ୍ତି ।"

ରାମଚନ୍ଦ୍ର କହିଲେ, "ଦୂତ, ତୁମ୍ଭେ ପ୍ରତିଦିନ ମୋର ପ୍ରଶଂସା କୀର୍ତ୍ତନ କର, କିନ୍ତୁ କେବଳ ପ୍ରଶଂସା ଶୁଣିବା ନିମନ୍ତେ ମୁଁ ତୁମ୍ଭଙ୍କୁ ନିଯୁକ୍ତ କରି ନାହିଁ। ଯଦି କେହି ମୋର କୌଣସି ତ୍ରୁଟି ବା ଦୋଷ ଉଲ୍ଲେଖ କରୁଥାନ୍ତି, ତେବେ କହ, ମୁଁ ତାହାର ପ୍ରତିକାରର ଉପାୟ କରିବି।"

ଏହି କଥା ଶୁଣି ଦୁର୍ମୁଖର ମୁଖ ଶୁଷ୍କ ହୋଇଗଲା। ସେ କିଛିଏ ଇତସ୍ତତଃ କରିବାରୁ ରାମଚନ୍ଦ୍ର ବୁଝି ପାରିଲେ ଯେ ସେ କୌଣସି କଥା ଗୋପନ କରୁଅଛି। ତହୁଁ ସେ କହିଲେ, "ମୁଁ ତୁମ୍ଭଙ୍କୁ ଅଭୟ ପ୍ରଦାନ କରୁଅଛି, ତୁମ୍ଭେ କିଛି ଗୋପନ ନ କରି ସତ୍ୟକଥା କହ। ଯେତେ ଅପ୍ରିୟ କଥା ହେଲେ ସୁଦ୍ଧା ମୁଁ ତୁମ୍ଭ ପ୍ରତି କଦାପି ଅସନ୍ତୁଷ୍ଟ ହେବି ନାହିଁ।"

ଦୁର୍ମୁଖ କାତର ହୋଇ କହିଲା, "ମୋର ଅପରାଧ ଗ୍ରହଣ କରିବେ ନାହିଁ। ଆପଣଙ୍କ ଆଦେଶାନୁସାରେ ମୁଁ ଯାହା ଶୁଣିଅଛି, କହୁଅଛି। ମହାରାଜ! ପ୍ରଜାମାନେ ସମସ୍ତେ ଏକମୁଖରେ ଆପଣଙ୍କ ରାଜଧର୍ମର ପ୍ରଶଂସା କରୁଅଛନ୍ତି। କିନ୍ତୁ କେହି କେହି ରାଜମହିଷୀଙ୍କ କଥା ଉଲ୍ଲେଖ କରି କେତେ କଥା କହନ୍ତି। ସେମାନେ କହନ୍ତି, 'ଦୁର୍ବୃତ୍ତ ରାବଣ ରାଜମହିଷୀଙ୍କୁ ହରଣ କରି ନେଇ ଦୀର୍ଘକାଳ ନିଜ ଗୃହରେ ଏକାକିନୀ ରଖିଥିଲା, ଅଥଚ ମହାରାଜ ନିଃସଙ୍କୋଚରେ ତାଙ୍କୁ ପୁନରି ଗ୍ରହଣ କଲେ। ଆମ୍ଭେମାନେ ବୁଝି ପାରୁ ନାହୁଁ। ଏହାଦ୍ୱାରା କି କୁଦୃଷ୍ଟାନ୍ତ ପ୍ରଦର୍ଶନ କରାଗଲା ନାହିଁ ? ରାଜା ଯେପରି କରନ୍ତି, ପ୍ରଜାମାନେ ତାହାର ଅନୁକରଣ କରନ୍ତି। ମହାରାଜ ଯେଉଁ ବ୍ୟବସ୍ଥା ପ୍ରଚଳନ କଲେ, ଏଣିକି ଆମ୍ଭମାନଙ୍କୁ ମଧ୍ୟ ତଦନୁସାରେ ଚଳିବାକୁ ହେବ।' ମହାରାଜ! ମୁଁ ପ୍ରଜାମାନଙ୍କ ମୁଖରୁ ଯାହା ଶୁଣିଥିଲି, ତାହା ନିବେଦନ କଲି। ମୋର ଅପରାଧ କ୍ଷମା କରିବେ। ବର୍ତ୍ତମାନ ମୁଁ ବୁଝି ପାରୁଅଛି, କି ବିଷମ କାର୍ଯ୍ୟଭାର ମୁଁ ଗ୍ରହଣ କରିଅଛି।" ଏହା କହି ଦୁର୍ମୁଖ ସେଠାରୁ କ୍ଷୁଣ୍ଣ ଚିତ୍ତରେ ପ୍ରସ୍ଥାନ କଲା।

ଦୂତ ନିଷ୍କ୍ରାନ୍ତ ହେଲା ପରେ ରାମଚନ୍ଦ୍ର ଆଉ ଧୈର୍ଯ୍ୟ ରକ୍ଷା କରି ପାରିଲେ ନାହିଁ। ତାଙ୍କର ଶୋକର ବେଗ ପ୍ରବଳ ହୋଇ ଉଠିଲା। ସେ ନିଜକୁ ଅତ୍ୟନ୍ତ ମନ୍ଦଭାଗ୍ୟ ମନେ କରି ଅବିରଳ ଧାରାରେ ଅଶ୍ରୁପାତ କରିବାକୁ ଲାଗିଲେ। ଅଳ୍ପବୁଦ୍ଧି ପ୍ରଜାମାନେ ସୀତାଙ୍କର ମହତ୍ତ୍ୱ ବୁଝି ନ ପାରି ତାଙ୍କର ନିଷ୍କଳଙ୍କ ଚରିତ୍ରରେ କୁତ୍ସିତ କଳଙ୍କ ଆରୋପ କରିଅଛନ୍ତି, ଏହା ଭାବିଲା ବେଳକୁ ତାଙ୍କ ହୃଦୟରେ ଶେଲ ବିଦ୍ଧ ହୋଇଗଲା। ସଂସାର ତାଙ୍କୁ ଅନ୍ଧକାର ବୋଧ ହେଲା। ସେ ଭାବିଲେ, "ହାୟ! କି କୁକ୍ଷଣରେ ମୁଁ ପ୍ରଜାପାଳନରୂପ କଠୋରବ୍ରତ ଗ୍ରହଣ କରିଥିଲି! ହୃଦୟ

କ୍ଷତବିକ୍ଷତ ହୋଇଗଲେ ସୁଦ୍ଧା ମତେ କର୍ତ୍ତବ୍ୟପାଳନ କରିବାକୁ ହେବ । ଆଉ ଏ କ୍ଷେତ୍ରରେ ରାଜାର କର୍ତ୍ତବ୍ୟ ପାଳନ କରିବାକୁ ହେଲେ ଅନପରାଧିନୀ ସୀତାଙ୍କୁ ପରିତ୍ୟାଗ କରିବା ଛଡ଼ା ଆଉ କି ଉପାୟ ଅଛି ? ବିଧାତା କିଏ ସେ ଅଭାଗିନୀର ଭାଗ୍ୟରେ ଟିକିଏ ହେଲେ ସୁଦ୍ଧା ସୁଖରେଖ ଲେଖି ନାହାନ୍ତି ? ପୁଣି ମତେହିଁ ମୋର ହୃଦୟ-ପ୍ରତିମା ଉପରେ ଏ କଠୋର ବଜ୍ର ପ୍ରହାର କରିବାକୁ ହେବ । ଉଃ ! କି କଠିନ, ନିର୍ମମ ରାଜାର ହୃଦୟ; କି ଯନ୍ତ୍ରଣା ଶୋଚନୀୟ ରାଜାର ଜୀବନ !'' ରାମଚନ୍ଦ୍ର ଆଉ ଭାବି ପାରିଲେ ନାହିଁ—ତାଙ୍କର ମସ୍ତକ ଘୂର୍ଣ୍ଣିତ ହୋଇଗଲା ।

କିଛିକ୍ଷଣ ପରେ ରାମଚନ୍ଦ୍ର ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କୁ ଆହ୍ୱାନ କରିବା ନିମନ୍ତେ ପ୍ରତିହାରୀଙ୍କୁ ଆଦେଶ ଦେଲେ । ସେମାନେ ଆଦେଶ ଶ୍ରବଣ ମାତ୍ରେ ସେଠାରେ ଉପସ୍ଥିତ ହୋଇ ରାମଚନ୍ଦ୍ରଙ୍କ ଅବସ୍ଥା ଦେଖି ସ୍ତମ୍ଭିତ ହୋଇ ରହିଲେ । ଯେଉଁ ଚିରପ୍ରସନ୍ନ ଗମ୍ଭୀର ମୁଖରେ କେହି କେବେ କୌଣସି ଭାବବୈଲକ୍ଷଣ୍ୟ ବା ବ୍ୟାକୁଳତାର ଚିହ୍ନ ଦେଖି ନାହିଁ, ସେହି ମୁଖ ଆଜି ଗଭୀର ବିଷାଦର ଛାୟାରେ ମଳିନ । ରାମଚନ୍ଦ୍ର ସାମାନ୍ୟ ଲୋକପରି ଭୂମିତଳରେ ବସି ଅଶ୍ରୁ ବିସର୍ଜ୍ଜନ କରୁଅଛନ୍ତି; ତାଙ୍କର ଶରୀର ଶୀର୍ଣ୍ଣ, ଚକ୍ଷୁଦ୍ୱୟ କୋଟରଗତ । ଭ୍ରାତୃତ୍ରୟଙ୍କୁ ଦେଖି ତାଙ୍କର ଶୋକ-ସିନ୍ଧୁ ଉଦ୍‌ବେଳ ହୋଇ ଉଠିଲା । ସେ ଆତୁର କୋହର ସହିତ ରୋଦନ କରିବାକୁ ଲାଗିଲେ । ଅଗ୍ରଜଙ୍କର ଏପରି ଭାବ ଦେଖି ଭ୍ରାତୃବୃନ୍ଦ ହତବୁଦ୍ଧି ହୋଇ ରହିଲେ । ସାହସ କରି କେହି ଗୋଟିଏ କଥା ସୁଦ୍ଧା ପଚାରି ପାରିଲେ ନାହିଁ । ଶେଷରେ ରାମଚନ୍ଦ୍ର କିଞ୍ଚିତ୍ ଧୈର୍ଯ୍ୟାବଲମ୍ବନ କରି ଦୁର୍ମୁଖଠାରୁ ଯାହା ଯାହା ଶ୍ରବଣ କରିଥିଲେ, ସେମାନଙ୍କ ନିକଟରେ ସମସ୍ତ ବ୍ୟକ୍ତ କରି କହିଲେ, "ଭ୍ରାତୃଗଣ, ମୁଁ ଯେତେବେଳେ ପ୍ରଜାନୁରଞ୍ଜନବ୍ରତ ଗ୍ରହଣ କରିଅଛି, ଯହିଁରେ ପ୍ରଜାମାନଙ୍କର କୌଣସି ପ୍ରକାର ଅସନ୍ତୋଷ ଜାତ ନ ହୁଏ, ତାହା କରିବା ମୋର ଏକାନ୍ତ କର୍ତ୍ତବ୍ୟ । ସୀତାଙ୍କ ସମ୍ବନ୍ଧରେ ଲୋକମାନଙ୍କ ମନର ଧାରଣା ଯେତେବେଳେ ଏପରି, ମୁଁ ସୀତାଙ୍କୁ ପରିତ୍ୟାଗ କରିବାର ମନସ୍ଥ କରିଅଛି । ଏହା ଛଡ଼ା ଅନ୍ୟ କିଛି ଉପାୟ ଦେଖି ପାରୁ ନାହିଁ । ତୁମ୍ଭମାନଙ୍କର ଏଥିରେ ମତ କଣ ?''

ରାମଚନ୍ଦ୍ରଙ୍କ ବାକ୍ୟ ଶ୍ରବଣ କରି ଭ୍ରାତୃତ୍ରୟ ବଜ୍ରାହତ ପରି ଚକିତ ହୋଇ ରହିଲେ । ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ରାମଚନ୍ଦ୍ରଙ୍କ ମୁଖରୁ ଏପରି ନିଦାରୁଣ ବାଣୀ ନିଃସୃତ ହେବ । ଶେଷରେ ଲକ୍ଷ୍ମଣ କହିଲେ, "ଆର୍ଯ୍ୟ, ମୁଁ କୌଣସି ଦିନ ଆପଣଙ୍କ କଥାର ପ୍ରତିବାଦ କରି ନାହିଁ । କିନ୍ତୁ ଆଜି ଏ କି ଆଦେଶ କରୁଅଛନ୍ତି ? ଆପଣଙ୍କର ସ୍ୱଭାବତଃ କୋମଳ ହୃଦୟ ସହସା ଏପରି କଠିନ ହୋଇ

ଘଟିଲା କିପରି ? ସୀତାଦେବୀ ଅସଂଖ୍ୟ ଦୁଃଖନିର୍ଯ୍ୟାତନ ସହ୍ୟ କରିଅଛନ୍ତି । ତାହା ଉପରେ ଏପରି ଆଦେଶ ଦେଲେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଯିବ । ଲଙ୍କାରେ ସୀତାଦେବୀଙ୍କର ବିଶୁଦ୍ଧିକର ଅଗ୍ନିପରୀକ୍ଷା ବିଷୟ କାହାରିକୁ ଅଗୋଚର ନାହିଁ । ପରନିନ୍ଦା ପରକୁତ୍ସା ଯେଉଁମାନଙ୍କର ବ୍ୟବସାୟ, କେବଳ ଏହି ଶ୍ରେଣୀର କେତେକ ଲୋକ ଏ ମିଥ୍ୟା ଅପବାଦ ପ୍ରଚାର କରିଅଛନ୍ତି । ଯେ ଯାହା କହିବ ତାହା ଶୁଣି ବିଚଳିତ ହେଲେ ସଂସାରରେ ବାସ କରିବା ଅସମ୍ଭବ ହେବ । ଅତଏବ ମୋ ବିବେଚନାରେ ଏସବୁ ଅଳୀକ ଓ ଅସାର କଥାରେ କର୍ଣ୍ଣପାତ କରିବା ସଙ୍ଗତ ନୁହେଁ ।"

ରାମଚନ୍ଦ୍ର କହିଲେ "ଭାଇ ଲକ୍ଷ୍ମଣ, ତୁମ୍ଭେ ଯାହା କହିଲେ ମୁଁ ତାହା ଚିନ୍ତା କରି ଦେଖିଅଛି । ମୁଁ ଜାଣେ, ସୀତାଙ୍କୁ ପରିତ୍ୟାଗ କଲେ ମୋର ହୃତ୍‌ପିଣ୍ଡ ଛିନ୍ନ ହୋଇଯିବ । କିନ୍ତୁ ଉପାୟାନ୍ତର ନାହିଁ । ମୋତେ ରାଜଧର୍ମ ପାଳନ କରିବାକୁ ହେବ । ବିଧାତା ଆମ୍ଭମାନଙ୍କୁ ମହତ୍ କୁଳରେ ଜନ୍ମ ଦେଇ-ଅଛନ୍ତି । ସେହି ଉଚ୍ଚବଂଶକୁ ଯେପରି ଅକୀର୍ତ୍ତି ବା କଳଙ୍କ ସ୍ପର୍ଶ ନ କରେ ତାହା କରିବା ଆମ୍ଭମାନଙ୍କର ସର୍ବଥା ବିଧେୟ । ସୀତାଙ୍କର କଥା କଣ, ଅପବାଦ ଭୟରେ ମୁଁ ନିଜର ପ୍ରାଣ ଏପରି କି ତୁମ୍ଭମାନଙ୍କୁ ସୁଦ୍ଧା ପରିତ୍ୟାଗ କରି ପାରେଁ । ଲକ୍ଷ୍ମଣ, ତୁମ୍ଭେ ଆଉ କିଛି ଆପତ୍ତି କର ନାହିଁ । ସୀତା ଆଜି ତପୋବନ ଦର୍ଶନର ଇଚ୍ଛା ପ୍ରକାଶ କରିଥିଲେ । ମୁଁ ମଧ୍ୟ କାଲି ତାଙ୍କୁ ତପୋବନ ଭ୍ରମଣ ନିମନ୍ତେ ପଠାଇବାକୁ ପ୍ରତିଶ୍ରୁତ ହୋଇଅଛି । ଘଟନାକ୍ରମେ ଏଥି ମଧ୍ୟରେ ଏପରି ବିଧି-ବିଡ଼ମ୍ବନା ଉପସ୍ଥିତ ହୋଇଅଛି । ଅତଏବ କାଲି ରାତ୍ରି ପ୍ରଭାତ ହେବା ପୂର୍ବରୁ ସୀତାଙ୍କୁ ବନଭ୍ରମଣ ବ୍ୟପଦେଶରେ ନେଇ କୌଣସି ତପୋବନରେ ପରିତ୍ୟାଗ କରି ଆସିବାର ଭାର ତୁମ୍ଭ ଉପରେ ଅର୍ପଣ କଲି । ତୁମ୍ଭେ ମୋର ଓ ସୀତାଙ୍କର ହୃଦୟ ଭଲରୂପେ ଜାଣ । ତୁମ୍ଭକୁ ମୁଁ ଆଉ ବେଶି କଣ କହିବି ? ଯେପରି ଭାବରେ ମୋର ଅଭିପ୍ରାୟ ତାଙ୍କୁ ଜଣାଇବା ତୁମ୍ଭେ ଉଚିତ ମନେ କର, ସେହିପରି କର ।"

ଏହା କହି ରାମଚନ୍ଦ୍ର ଅବିରଳ ଧାରରେ ଅଶ୍ରୁ ବର୍ଷଣ କରି କକ୍ଷାନ୍ତରରେ ପ୍ରବେଶ କଲେ । ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ମଧ୍ୟ ଶୋକସନ୍ତପ୍ତହୃଦୟରେ ସେ ସ୍ଥାନରୁ ପ୍ରସ୍ଥାନ କଲେ ।

ପ୍ରଭାତ ହେବା ମାତ୍ରେ ପୂର୍ବନିର୍ଦ୍ଦେଶ ଅନୁସାରେ ସୁମନ୍ତ୍ର ରଥସଜ୍ଜିତ କରି ଦ୍ୱାରଦେଶରେ ଉପନୀତ ହେଲେ । ଲକ୍ଷ୍ମଣ ବହୁକଷ୍ଟରେ ମନୋଭାବ ଗୋପନ କରି ଖିନ୍ନକାନ୍ତ ହୃଦୟରେ ସୀତାଙ୍କ ମନ୍ଦିରରେ ଉପସ୍ଥିତ ହୋଇ ଦେଖିଲେ, ସେ

ମୁନିପତ୍ନୀମାନଙ୍କୁ ଦେବା ନିମନ୍ତେ ନାନା ପ୍ରକାର ସାମଗ୍ରୀ ପ୍ରସ୍ତୁତ କରି ବସିଥିଲେ । ଲକ୍ଷ୍ମଣଙ୍କୁ ଦେଖି ଓ ସେ ତାଙ୍କ ସହିତ ତପୋବନକୁ ଯିବାର ସମ୍ବାଦ ପାଇ ସୀତାଙ୍କର ଆନନ୍ଦରେ ସୀମା ରହିଲା ନାହିଁ । ଅନତିବିଳମ୍ବରେ ସୀତାଦେବୀ ଲକ୍ଷ୍ମଣଙ୍କ ସହିତ ରଥରେ ଆରୋହଣ କଲେ ।

ଦେଖୁ ଦେଖୁ ରଥ ଅଯୋଧ୍ୟାନଗରୀ ଅତିକ୍ରମ କରି ବନଭୂମିରେ ପ୍ରବେଶ କଲା । ଶସ୍ୟଶ୍ୟାମଳ କ୍ଷେତ୍ର, କୁସୁମିତ ତରୁଲତା, ଉଦ୍ୟାନ, ସରୋବର ପ୍ରଭୃତିର ପ୍ରାକୃତିକ ଶୋଭା ଦର୍ଶନ କରି ସୀତାଙ୍କ ହୃଦୟ ପୁଲକିତ ହୋଇ ଉଠିଲା । ସେ ଗୋଟି ଗୋଟି କରି ନାନାପଦାର୍ଥ ଆଡ଼କୁ ଲକ୍ଷ୍ମଣଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଲାଗିଲେ ଓ ଲକ୍ଷ୍ମଣଙ୍କର ସେତେବେଳେ ସୌନ୍ଦର୍ଯ୍ୟ ଅନୁଭବ କରିବାର ଅବସ୍ଥା ନ ଥିଲେହେଁ ସେ ହୃଦୟର ଭାବ ଗୋପନ କରି ସୀତାଙ୍କ କଥାର ପ୍ରତିଧ୍ୱନି କରିବାକୁ ଲାଗିଲେ ।

ସେଦିନ ସେମାନେ ଗୋମତୀ ତୀରରେ ରାତ୍ରି ଯାପନ କରି ପରଦିନ ଭାଗୀରଥୀ ତଟରେ ଉପନୀତ ହେଲେ । ଭାଗୀରଥୀ ଦର୍ଶନ କରି ଲକ୍ଷ୍ମଣ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ । ଏହି ନଦୀର ପରପାରରେ ସୀତାଦେବୀଙ୍କୁ ବିସର୍ଜନ କରି ଫେରିବାକୁ ହେବ, ଏ କଥା ଭାବିଲାବେଳକୁ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ଯେଉଁ ଶୋକାବେଗକୁ ସେ ବହୁକଷ୍ଟରେ ସଂଯତ କରି ରଖିଥିଲେ, ତାହା ଦ୍ୱିଗୁଣ ବେଗରେ ଉଚ୍ଛ୍ୱାସିତ ହୋଇ ଉଠିଲା । ଅଶ୍ରୁଜଳରେ ତାଙ୍କର ବକ୍ଷସ୍ଥଳ ପ୍ଲାବିତ ହୋଇଗଲା । ସହସା ଏପରି ଭାବବିପର୍ଯ୍ୟୟ ଦେଖି ସୀତାଙ୍କ ମନରେ ନାନା ଆଶଙ୍କା ଜାତ ହେଲା । ଲକ୍ଷ୍ମଣଙ୍କୁ ଏହାର କାରଣ ପଚାରିବାରୁ ସେ ଆତ୍ମସମ୍ବରଣ କରି କହିଲେ, "ନା, କିଛି ନୁହେଁ, ଜାହ୍ନବୀ ଦର୍ଶନରେ ପୂର୍ବସ୍ମୃତି ମନରେ ଉଦିତ ହେବାରୁ ମୁଁ ଟିକିଏ ବିଚଳିତ ହୋଇ ପଡ଼ିଥିଲି । ଆପଣଙ୍କର ବ୍ୟସ୍ତ ହେବାର କିଛି କାରଣ ନାହିଁ ।" ଏହା କହି ଲକ୍ଷ୍ମଣ ନଦୀ ପାର ହେବାର ବ୍ୟବସ୍ଥା କରିବାକୁ ଲାଗିଲେ ।

ନୌକା ଆନୀତ ହେବାରୁ ଲକ୍ଷ୍ମଣ ସୀତାଦେବୀଙ୍କ ସହିତ ଗଙ୍ଗା ଉତ୍ତୀର୍ଣ୍ଣ ହେଲେ । ନଦୀର ଅପର ପାର୍ଶ୍ୱରେ ପଦାର୍ପଣ କଲାମାତ୍ରେ ଲକ୍ଷ୍ମଣ ଆଉ କୌଣସି ପ୍ରକାରେ ନିଜକୁ ଆୟତ୍ତ କରି ପାରିଲେ ନାହିଁ । ତାଙ୍କର ରୁଦ୍ଧ ଶୋକୋଚ୍ଛ୍ୱାସ ପ୍ରବଳ ଆକାର ଧାରଣ କଲା । ଲକ୍ଷ୍ମଣ ସୀତାଙ୍କ ପାଦମୂଳରେ ନିପତିତ ହୋଇ ବାଳକ ତୁଲ୍ୟ ରୋଦନ କରିବାକୁ ଲାଗିଲେ । ଲକ୍ଷ୍ମଣଙ୍କର ଏ ଅବସ୍ଥା ଦେଖି ସୀତାଙ୍କ ମନରେ ଅତ୍ୟନ୍ତ ଭୀତିର ସଞ୍ଚାର ହେଲା । ସେ ବ୍ୟାକୁଳ ହୋଇ ଲକ୍ଷ୍ମଣଙ୍କୁ ପଚାରିଲେ,

"ବତ୍ସ ! ମୋ ନିକଟରେ ସମସ୍ତ କଥା ପ୍ରକାଶ କରି କହ । ତୁମର ଏ ଭାବ ଦେଖି ମୋ ମନରେ ନାନା ସନ୍ଦେହ ଓ ଆଶଙ୍କା ଜାଗ୍ରତ ହେଉଅଛି । କି ଅନିଷ୍ଟପାତ ହୋଇଅଛି ଶୀଘ୍ର ମୋତେ କହି ସଂଶୟ ଦୂର କର ।" ଲକ୍ଷ୍ମଣ କହିଲେ, "କେଉଁ ମୁଖରେ ମୁଁ ସେ କଥା ଆପଣଙ୍କ ନିକଟରେ ପ୍ରକାଶ କରିବି ? ଏହା ପୂର୍ବରୁ ମୋର ମରଣ ହେଲା ନାହିଁ କାହିଁକି ? ଆପଣ ଦୀର୍ଘକାଳ ଏକାକିନୀ ରାବଣ ଗୃହରେ ଥିବାରୁ ପ୍ରଜାମାନେ ଆପଣଙ୍କ ଚରିତ୍ର ସମ୍ବନ୍ଧରେ ନାନା ମିଥ୍ୟା କଳଙ୍କ ରଚନା କରିଅଛନ୍ତି । ମହାରାଜ ଏହା ଶ୍ରବଣ କରି ଲୋକନିନ୍ଦା ଏହି ଅନ୍ୟାୟ ଭୟରେ ଆପଣଙ୍କୁ ପରିତ୍ୟାଗ କରିବାକୁ ମୋ ପ୍ରତି ଆଦେଶ କରିଅଛନ୍ତି । ମହାରାଜଙ୍କୁ ଆପଣଙ୍କ ପବିତ୍ର ସ୍ୱଭାବ ଉତ୍ତମରୂପେ ଜଣା, କେବଳ ଅପବାଦ ମୋଚନାର୍ଥେ ସେ ଆପଣଙ୍କୁ ନିର୍ମମ ଭାବରେ ପରିତ୍ୟାଗ କରିଅଛନ୍ତି । ମୁଁ ଆଜ୍ଞାବହ ମାତ୍ର, ମୋର ଅପରାଧ ଗ୍ରହଣ କରିବେ ନାହିଁ । ମହର୍ଷି ବାଲ୍ମୀକିଙ୍କର ଏହି ଆଶ୍ରମ । ମହର୍ଷି ଆମ୍ଭମାନଙ୍କର ପିତା ଓ ଆପଣଙ୍କର ପିତା ଶ୍ୱଶୁରଙ୍କର ବନ୍ଧୁ । ତାଙ୍କ ଆଶ୍ରମରେ ରହିଲେ ଆପଣଙ୍କର କୌଣସି କଷ୍ଟ ହେବ ନାହିଁ ।" ଏତିକି ମାତ୍ର କହି ଲକ୍ଷ୍ମଣ ବ୍ୟାକୁଳ ଭାବରେ କ୍ରନ୍ଦନ କରିବାକୁ ଲାଗିଲେ ।

ଲକ୍ଷ୍ମଣଙ୍କ ମୁଖରୁ ଏହି ନିଦାରୁଣ ବାକ୍ୟ ଶ୍ରବଣ କରି ସୀତାଦେବୀ ଶୋକ-ବିମୂର୍ଚ୍ଛିତା ହୋଇ ଭୂତଳରେ ପତିତ ହେଲେ । ସମସ୍ତ ଜଗତ୍ ତାହାଙ୍କୁ ପ୍ରହେଳିକା-ତୁଲ୍ୟ ପ୍ରତୀୟମାନ ହେଲା । କ୍ଷଣକାଳ ପରେ ବହୁ କଷ୍ଟରେ ଉତ୍ତର ଅଧୀରତା ଦମନ କରି ଲକ୍ଷ୍ମଣଙ୍କୁ କହିଲେ, "ବତ୍ସ ! ବିଧିଲିପି ଖଣ୍ଡନ କରିବା କାହାରି ସାଧ୍ୟ ନୁହେଁ । କେବଳ ଦୁଃଖଭୋଗ ନିମନ୍ତେ ବିଧାତା ମୋତେ ସୃଷ୍ଟି କରିଅଛନ୍ତି । ମୁଁ ପୂର୍ବଜନ୍ମରେ ନିଶ୍ଚୟ କୌଣସି ପତିବ୍ରତା ରମଣୀକୁ ସ୍ୱାମୀ-ବିଚ୍ଛେଦଦୁଃଖ ପ୍ରଦାନ କରିଥିଲି । ନ ହେଲେ ଇତରଲୋକ ମଧ୍ୟରେ ଯେଉଁ କଷ୍ଟ କେବେ କେହି ପାଇ ନାହିଁ, ରାଜକନ୍ୟା, ରାଜବଧୂ ହୋଇ ମୋ ଭାଗ୍ୟରେ ସେପରି କଷ୍ଟଭୋଗ ଘଟନ୍ତା କାହିଁକି ? ସେତେବେଳେ ରାମଚନ୍ଦ୍ରଙ୍କ ପାର୍ଶ୍ୱରେ ଥିବାରୁ ମୁଁ ଅମ୍ଳାନବଦନରେ ସବୁ ବନବାସଦୁଃଖ ସହ୍ୟ କରିଥିଲି, କିନ୍ତୁ ବର୍ତ୍ତମାନ ଏକାକିନୀ ମୁଁ ଏଠାରେ ରହିବି କିପରି ? ବନବାସର କାରଣ ପଚାରିଲେ କାହାକୁ ବା କି ଉତ୍ତର ଦେବି ? ଏପରି ଘୃଣିତ ଜୀବନ ଅପେକ୍ଷା ମରଣ ଶତଗୁଣରେ ଶ୍ରେୟସ୍କର । ମୋ ଗର୍ଭରେ ମହାରାଜ ରାମଚନ୍ଦ୍ରଙ୍କର ବଂଶଧର ସନ୍ତାନ ଅବସ୍ଥାନ କରୁଅଛନ୍ତି । ନ ହେଲେ ମୁଁ ଏହି ମୁହୂର୍ତ୍ତରେ ତୁମ୍ଭ ସମକ୍ଷରେ ଏ ପାପ ଜୀବନ ବିସର୍ଜନ ଦେଇଥାନ୍ତି । ଛି, ଲକ୍ଷ୍ମଣ, କାନ୍ଦ ନାହିଁ । ସ୍ୱାମୀ ମୋତେ ତ୍ୟାଗ କରିଅଛନ୍ତି ବୋଲି ମୁଁ ତାଙ୍କ ପ୍ରତି ଅସନ୍ତୁଷ୍ଟ ନୁହେଁ । ପ୍ରଜାରଞ୍ଜନ ରାଜଧର୍ମ । ସେହି ରାଜଧର୍ମ ପାଳନ ନିମନ୍ତେ ସେ ମୋତେ ସମ୍ପୂର୍ଣ୍ଣ ନିରପରାଧା ଜାଣି ସୁଦ୍ଧା ପରିତ୍ୟାଗ କରିଅଛନ୍ତି, ଏଥିରେ ବରଂ ମୁଁ ଗୌରବ ଅନୁଭବ କରୁଅଛି । ପତି ନାରୀର ପରମ

ଦେବତା, ପତି ତାହାର ଗୁରୁ, ପତି ତାହାର ବନ୍ଧୁ । ଅତଏବ ତୁଚ୍ଛ ପ୍ରାଣ ଦେଲେ ଯଦି ପତିର ମଙ୍ଗଳ ହୁଏ, ତେବେ ସ୍ତ୍ରୀଲୋକର ତାହା ଏକାନ୍ତ କର୍ତ୍ତବ୍ୟ । ମତେ ତ୍ୟାଗ କରିବା ଦ୍ୱାରା ଯଦି ରାମଚନ୍ଦ୍ରଙ୍କର ଅପଯଶ କ୍ଷାଳିତ ହୁଏ, ତେବେ ମୋର ସେଥିରେ ଦୁଃଖ କରିବାର କିଛି ନାହିଁ । ସେ ଯେ ମୋତେ ଅବିଶ୍ୱାସିନୀ ମନେ କରି ପରିତ୍ୟାଗ କରିଅଛନ୍ତି, ଏ କଥା ମୁଁ ମନରେ ସ୍ଥାନ ଦେଇ ନ ପାରେ । ରାମଚନ୍ଦ୍ରଙ୍କ ନିକଟରେ ମୋର କେବଳ ଗୋଟିଏ ମାତ୍ର ନିବେଦନ ଅଛି -ତାଙ୍କୁ କହିବ ମତେ ରାଜ୍ୟରୁ ନିର୍ବାସିତ କରିଦେଲେ ବୋଲି ଯେପରି ହୃଦୟରୁ ଅନ୍ତର କରି ନ ଦିଅନ୍ତି । ମୋ କଥା ଆଉ କଣ କହିବ, ତାଙ୍କର ସ୍ମୃତିହିଁ ମୋର ଏକମାତ୍ର ସମ୍ବଳ । ମୋର ହୃଦୟ-ସିଂହାସନରେ ସେ ସର୍ବଦା ଅଧିଷ୍ଠିତ । କେବଳ ସେହି ହୃଦୟ-ଦେବତାଙ୍କର ପୂଜାରେ ମୁଁ ଜୀବନର ଅବଶିଷ୍ଟକାଳ ଅତିବାହିତ କରି ଦେବି । ଏହା ଛଡ଼ା ମୋର ଅନ୍ୟ ଗତି ନାହିଁ । ଯାଅ ଲକ୍ଷ୍ମଣ, ଶୀଘ୍ର ଯାଅ । ତୁମ୍ଭଙ୍କୁ ନ ଦେଖି ସେ ବଡ଼ ଅଧୀର ହେଉଥିବେ । ମୋର କେବଳ ତୁମ୍ଭଙ୍କୁ ଗୋଟିଏ ମାତ୍ର ଅନୁରୋଧ ତୁମେ ମୋର ପ୍ରଭୁଙ୍କୁ କଦାପି ଏକାକୀ ରହିବାକୁ ଦେବ ନାହିଁ । ସର୍ବଦା ପାଖେ ପାଖେ ଥାଇ ତାଙ୍କର ମନ ପ୍ରଫୁଲ୍ଲ ରଖିବାକୁ ଚେଷ୍ଟା କରିବ । ସେ ସୁସ୍ଥ ଅଛନ୍ତି, ଜନମୁଖରୁ ଏହି ସମ୍ବାଦ ପାଇଲେ ମୁଁ ବନବାସ ଦୁଃଖ ଅକ୍ଲେଶରେ ସହ୍ୟ କରିବି । ଶ୍ୱଶ୍ରୂ-ମାନଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଇ ଦେବ । ଆଉ କେତେ କଣ କହିବି ? ମୁଁ ଅନ୍ତରର ସହିତ ତୁମ୍ଭଙ୍କୁ ଆଶୀର୍ବାଦ କରୁଅଛି ।'' ଏହା କହି ସୀତାଦେବୀ ରୋଦନ କରିବାକୁ ଲାଗିଲେ । ଶୋକରେ ଲକ୍ଷ୍ମଣଙ୍କ ମୁଖରୁ କିଛି କଥା ବାହାରିଲା ନାହିଁ । ସେ ନୀରବରେ ସୀତାଙ୍କ ଚରଣ ବନ୍ଦନା କରି ଭାଗୀରଥୀକୂଳରେ ଯାଇ ନୌକାରୋହଣ କଲେ । ଅପରପାର୍ଶ୍ୱରେ ନୌକାରୁ ଅବତୀର୍ଣ୍ଣ ହୋଇ ଲକ୍ଷ୍ମଣ ରଥରେ ଆରୋହଣ କଲେ । ରଥ ଅଯୋଧ୍ୟାଭିମୁଖରେ ଯାତ୍ରା କଲା । ଯେତେଦୂର ଦେଖାଗଲା, ସୀତା ସଜଳନୟନରେ ଏକଦୃଷ୍ଟିରେ ରଥ ଆଡ଼କୁ ଅନାଇ ରହିଲେ । ରଥ ଦୃଷ୍ଟିସୀମା ଅତିକ୍ରମ କରିବାରୁ ତାଙ୍କ ଚକ୍ଷୁ ସମକ୍ଷରେ ଜଗତ ଅନ୍ଧକାରମୟ ହୋଇଗଲା । ସେ ଭୂତଳରେ ପଡ଼ି ଉଚ୍ଚୈଃସ୍ୱରରେ ରୋଦନ କରିବାକୁ ଲାଗିଲେ । ସେ ମର୍ମଭେଦୀ ରୋଦନଧ୍ୱନିରେ ଚରାଚର ସ୍ତବ୍ଧ ହୋଇଗଲା. ବୃକ୍ଷ ଲତା ନିଷ୍ପନ୍ଦ ହୋଇ ରହିଲେ, ବନଗୁଳ୍ମ ଜୀବଗଣ ଆହାର ଅନ୍ୱେଷଣରୁ ନିବୃତ୍ତ ହୋଇ ସ୍ଥିର ଦୃଷ୍ଟିରେ ସେହି ଦିଗକୁ ଅନାଇ ରହିଲେ ।

କିଛିକ୍ଷଣ ପରେ ମୁନିକୁମାରମାନେ ବନ ମଧ୍ୟରେ ଭ୍ରମଣ କରୁ କରୁ ସେହି ସ୍ଥାନରେ ଆସି ଉପସ୍ଥିତ ହେଲେ । ସେମାନେ ଅପରୂପ ଲାବଣ୍ୟମୟୀ ରୋରୁଦ୍ୟମାନା ସୀତାଙ୍କୁ କୌଣସି ଦେବକନ୍ୟା ମନେ କରି କିଛି କଥା ପଚାରିବାକୁ ସାହସୀ ହେଲେ

ନାହିଁ । ସେମାନେ ଅନତିବିଳମ୍ବରେ ବାଲ୍ମୀକିଙ୍କ ନିକଟରେ ଉପସ୍ଥିତ ହୋଇ ସମସ୍ତ ବୃତ୍ତାନ୍ତ ନିବେଦନ କଲେ । ମହର୍ଷି ଧ୍ୟାନବଳରେ ସମସ୍ତ ବିଷୟ ଅବଗତ ହୋଇ ତତକ୍ଷଣାତ୍ ଆସି ଭାଗୀରଥୀ ତୀରରେ ଉପନୀତ ହେଲେ । ବାଲ୍ମୀକି ମଧୁରସ୍ୱରରେ ସୀତାଙ୍କୁ କହିଲେ, "ବତ୍ସେ ! ମୁଁ ଯୋଗବଳରେ ତୁମ୍ଭର ଆଗମନ କାରଣ ଓ ଅନ୍ୟାନ୍ୟ ସମସ୍ତ ବୃତ୍ତାନ୍ତ ଅବଗତ ହୋଇଅଛି । ତୁମ୍ଭେ ଯେ ଶୁଦ୍ଧସ୍ୱଭାବା ଓ ସତୀକୁଳାଗ୍ରଗଣ୍ୟା, ତାହା ମୋତେ ଅବିଦିତ ନୁହେଁ । ତୁମ୍ଭେ ଶୋକ ପରିତ୍ୟାଗ କରି ମୋ ସଙ୍ଗରେ ଆସ । ତୁମ୍ଭର ଚରଣସମ୍ପାତରେ ମୋର ଆଶ୍ରମ ପବିତ୍ର ହେଉ । ଏହି ତପୋବନରେ ତାପସୀମାନେ କନ୍ୟାସ୍ନେହରେ ତୁମ୍ଭଙ୍କୁ ପାଳନ କରିବେ । ତୁମେ ନିଶ୍ଚିନ୍ତ ମନରେ ଆସି ସ୍ୱଗୃହତୁଲ୍ୟ ଏହି ଆଶ୍ରମରେ ବାସ କର ।"

ମହର୍ଷିଙ୍କ କଥା ଶୁଣି ସୀତାଦେବୀଙ୍କ ହୃଦୟ କିଞ୍ଚିତ ଆଶ୍ୱସ୍ତ ହେଲା । ସେ ଭକ୍ତିପୂର୍ଣ୍ଣ-ହୃଦୟରେ ମହର୍ଷିଙ୍କ ଚରଣେ ବନ୍ଦନା କରି ତାଙ୍କର ଅନୁଗମନ କରିବାକୁ ଲଗିଲେ । ଆଶ୍ରମରେ ଉପସ୍ଥିତ ହୋଇ ବାଲ୍ମୀକି ମୁନିକନ୍ୟାମାନଙ୍କ ହସ୍ତରେ ସୀତାଙ୍କର ସେବାଶୁଶ୍ରୂଷାଭାର ଅର୍ପଣ କଲେ । ମୁନିକନ୍ୟାମାନେ ସୀତାଙ୍କର ବିଶେଷ ପରିଚୟ ପ୍ରାପ୍ତ ହୋଇ ଓ ତାଙ୍କୁ ସଙ୍ଗିନୀରୂପେ ଲଭ କରି ଅତ୍ୟନ୍ତ ଆନନ୍ଦିତ ହେଲେ । ସୀତାଦେବୀ ମଧ୍ୟ ସେମାନଙ୍କର ସେବା ଯତ୍ନରେ ପ୍ରୀତ ହୋଇ ତାପସୀବେଶ ଗ୍ରହଣପୂର୍ବକ ସେମାନଙ୍କ ସଙ୍ଗେ କାଳ ଯାପନ କରିବାକୁ ଲଗିଲେ ।



# ଏକାଦଶ ପରିଚ୍ଛେଦ

ସୀତା ଅଯୋଧ୍ୟାରୁ ନିର୍ବାସିତା ହେଲେ ସତ୍ୟ, କିନ୍ତୁ ରାମଚନ୍ଦ୍ର କ୍ଷଣକାଳପାଇଁ ସୁଦ୍ଧା ତାଙ୍କୁ ହୃଦୟରୁ ଅନ୍ତର କରି ନାହାନ୍ତି । ସୀତା ଶୁଦ୍ଧାଚାରିଣୀ ଓ ପବିତ୍ରସ୍ୱଭାବା ଏ ବିଷୟରେ ତାଙ୍କର ଅଣୁମାତ୍ର ସନ୍ଦେହ ନଥିଲା । ରାମଚନ୍ଦ୍ର ଏକା ସୀତାଙ୍କର ଅଲୌକିକ ଗୁଣର ମହତ୍ତ୍ୱ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରି ପାରିଥିଲେ ଓ ସେଥିପାଇଁ ସୀତା ସର୍ବଦା ତାଙ୍କ ହୃଦୟର ଅଧିଷ୍ଠାତ୍ରୀ ଦେବୀରୂପେ ବିରାଜମାନା ଥିଲେ । ସେହି ପତିପ୍ରାଣା ସୁକୁମାରୀ ସୀତାଙ୍କୁ କେବଳ ଲୋକାପବାଦଭୟରେ ବନବାସ ଦେଇ ରାମଚନ୍ଦ୍ର ଅନୁତାପର ବିଷମୟୀ ଜ୍ୱାଳାରେ ସର୍ବଦା ଜର୍ଜ୍ଜରିତ ହେବାକୁ ଲାଗିଲେ । ତାଙ୍କ ନୟନରୁ ନିଦ୍ରା, ଆହାରରୁ ତୃପ୍ତି ଓ ହୃଦୟରୁ ଶାନ୍ତି, ସବୁ ଏକାବେଳକେ ବିଲୁପ୍ତ ହୋଇଗଲା । ସେ ପ୍ରଥମେ ସମସ୍ତ ରାଜକାର୍ଯ୍ୟ ପରିତ୍ୟାଗ କରି ଅନ୍ତଃପୁରରେ ବସି ଅବିରଳଧାରାରେ ଅଶ୍ରୁମୋଚନ କରିବାକୁ ଲାଗିଲେ । ପରେ ଲକ୍ଷ୍ମଣ ଅଗ୍ରଜଙ୍କର ଏପରି କାତର ଭାବ ଦେଖି କହିଲେ, "ଯେଉଁ ପ୍ରଜାରଞ୍ଜନ ନିମନ୍ତେ ଆପଣ ଆମ୍ଭ-ମାନଙ୍କର କାହାରି କଥାରେ କର୍ଣ୍ଣପାତ ନ କରି ଏହିପରି ଭୟଙ୍କର କାର୍ଯ୍ୟର ଅନୁଷ୍ଠାନ କଲେ, ବର୍ତ୍ତମାନ ଶୋକବିହ୍ୱଳ ହୋଇ ସେହି ରାଜଧର୍ମ ଅବହେଳା କରିବା ଆପଣଙ୍କର ଉଚିତ ନୁହେ । ତାହାହେଲେ ପ୍ରଜାମାନେ ଆପଣଙ୍କର ଅକୀର୍ତ୍ତି ରଟନା କରିବେ ଓ ଆପଣଙ୍କର ଏତେ ବଡ ସ୍ୱାର୍ଥତ୍ୟାଗର ମଧ୍ୟ କିଛି ମୂଲ୍ୟ ରହିବ ନାହିଁ । ଅତଏବ ଆପଣ ଧୈର୍ଯ୍ୟ ଅବଲମ୍ବନ କରି ହୃଦୟର ଦୁର୍ବଳତା ପରିତ୍ୟାଗ କରନ୍ତୁ ।"

ଲକ୍ଷ୍ମଣଙ୍କ କଥା ଅନୁସାରେ ରାମଚନ୍ଦ୍ର ରାଜକାର୍ଯ୍ୟରେ ପୁନର୍ବାର ମନୋନିବେଶ କଲେ ସତ୍ୟ, ମାତ୍ର ତାଙ୍କ ମନର ପ୍ରସନ୍ନତା ଚିରକାଳପାଇଁ ଅନ୍ତର୍ହିତ ହେଲା । ସୀତାଙ୍କର ମଧୁର କମନୀୟ ମୂର୍ତ୍ତି ସର୍ବଦା ତାଙ୍କ ହୃଦୟରେ ଜାଗ୍ରତ ରହି ତାଙ୍କୁ ଉନ୍ମାଦନା କରିବାକୁ ଲାଗିଲେ । ସେ ଯଥାସାଧ୍ୟ ନିଜର ଚିତ୍ତବୃତ୍ତି ନିରୋଧ କରି ରାଜ୍ୟଶାସନରେ ସମସ୍ତ ଶକ୍ତି ପ୍ରୟୋଗ କଲେ । ତାଙ୍କର ସୁଶାସନ ଗୁଣରେ ରାଜ୍ୟ ସମୃଦ୍ଧିଶାଳୀ ହେଲା ଓ ଲୋକମାନେ ପରମ ସୁଖରେ କାଳାତିପାତ କଲେ । ଶତ୍ରୁମାନେ ହୀନବଳ ହେଲେ ଓ ରାଜ୍ୟରୁ ଅକାଳମୃତ୍ୟୁ ଓ ମାରୀଭୟ ପ୍ରଭୃତି ବହିଷ୍କୃତ ହେଲା । ରାମଚନ୍ଦ୍ରଙ୍କର ଅକ୍ଳାନ୍ତ ପରିଶ୍ରମ ଓ ଦୃଢ କର୍ତ୍ତବ୍ୟନିଷ୍ଠା ଦେଖି ବାହାରର ଲୋକେ ତାଙ୍କଠାରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରି ପାରିଲେ ନାହିଁ । କିନ୍ତୁ ଯେଉଁମାନେ ସୂକ୍ଷ୍ମ ଦୃଷ୍ଟିରେ ଦେଖୁଥିଲେ, ସେମାନେ ବୁଝି ପାରୁଥିଲେ ଯେ

ପୁଟପାକ ପରି ତାଙ୍କର ହୃଦୟ ସର୍ବଦା ଦଗ୍ଧୀଭୂତ ହେଉଅଛି । ତାଙ୍କର ଶରୀରବପୁ ଯେ ଦିନକୁ ଦିନ କ୍ଷୀଣ ହୋଇ ଆସୁଅଛି ଓ ନୟନଦ୍ୱୟ ନିଷ୍ପ୍ରଭ ଓ ଲଲାଟ ଫଳକ କୁଞ୍ଚିତ ହୋଇ ଯାଉଅଛି, ଏହା କୌଶଲ୍ୟା ଦେବୀ ଓ ଲକ୍ଷ୍ମଣଙ୍କର ଜାଗ୍ରତ ଦୃଷ୍ଟିକୁ ଏଡ଼ାଇ ପାରିଲା ନାହିଁ । କୌଶଲ୍ୟା ପ୍ରତିବିଧାନର କୌଣସି ଉପାୟ ନାହିଁ ଜାଣି ନୀରବରେ ଅଶ୍ରୁ ମୋଚନ କରନ୍ତି ଓ ଲକ୍ଷ୍ମଣ ଅଗ୍ରଜଙ୍କର ସେବାକୁ ଜୀବନର ବ୍ରତ କରି ଛାୟା ପରି ସର୍ବଦା ତାଙ୍କର ଅନୁସରଣ କରନ୍ତି । ଏହିପରି ଭାବରେ ରାମଚନ୍ଦ୍ର ସୀତାଙ୍କୁ ନିର୍ବାସିତ କରି ନିଜେ ତୀବ୍ର ନିର୍ବାସନ ଦଣ୍ଡ ଭୋଗ କରିବାକୁ ଲାଗିଲେ ଓ ଯନ୍ତ୍ରଚାଳିତ ପରି ରାଜକାର୍ଯ୍ୟ ସମ୍ପାଦନ କରିବାକୁ ଲାଗିଲେ ।

ଏଣେ ସୀତାଦେବୀ ରାମଚନ୍ଦ୍ରଙ୍କର ବିଚ୍ଛେଦରେ କୃଷ୍ଣପକ୍ଷର ଇନ୍ଦୁରେଖା ପରି ଦିନକୁ ଦିନ ଶୀର୍ଣ୍ଣା ଓ ମଳିନା ହେବାକୁ ଲାଗିଲେ । ପତିକର୍ତ୍ତୃକ ପରିତ୍ୟକ୍ତା ହୋଇଥିଲେ ସୁଦ୍ଧା ସେ ସେଥିରେ କିଛି ଦୁଃଖିତ ନ ହୋଇ କେବଳ ସ୍ୱାମୀଙ୍କର ଚିନ୍ତାକୁ ଜୀବନର ସମ୍ବଳ କରି କାଳ ଯାପନ କରିବାକୁ ଲାଗିଲେ । କି ସ୍ୱପ୍ନ, କି ଜାଗରଣରେ ରାମହିଁ ତାଙ୍କର ଧ୍ୟାନ, ରାମହିଁ ତାଙ୍କର ଜ୍ଞାନ । ହୃଦୟର ଦେବ ଆରାଧ୍ୟ ଦେବତାଙ୍କର ପୂଜାରେ ମନଃପ୍ରାଣ ଢାଳି ଦେଇ ସୀତା ତପସ୍ୱିନୀବେଶରେ ଆଶ୍ରମରେ ବାସ କରିବାକୁ ଲାଗିଲେ ।

ଆଶ୍ରମକୁ ଆଗମନ କରିବା ସମୟରେ ସୀତାଦେବୀ ପୂର୍ଣ୍ଣଗର୍ଭା ଥିଲେ । ଦଶ ମାସ ପୂର୍ଣ୍ଣ ହେବାରୁ ସେ ଯଥାସମୟରେ ଅଶ୍ୱିନୀକୁମାର ତୁଲ୍ୟ ଦୁଇ ଯମଜ କୁମାର ପ୍ରସବ କଲେ । ମହର୍ଷି ଏ ଆନନ୍ଦ ସମାଚାର ପାଇ ଅତ୍ୟନ୍ତ ହୃଷ୍ଟ ହେଲେ । ତପୋବନବାସିନୀମାନଙ୍କ ମଧ୍ୟରେ ଗୋଟିଏ ହର୍ଷର ଚହଲ ପଡ଼ିଗଲା । ମହର୍ଷି ନିଜେ କୁମାରଦ୍ୱୟଙ୍କର ଜାତକର୍ମାଦି ସମ୍ପାଦନ କରି ଜ୍ୟେଷ୍ଠଟିର ନାମ କୁଶ ଓ କନିଷ୍ଠଟିର ନାମ ଲବ ଦେଲେ । ସୀତା ପୁତ୍ରଦ୍ୱୟଙ୍କର ମୁଖାବଲୋକନ କରି ସମସ୍ତ ଦୁଃଖ କଷ୍ଟ ବିସ୍ମୃତ ହେଲେ । ତାଙ୍କର ନୟନଯୁଗଳ ଆନନ୍ଦାଶ୍ରୁରେ ପ୍ଲାବିତ ହୋଇଗଲା । ଏପର୍ଯ୍ୟନ୍ତ ରାମଚନ୍ଦ୍ରହିଁ ସୀତାଙ୍କର ଏକମାତ୍ର ଧ୍ୟାନର ବିଷୟ ଥିଲେ । ବର୍ତ୍ତମାନ ଆଉ ଗୋଟିଏ ମଧୁର ଚିନ୍ତା ତାଙ୍କ ହୃଦୟକୁ ଅଧିକାର କଲା । ସେ କୁମାରଦ୍ୱୟଙ୍କର ଲାଳନପାଳନ ଭାର ଗ୍ରହଣ କରି ଅଧିକାଂଶ ସମୟ ସେମାନଙ୍କ ସେବାରେ ଅତିବାହିତ କଲେ ।

ବାଲ୍ମୀକିଙ୍କ ତତ୍ତ୍ୱାବଧାନରେ ତପସ୍ୱିନୀମାନଙ୍କ ଯତ୍ନରେ ଲବ କୁଶ ଦିନକୁ ଦିନ ନବପଲ୍ଲବିତ ତରୁଣ ବୃକ୍ଷ ପରି ବୃଦ୍ଧି ପାଇ ସମସ୍ତଙ୍କର ଆନନ୍ଦ ବର୍ଦ୍ଧନ କଲେ । ସେମାନଙ୍କର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ମହର୍ଷି ସେମାନଙ୍କୁ କ୍ଷତ୍ରିୟୋଚିତ ଶିକ୍ଷା

ପ୍ରଦାନ କରିବାର ବ୍ୟବସ୍ଥା କଲେ । ବେଶ ଭୂଷା, ଆକୃତି ବ୍ୟବହାର ଓ ଅନ୍ୟାନ୍ୟ ସମସ୍ତ ବିଷୟରେ ଲବ କୁଶ ଋଷିକୁମାରମାନଙ୍କ ପରି ଚଳିଲେ ସୁଦ୍ଧା ବାଲ୍ମୀକି ସେମାନଙ୍କୁ ଧନୁର୍ବିଦ୍ୟା ପ୍ରଭୃତି କେତେକ ରାଜପୁତ୍ରୋଚିତ ଶିକ୍ଷା ଦେବାରୁ କେହି କେହି ଏହିକଥା ବିଷୟ ପ୍ରକାଶ କରୁଥିଲେ । କିନ୍ତୁ ସାହସ କରି କେହି ତାଙ୍କୁ କାରଣ ଜିଜ୍ଞାସା କରି ପାରିଲେ ନାହିଁ । ମହର୍ଷିଙ୍କର ପ୍ରକୃତ ଉଦ୍ଦେଶ୍ୟ ବୁଝି ପାରି କେବଳ ଜାନକୀଙ୍କ ହୃଦୟ କୃତଜ୍ଞତା ଓ ଭକ୍ତିରେ ଉଚ୍ଛ୍ୱସିତ ହୋଇ ଉଠିଲା । ବାଲ୍ମୀକିଙ୍କର ଅକ୍ଲାନ୍ତ ପରିଶ୍ରମ ଓ ଯତ୍ନରେ ମେଧାବୀ ବାଳକଦ୍ୱୟ ଅଳ୍ପ ସମୟ ମଧ୍ୟରେ ବେଦ, ବେଦାଙ୍ଗ, ରାଜନୀତି, ଧର୍ମନୀତି ପ୍ରଭୃତି ସକଳ ବିଦ୍ୟାରେ ପାରଦର୍ଶୀ ହୋଇ ଉଠିଲେ ।

ତ୍ରିକାଳଜ୍ଞ ମହର୍ଷି ଜାଣିଥିଲେ ଯେ ମହାତ୍ମା ରାମଚନ୍ଦ୍ର ସର୍ବଗୁଣସମ୍ପନ୍ନ ପୁରୁଷ ଓ ଆଦର୍ଶ ରାଜା । ବିଧାତାଙ୍କର କୌଣସି ବିଶେଷ ଉଦ୍ଦେଶ୍ୟ ବ୍ୟତୀତ ଏପରି ମହାପୁରୁଷ ସଂସାରକୁ ପ୍ରେରିତ ହୋଇ ନାହାନ୍ତି । ଏଥିପାଇଁ କିଛିକାଳ ହେଲା ସେ ରାମଚରିତ କାବ୍ୟାକାରରେ ଲିପିବଦ୍ଧ କରୁଥିଲେ । ରାମାୟଣ ରଚନା ଶେଷ ହେବାରୁ ସେ ଲବ କୁଶଙ୍କୁ ସେହି ରାମାୟଣ ଗାନ କରିବାକୁ ଅଭ୍ୟସ୍ତ କରାଇଲେ । ବାଳକ ଦୁହେଁ ଯେତେବେଳେ ବୀଣାଯନ୍ତ୍ର ସାହାଯ୍ୟରେ ଅପ୍ସରା ନିନ୍ଦିତ ସ୍ୱରରେ ମହର୍ଷି ରଚିତ ରାମଚରିତ ଗାନ କରୁଥିଲେ, ସେତେବେଳେ ଆଶ୍ରମସ୍ଥ ଋଷିଗଣ ବିମୋହିତ ହୋଇ ଯାଉଥିଲେ ଓ ଚରାଚର ସ୍ତବ୍ଧ ହୋଇ ସେହି ଅମର ଗାଥା ଶ୍ରବଣ କରୁଥିଲେ । ଲବ କୁଶ ରାମଚନ୍ଦ୍ରଙ୍କ ପରିଚୟ ଜାଣି ନ ଥିଲେ ସୁଦ୍ଧା ତାଙ୍କର ଗୁଣ କୀର୍ତ୍ତନ କରି ପରମ ପୁଲକିତ ହେଉଥିଲେ ଓ ଅଜ୍ଞାତସାରରେ ରାମଚନ୍ଦ୍ରଙ୍କର ମହନୀୟ ଆଦର୍ଶ ସେମାନଙ୍କ କୋମଳ ହୃଦୟରେ ପ୍ରତିଷ୍ଠିତ ହେଉଥିଲା । ସୀତାଦେବୀ ପୁତ୍ରଦ୍ୱୟଙ୍କ ମୁଖରୁ ରାମଚରିତ ଶ୍ରବଣ କରି ଅଶ୍ରୁବାରି ରୋଧ କରି ପାରୁ ନ ଥିଲେ । ଅତୀତ ଘଟନା ସବୁ ସ୍ମୃତି-ପଥାରୂଢ଼ ହୋଇ ତାଙ୍କ ହୃଦୟକୁ ଆଲୋଡ଼ିତ କରି ଦେଉଥିଲା ଓ ତାଙ୍କର ନୀଳୋତ୍ପଳ ତୁଲ୍ୟ ଚକ୍ଷୁ ଦୁଇଟିରୁ ଅବିରଳ ଲୋତକଧାରା ବିଗଳିତ ହେଉଥିଲା । ବାଲ୍ମୀକି ଲବ କୁଶଙ୍କ ମଧୁର କଣ୍ଠରେ ରାମାୟଣ ଗାନ ଶ୍ରବଣ କରି ସ୍ୱରଚିତ କାବ୍ୟରେ ନୂତନ ସୌନ୍ଦର୍ଯ୍ୟ ଦେଖି ପାରୁଥିଲେ ଓ ଅତୃପ୍ତ ଆନନ୍ଦରେ ତାଙ୍କର ହୃଦୟ ଉଲ୍ଲସିତ ହୋଇ ଉଠୁଥିଲା ।

ଏହିରୂପେ ଲବ କୁଶ ନିଜର ମଧୁର ସ୍ୱଭାବ ଓ ସଚ୍ଚରିତ୍ରଦ୍ୱାରା ତପୋବନର ପ୍ରାଣସ୍ୱରୂପ ହୋଇ ଦ୍ୱାଦଶ ବର୍ଷ ବୟଃକ୍ରମରେ ଉପନୀତ ହେଲେ । ବାଲ୍ମୀକି ସ୍ୱହସ୍ତରେ ସେମାନଙ୍କର ଲାଳନ ପାଳନ ଓ ଶିକ୍ଷାଭାର ଗ୍ରହଣ କରି ନିଜକୁ ଧନ୍ୟ

ମନେ କରୁଥିଲେ । କିନ୍ତୁ କିପରି ଏ କରୁଣ କାବ୍ୟର ଉପସଂହାର ହେବ, କିପରି ପିତା ପୁତ୍ର ଓ ସ୍ୱାମୀ ସ୍ତ୍ରୀଙ୍କର ମିଳନ ହେବ, କିପରି ସ୍ୱୀୟ ପ୍ରିୟତମ ଶିଷ୍ୟ ଦୁହିଁଙ୍କର ଭବିଷ୍ୟତ୍ ଜୀବନର ପଥ ପରିଷ୍କାର ହେବ, ଏହି ଚିନ୍ତା ସମସ୍ତ ସମୟରେ ମହର୍ଷିଙ୍କ ମନକୁ ଆନ୍ଦୋଳିତ କରୁଥିଲା । ସହସା ଗୋଟିଏ ଉତ୍ତମ ସୁଯୋଗ ଉପସ୍ଥିତ ହେଲା । ଦିନେ ବାଲ୍ମୀକି ଗୋଟିଏ ନିମନ୍ତ୍ରଣ-ପତ୍ର ପାଇଲେ ଯେ ମହାରାଜ ରାମଚନ୍ଦ୍ର ନୈମିଷାରଣ୍ୟରେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରୁଅଛନ୍ତି ଓ ସେଠାରେ ସଶିଷ୍ୟରେ ଉପସ୍ଥିତ ହେବା ନିମିତ୍ତ ନିମନ୍ତ୍ରିତ ହୋଇଅଛନ୍ତି । ପତ୍ର ପାଇ ମହର୍ଷିଙ୍କ ହୃଦୟ ଆଶାର ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଲା ।

ମହର୍ଷି ସୀତାଙ୍କୁ ଡାକି କହିଲେ, "ବତ୍ସେ ! ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ କରୁ-ଅଛନ୍ତି । ମୁଁ ଯଜ୍ଞଦର୍ଶନାର୍ଥେ ଲବ କୁଶଙ୍କୁ ସଙ୍ଗରେ ନେଇ ଯିବାକୁ ମନସ୍ଥ କରିଅଛି । ତୁମ୍ଭର ଏଥିରେ ମତ କଣ ? ଆଉ ଅବସ୍ଥାଦୃଷ୍ଟିରେ ମୁଁ ଯଦି ତୁମ୍ଭଙ୍କୁ ସେଠାକୁ ଯିବା ନିମନ୍ତେ ସମ୍ବାଦ ପଠାଏଁ, ତେବେ ଯିବାକୁ କୁଣ୍ଠିତ ହେବ ନାହିଁ ।"

ସୀତା କହିଲେ, "ପିତଃ, ଲବ କୁଶ ମୋର ଗର୍ଭଜ ସନ୍ତାନ ହେଲେ ସୁଦ୍ଧା ମୁଁ ସେମାନଙ୍କର କିଛି ନୁହେଁ; ଆପଣ ସେମାନଙ୍କର ପ୍ରତିପାଳକ, ଶିକ୍ଷାଗୁରୁ ଓ ଯଥାସର୍ବସ୍ୱ । ଆପଣଙ୍କର ସ୍ନେହଯତ୍ନରେ ସେମାନେ ମନୁଷ୍ୟ ହୋଇଅଛନ୍ତି । ଅତଏବ ସେମାନଙ୍କର ମଙ୍ଗଳ ନିମନ୍ତେ ଯାହା କହିବେ, ସେଥିରେ କଥା କହିବାର ଆଉ କାହାର ଅଧିକାର ନାହିଁ । ତେବେ ଏମାନେ ସେଠାକୁ ଯାଇ ଯେପରି କୌଣସି ଅଶିଷ୍ଟ ବ୍ୟବହାର ନ କରନ୍ତି, ସେଥିପାଇଁ ଟିକିଏ ଦୃଷ୍ଟି ରଖିବେ । ମୋ ସମ୍ବନ୍ଧରେ ମୁଁ ଏତିକି ମାତ୍ର କହି ପାରେଁ ଯେ, ମୋର ଆଉ ସଂସାରରେ କୌଣସି ଆଶା ବା ଆକାଙ୍କ୍ଷା ନାହିଁ । କେବଳ ବାକି କେତୋଟା ଦିନ ମୋର ହୃଦୟଦେବତାଙ୍କର ପାଦପଦ୍ମ ଧ୍ୟାନ କରି କଟାଇ ଦେଇ ପାରିଲେ ଜୀବନକୁ ଧନ୍ୟ ମନେ କରିବି । ତେବେ ଆପଣ ଯେଉଁ ଆଦେଶ ଦେବେ, ତାହା ମୋର ଶିରୋଧାର୍ଯ୍ୟ ।"

ବାଲ୍ମୀକି କହିଲେ, "ବତ୍ସେ, ମୁଁ ଆଜି ଗୋଟିଏ ସୁସମ୍ବାଦ ଦେବାକୁ ଭୁଲି ଯାଇଅଛି । ତୁମ୍ଭେ ବୋଧ ହୁଏ ଜାଣ ଯେ ଅଶ୍ୱମେଧ ଯଜ୍ଞରେ ସସ୍ତ୍ରୀକ ଆହୁତି ପ୍ରଦାନ କରିବାକୁ ହୁଏ । ଏଥିପାଇଁ ଋଷି, ପଣ୍ଡିତ ଓ ଅନ୍ୟାନ୍ୟ ପୁରବାସୀମାନେ ରାମଚନ୍ଦ୍ରଙ୍କୁ ଦାରପରିଗ୍ରହ କରିବା ନିମନ୍ତେ ଅନୁରୋଧ କରିଥିଲେ । କିନ୍ତୁ ସେ କାହାରି କଥାରେ କର୍ଣ୍ଣପାତ କଲେ ନାହିଁ । ସେ ତୁମ୍ଭର ଗୋଟିଏ ହିରଣ୍ମୟୀ

ପ୍ରତିକୃତି ନିର୍ମାଣ କରାଇ ଓ ତାହାକୁ ପତ୍ନୀସ୍ଥାନୀୟା କରି କାର୍ଯ୍ୟରେ ବ୍ରତୀ ହୋଇ ଅଛନ୍ତି । ଯେଉଁ ଲୋକ ନିମନ୍ତ୍ରଣ ପାଇ ଯେଜ୍ଞ ଆସିଥିଲା, ତାହା ନିକଟରୁ ଏ ସମ୍ବାଦ ପାଇ ମୁଁ ପୁଲକ ଓ ବିସ୍ମୟରେ ମୁଗ୍ଧ ହୋଇ ଯାଇଅଛି । ପ୍ରଜାରଞ୍ଜନ ନିମନ୍ତେ ଯାହାଙ୍କୁ ନିର୍ଦ୍ଦୟଭାବରେ ନିର୍ବାସନ କରିଅଛନ୍ତି, ତାଙ୍କରିଁ ପ୍ରତି ଭାରତବର୍ଷର ସମବେତ ରାଜନ୍ୟବର୍ଗ ଓ ମୁନି ଋଷିମାନଙ୍କ ସମକ୍ଷରେ ଧର୍ମପତ୍ନୀର ଆସନ ଦେଇ ପ୍ରକାରାନ୍ତରେ ତାଙ୍କର ନିର୍ଦ୍ଦୋଷତା ପ୍ରତିପନ୍ନ କରିବା ଏ କେବଳ ରାମଚନ୍ଦ୍ରଙ୍କ ପରି ବଜ୍ର କଠୋର ଓ କୁସୁମକୋମଳ ମହାପୁରୁଷଙ୍କ ପକ୍ଷରେ ସମ୍ଭବ ! ଧନ୍ୟ ରଘୁକୁଳତିଳକ ମହାରାଜ ରାମଚନ୍ଦ୍ର !"

ବାଲ୍ମୀକିଙ୍କର ବାକ୍ୟଗୁଡ଼ିକ ଅବଶମୂର୍ଚ୍ଛା ସୀତାଙ୍କ କର୍ଣ୍ଣରେ ଅମୃତ ବର୍ଷଣ କଲା । ସୌଭାଗ୍ୟଗର୍ବରେ ତାଙ୍କର ହୃଦୟ ପୂର୍ଣ୍ଣ ହୋଇ ଉଠିଲା ଓ ନୟନରୁ ଦରଦର ଧାରରେ ଆନନ୍ଦାଶ୍ରୁ ପ୍ରବାହିତ ହେଲା । ସୀତାଙ୍କୁ ନୀରବ ଦେଖି ଓ ତାଙ୍କର ହୃଦୟ-ଭାବ ବୁଝିପାରି ବାଲ୍ମୀକିଙ୍କର ବୃଦ୍ଧ ଚକ୍ଷୁ ଆର୍ଦ୍ର ହୋଇ ଉଠିଲା । ସେ ବିନା ବାକ୍ୟ-ବ୍ୟୟରେ ସେଠାରୁ ପ୍ରସ୍ଥାନ କଲେ ।

ଲବ କୁଶ ଯଜ୍ଞସ୍ଥାନକୁ ଯାଇ ରାମଚନ୍ଦ୍ରଙ୍କୁ ଦର୍ଶନ କରି ପାରିବେ, ଏହି ଆନନ୍ଦରେ ଅଧୀର ହୋଇ ଉଠିଲେ । ବାଲ୍ମୀକିଙ୍କ ଆଦେଶକ୍ରମେ ସେମାନେ ମାତାଙ୍କଠାରୁ ବିଦାୟ ଆଣିବାକୁ ଗଲେ । ସୀତାଦେବୀ ଲବ କୁଶଙ୍କୁ ଯଜ୍ଞକ୍ଷେତ୍ରରେ କିପରି ବ୍ୟବହାର କରିବାକୁ ହେବ ସେ ବିଷୟରେ ମଧୁର ଉପଦେଶ ଦେଇ ଓ ସେମାନଙ୍କ ମୁଖ ଚୁମ୍ବନ କରି ସାଶ୍ରୁନୟନରେ ବିଦାୟ ଦେଲେ ।

ବାଲ୍ମୀକି ଶିଷ୍ୟବର୍ଗଙ୍କ ସହିତ ଯଜ୍ଞସ୍ଥଳରେ ଉପସ୍ଥିତ ହୋଇ ଦେଖିଲେ, ସେଠାରେ ବିପୁଳ ଆୟୋଜନ ଲାଗିଅଛି । ସୁବୃହତ୍ ନୈମିଷାରଣ୍ୟ ଗୋଟିଏ ମହାନଗରୀରେ ପରିଣତ ହୋଇଅଛି । ଭାରତବର୍ଷର ନାନା ସ୍ଥାନରୁ ରାଜା, ବଣିକ୍, ମୁନି, ଋଷି, ବ୍ରାହ୍ମଣ, ପଣ୍ଡିତ ସମସ୍ତେ ଆସି ସମବେତ ହୋଇଅଛନ୍ତି । ଅଭ୍ୟାଗତ-ମାନଙ୍କର ରହିବା ନିମନ୍ତେ ନାନାପ୍ରକାର ବାସଭବନ ନିର୍ମିତ ହୋଇଅଛି । ସ୍ଥାନେ ସ୍ଥାନେ କୂପ, ଜଳାଶୟ, ଉଦ୍ୟାନ, ରାଜପଥ, ଶିଳ୍ପାଗାର, ଚିକିତ୍ସାଳୟମାନ ରଚିତ ହୋଇଅଛି । ଜନତାର କୋଳାହଳ ମଧ୍ୟରୁ ଋଷିକଣ୍ଠୋଚ୍ଚାରିତ ବେଦଧ୍ୱନି ଉତ୍ଥିତ ହେଉଅଛି, ପଶୁପକ୍ଷିଙ୍କର ଚିତ୍କାର ସହିତ ବେଣୁବୀଣାଦି ବାଦ୍ୟଯନ୍ତ୍ରର ମଧୁର ସ୍ୱର ମିଶ୍ରିତ ହେଉଅଛି । ରାଜକର୍ମଚାରୀମାନେ ଚାରିଆଡ଼େ ବୁଲି ନିମନ୍ତ୍ରିତ ବ୍ୟକ୍ତିମାନଙ୍କର ପରିଚର୍ଯ୍ୟାର ଆୟୋଜନ କରୁଅଛନ୍ତି । ସର୍ବତ୍ର ନିୟମ ଓ ଶୃଙ୍ଖଳା ବିରାଜମାନ କରୁଅଛି । କେଉଁଠାରେ ଅଭାବ ଅସୁବିଧାର ଲକ୍ଷଣ ନାହିଁ, ସମସ୍ତଙ୍କ ମୁଖରେ ସନ୍ତୋଷ ଓ ତୃପ୍ତିର ଚିହ୍ନ ପରିଲକ୍ଷିତ ହେଉଅଛି ।

ବାଲ୍ମୀକିଙ୍କ ଆଦେଶାନୁସାରେ ଲବ କୁଶ ସ୍ଥାନେ ସ୍ଥାନେ ବୁଲି ରାମାୟଣ

ଗାନ କରିବାକୁ ଲାଗିଲେ । ବାଳକଦ୍ୱୟଙ୍କର ସୁମଧୁର କଣ୍ଠରୁ ଅମୃତମୟୀ ରାମକଥା ଶ୍ରବଣ କରି ଆବାଳବୃଦ୍ଧବନିତା ସମସ୍ତେ ମୋହିତ ହୋଇଗଲେ । ସେମାନଙ୍କ ସଙ୍ଗୀତ ଶୁଣିବା ନିମନ୍ତେ ସହସ୍ର ସହସ୍ର ଲୋକଙ୍କର ସମାଗମ ହେଲା । ରାଜା, ଋଷି, ପଣ୍ଡିତ, ସମସ୍ତେ ଲବ କୁଶଙ୍କୁ ସାଧୁବାଦ କରିବାକୁ ଲାଗିଲେ । ଯେତେ ଶୁଣିଲେ ତୃପ୍ତି ନାହିଁ, ଆହୁରି ଶୁଣିବାକୁ ଇଚ୍ଛା ହୁଏ । କ୍ରମେ ଏହି ଅଦ୍ଭୁତ ଋଷିକୁମାରଦ୍ୱୟଙ୍କ କଥା ମୁଖେ ମୁଖେ ଆଲୋଚିତ ହୋଇ ରାମଚନ୍ଦ୍ରଙ୍କର କର୍ଣ୍ଣଗୋଚର ହେଲା ।

ମହାରାଜ ଦିନେ ଆଗ୍ରହସହକାରେ ବାଳକଦ୍ୱୟଙ୍କୁ ସଭାମଧ୍ୟକୁ ଆହ୍ୱାନ କଲେ । ସେମାନଙ୍କୁ ଦେଖି ରାମଚନ୍ଦ୍ରଙ୍କ ହୃଦୟରେ କପରି ଗୋଟିଏ ଅଭୂତପୂର୍ବ ଭାବର ସଞ୍ଚାର ହେଲା । ସେ ତାହାର କାରଣ କିଛି ସ୍ଥିର କରି ପାରିଲେ ନାହିଁ । ଏହା ପରେ ସେମାନେ ଯେତେବେଳେ ସୁମଧୁର କଣ୍ଠରେ ବୀଣାଯନ୍ତ୍ର ସାହାଯ୍ୟରେ ରାମାୟଣ ଗାନ କରିବାକୁ ଲାଗିଲେ, ସେତେବେଳେ ସଭାସ୍ଥ ସମସ୍ତ ଲୋକ ମନ୍ତ୍ରମୁଗ୍ଧ ପରି ହୋଇ ରହିଲେ । ରାମଚନ୍ଦ୍ରଙ୍କ ହୃଦୟ ଅଦ୍ଭୁତ ସ୍ନେହରସରେ ଆପ୍ଲୁତ ହୋଇଗଲା ଓ ସେ ନୀରବରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ବାଳକଦ୍ୱୟଙ୍କର ଆକାର ଅବୟବ ଦେଖି ସେମାନଙ୍କ ପରିଚୟ ଜାଣିବା ନିମନ୍ତେ ସେ ବ୍ୟାକୁଳ ହୋଇ ଉଠିଲେ । ଏହି ସମୟରେ ପ୍ରାଣପ୍ରିୟତମା ଜାନକୀଙ୍କର ମଧୁର ମୂର୍ତ୍ତି ତାଙ୍କ ସ୍ମୃତିପଟରେ ଉଦିତ ହେଲା । ସେ ପ୍ରଶ୍ନ କରି ଜାଣିପାରିଲେ ଯେ ସେମାନେ ବାଲ୍ମୀକିଙ୍କ ଶିଷ୍ୟ । ଏହା ଶୁଣି ଗୋଟିଏ ସଂଶୟରେ ଛାୟା ତାଙ୍କ ହୃଦୟକୁ ଆଚ୍ଛନ୍ନ କରି ଦେଲା । ବାଳକଦ୍ୱୟ ଯେ ସୀତାଙ୍କ ଗର୍ଭଜାତ ସନ୍ତାନ, ଘଟନାପରମ୍ପରାରୁ କ୍ରମେ ଏହି ଧାରଣା ତାଙ୍କ ମନରେ ବଦ୍ଧମୂଳ ହେବାକୁ ଲାଗିଲା । ଲକ୍ଷ୍ମଣ, କୌଶଲ୍ୟା ପ୍ରଭୃତି ମଧ୍ୟ ସେହିପରି ଅନୁମାନ କଲେ । ଶେଷରେ ମହର୍ଷି ଲବ କୁଶଙ୍କର ପ୍ରକୃତ ପରିଚୟ ପ୍ରଦାନ କରି କଳଙ୍କରହିତା ସୀତାଙ୍କୁ ପୁନର୍ବାର ଗ୍ରହଣ କରିବା ନିମନ୍ତେ ରାମଚନ୍ଦ୍ରଙ୍କୁ ଅନୁରୋଧ କଲେ । କୌଶଲ୍ୟା ପ୍ରଭୃତି ମହିଷୀଗଣ ଓ ଭରତ, ଲକ୍ଷ୍ମଣ ପ୍ରଭୃତି ଭ୍ରାତୃଗଣ ମଧ୍ୟ ସୀତାଙ୍କର ପୁନର୍ଗ୍ରହଣ ବିଷୟରେ ତାଙ୍କୁ ସାଶ୍ରୁନୟନରେ ପ୍ରାର୍ଥନା କଲେ । ଶେଷରେ ରାମଚନ୍ଦ୍ର ଏଥିରେ ସମ୍ମତି ପ୍ରଦାନ କଲେ । ବାଲ୍ମୀକି ଅମାତ୍ୟବୃନ୍ଦଙ୍କ ସହିତ ପରାମର୍ଶ କରି ସୀତାଙ୍କୁ ଆନୟନ କରିବା ନିମନ୍ତେ ତପୋବନକୁ ଲୋକ ପ୍ରେରଣ କଲେ । ସୀତାଦେବୀ ସାଶ୍ରୁନେତ୍ରରେ ଋଷିପତ୍ନୀମାନଙ୍କଠାରୁ ବିଦାୟ ଗ୍ରହଣ କରି ଆସି ନୈମିଷାରଣ୍ୟରେ ଉପସ୍ଥିତ ହେଲେ ।

ଆଜ ଯଜ୍ଞରେ ପୂର୍ଣ୍ଣାହୁତି ଦାନର ଦିନ । ରାମଚନ୍ଦ୍ର ଭ୍ରାତୃବୃନ୍ଦ ଓ ଅମାତ୍ୟବୃନ୍ଦଙ୍କ ସହିତ ଯଜ୍ଞସ୍ଥଳରେ ଉପବିଷ୍ଟ ହୋଇଅଛନ୍ତି । ଅଭ୍ୟାଗତ ଋଷିଗଣ

ଓ ନୃପତିଗଣ ନିର୍ଦ୍ଦିଷ୍ଟ ସ୍ଥଳରେ ଆସନ ଗ୍ରହଣ କରିଅଛନ୍ତି । ପୌର ଓ ଜନପଦ-ବାସିମାନେ ଯଥାଯୋଗ୍ୟ ସ୍ଥାନରେ ଉପବେଶନ କରିଅଛନ୍ତି । ପୁରମହିଳାମାନଙ୍କ ନିମନ୍ତେ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଦେଶ କରା ହୋଇଅଛି । ଆଜି ନିର୍ବାସିତା ସୀତା ଦେବୀ ସର୍ବସମକ୍ଷରେ ଆତ୍ମଶୁଦ୍ଧି ସମ୍ପାଦନ କରିବେ ଏବଂ ମହାରାଜ ରାମଚନ୍ଦ୍ର ତାହାଙ୍କୁ ପୁନର୍ଗ୍ରହଣ କରିବେ, ଏହି କଥା ଜନମୁଖରେ ପ୍ରଚାରିତ ହୋଇଅଛି । ସେଥିପାଇଁ ସମସ୍ତେ ଉତ୍କଣ୍ଠିତ ହୃଦୟରେ ସୀତାଙ୍କର ଆଗମନ ପ୍ରତୀକ୍ଷା କରୁଅଛନ୍ତି । ସଭାସ୍ଥଳ ନୀରବ ଓ ନିସ୍ତବ୍ଧ । ଏହି ସମୟରେ ପ୍ରଶାନ୍ତ ମୂର୍ତ୍ତି, ଦିବ୍ୟକାନ୍ତି ମହର୍ଷି ବାଲ୍ମୀକି ଜାନକୀ ଓ ତାଙ୍କର ଦେବକୁମାର ତୁଲ୍ୟ ସୁକୁମାରକାନ୍ତି କୁମାରଯୁଗଳଙ୍କ ସହିତ ସଭା-ଗୃହରେ ପ୍ରବେଶ କଲେ । ସହସ୍ର ସହସ୍ର ସୋତ୍ସୁକ ଚକ୍ଷୁ ସୀତାଙ୍କ ଉପରେ ନିପତିତ ହେଲା । ସୀତାଙ୍କର ବେଶ କଠୋର ବ୍ରହ୍ମଚାରିଣୀ ତପସ୍ୱିନୀ ପରି; ପରିଧାନ ଗୈରିକ ବସ୍ତ୍ର; ଅଙ୍ଗ ଅଳଙ୍କାରଶୂନ୍ୟ । ତାଙ୍କର ଶରୀର ଶୀର୍ଣ୍ଣ, ମୁଖ ବିଶୁଷ୍କ, ଅଧର ରକ୍ତଶୂନ୍ୟ, ଚକ୍ଷୁଦ୍ୱୟ ନିଷ୍ପ୍ରଭ । କେବଳ ପୂର୍ବଲାବଣ୍ୟର ଛାୟା ଥିବାରୁ କେହି କେହି ତାଙ୍କୁ ସୀତା ଦେବୀ ବୋଲି ଚିହ୍ନି ପାରିଲେ । ସୀତାଙ୍କର ଏପରି ପରିବର୍ତ୍ତନ ଦେଖି ସମସ୍ତେ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ ଓ ସଭା ମଧ୍ୟରେ ଗୋଟିଏ ଅସ୍ଫୁଟ କଳଧ୍ୱନି ଶ୍ରୁତିଗୋଚର ହେଲା । କୌଶଲ୍ୟା ପ୍ରଭୃତି ଅନ୍ତଃପୁରବର୍ତ୍ତିନୀମାନେ ସୀତାଙ୍କୁ ଦେଖି ଆର୍ତ୍ତନାଦ କରି ଉଠିଲେ । ରାମଚନ୍ଦ୍ରଙ୍କ ବକ୍ଷସ୍ଥଳ ଘନ ଘନ ସ୍ପନ୍ଦିତ ହେବାକୁ ହେବାକୁ ଲାଗିଲା । ସେ ବହୁକଷ୍ଟରେ ହୃଦୟାବେଗ ଦମନ କରି ଗମ୍ଭୀର ହୋଇ ବସି ରହିଲେ ।

ଏହି ସମୟରେ ମହର୍ଷି ବାଲ୍ମୀକି ଅଗ୍ରସର ହୋଇ ସଭାସ୍ଥ ବ୍ୟକ୍ତିମାନଙ୍କୁ ସମ୍ବୋଧନ କରି କହିଲେ, "ଆପଣମାନେ ସମସ୍ତେ ଜାଣନ୍ତି ଯେ, ମହାରାଜ ରାମଚନ୍ଦ୍ର ଅମୂଳକ ଲୋକନିନ୍ଦାଭୟରେ ପତିପ୍ରାଣା ସୀତାଙ୍କୁ ପରିତ୍ୟାଗ କରିଥିଲେ । ଜାନକୀ ଯେ ପାପସମ୍ପର୍କଶୂନ୍ୟା ଓ ସମ୍ପୂର୍ଣ୍ଣ ପବିତ୍ରସ୍ୱଭାବା, ସେଥିରେ ଅଣୁମାତ୍ର ସନ୍ଦେହ ନାହିଁ । ମୁଁ ପ୍ରାୟ ମୋର ସମସ୍ତ ଜୀବନ ତପସ୍ୟାରେ କଟାଇ ଅଛି; ମୁଁ ସର୍ବସମକ୍ଷରେ କହୁଅଛି, ଯଦି ସୀତାଙ୍କର ବିନ୍ଦୁମାତ୍ର ଚରିତ୍ରଗତ ସ୍ଖଳନ ଘଟିଥାଏ, ତେବେ ମୁଁ ଯେପରି ସେହି ସଞ୍ଚିତ ତପସ୍ୟାର ଫଳରୁ ବଞ୍ଚିତ ହୁଏ । ଜାନକୀ କାୟମନୋବାକ୍ୟରେ ଏକମାତ୍ର ରାମଙ୍କର ଅନୁରାଗିଣୀ । ବର୍ତ୍ତମାନ ମୁଁ ସମସ୍ତଙ୍କୁ ଅନୁରୋଧ କରୁଅଛି, ଆପଣମାନେ ସୀତାଙ୍କର ପୁନର୍ଗ୍ରହଣ ବିଷୟରେ ଅନୁମତି ପ୍ରଦାନ କରନ୍ତୁ ।"

ବାଲ୍ମୀକିଙ୍କର ଏହି କଥା ଶୁଣି ଉପସ୍ଥିତ ନୃପତିବୃନ୍ଦ, ଋଷିବୃନ୍ଦ ଓ ସଭାସ୍ଥ ଅଧିକାଂଶ ବ୍ୟକ୍ତି ଅନ୍ତରର ସହିତ ମହର୍ଷିଙ୍କ କଥାର ଅନୁମୋଦନ କଲେ । କିନ୍ତୁ ଏକଶ୍ରେଣୀର ଲୋକଙ୍କ ମଧ୍ୟରେ ଏ ବିଷୟରେ କୌଣସି ପ୍ରକାର ଆଗ୍ରହ ବା ସହାନୁଭୂତି

ଦେଖାଗଲା ନାହିଁ; ସେମାନେ ନୀରବ ରହିଲେ । ସେମାନଙ୍କର ସ୍ତବଭଙ୍ଗୀ ତାହାରି ଦୃଷ୍ଟି ଅତିକ୍ରମ କଲା ନାହିଁ । ରାମଚନ୍ଦ୍ର ଶେଷରେ ଦଣ୍ଡାୟମାନ ହୋଇ କୃତାଞ୍ଜଳି-ପୁଟରେ କହିଲେ "ଭଗବନ୍, ସୀତାଙ୍କର ନିର୍ମଳ ଚରିତ୍ର ବିଷୟରେ ମୋ ମନକୁ କଦାପି ସନ୍ଦେହ ସ୍ପର୍ଶ କରିନାହିଁ । ସ୍ୱୟଂ ଅଗ୍ନିଦେବ ଆସି ଲଙ୍କାରେ ତାଙ୍କର ପବିତ୍ରତା ପ୍ରତିପନ୍ନ କରିଥିଲେ । କେବଳ ଲୋକାପବାଦ ଭୟରେ ମୁଁ ତାଙ୍କୁ ଶୁଦ୍ଧସ୍ୱଭାବ ଜାଣି ସୁଦ୍ଧା ନିର୍ଦ୍ଦୟ ଭାବରେ ପରିତ୍ୟାଗ କରିଅଛି । ଏଥିପାଇଁ ମୁଁ ଅତ୍ୟନ୍ତ ଲଜ୍ଜିତ ଓ ମର୍ମାହତ । ଅତଏବ ଆପଣମାନେ ମୋତେ କ୍ଷମା କରନ୍ତୁ । ମୁଁ ଜାଣେ, ଏ ପାପର କ୍ଷମା ନାହିଁ । ତଥାପି ଯଦି ସୀତାଦେବୀ ଲୋକଙ୍କ ମନରେ ଆତ୍ମଶୁଦ୍ଧିର ପ୍ରତ୍ୟୟ ଉତ୍ପାଦନ କରନ୍ତି, ତେବେ ମୁଁ ତାଙ୍କୁ ପୁନର୍ବାର ମୋର-ହୃଦୟସିଂହାସନରେ ଅଧିଷ୍ଠିତ କରି ଅନୁତାପର ତୀବ୍ର ବିଷଜ୍ୱାଳାରୁ କିଞ୍ଚିତ ଅବ୍ୟାହତି ପାଇବି ।" ସଭାସ୍ଥଳ ନୀରବ ନିଶ୍ଚଳ । ସୀତାଦେବୀ ବୁଝି ପାରିଲେ ସେ ପରିଗ୍ରହ ବିଷୟରେ ସମସ୍ତଙ୍କର ସହାନୁଭୂତି ଦେଖାଯାଉ ନାହିଁ । ରାମଚନ୍ଦ୍ରଙ୍କ ମନୋଭାବ ମଧ୍ୟ ତାଙ୍କର ଅଗୋଚର ରହିଲା ନାହିଁ । ନିଜକୁ ସମ୍ପୂର୍ଣ୍ଣ ନିରପରାଧା ଜାଣିଲେ ସୁଦ୍ଧା ସୀତାଙ୍କର ନାରୀହୃଦୟ ବ୍ୟଥିତ ହୋଇ ଉଠିଲା । ସେ ରାମଚନ୍ଦ୍ରଙ୍କୁ ମନେ ମନେ ପ୍ରଣାମ କଲେ ଓ ସଜଳନେତ୍ରରେ ଥରେ ଲବ କୁଶଙ୍କ ଆଡ଼କୁ ଅନାଇଲେ । ତାହା ପରେ କୃତାଞ୍ଜଳିପୁଟରେ ଅଧୋବଦନରେ କହିଲେ, "ମା ବସୁନ୍ଧରେ ! ମୁଁ ଯଦି ରାମଙ୍କ ବ୍ୟତୀତ ଅନ୍ୟ କାହାରିକୁ ହୃଦୟରେ ସ୍ଥାନ ଦେଇ ନ ଥାଏଁ, ତାଙ୍କ ପ୍ରତି ମୋର ଭକ୍ତି ଯଦି ନିଶ୍ଚଳା ଥାଏ, ତେବେ ତୁମ୍ଭର କୋଳରେ ମତେ ଆଶ୍ରୟ ଦିଅ । ମୋର ଯଦି କିଛି ପୁଣ୍ୟବଳ ଥାଏ, ତୁମ୍ଭେ ଦ୍ୱିଧା ହୁଅ, ମୁଁ ତହିଁରେ ପ୍ରବେଶ କରେଁ ।"

ସୀତାଙ୍କ ବାକ୍ୟ ଅବସାନ ହେବା ସଙ୍ଗେ ସଙ୍ଗେ ସହସା ପୃଥିବୀ ବିଦୀର୍ଣ୍ଣ ହୋଇଗଲା ଓ ତନ୍ମଧ୍ୟରୁ ଗୋଟିଏ ଅପୂର୍ବ ଜ୍ୟୋତି ନିର୍ଗତ ହେଲା । ଅକସ୍ମାତ୍ ସେହି ଜ୍ୟୋତିରାଶି ଭେଦ କରି ଗୋଟିଏ ଦିବ୍ୟ ସିଂହାସନ ଆବିର୍ଭୂତ ହେଲା । ସିଂହାସନରେ ଅପୂର୍ବ ତେଜୋମୟୀ ବସୁନ୍ଧରା ଦେବୀ ସମାସୀନା । ସେହି ଜ୍ୟୋତିର୍ମୟୀ ଦେବୀ ବାହୁ ପ୍ରସାରଣ କରି ସୀତାଦେବୀଙ୍କୁ କୋଡ଼ରେ ଧାରଣ କଲେ ଓ ସଙ୍ଗେ ସଙ୍ଗେ ସିଂହାସନଟି ଭୂଗର୍ଭରେ ଅନ୍ତର୍ହିତ ହୋଇଗଲା ।

ଏହି ସମୟରେ ଅକସ୍ମାତ୍ ଦିବ୍ୟ ଗନ୍ଧବାୟୁ ପ୍ରବାହିତ ହେଲା; ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା ଓ ସ୍ୱର୍ଗରେ ଦୁନ୍ଦୁଭିଧ୍ୱନି ଶ୍ରୁତିଗୋଚର ହେଲା । ଏହାପରେ ରାଜା ପ୍ରଜା, ଧନୀ ଦରିଦ୍ର, ବାଳକ, ବୃଦ୍ଧ, ସ୍ତ୍ରୀ, ପୁରୁଷ ସମସ୍ତେ ମନ୍ତ୍ରଚାଳିତ ପରି "ଜୟ ସୀତା ଦେବୀଙ୍କର ଜୟ" ଏହି ଧ୍ୱନିରେ ଗଗନ ବିଦୀର୍ଣ୍ଣ କରି ସ୍ୱ ସ୍ୱ ଆବାସକୁ ପ୍ରତ୍ୟାବର୍ତ୍ତନ କଲେ ।

# ନିବେଦନ

କଥା, କାହାଣୀ, ଗଳ୍ପ ପ୍ରଭୃତି କଳ୍ପନାତ୍ମକ ରଚନା ସାହିତ୍ୟର ଗୋଟିଏ ପ୍ରଧାନ ଅଙ୍ଗ । ଏହିସବୁଦ୍ୱାରା କଳ୍ପନାଶକ୍ତି ବିକଶିତ ହେବା ସଙ୍ଗେ ସଙ୍ଗେ ଅନେକ ନୀତିଶିକ୍ଷା ମଧ୍ୟ ମିଳେ । ଆମ୍ଭମାନଙ୍କ ଦେଶର "ହିତୋପଦେଶ" ପରି ଇସପ୍‌ଙ୍କର ଗଳ୍ପଗୁଡ଼ିକ ପ୍ରଧାନତଃ ନୀତିଗର୍ଭମୂଳକ । ଏଥିରେ ଜୀବଜନ୍ତୁମାନଙ୍କର ସ୍ୱଭାବଭଙ୍ଗୀ ଓ ଆଚାର ବ୍ୟବହାର ଗଳ୍ପଛଳରେ ଏପରି ନିପୁଣ ଭାବରେ ବର୍ଣ୍ଣିତ ହୋଇଅଛି ଯେ ତାହା ପାଠ କଲେ ନୀତିଶିକ୍ଷା ଛଡ଼ା ଅନେକ ଗଭୀର ସାମାଜିକ ଓ ରାଜନୈତିକ ତତ୍ତ୍ୱର ମଧ୍ୟ ପରିଚୟ ମିଳେ । ମନୁଷ୍ୟର ରୀତି ନୀତି ଓ ସ୍ୱଭାବ ଚରିତ୍ରର ଉନ୍ନତି କରିବା ଗଳ୍ପଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ହେଲେହେଁ ଜୀବଜନ୍ତୁ ଓ ପଶୁପକ୍ଷୀମାନଙ୍କ ମୁଖରେ ମନୁଷ୍ୟର ଭାଷା ଆରୋପ କରି ଏହି ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ରଖା ହୋଇଅଛି । ଉପଦେଶ ଯେତେ ମୂଲ୍ୟବାନ ହେଲେ ସୁଦ୍ଧା ଅନ୍ୟ ଜଣେ ଉପଦେଷ୍ଟାର ଆସନରେ ବସି ତାହା ପାଳନ କରିବାକୁ ଆଦେଶ ବା ପରାମର୍ଶ ଦେଲେ ତାହାର ମୂଲ୍ୟ ଅନେକ ପରିମାଣରେ କମିଯାଏ—ସାଧାରଣତଃ ମନୁଷ୍ୟର ତାହା ସେତେ ମୁଖରୋଚକ ହୁଏ ନାହିଁ । କିନ୍ତୁ ଏ ଗଳ୍ପଗୁଡ଼ିକରେ ଉପଦେଷ୍ଟା ଅନ୍ତରାଳରେ ଥିବାରୁ ପାଠକର ମନ ସ୍ୱତଃ ସୁନ୍ଦର ଓ ପବିତ୍ର ଜୀବନ ପ୍ରତି ଆକୃଷ୍ଟ ହୋଇପଡ଼େ ଏବଂ ଅନୀତି, ବ୍ୟଭିଚାର ଓ ନୀଚତା ପ୍ରତି ଗୋଟାଏ ବିଦ୍ୱେଷଭାବ ଜାଗ୍ରତ ହୁଏ । ଅନେକ ଗଳ୍ପରେ ନୀତିଟି ଏପରି ପରିସ୍ଫୁଟ ଓ ଗଳ୍ପ ସହିତ ଓତଃପ୍ରୋତଭାବରେ ଜଡ଼ିତ ଯେ ଗୋଟିଏ କ୍ଷୁଦ୍ର ଶିଶୁର ସୁଦ୍ଧା ତାହା ସହଜରେ ହୃଦୟଙ୍ଗମ ହୋଇ ପାରିବ—ସ୍ୱତନ୍ତ୍ର ବାକ୍ୟ ଦ୍ୱାରା ତାହାକୁ ବୁଝାଇ ଦେବା ଆବଶ୍ୟକ ନାହିଁ ।

ଇସପ୍ ଖ୍ରୀଷ୍ଟପୂର୍ବ ୬୨୦ ସାଲରେ ଗ୍ରୀସ ଦେଶର ଗୋଟିଏ କ୍ରୀତଦାସ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପରେ ପରେ ଦୁଇଟି ମୁନିବଙ୍କ ନିକଟରେ ତାଙ୍କୁ ଦାସତ୍ୱ କରିବାକୁ ହୋଇଥିଲା । କିନ୍ତୁ ଶେଷ ମୁନିବ ତାଙ୍କର ଜ୍ଞାନ, ବୁଦ୍ଧି ଓ ବାକ୍‌ପଟୁତାରେ ସନ୍ତୁଷ୍ଟ ହୋଇ ପୁରସ୍କାରସ୍ୱରୂପ ତାଙ୍କୁ ମୁକ୍ତି ପ୍ରଦାନ କରିଥିଲେ । ଦାସତ୍ୱରୁ ମୁକ୍ତି ପାଇଲା ପରେ କ୍ରୀତଦାସମାନେ କୌଣସି ରାଜନୈତିକ ଅଧିକାରରୁ ବଞ୍ଚିତ ହେଉ ନ ଥିଲେ । ଇସପ୍ ସାମାନ୍ୟ କ୍ରୀତଦାସ ଅବସ୍ଥାରୁ ନିଜର ପ୍ରତିଭା ବଳରେ କ୍ରମେ ଉଚ୍ଚରୁ ଉଚ୍ଚତର ପଦରେ ଆରୂଢ଼ ହେଲେ ଏବଂ ତାଙ୍କର ସୁଖ୍ୟାତି ଚାରିଆଡ଼େ ବ୍ୟାପ୍ତ ହୋଇ ପଡ଼ିଲା । ରାଜଦୂତ ଓ ରାଜପ୍ରତିନିଧିରୂପେ ତାଙ୍କୁ ଗ୍ରୀସର ନାନା ପ୍ରଦେଶରେ ଭ୍ରମଣ କରିବାକୁ ହୋଇଥିଲା । ତାଙ୍କର ବାକ୍‌ପଟୁତା ଯୋଗୁଁ

ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ତାଙ୍କର ଏହି ସରଳ ନୀତିଗର୍ଭ ଗଳ୍ପ-ଗୁଡ଼ିକର ବିବୃତି ଦ୍ୱାରା ସେ ଅନେକ ଜଟିଳ ସମସ୍ୟାର ମୀମାଂସା କରି ରାଜା ପ୍ରଜାଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ କରି ପାରିଥିଲେ ।

ପ୍ରାୟ ଦୁଇ ସହସ୍ରାଧିକ ବର୍ଷ ହେଲା ଏହି ଗଳ୍ପଗୁଡ଼ିକ ସାହିତ୍ୟଜଗତରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରି ଆସିଅଛି । ପୃଥିବୀର ପ୍ରାୟ ସମସ୍ତ ସଭ୍ୟ ଭାଷାରେ ଗଳ୍ପଗୁଡ଼ିକ ଅନୂଦିତ ହୋଇଅଛି ଏବଂ ଏକ ଏକ ଭାଷାରେ ଏହାର ବିଭିନ୍ନ ସଂସ୍କରଣ ମଧ୍ୟ ଦେଖା ଯାଇଅଛି । ଗଳ୍ପଗୁଡ଼ିକର ଆଦର ଦେଶକାଳ-ନିର୍ବିଶେଷରେ ଏପର୍ଯ୍ୟନ୍ତ ସୁଦ୍ଧା ସେହିପରି ଅକ୍ଷୁଣ୍ଣ ରହିଅଛି ।

ନିମ୍ନ ଶ୍ରେଣୀର କେତେକ ପାଠ୍ୟପୁସ୍ତକରେ ଏଥିରୁ କେତେଗୋଟି ଗଳ୍ପ ସନ୍ନିବେଶିତ ହୋଇଥିଲେ ସୁଦ୍ଧା ଇସପ୍‌ଙ୍କ ଗଳ୍ପଗୁଡ଼ିକ ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ସ୍ୱତନ୍ତ୍ରଭାବରେ ସଂକଳିତ ହୋଇ ନାହିଁ । ପୁଣି ଉକ୍ତ ଗଳ୍ପମାନଙ୍କ ମଧ୍ୟରୁ କାହାରି କାହାରି ଭାଷା କଠିନ ଶବ୍ଦପ୍ରୟୋଗଦ୍ୱାରା ଏପରି ଭାରାକ୍ରାନ୍ତ ଯେ ଗଳ୍ପର ସୌନ୍ଦର୍ଯ୍ୟହାନି ଘଟିଥିଲା ପରି ବୋଧ ହୁଏ । ଏହି ଅଭାବ ଦୂରୀକରଣ ନିମନ୍ତେ ମୁଁ ଏହି ଗଳ୍ପଗୁଡ଼ିକ ପ୍ରକାଶ କରିବାକୁ ପ୍ରୟାସୀ ହୋଇଅଛି । ଭାଷା ଯଥାସମ୍ଭବ ସରଳ, ସହଜ ଓ ଶିଶୁଜନସୁଲଭ କରା ହୋଇଅଛି ଏବଂ ମୂଳ ଗଳ୍ପଗୁଡ଼ିକର ସୌନ୍ଦର୍ଯ୍ୟ ଅବିକୃତ ରଖିବା ନିମନ୍ତେ ଯତ୍ନର କୌଣସି ତ୍ରୁଟି ହୋଇ ନାହିଁ । ଗଳ୍ପଗୁଡ଼ିକ ନିଜ ଗୁଣରେ ଏପରି ଗଣ୍ୟସ୍ଥାନ ଯେ ଏଥିପ୍ରତି ସର୍ବସାଧାରଣଙ୍କର ଯେ ସହାନୁଭୂତି ହେବ ଏପରି ଆଶା କରିବା ଅମୂଳକ ନୁହେଁ । ଏ ପୁସ୍ତକରେ ବାଛି ବାଛି କେବଳ ଅତ୍ୟୁତ୍କୃଷ୍ଟ ଶହେ ଗୋଟି ଗଳ୍ପ ଦିଆଗଲା । ଏଥିପାଇଁ ଏହାର ନାମ ''କଥା ଶତକ'' ରଖା ହୋଇଅଛି । ଏଥିପ୍ରତି ପାଠକମାନଙ୍କର ଆଗ୍ରହ ଦେଖି ପାରିଲେ ଭବିଷ୍ୟତରେ ଆଉ କେତୋଟି ଗଳ୍ପ ପ୍ରକାଶ କରିବାର ବାସନା ରହିଲା । ଇତି ।

ବାଙ୍କନିଧି ପଟ୍ଟନାୟକ

# ସୂଚୀପତ୍ର

(ଇସପ୍ ଗଳ୍ପ)

## ବାଳିକା ଓ ଦୁଧପସରା

ଥରେ ଗୋଟିଏ ବାଳିକା ଦୁଧପସରାଟିଏ ମୁଣ୍ଡାଇ ବାଟରେ ଯାଉ ଯାଉ ଭାବିଲା, "ଏ ଦୁଧତକ ବିକିଲେ ଯେଉଁ ପଇସା ହେବ, ସେଥିରେ କେତେ ଗୁଡ଼ାଏ କୁକୁଡ଼ା ଅଣ୍ଡା କିଣିବି । ଅଣ୍ଡାତକ ଫୁଟିଲେ ଅନେକ ଛୁଆ ହେବେ । ସେ ଛୁଆ-ଗୁଡ଼ିକ ପୁଣି ବଢ଼ି ବଡ଼ କୁକୁଡ଼ା ହେଲେ ତାଙ୍କୁ ବିକି ଅନେକ ପଇସା ପାଇବି । ସେ ପଇସାରେ ଗୋଟିଏ ଭଲ ପୋଷାକ କିଣି ତାକୁ ପିନ୍ଧି ଯାତ୍ରା ଦେଖିବାକୁ ଯିବି । କେହି କିଛି ପଚାରିଲେ ଗର୍ବରେ ମୁଣ୍ଡ ହଲାଇ ସେଠାରୁ ଚାଲିଯିବି ।" ଏହିପରି ସୁଖସ୍ୱପ୍ନ ଦେଖୁ ଦେଖୁ ସେହି ଅନୁସାରେ ସେ ମୁଣ୍ଡକୁ ଏପରି ଭାବରେ ହଲାଇ ଦେଲା ଯେ, ମୁଣ୍ଡରୁ ଦୁଧପସରାଟି ଖସି ପଡ଼ିଲା ଓ ସଙ୍ଗେ ସଙ୍ଗେ ତାର ସବୁ କଳ୍ପନାଗୁଡ଼ିକ ଚୂନା ହୋଇଗଲା ।

## ଛେଳିଜଗୁଆଳ ଓ ବଣଛେଳି

ଥରେ ଗୋଟିଏ ଛେଳିଜଗୁଆଳ ସନ୍ଧ୍ୟାବେଳେ ଚରାଭୂଇଁରୁ ଛେଳିପଲଙ୍କୁ ଅଡ଼ାଇ ଆଣୁ ଆଣୁ ପଲ ଭିତରେ କେତେଗୁଡ଼ିଏ ବଣଛେଳି ଆସି ମିଶି ଗଲେ । ଜଗୁଆଳ ବଡ଼ ଖୁସି ହୋଇ ସେମାନଙ୍କୁ ନେଇ ନିଜ ଛେଳିମାନଙ୍କ ସଙ୍ଗେ ଏକା ଗୁହାଳରେ ରଖିଲା । ତହିଁ ଆରଦିନ ବେଶି ବରଫ ପଡ଼ିବାରୁ ଜଗୁଆଳ ଛେଳି-ମାନଙ୍କୁ ଚରାଇବାକୁ ନ ନେଇ ଗୁହାଳରେ ବନ୍ଦ କରି ରଖିଲା । ସେ ଦିନ ସେ ନିଜ ଛେଳିମାନଙ୍କୁ ସାମାନ୍ୟ କିଛି କିଛି ଖାଇବାକୁ ଦେଇ ବଣ ଛେଳିମାନେ କେଜାଣି ଲୋଭରେ ପଡ଼ି ରହିଯିବେ, ଏହି ଆଶାରେ ସେମାନଙ୍କୁ ଖୁବ୍ ଭଲ କରି ଖାଇବାକୁ ଦେଲା । ବରଫ ଛାଡ଼ି ଯିବାରୁ ସେ ସମସ୍ତଙ୍କୁ ଏକ ସଙ୍ଗରେ ନେଇ ଚରାଇବାକୁ ଗଲା । କିନ୍ତୁ ବଣ ଛେଳିଗୁଡ଼ିକ ଆଉ ପଲରେ ନ ରହି ପାହାଡ଼ ଉପରକୁ ପଳାଇ ଗଲେ । ଜଗୁଆଳ ସେମାନଙ୍କୁ ଗାଳି ଦେଇ କହିଲା, "ମୁଁ ଝଡ଼ ବରଷା ସମୟରେ ମୋ ନିଜ ଛେଳିମାନଙ୍କୁ ନ ପଚାରି ତୁମ୍ଭମାନଙ୍କର ଏତେ ଯତ୍ନ ନେଲି, ଅଥଚ ଏତେବେଳକୁ ତୁମେମାନେ ମୋତେ ଦଗା ଦେଇ ପଳାଉଛ ?" ସେମାନଙ୍କ ମଧ୍ୟରୁ ଗୋଟିଏ ବଣଛେଳି ପଛକୁ ଫେରି କହିଲା, "ତୁମେ ଆମର ଏତେ ଯତ୍ନ କଲ ବୋଲି ତ ଆମେମାନେ ପୂର୍ବରୁ ସତର୍କ ହୋଇ ପଳାଉଛୁଁ । ତୁମେ କାଲି ଯେ ନିଜ ଛେଳିମାନଙ୍କଠାରୁ ଆମମାନଙ୍କୁ ବେଶି ଖାଇବାକୁ ଦେଲ, ଏଥିରୁ

ବୁଝାଯାଉଛୁ ଯେ, ପୁଣି ଯେତେବେଳେ ଆଉ ଗୁଡ଼ିଏ ନୂଆ ଲୋକ ଆସିବେ, ତୁମେ ଆମମାନଙ୍କୁ ନ ପଚାରି ସେମାନଙ୍କୁ ବେଶି ଆଦର କରିବ ।"

ନୂଆ ବନ୍ଧୁ ପାଇ ପୁରୁଣା ବନ୍ଧୁଙ୍କୁ ଅନାଦର କରିବା ଉଚିତ ନୁହେଁ ।

## ବିଲୁଆ ଓ ଅଙ୍ଗୁରଫଳ

ଥରେ ଗୋଟିଏ ବିଲୁଆ ଭୋକରେ ବିକଳ ହୋଇ ବୁଲି ବୁଲି ଦେଖି ପାରିଲା ଯେ, ଗୋଟିଏ ଅଙ୍ଗୁର ଗଛରେ ପେନ୍ଥା ପେନ୍ଥା ହୋଇ ଅନେକ ଅଙ୍ଗୁର ପାଚିଛି । ସେ ଅଙ୍ଗୁର ପାଇବା ଲାଗି ଅନେକ ଚେଷ୍ଟା କଲା, କିନ୍ତୁ କିଛି ଫଳ ହେଲା ନାହିଁ— ଖାଲି ପରିଶ୍ରମ ସାର ହେଲା । ସେ ଯେତେ ଡେଇଁଲେ ସୁଦ୍ଧା ଅଙ୍ଗୁର ନିକଟକୁ ତାର ମୁହଁ ପାଇଲା ନାହିଁ । ଶେଷରେ ହତାଶ ହୋଇ ମନକୁ ବୋଧ ଦେବା ଲାଗି ବିଲୁଆ କହିଲା, "ଅଙ୍ଗୁରଗୁଡ଼ାକ ଖଟା ହୋଇଛି । ମୁଁ ଯାହା ମନେ କରିଥିଲି ପାଚିଛି ବୋଲି, ତାହା ନୁହେଁ । ଆଉ ତାକୁ ଖାଇ ଫଳ କଅଣ ?"

## ଦୁଷ୍ଟ କୁକୁର

ଜଣେ ଲୋକର ଗୋଟିଏ ବଡ଼ ଦୁଷ୍ଟ କୁକୁର ଥିଲା । ସେ ଯାହାକୁ ଦେଖେ ଚୁପ କରି ପଛେ ପଛେ ଯାଇ ତାକୁ କାମୁଡ଼ି ଦିଏ । ତାହାର ଏପରି ପ୍ରକୃତି ଦେଖି କୁକୁରର ଖାଉନ୍ଦ ତା ବେକରେ ଗୋଟିଏ ଘଣ୍ଟି ବାନ୍ଧି ଦେଲା । କାରଣ ତାହେଲେ ସେ ଯେଉଁ ବାଟରେ ଯିବ, ଲୋକେ ଜାଣି ପାରି ସତର୍କ ହୋଇ ରହିବେ । କିନ୍ତୁ କୁକୁର ଏତେ କଥା ବୁଝି ନପାରି ମନେ କଲା, ଏଇଟା ମୋର ବାହାଦୁରୀର ଚିହ୍ନ । ଏହା ଭାବି ସେ ଗର୍ବରେ ଘଣ୍ଟି ବଜାଇ ବଜାରଯାକ ବୁଲିବାକୁ ଲାଗିଲା ।

ଥରେ ଗୋଟିଏ ବୁଢ଼ା କୁକୁର ତାକୁ ଦେଖି କହିଲା, "ତୁ ମିଛରେ କାହିଁକି ଏତେ ଦେଖାଇ ହୋଇ ବୁଲୁଛୁ ? ତୋ ବେକରେ ଯେଉଁ ଘଣ୍ଟି ବନ୍ଧା ହୋଇଅଛି, ସେଇଟା ତୋ ଗୁଣ ଲାଗି ଦିଆ ହୋଇ ନାହିଁ—ସେଇଟା ତୋର କଳଙ୍କର ଚିହ୍ନ । ଏଥିରୁ ସମସ୍ତେ ଜାଣି ପାରିବେ ଯେ, ଏଇଟା ଗୋଟାଏ ଦୁଷ୍ଟ କୁକୁର ଏବଂ ଦେଖିଲା ମାତ୍ରେ ଦୂର ଦୂର କରିବେ ।"

ସମସ୍ତ ସମୟରେ ଲୋକେ ଅଖ୍ୟାତିକୁ ଖ୍ୟାତି ବୋଲି ମନେ କରି ଓଲଟି ଗର୍ବ କରନ୍ତି ।

## ଗଧ ଓ ଖଚର

ଜଣେ ଲୋକ ଗୋଟିଏ ଗଧ ଓ ଖଚର ଉପରେ ଲବଣ ପଣ୍ୟ ଲଦି ଏକସ୍ଥାନକୁ ନେବାକୁ ବାହାରିଲା । ସମାନ ଭୂଇଁରେ ବୋଝ ଘେନି ଚାଲୁଥିବାବେଳେ ଗଧକୁ କିଛି ବାଧୁ ନ ଥିଲା । କିନ୍ତୁ ଯେତେବେଳେ ପାହାଡ଼ିଆ ବାଟ ପଡ଼ିଲା, ସେ ଆଉ ପାରିଲା ନାହିଁ । ବହୁ କଷ୍ଟରେ ଗୋଟିଏ ଗୋଟିଏ ଚାଲି ଶେଷରେ ସେ ଖଚରକୁ କହିଲା, "ଭାଇ ! ମତେ ଭାରି କଷ୍ଟ ହେଲାଣି, ତୁ ଯେବେ ଦୟା କରି ଖଣ୍ଡେ ବାଟ ମୋ ବୋଝକୁ ଗୁଡ଼ାଏ ଧରନ୍ତୁ, ତେବେ ମତେ ଆଉ ଏତେ ବାଧନ୍ତା ନାହିଁ ।" ଯେତେ କହିଲେ ମୂର୍ଖ ଖଚର ଗଧ କଥା ଜମା ଶୁଣିଲା ନାହିଁ ।

କିଛି ସମୟ ପରେ ଗଧଟି ବାଟରେ ପଡ଼ି ମରିଗଲା । ଲୋକଟି ଏପରି ଜଙ୍ଗଲ ବାଟରେ ଆଉ କିଛି ଉପାୟ ନ ଦେଖି ଖଚର ଉପରେ ଗଧର ବୋଝଟିକ ଲଦି ଦେଲା । ଶେଷରେ ଗଧର ଚମଡ଼ା ଟଣ୍ଡି ମଧ୍ୟ ଛଡ଼ାଇ ତାହା'ର ଉପରେ ଚୋଟେଇ କଲା । ଏତେ ଭାରି ବୋଝରେ ଗଁ ଗଁ ହୋଇ ଖଚର ଭାବିଲା, "ମୋ ପ୍ରତି ଠିକ୍ ବ୍ୟବହାର ହୋଇଅଛି । ମୁଁ ଯଦି ଗଧର ଆପଦ ବେଳେ ତାକୁ ଟିକିଏ ସାହାଯ୍ୟ କରିଥାନ୍ତି, ତାହାହେଲେ ମୋର କେବେହେଁ ଏ ଦଶା ହୋଇ ନଥାନ୍ତା ।"

## ବାଳକ ଓ ବାଦାମ ମାଠିଆ

ଗୋଟିଏ ମାଠିଆରେ ଗୁଡ଼ାଏ ବାଦାମ ପୂର୍ଣ୍ଣ ହୋଇଥିଲା । ଗୋଟିଏ ବାଳକ ମାଠିଆ ଭିତରେ ହାତ ପୂରାଇ ଲୋଭ କରି ମୂଠାରେ ଯେତେ ବାଦାମ୍ ଧରିବ ତେତେ ଧରି ହାତ କାଢ଼ି ଆଣିଲା ବେଳକୁ ମାଠିଆ ବେକରେ ଲାଗି ହାତ ଅଟକି ରହିଲା । ବାଦାମର ଲୋଭ ଛାଡ଼ି ପାରୁ ନାହିଁ, କି ହାତ ମଧ୍ୟ ବାହାର କରି ପାରୁ ନାହିଁ, ଏହିପରି ଭାବରେ ରହି ଶେଷରେ ବାଳକଟି ହତାଶ ହୋଇ କାନ୍ଦିବାକୁ ଲାଗିଲା । ଗୋଟିଏ ଲୋକ ଏହା ଦେଖି ବାଳକକୁ କହିଲା, "ଆଉ ବେଶି ପାଇଁ ଲୋଭ କରୁଛୁ କାହିଁକି ? ଅଳ୍ପରେ ସନ୍ତୁଷ୍ଟ ରହ । ତାହାହେଲେ ଅକ୍ଳେଶରେ ହାତଟି କାଢ଼ି ଆଣି ପାରିବୁ ।" ବାଳକଟି ସେହିପରି କରିବାରୁ କିଛି ବାଦାମ ମଧ୍ୟ ପାଇଲା, ହାତଟି ମଧ୍ୟ ବାହାରି ଆସିଲା ।

ବେଶିପାଇଁ ଚେଷ୍ଟା କଲେ ମୂଳରୁ କିଛି ହୁଏ ନାହିଁ ।

## ଛଦ୍ମବେଶୀ ଗଧିଆ

ଥରେ ଗୋଟିଏ ଗଧିଆ ମନେ କଲା, ମୁଁ ଯେବେ ଗୋଟିଏ କପଟ ବେଶ ଧରି ପାରେ; ତାହାହେଲେ ମୋର ଆଉ ଖାଇବା ପିଇବାରେ ଅଭାବ ହେବ ନାହିଁ ।

ଗୋଟିଏ ଗୋଟିଏ କରି ମେଣ୍ଢା ପଲକୁ ନିଶ୍ଚିନ୍ତରେ ବସି ଖାଇବ । ଏହିପରି ଭାବି ଖଣ୍ଡିଏ ମେଣ୍ଢା ଚମଡ଼ାରେ ଦେହକୁ ଭଲ କରି ଘୋଡ଼ାଇ ଦେଇ ସେ ମେଣ୍ଢାପଲଙ୍କ ସାଙ୍ଗରେ ଚରିବାକୁ ଲାଗିଲା । ଜଗୁଆଳ ମଧ୍ୟ ସେ କଥା ଜାଣି ପାରିଲା ନାହିଁ । ସନ୍ଧ୍ୟା ହେଲାରୁ ଜଗୁଆଳ ଅନ୍ୟାନ୍ୟ ମେଣ୍ଢାଙ୍କ ସଙ୍ଗେ ଗୁହାଳରେ ତାକୁ ନେଇ ଭର୍ତ୍ତି କରି ଖାଇବାକୁ ଦେଇ ତାଟି କିଳିଦେଲା । ଘରରେ ଜଗୁଆଳର ଗୋଟିଏ ମେଣ୍ଢା ଦରକାର ପଡ଼ିବାରୁ ସେ ଗୁହାଳକୁ ଯାଇ ଗଧିଆକୁ ଅନ୍ଧାରରେ ମେଣ୍ଢା ମନେ କରି ଆଣି ହାଣି ପକାଇଲା । ଗୁପ୍ତ ବେଶରେ ମେଣ୍ଢା ମାରିବାକୁ ଯାଇ ଶେଷରେ ଗଧିଆ ନିଜେ ହାଣ ଖାଇଲା ।

ଯେ ପରର ଅନିଷ୍ଟ ଖୋଜେ, ତାର ନିଜର ଅନିଷ୍ଟ ହୁଏ ।

## ମୂଷିକ ସଭା

କି ଉପାୟ କଲେ ବିରାଡ଼ି ଭୟରୁ ରକ୍ଷା ମିଳିବ, ଏଥିପାଇଁ ଥରେ ମୂଷାମାନେ ମିଳି ଗୋଟିଏ ସଭା କଲେ । ନାନା ପ୍ରକାର ତର୍କ ହୋଇ ଶେଷକୁ ସ୍ଥିର ହେଲା ଯେ, ବିରାଡ଼ି ବେକରେ ଗୋଟିଏ ଘଣ୍ଟି ବାନ୍ଧିଦେଲେ ସବୁଠାରୁ ଭଲ ହେବ । ତାହାହେଲେ ବିରାଡ଼ି ଆସିବାବେଳେ ମୂଷାମାନେ ଘଣ୍ଟିର ଟଣ୍ ଟଣ୍ ଶବ୍ଦ ଶୁଣି ସତର୍କ ହୋଇ ନିଜ ନିଜ ଗାତକୁ ପଳାଇ ଯିବେ । କିନ୍ତୁ ଯେତେବେଳେ କଥା ଉଠିଲା—ଘଣ୍ଟି ବାନ୍ଧିବ କିଏ; କେହି ଆଉ ସାହସ କରି ବାହାରିଲେ ନାହିଁ ।

ମୁହଁରେ କହିବାଠାରୁ କାର୍ଯ୍ୟରେ କରିବା ବହୁତ ଅନ୍ତର ।

## ମାଙ୍କଡ଼ ଓ କେଉଟ

ଗୋଟିଏ ମାଙ୍କଡ଼ ଗଛ ଉପରେ ବସି ଦେଖି ପାରିଲା ଯେ, କେତେଗୁଡ଼ିଏ କେଉଟ ନଦୀରେ ଜାଲ ପକାଉଅଛନ୍ତି । ସେ ଛପି ରହି ସେମାନଙ୍କର ସବୁ କାର୍ଯ୍ୟ ଦେଖୁଥାଏ । କେଉଟମାନେ କିଛି ସମୟ ପରେ ମାଛଧରା ଶେଷ କରି ଜାଲକୁ ନଈ ଅତଡ଼ାରେ ରଖି ଦେଇ ଘରକୁ ଖାଇବାକୁ ଗଲେ । ଜନ୍ତୁମାନଙ୍କ ମଧ୍ୟରେ ମାଙ୍କଡ଼ମାନେ ବଡ ନକଲ କରି ପାରନ୍ତି । ସେମାନଙ୍କୁ ଚାଲିଯିବାର ଦେଖି ସେ ଗଛରୁ ଓହ୍ଲାଇ କେଉଟମାନଙ୍କ ପରି ଜାଲ ପକାଇବାକୁ ଚେଷ୍ଟା କଲା । ଶେଷରେ ସେହି ଜାଲରେ ନିଜେ ଛନ୍ଦି ହୋଇ ବୁଡ଼ିଯିବା ସମୟରେ ଭାବିଲା, "ମତେ ଠିକ୍ ଦଣ୍ଡ ହୋଇଛି । ଯେ ଦିନେ ଜାଲ ଧରି ନାହିଁ, ତାର ସେଥିରେ ମାଛ ଧରିବାକୁ ଯିବା କି ଆବଶ୍ୟକ ଥିଲା ?"

## ସିଂହ ଓ ମୂଷା

ଥରେ ଗୋଟିଏ ସିଂହ ନିଦରେ ଶୋଇଥିଲା, ଏପରି ସମୟରେ ଗୋଟିଏ ମୂଷା ତା ମୁହଁ ଉପର ଦେଇ ଦୌଡ଼ି ଯିବାରୁ ତାର ନିଦ ଭାଙ୍ଗିଗଲା । ସିଂହ ରାଗରେ ଉଠି ମୂଷାକୁ ଧରି ମାରି ପକାଇବାକୁ ବସିଲା । ମୂଷା କାତର ଭାବରେ କହିଲା, "ଆଜ୍ଞା ଦୟା କରି ମୋତେ ଛାଡ଼ି ଦିଅ, ମୁଁ ନିଶ୍ଚୟ ଥରେ ତୁମର ଉପକାର କରିବି ।" ଏ କଥାରେ ସିଂହ ଟିକିଏ ହସି ତାକୁ ଛାଡ଼ି ଦେଲା ।

କିଛିଦିନ ପରେ ଦୈବାତ୍ କେତେଗୁଡ଼ିଏ ଶିକାରୀ ସେହି ସିଂହକୁ ଧରି ଖୁବ୍ ଶକ୍ତ କରି ଦୌଡ଼ିରେ ବାନ୍ଧି ପକାଇଲେ । ସିଂହ ଭୂଇଁରେ ପଡ଼ି ଚିତ୍କାର କରିବାକୁ ଲାଗିଲା । ଗର୍ଜନରୁ ମୂଷା ସିଂହକୁ ଚିହ୍ନି ପାରି ତା ପାଖକୁ ଆସି ଦାନ୍ତରେ ଦୌଡ଼ି ସବୁ କାଟି ପକାଇଲା ଏବଂ ତାକୁ ମୁକ୍ତ କରି ଦେଇ କହିଲା, "ମୋଠାରୁ ତୁମେ ଯେ କେବେ କିଛି ଉପକାର ପାଇବ, ଏ କଥା ତୁମେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲ । ମୋ କଥା ଯେତେବେଳେ ତୁମେ ହସି କରି ଉଡ଼ାଇ ଦେଉଥିଲ; କିନ୍ତୁ ବର୍ତ୍ତମାନ ବୁଝି ପାରୁଛ ଯେ ଗୋଟିଏ କ୍ଷୁଦ୍ର ମୂଷା ମଧ୍ୟ ପଶୁରାଜ ସିଂହର କିଛି ଉପକାର କରି ପାରେ ।"

## ବାଡ଼ି ଗୋଛା

ଜଣେ ବୁଢ଼ାଲୋକର କେତେଗୁଡ଼ିଏ ପୁଅ ଥିଲେ । ସେମାନେ ସବୁବେଳେ ଆପଣା ଆପଣା ମଧ୍ୟରେ କଳି ଲଗାନ୍ତି । ବୁଢ଼ା ସେମାନଙ୍କର କଳି ବନ୍ଦ କରିବାକୁ ନାନା ଉପଦେଶ ଦେଲା । କିନ୍ତୁ କୌଣସିଥିରେ କିଛି ଫଳ ହେଲା ନାହିଁ । ତହୁଁ ସେ ଭାବିଲା, ଭିନ୍ନ ହେଲେ କି ଅନିଷ୍ଟ ହୁଏ, ଗୋଟିଏ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଦେଇ ଏମାନଙ୍କୁ ତାହା ବୁଝାଇ ଦେବି ।

ଥରେ ସେ ସବୁ ପୁଅମାନଙ୍କୁ ଡ଼ାକି ଗୋଛାଏ ବାଡ଼ି ଆଣିବାକୁ କହିଲା । ସେମାନେ ବାଡ଼ି ଆଣିବାରୁ ସେ ଗୋଟି ଗୋଟି କରି ପ୍ରତ୍ୟେକଙ୍କ ହାତରେ ବାଡ଼ି ଗୋଛା ଦେଇ ତାକୁ ଭାଙ୍ଗିବାକୁ କହିଲା । ସମସ୍ତେ ଲାଗିପଡ଼ି ନାନା ଚେଷ୍ଟା କଲେ, କିନ୍ତୁ ବାଡ଼ି ଗୋଛାଟି ଭାଙ୍ଗି ପାରିଲେ ନାହିଁ । ତତ୍ପରେ ସେ ଗୋଛାଟି ଫିଟାଇ ଦେଇ ଖଣ୍ଡିଏ ଖଣ୍ଡିଏ ବାଡ଼ି ସେମାନଙ୍କ ହାତରେ ଦେବାରୁ ସେମାନେ ଅକ୍ଳେଶରେ ଭାଙ୍ଗିଦେଲେ । ତହୁଁ ବୃଦ୍ଧ ସେମାନଙ୍କୁ କହିଲା, "ବାଡ଼ିଗୁଡ଼ିକ ଏକତ୍ର ବନ୍ଧା ହୋଇଥିବାରୁ ତୁମ୍ଭେମାନେ କେହି ଭାଙ୍ଗି ପାରୁ ନ ଥିଲ । କିନ୍ତୁ ସେଗୁଡ଼ିକ ଅଲଗା ହୋଇଯିବାରୁ ସହଜରେ ଭାଙ୍ଗି ଦେଲ । ସେହିପରି ତୁମେମାନେ ଯେତେଦିନ

ଯାଏ ପରସ୍ପର ମିଳି ମିଶି ଏକାଠି ଥିବ, କେହି ତୁମ୍ଭମାନଙ୍କର କିଛି ଅନିଷ୍ଟ କରି ପାରିବେ ନାହିଁ । କିନ୍ତୁ ଅଲଗା ହୋଇଗଲେ ତୁମମାନଙ୍କର ବଳ ଭାଙ୍ଗି ଯିବ ଓ ଶତ୍ରୁମାନେ ତୁମମାନଙ୍କୁ ହରାଇ ଦେବେ ।"

ଘୋଡ଼ାକୁ ଘୋଡ଼ା ସରି ନୁହେ ।

## ଗଧ ଓ ଝିଣ୍ଟିକା

ଥରେ ଗୋଟିଏ ଗଧ ପଡ଼ିଆରେ ଚରୁ ଚରୁ ଝିଣ୍ଟିକାମାନଙ୍କର ଚିଁ ଚିଁ ଶବ୍ଦ ଶୁଣି ଅତ୍ୟନ୍ତ ମୁଗ୍ଧ ହୋଇଗଲା । ସେ ମନେ କଲା, "ଆହା ! ମୋର ଏହିପରି ସୁନ୍ଦର ସ୍ୱର ଆଆନ୍ତା କି ?" ସେ ଝିଣ୍ଟିକାମାନଙ୍କୁ ପଚାରିଲା, "ତୁମେମାନେ କଅଣ ଖାଅ ଯେ ତୁମମାନଙ୍କର ସ୍ୱର ଏତେ ମଧୁର ହୋଇଛି ?" ସେମାନେ କହିଲେ, "କେବଳ ଶିଶିର ଆମ୍ଭମାନଙ୍କର ଆହାର ।" ଗଧ ତହୁଁ ସ୍ଥିର କଲା, ମୁଁ ଏଣିକି ଖାଲି ଶିଶିର ଖାଇବି, ତାହାହେଲେ ଶୀଘ୍ର ମୋର ସ୍ୱର ବଦଳି ଯିବ । ଏହିପରି ଭାବି ସେ ଖିଆପିଆ ଛାଡ଼ି ଦେବାରୁ ଅଳ୍ପଦିନ ମଧ୍ୟରେ ମରିଗଲା ।

## ଭାଲୁ ଓ ଦୁଇପଥିକ

ଥରେ ଦୁଇଟି ଲୋକ ବଣ ମଧ୍ୟରେ ବୁଲୁ ବୁଲୁ ହଠାତ୍ ବାଟରେ ଗୋଟିଏ ଭାଲୁ ଦେଖି ପାରିଲେ । ସେମାନଙ୍କ ମଧ୍ୟରୁ ଜଣେ ଅତି ଶୀଘ୍ର ଗଛ ଉପରେ ଚଢ଼ି ପତ୍ର ଆଢ଼ୁଆଳରେ ଲୁଚିଗଲା । ଅନ୍ୟ ଜଣକେ ଆଉ କିଛି ଉପାୟ ନ ଦେଖି ଭୂଇଁରେ ନିର୍ଜୀବ ଭାବରେ ପଡ଼ି ରହିଲା । ଭାଲୁ ତାହା ନିକଟକୁ ଆସି ତାହା ଦେହ ସୁଙ୍ଘିବାବେଳେ ସେ ଏପରିଭାବରେ ନିଃଶ୍ୱାସ ପ୍ରଶ୍ୱାସ ବନ୍ଦ କରି ମଲା ପରି ପଡ଼ି ରହିଲା, ଯେପରି ତାହାର ପିଣ୍ଡରେ ପ୍ରାଣ ନାହିଁ । ଭାଲୁ ତାକୁ ମଡ଼ା ମନେ କରି ଛାଡ଼ି ଚାଲିଗଲା, କାରଣ ଭାଲୁମାନେ ମଡ଼ା ଦେହକୁ ଛୁଅନ୍ତି ନାହିଁ । ଭାଲୁ ଚାଲିଯିବା ପରେ ଅନ୍ୟ ଲୋକଟି ଗଛରୁ ଓହ୍ଲାଇ ଆସି ତାର ବନ୍ଧୁକୁ ଥଟ୍ଟାରେ ପଚାରିଲା; "କି ହୋ ! ଭାଲୁ ତମ କାନ ପାଖରେ ଗୁନ ଗୁନ କରି କଣ କହୁଥିଲା କି ?" ଉତ୍ତରରେ ଅନ୍ୟ ଜଣଙ୍କେ କହିଲା, "ସେ ମୋତେ ଏହି ଉପଦେଶ ଦେଇଗଲା ଯେ ବିପଦ ସମୟରେ ଯେଉଁ ଲୋକ ବନ୍ଧୁକୁ ପରିତ୍ୟାଗ କରେ, ତାକୁ କେବେହେଁ ବିଶ୍ୱାସ କରିବ ନାହିଁ ।"

ବିପଦକାଳରେ ବନ୍ଧୁର ପରୀକ୍ଷା ହୁଏ ।

## ପୀଡ଼ିତ ସିଂହ

ଗୋଟିଏ ସିଂହ ଅତଶସ୍ତ ବୁଢ଼ା ହୋଇଯିବାରୁ ଆଉ ଦୌଡ଼ି ଧପଟି ଶୀକାର କରି ପାରିଲା ନାହିଁ । ଭୋକରେ ବ୍ୟାକୁଳ ହୋଇ ସେ ମନେ କଲା, ଏଣିକି ତ ବଳ ବୟସ ଗଲା, ଗୋଟିଏ କିଛି କୌଶଳ ନ କଲେ ଆଉ ଖାଇବାକୁ ମିଳିବ ନାହିଁ । ତେବେ ସେ ଶକ୍ତ ବେମାର ପଡ଼ିଥିବାର ବାହାନା କରି ଯାଇ ନିଜ ଗୁହା ମଧ୍ୟରେ ଲୁଚି ରହିଲା ଏବଂ ପ୍ରକାରାନ୍ତରେ ଏ କଥା ସମସ୍ତଙ୍କୁ ଜଣାଇ ଦେଲା । ବଣର ଜନ୍ତୁମାନେ ଏଥିରେ ଦୁଃଖିତ ହୋଇ ଗୋଟି ଗୋଟି କରି ତା ସଙ୍ଗେ ସାକ୍ଷାତ୍ କରିବାକୁ ଆସିଲେ । ସିଂହ ନିଶ୍ଚିନ୍ତରେ ସମସ୍ତଙ୍କୁ ଗୁହା ଭିତରେ ଗ୍ରାସ କରିବାକୁ ଲାଗିଲା । ଏହିପରି ଅନେକ ଜନ୍ତୁ ଖାଇ ସାରିବା ପରେ, ବିଲୁଆ ସିଂହର ଫନ୍ଦି ବୁଝି ପାରିଲା ।

ତେବେ ବିଲୁଆ ସିଂହର ଗୁହା ନିକଟକୁ ଯାଇ ବାହାରେ ଥାଇ ସିଂହର ଦେହ କିପରି ଅଛି ବୋଲି ପଚାରିଲା । ସିଂହ ଉତ୍ତର କଲା, "ମୁଁ ନୁହେଁ ଭଲ, ନୁହେ ମନ୍ଦ, ଏପରି ଭାବରେ ଅଛି । ତୁମ୍ଭେ ବାହାରଟାରେ ଛିଡ଼ା ହୋଇଛ କାହିଁକି ? ଦୟା କରି ଟିକିଏ ଭିତରକୁ ଆସ, କଥାବାର୍ତ୍ତା ହେବା ।" ବିଲୁଆ କହିଲା, "ମତେ କ୍ଷମା କର, ମୁଁ ଭିତରକୁ ଯାଇ ପାରିବି ନାହିଁ । ମୁଁ ଦେଖୁଛି, ଗୁହା ଭିତରକୁ ଯିବାର ପାଦଚିହ୍ନ ଅନେକ ଅଛି, କିନ୍ତୁ ଫେରି ଆସିବାର ଚିହ୍ନ ଆଦୌ ନାହିଁ । ମୋର ଏଥିରେ ବଡ଼ ସନ୍ଦେହ ହେଉଛି ।"

ବୁଦ୍ଧିମାନ୍ ଲୋକମାନେ ଅନ୍ୟର ବିପଦ ଦେଖି ସାବଧାନ ହୁଅନ୍ତି ।

## ବାଳକ ଓ ଗଧିଆ

ଗୋଟିଏ ବାଳକ ପଲେ ମେଣ୍ଢା ଚରାଉଥାଏ । ସେ କୌତୁକରେ ଅନେକ ଥର "ଗଧିଆ, ଗଧିଆ" ବୋଲି ପାଟି କରିବାରୁ ଆଖପାଖ ବିଲରେ ଯେଉଁ ଲୋକମାନେ କାମ କରୁଥାନ୍ତି, ସେମାନେ ଦୌଡ଼ି ଆସନ୍ତି । କିନ୍ତୁ ଯେତେବେଳେ ଦେଖନ୍ତି ଯେ, ବାଳକ ଖାଲି ରହସ୍ୟ ଦେଖିବା ଲାଗି ଏପରି କରୁଛି, ସେମାନେ ଅପ୍ରସ୍ତୁତ ହୋଇ ଫେରି ଯାନ୍ତି । ପଛକୁ ଲୋକମାନେ ବିରକ୍ତ ହୋଇ ସ୍ଥିର କଲେ ଯେ, ଏଣିକି ଡାକିଲେ ଆମେ ଶୁଣିବା ନାହିଁ ।

ତେବେ ପ୍ରକୃତରେ ଗଧିଆ ଆସିବାରୁ ବାଳକ ଭୟରେ "ଗଧିଆ, ଗଧିଆ" ବୋଲି ପାଟି କରି ଉଠିଲା, କିନ୍ତୁ ଏଥର କେହି ତା କଥା ଶୁଣିଲେ ନାହିଁ । ଫଳରେ ଏହି ହେଲା ଯେ, ବାଳକଟି ଗଧିଆ ହାତରେ ପ୍ରାଣ ହରାଇଲା ।

ଯେଉଁ ଲୋକ ବରାବର ମିଛ କହେ, ସେ ଥରେ ସତ କଥା କହିଲେ ସୁଦ୍ଧା କେହି ତାକୁ ବିଶ୍ୱାସ କରନ୍ତି ନାହିଁ ।

## କୋକିଶିଆଳ ଓ ଛେଳି

ଥରେ ଗୋଟିଏ କୋକିଶିଆଳି ବାଟରେ ଯାଉ ଯାଉ ଗୋଟିଏ ଗହୀରିଆ କୂଅ ଭିତରେ ଖସି ପଡ଼ିଲା । ଉପରକୁ ଆସିବାର କୌଣସି ଉପାୟ ନ ଦେଖି ସେ କୂଅ ମଧ୍ୟରେ ଥାଏ । ଏପରି ସମୟରେ ଗୋଟିଏ ଛେଳି ଶୋଷରେ ଆକୁଳ ପାକୁଳ ହୋଇ ସେଠାରେ ଆସି ପହଞ୍ଚିଲା । କୋକିଶିଆଳିକୁ କୂଅ ଭିତରେ ଦେଖି ଛେଳି ତାକୁ ପାଣିଟା ଭଲ କି ମନ୍ଦ ବୋଲି ପଚାରିଲା । କୋକିଶିଆଳି ନିଜର ବିପଦ କଥା କିଛି ନ କହି ପାଣିର ଖୁବ ପ୍ରଶଂସା କରିବାକୁ ଲାଗିଲା । ଛେଳି କୋକି-ଶିଆଳି କଥାରେ ବିଶ୍ୱାସ କରି କିଛି ନ ଭାବି ନ ଚିନ୍ତି କୂଅ ଭିତରକୁ ଡେଇଁପଡ଼ିଲା । ତହୁଁ କୋକିଶିଆଳି ତାକୁ ଉଭୟଙ୍କ ବିପଦ କଥା ଜଣାଇ ଦେବାରୁ ଛେଳି ମନରେ ବଡ଼ ଭୟ ହେଲା । କୋକିଶିଆଳି କହିଲା, 'ଉଦ୍ଧାର ପାଇବାର କେବଳ ଗୋଟିଏ ଉପାୟ ଅଛି । ତୁମେ ଆଗଗୋଡ଼ କାନ୍ଥରେ ଦେଇ ମୁଣ୍ଡ ତଳକୁ ପୋତି ଛିଡ଼ା ହେଲେ ମୁଁ ତୁମ୍ଭ ପିଠି ଉପରେ ଉଠି ପାରି ହୋଇ ଯିବି ଏବଂ ପରେ ତୁମ୍ଭଙ୍କୁ ଉଠାଇ ନେବି ।'' ଛେଳି ଏଥିରେ ରାଜି ହେବାରୁ କୋକିଶିଆଳି ତା ପିଠି ଉପରକୁ ଡେଇଁପଡ଼ି ନିରାପଦରେ ଉପରକୁ ଉଠି ଚାଲିଗଲା ।

ଛେଳି କୋକିଶିଆଳିର ଚଞ୍ଚକତା ବୁଝି ପାରି ତାକୁ ଗାଳି ଦେବାରୁ ସେ କହିଲା, ''ଆରେ ନିର୍ବୋଧ, ତୋ ଦାଢ଼ିରେ ଯେତେ ବାଳ ଅଛି ମୁଣ୍ଡରେ ଯଦି ସେତିକି ବୁଦ୍ଧି ଥାଆନ୍ତା ତୁ ବାହାରି ଆସିବାର ବାଟ ନ କରି କେବେହେଁ ଭିତରକୁ ଯାଇ ନଥାନ୍ତୁ ।'' ଏହା ଶୁଣି ଛେଳି କହିଲା, ''ହଁ ମୁଁ ତ ନିଜ ହାତରେ ଏହା ଅରଜିଛି, ତତେ ଦୋଷ ଦେଇ କଣ ହେବ ?''

''ଆପଣା ହସ୍ତେ ଜିହ୍ୱା ଛେଦ, କେ ତାର ଅଛି ପ୍ରତିବାଦୀ ।''

## ଗଧିଆ ଓ ବଗ

ଗୋଟିଏ ଗଧିଆର ତଣ୍ଟିରେ ଖଣ୍ଡେ ହାଡ଼ ଲାଗିଯିବାରୁ ସେ ଗୋଟିଏ ବଗକୁ କହିଲା, ''ତୁ ଯେବେ ମୋ ତଣ୍ଟି ଭିତରେ ଥଣ୍ଟ ଭର୍ତ୍ତି କରି ହାଡ଼ ଖଣ୍ଡ ବାହାର କରି ଦେବୁ, ତେବେ ମୁଁ ତୋତେ ଅନେକ ପୁରସ୍କାର ଦେବି । ବଗ ହାଡ଼ ବାହାର କରି ସାରି ଯେତେବେଳେ ପୁରସ୍କାର ମାଗିଲା, ଗଧିଆ ଦାନ୍ତ କଡ଼ମଡ଼ କରି ପାଟି କରି କହିଲା, ''ତୁ ଯେ ଗୋଟିଏ ଗଧିଆର ପାଟି ଭିତରୁ ନିରାପଦରେ ମୁଣ୍ଡ ବାହାର କରି ଆଣି ପାରିଲୁ, ଏହି ତୋର ଯଥେଷ୍ଟ ପୁରସ୍କାର । ତୁ ଆଉ ଅଧିକ କଣ ଚାହୁଁ ?''

## ସିଂହ ଓ କାଠୁରିଆ

ଥରେ ଜଣେ କାଠୁରିଆ ତାର ଝିଅକୁ ସଙ୍ଗରେ ନେଇ ବନକୁ ଯାଉଥିଲା । ଝିଅକୁ ଦେଖି ଗୋଟିଏ ସିଂହର ତାକୁ ବିବାହ କରିବାକୁ ଭାରି ଇଚ୍ଛା ହେଲା ଏବଂ ସେ କଥା ଯାଇ ତା ବାପକୁ କହିଲା । କାଠୁରିଆ ବର୍ତ୍ତମାନ ବିଷମ ସଙ୍କଟରେ ପଡ଼ି ଭାବିଲା, "ନାହିଁ କରିଦେଲେ ସିଂହ ରାଗିଯାଇ ନାନା ଅନିଷ୍ଟ କରିବ ଓ ଦେଲେ ମଧ୍ୟ ବଡ଼ ବିପଦ ।" ଏହିପରି ଭାବି ସେ ଗୋଟିଏ ଉପାୟ ସ୍ଥିର କରି ସିଂହକୁ କହିଲା, "ଦେଖ, ତମକୁ କନ୍ୟା ଦେବାକୁ ମୋର କୌଣସି ଆପତ୍ତି ନାହିଁ । ତମ ପରି ସୁପାତ୍ର କେତେ ଜଣଙ୍କ ଭାଗ୍ୟରେ ଘଟେ ? ତେବେ ତୁମର ଦାନ୍ତ ଓ ନଖ ଦେଖି ମୋ ଝିଅ ଭାରି ଡରୁଛି । ତୁମେ ଯଦି କହ ମୁ ତୁମର ନଖ ଓ ଦାନ୍ତ ଉପାଡ଼ି ଦେବି, ତାହାହେଲେ ଆଉ କିଛି ବାଧା ରହିବ ନାହିଁ ।

ସିଂହ ଖୁସି ହୋଇ ଏଥିରେ ରାଜି ହେଲା । କାଠୁରିଆ ତହୁଁ ତାର ସବୁ ଦାନ୍ତ ଓ ନଖଗୁଡ଼ିକ ନିର୍ମୂଳ କରି ଦେଲା । ଏହା ପରେ ସିଂହ ପୁଣି ଯେତେବେଳେ କନ୍ୟା ମାଗିଲା କାଠୁରିଆ ଆଉ ତାକୁ ଭୟ ନ କରି ଖଣ୍ଡେ ବାଡ଼ି ଧରି ଜଙ୍ଗଲ ଭିତରକୁ ତଡ଼ି ଦେଇ ଆସିଲା ।

## ପିମ୍ପୁଡ଼ି ଓ ଝିଣ୍ଟିକା

ଶୀତକାଳରେ ଥରେ ପିମ୍ପୁଡ଼ିମାନେ ଗ୍ରୀଷ୍ମକାଳରୁ ସାଇତିଥିବା ଖାଦ୍ୟକୁ ଖରାରେ ଶୁଖାଉଥିଲେ । ଏପରି ସମୟରେ ଗୋଟିଏ ଝିଣ୍ଟିକା ଅନାହାରରେ ମରମର ହୋଇ ସେହି ବାଟରେ ଯାଉଁ ଯାଉଁ କାତର ଭାବରେ ସେମାନଙ୍କୁ କିଛି ଖାଦ୍ୟ ମାଗିଲା । ସେମାନେ ପଚାରିଲେ, "ତୁମେ ଖରାଦିନରେ କିଛି ଖାଦ୍ୟ ସଞ୍ଚୟ କରି ରଖିଲ ନାହିଁ କାହିଁକି ? ସେ ଉତ୍ତର କଲା, "ମୋର ସେତେବେଳେ ଆଦୌ ସମୟ ନ ଥିଲା; ଗୀତ ଗାଇବାରେ ମୋର ସମୟ କଟି ଯାଉଥିଲା ।" ପିମ୍ପୁଡ଼ିମାନେ ଘୃଣାରେ କହିଲେ, "ତୁମେ ଯଦି ନିର୍ବୋଧ ଭାବରେ ଖରାଦିନଯାକ କେବଳ ଗୀତ ଗାଇ ଗାଇ କଟାଇ ଦେଲ, ତେବେ ଶୀତ ଦିନରେ ତୁମେ ନିଶ୍ଚୟ ଉପାସ ରହିବ । ସେଥିଲାଗି ଆଉ କିଏ କଣ କରିବ ?"

## ଗଧ ଓ କୁକୁର

ଜଣେ ଲୋକର ଗୋଟିଏ ଗଧ ଏବଂ ଗୋଟିଏ ସୁନ୍ଦର କୁକୁର ଥିଲା । ଗଧଟି ଶାଳରେ ଥାଏ । ତାକୁ ଭୂଷ ଓ ଘାସ ଖାଇବାକୁ ଦିଆଯାଏ । କୁକୁରଟି ଅନେକ

କୌତୁକ ଓ ଗୁରୁଗ୍ଧ ଜାଣିଥିଲା । ସେଥିଲାଗି ସେ ମୁନିବର ବଡ଼ ପ୍ରିୟପାତ୍ର ଥିଲା । ଯେତେ ଭଲ ଜିନିଷ ହେଉ ନା କାହିଁକି ମୁନିବ ତାକୁ ଟିକିଏ ନ ଦେଇ କିଛି ଖାଉ ନ ଥିଲେ । ମୁନିବ ତାକୁ କୋଳରେ ଧରି ଅନେକ ଗେଲ କରୁଥିଲେ ଓ କୁକୁରଟି ତାଙ୍କ କୋଳରେ ନାଚି କୁଦ ତାଙ୍କୁ ଖୁସି କରାଉଥିଲା । ବିଚାରା ଗଧକୁ କିନ୍ତୁ ଜଙ୍ଗଲରୁ କାଠ ଆଣିବା, ଘର ବୋହିବା ପ୍ରଭୃତି ନାନା କଠିନ ପରିଶ୍ରମ କରିବାକୁ ପଡୁଥିଲା ।

ଗଧ ମନେ କଲା, କୁକୁର ବଡ଼ ସୁଖରେ ଅଛି, ମୁଁ ଖାଲି କାମ କରି କରି ମରୁଛି । ମୁଁ ଯଦି ତା ପରି ମୁନିବ ପାଖରେ ଯାଇ ନାଚ କୁଦା କରିବି ତାହାହେଲେ ମତେ ମୁନିବ ବଡ଼ ଆଦର କରିବ । ଏହିପରି ଭାବି ସେ ଦିନେ ଦୌଡ଼ି ଛିଣ୍ଡାଇ ମୁନିବର ଘର ଭିତରେ ଯାଇ ପଶିଲା ଓ ଗୁଞ୍ଜିଫିଟି ହୋଇ ମୁନିବର ଚାରି ପାଖରେ ନାଚିବାକୁ ଲାଗିଲା । କିଛି ସମୟ ପରେ ସେ ମୁନିବ ଉପରକୁ କୁକୁର ପରି ଡେଇଁବାକୁ ଯାଇ ମେଜ ଉପରେ ଥିବା ସବୁ ଜିନିଷ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେଲା । ଚାକର-ମାନେ ଘର ଭିତରେ ଏପରି ଗୋଳମାଳ ଶୁଣିବାରୁ ଦୌଡ଼ି ଆସିଲେ ଓ ମୁନିବର ବିପଦ ଦେଖି ଗଧକୁ ପିଟି ପିଟି ଶାଳକୁ ତଡ଼ି ଦେଲେ । ଗଧ ମାଡ଼ରେ ଦରମରା ହୋଇ ଶାଳ ଭିତରେ ପଡ଼ି ରହିଲା ଓ ଭାବିଲା "ମୁଁ ମୋର ସାଙ୍ଗ ଗଧମାନଙ୍କ ପରି ପରିଶ୍ରମ ନ କରି ସେ ଲକ୍ଷ୍ମୀ କୁକୁର ପରି ଅଳସରେ ଦିନ କଟେଇବି ବୋଲି ମନେ କରିଥିଲି । ମତେ ଏ ଦଣ୍ଡ ହୁଅନ୍ତା ନାହିଁ, ଆଉ କାହାକୁ ହୁଅନ୍ତା ?

ଯେଝା କାମ ଯେଝାକୁ ସାଜେ ।

## କୁଣ୍ଡ ଭିତରେ ଥିବା କୁକୁର

ଗୋଟିଏ କୁଣ୍ଡ ଭିତରେ ବଳଦମାନଙ୍କ ପାଇଁ ଦାନା ରଖା ହୋଇଥିଲା । ବଳଦମାନେ ଖାଇବାକୁ ଆସିବାବେଳେ ଗୋଟିଏ କୁକୁର କୁଣ୍ଡ ଭିତରେ ବସି ଭୁକି କାମୁଡ଼ିବାକୁ ଯିବି କାହାକୁ ଖାଇବାକୁ ଛାଡ଼ି ଦେଲା ନାହିଁ । ଗୋଟିଏ ବଳଦ କହିଲା, "ଏପରି ଲୋଭୀ କୁକୁର ମୁଁ କାହିଁ ଦେଖି ନାହିଁ । ସେ ନିଜେ ଖାଇବ ନାହିଁ କି କାହାରିକୁ ଖାଇବାକୁ ଦେବ ନାହିଁ ।"

## ଲାଞ୍ଜକଟା ବିଲୁଆ

ଦିନେ ଗୋଟିଏ ବିଲୁଆ ଜାଲରେ ପଡ଼ି ପଳାଇ ଯିବା ସମୟରେ ତାର ଲାଞ୍ଜଟି ଛିଣ୍ଡି ଗଲା । ଲଜ୍ଜାରେ ସେ ଆଉ କାହାରି ନିକଟକୁ ନ ଯାଇ ଭାବିଲା "ଆଉ

ସମସ୍ତଙ୍କ ଆଗେ ଯାଇ କପଣ ମୁହଁ ଦେଖାଇବ ? ଯଦି କୌଣସି ପ୍ରକାରେ ଅନ୍ୟ ବିଲୁଆମାନଙ୍କୁ ଏହିପରି ଲାଙ୍ଗୁଡ଼କଟା କରିପାରନ୍ତି, ତାହାହେଲେ ମୋର ଆଉ କିଛି ଦୁଃଖ ରହନ୍ତା ନାହିଁ ।" ଏହିପରି ମନେ କରି ସେ ଦିନେ ସବୁ ବିଲୁଆମାନଙ୍କୁ ଡାକି କହିଲା, ଦେଖ, ଏ ଲାଙ୍ଗୁଡ଼ଟା ଯୋଗୁଁ ଆମ୍ଭେମାନେ କେତେ ଅସୁନ୍ଦର ଦିଶୁଅଛୁ । ଏଇଟା କାଟି ଦେଲେ ଆମଠାରୁ ବଳି ଆଉ କିଏ ସୁନ୍ଦର ଦିଶନ୍ତା ! ଆଉ ଦୁଆରେ ଏଇଟାକୁ ବୋହିବା ଫଳ କିଣ ? ଖାଲି ଆମର ଅସୁବିଧା ହେଉଛି ମାତ୍ର ।" ଏହା ଶୁଣି ଗୋଟିଏ ବୁଢ଼ା ବିଲୁଆ କହିଲା, "ଭାଇ ! ତମ ଲାଙ୍ଗୁଡ଼ଟି ଛିଣ୍ଡି ଯାଇ ନ ଥିଲେ ତମେ କଦାପି ଏପରି ଉପଦେଶ ଦିଅନ୍ତ ନାହିଁ ।"

## କେଉଟ ଓ ଛୋଟ ମାଛ

ଦିନେ ଗୋଟିଏ କେଉଟ ଜନୈତମାନ୍ ଜାଲ ପକାଇ ଶେଷରେ ଗୋଟିଏ ଛୋଟ ମାଛ ଧରିଲା । ମାଛଟି ବହୁତ ଖୋସାମତ କରି କେଉଟକୁ କହିଲା, "ମତେ ଧରି ତମର କି ଲାଭ ହେବ ? ମୋର ଦାମ୍ ବା ବର୍ତ୍ତମାନ କେତେ ହେବ, ମୁଁ ଏହିକ୍ଷଣି ନିତାନ୍ତ ଛୋଟ ହୋଇଛି । ତମେ ଯଦି ମତେ ନ ମାରି ନଈରେ ଛାଡ଼ିଦିଅ, ମୁଁ କେତେ ଦିନ ପରେ ଗୋଟିଏ ବଡ଼ ମାଛ ହେବି । ସେତେବେଳେ ତମେ ମତେ ଧରି ଧନୀଲୋକମାନଙ୍କୁ ବିକିଲେ ଅନେକ ଲାଭ କରି ପାରିବ ।" କେଉଟ କହିଲା, " କାଳେ ପରେ ବେଶି ଲାଭ ହେବ ବୋଲି ଯଦି ମୁଁ ହାତରେ ପାଇ ବର୍ତ୍ତମାନ ତୋତେ ଛାଡ଼ିଦିଏ ତେବେ ଦୁନିଆରେ ମୋଠାରୁ ବଳି ଓଲୁ ଆଉ କିଏ ଅଛି ?"

## କୃପଣ ଲୋକ

ଗୋଟିଏ କୃପଣ ଲୋକ, ତାର ଯାହା କିଛି ଟଙ୍କା ପଇସା ଥିଲା ସେ ସବୁ ଦେଇ ଖଣ୍ଡେ ସୁନା କିଣି ଆଣିଲା ଓ ତାକୁ ନେଇ ଘର ଭିତରେ ମାଟି ଖୋଳି ପୋତି ପକାଇଲା । ସେ ପ୍ରତିଦିନ ସେ ସୁନାଖଣ୍ଡିକ କାଢ଼ି ଥରେ ଦେଖେ ଓ ପୁଣି ସେହିପରି ରଖିଦିଏ । ତାର ମୂଲିଆ ଦିନେ ଏକଥା ଜାଣି ପାରି ସୁନାଖଣ୍ଡି ଖୋଳି ନେଇଗଲା । ତହିଁ ଆରଦିନ ସେ ଯେତେବେଳେ ଯାଇ ଦେଖେ ଯେ ସେଠାରେ ଆଉ ସୁନା ନାହିଁ, ସେ ବାଳ ଛିଣ୍ଡାଇ ହାତ କଚାଡ଼ି ଭେଁ ଭେଁ କରି ରଡ଼ି ପକାଇଲା । ଜଣେ ପଡ଼ୋଶୀ ତାଠାରୁ ସବୁ କଥା ଶୁଣି କହିଲା "ତମେ ମିଛରେ ମନ ଦୁଃଖ କରୁଛ କାହିଁକି ? ଖଣ୍ଡିଏ ପଥର ନେଇ ସେହି ଗାତରେ ରଖି ଦେଇ ମନେ କର ଯେ ସେହି ଟା ତମର ସୁନା । ସୁନାଦ୍ୱାରା ତମର ଯେଉଁ କାର୍ଯ୍ୟ ହେଉଥିଲା, ଏହାଦ୍ୱାରା ମଧ୍ୟ ତାହା ହୋଇ ପାରିବ । ତମେ ଯେତେବେଳେ ସୁନାର କିଛି ବ୍ୟବହାର କରୁ ନ ଥିଲ ତାହାର ଥିବା ନ ଥିବା ତମ ପକ୍ଷରେ ସମାନ ।"

## ଜ୍ୟୋତିଷ

ଜଣେ ଜ୍ୟୋତିଷ ପ୍ରତିଦିନ ରାତିରେ ବାହାରକୁ ଆସି ନକ୍ଷତ୍ରଗଣନା କରନ୍ତି । ଥରେ ସନ୍ଧ୍ୟାବେଳେ ସେ ଆକାଶକୁ ଏକ ଦୃଷ୍ଟିରେ ଅନାଇଁ ବୁଲୁ ବୁଲୁ ଅକସ୍ମାତ୍ ଗୋଟିଏ କୂଅରେ ଝପିପଡ଼ିଲେ । ପଡ଼ିଯାଇ ହାତ ଗୋଡ଼ ଛିଣ୍ଡି ଯିବାରୁ ସେ ବ୍ୟସ୍ତ ହୋଇ ବଡ଼ ପାଟି କରି ହୁରି ପକାଇଲେ । ଗୋଟିଏ ଲୋକ କୂଅ ନିକଟକୁ ଦୌଡ଼ି ଯାଇ ଯେତେବେଳେ ସବୁ କଥା ଶୁଣିଲା, ସେ କହିଲା "ସ୍ୱର୍ଗରେ କଣ ଅଛି ଜାଣିବାକୁ ଯାଇ ତମେ ଯେ ମର୍ତ୍ତ୍ୟରେ କଣ ଅଛି ତାହା ଜାଣି ପାରୁ ନାହଁ ।"

## ବଣଗଧ ଓ ସିଂହ

ଥରେ ସିଂହ ଗୋଟିଏ ବଣଗଧକୁ ଡାକି କହିଲା, "ଦେଖ ମୋ ଦେହରେ ଜୋର ବେଶି, କିନ୍ତୁ ତୁମେ ଦୌଡ଼ି ପାର ଭଲ । ଆମେ ଦୁଇ ଜଣ ସାଥୀ ହୋଇ ଶିକାର କରିବା ତାହାହେଲେ ଆମର ଆଉ ଖାଇବା ପିଇବାର ଅଭାବ ହେବ ନାହିଁ । ତୁମେ ଯାହା ସଙ୍ଗେ ବଳରେ ନ ପାରିବ, ମୁଁ ଯାଇ ତୁମକୁ ସାହାଯ୍ୟ କରିବି ଓ ମୁଁ ଯାହାକୁ ତଡ଼ି ନ ପାରିବ ତୁମେ ଯାଇଁ ତାକୁ ଧରିବ ।" ଗଧ ଖୁସି ହୋଇ ଏଥିରେ ରାଜି ହେଲା ।

ଦୁହେଁ ଯାକ ମିଳି ଅନେକଗୁଡ଼ିଏ ଜନ୍ତୁ ଶିକାର କରି ସାରିଲାରୁ ସିଂହ ତାକୁ ଭାଗ କରିବାକୁ ବସିଲା । ସମୁଦାୟ ଶିକାରକୁ ତିନି ଭାଗ କରି ଦେଇ ସାରିଲାରୁ ସିଂହ କହିଲା, "ପ୍ରଥମ ଭାଗଟି ତ ଗଲା ମୋର ରାଜାଭାଗ । ଦ୍ୱିତୀୟ ଭାଗଟି ମଧ୍ୟ ଭାଗିଦାରରୂପେ ମୋର ପାଉଣା । ବାକି ରହିଲା ତୃତୀୟ ଭାଗଟି, ଏ ଭାଗଟି ତୁମେ ଯଦି ମତେ ଛାଡ଼ି ଦେଇ ଏଠାରୁ ଶୀଘ୍ର ନ ପଳାଅ ତାହାହେଲେ କହିଦେଉଛି ତୁମର ବଡ଼ ଅନିଷ୍ଟ ହେବ ।"

ଜୋର ଯାହାର ମୁଲକ ତାର ।

## ବିଲୁଆ ଓ କାଉ

ଗୋଟିଏ କାଉ ଥଣ୍ଟରେ ଖଣ୍ଡେ ମାଂସ ଧରି ଗଛ ଉପରେ ବସିଥିଲା । ଏହା ଦେଖି ବିଲୁଆ ପାଟିରୁ ଲାଳ ଗଡ଼ିବାକୁ ଲାଗିଲା । କିପରି ସେ ମାଂସ ଖଣ୍ଡିକ ପାଇବ ଏଥିଲାଗି ସେ ଗୋଟିଏ କୌଶଳ ବାହାର କଲା । ବିଲୁଆ ବଡ଼ ପାଟି କରି କହିଲା, "କାଉ କି ସୁନ୍ଦର ପକ୍ଷୀ ! ତାର ଗଢ଼ଣଟି ଯେପରି ସୁନ୍ଦର, ବର୍ଣ୍ଣଟି ମଧ୍ୟ ସେହିପରି । ଅହା ! ତାର ଦେହଟି ଯେପରି ସୁନ୍ଦର ସ୍ୱରଟି ଯଦି ସେହିପରି ସୁନ୍ଦର ହୋଇଥାଆନ୍ତା

ତାହେଲେ ସେ ନଶ୍ଚୟ ପକ୍ଷିମାନଙ୍କ ମଧ୍ୟରେ ରଜା ବୋଲହଥାନ୍ତା ।" ବିଲୁଆ ଏତକ ବଞ୍ଚନା କରି କହୁଥିଲା । କାଉ ସେ କଥା ବୁଝି ନ ପାରି ଗଳାଖଙ୍କାରି ଦେଇ ଗୀତ ଗାଇବାକୁ ଆରମ୍ଭ କଲାବେଳକୁ ମାଂସଖଣ୍ଡ ତଳେ ଖସି ପଡ଼ିଲା । ବିଲୁଆ ସେ ଖଣ୍ଡକ ଶୀଘ୍ର ଗୋଟାଇ ନେଇ କାଉକୁ କହିଲା, "ଭାଇ କାଉ, ତମର ସ୍ୱରଟି ବେଶ ଭଲ, କିନ୍ତୁ ତମର ବୁଦ୍ଧିଶୁଦ୍ଧି ଆଦୌ ନାହିଁ ।"

ଶ୍ରେଷ୍ଠ ଲୋକଙ୍କୁ ଠକାଇବାକୁ ଖୋସାମଦଠାରୁ ଆଉ ଭଲ ଉପାୟ ନାହିଁ ।

## ପୀଡ଼ିତ ହରିଣ

ଗୋଟିଏ ହରିଣର ଦେହ ଦୁଃଖ ହେବାରୁ ସେ ଆଉ କେଉଁ ଆଡ଼େ ଚରି ବୁଲି ନ ପାରି ପଡ଼ିଆର ଗୋଟିଏ କଣରେ ପଡ଼ି ରହିଲା । ତାର ବନ୍ଧୁବାନ୍ଧବମାନେ ଏ ଖବର ପାଇ ତାକୁ ପଞ୍ଚୋଳିବାକୁ ଆସିଲେ । ଆସି ତା ପାଖରେ ଯେଉଁ ଘାସ ପତ୍ରଗୁଡ଼ିକ ଥିଲା ସମସ୍ତେ ଟିକିଏ ଟିକିଏ ଖାଇ ଖାଇ ଶେଷ କରିଦେଲେ । ବିଚରା ହରିଣଟି ଯାହା ଟିକିଏ ଭଲ ହୋଇ ଆସୁଥିଲା କିଛି ଖାଇବାକୁ ନ ପାଇ ଦୁଇ ଦିନରେ ମରିଗଲା ।

କୁସଙ୍ଗୀମାନଙ୍କ ଦ୍ୱାରା ଇଷ୍ଟ ଅପେକ୍ଷା ଅନିଷ୍ଟ ବେଶୀ ହୁଏ ।

## ବିଲୁଆ ଓ ମେଣ୍ଢା

ଥରେ ବିଲୁଆମାନେ ମେଣ୍ଢାମାନଙ୍କୁ କହିଲେ, "ଦେଖ, ତମ ଆମ ମଧ୍ୟରେ କାହିଁକି ସବୁବେଳେ ଏପରି ଗୋଟାଏ ବିବାଦ ଥିବ ? ଚାଲ, ଏଥର ଏଣିକି ଆମ୍ଭେମାନେ ଏକସଙ୍ଗେ ମିଳିମିଶି ରହିବା । ଏହି କୁକୁରଗୁଡ଼ାକ ହେଉଛନ୍ତି ସବୁ ଅନର୍ଥର ମୂଳ । ଯେତେବେଳେ ଆମ୍ଭେମାନେ ଟିକିଏ ତମ ନିକଟକୁ ଆସିବାକୁ ଚାହୁଁ ସେମାନେ ଭୋ ଭୋ କରି ଆମ୍ଭମାନଙ୍କୁ ଆଉ ପାଖରେ ପଶିବାକୁ ଦିଅନ୍ତି ନାହିଁ । ଆଉ ତମମାନଙ୍କର କିଛି ଅନିଷ୍ଟ ନ କଲେ ସୁଦ୍ଧା ଆମ୍ଭମାନଙ୍କୁ କାମୁଡ଼ିବାକୁ ମିଶନ୍ତି । ଏମାନଙ୍କ ଲାଗି ଆମ୍ଭମାନଙ୍କ ମଧ୍ୟରେ ଗୋଟାଏ ବିରୋଧ ରହି ଯାଉଅଛି । ସେମାନଙ୍କୁ ପାଖରୁ ତଡ଼ି ଦିଅ, ଦେଖିବ ସବୁ ଗୋଳମାଳ ତୁଟିଯିବ ।" ମେଣ୍ଢା-ମାନଙ୍କର ବୁଦ୍ଧି ଅଳ୍ପ । ସେମାନେ ଏ ଚତୁରତା ବୁଝି ନ ପାରି ବିଲୁଆମାନଙ୍କ କଥାରେ ପଡ଼ି କୁକୁରମାନଙ୍କୁ ପାଖରୁ ବାହାର କରିଦେଲେ । ଶେଷରେ ଆଉ କେହି ଜଗୁଆଳି ନାହାନ୍ତି ଦେଖି ବିଲୁଆମାନେ ନିର୍ଭୟରେ ମେଣ୍ଢାପଲକୁ ନଷ୍ଟ କରିବାକୁ ଲାଗିଲେ ।

## ଗଧ ଓ ବାଘ

ଗୋଟିଏ ଗଧ ପଛଆଡ଼େ ଚକ୍ଷୁ ଚକ୍ଷୁ ଦେଖି ପାରିଲା ଯେ ଗୋଟିଏ ବାଘ ତାକୁ ଧରିବାକୁ ଆସୁଅଛି । ସେ ତତ୍‌କ୍ଷଣାତ ଗୋଟାଏ ବାହାନା କରି ଖ୍ରେଙ୍ଗେଇ ଖ୍ରେଙ୍ଗେଇ ଚାଲିବାକୁ ଲାଗିଲା । ବାଘ ଆସି କାହିଁକି ଖ୍ରେଙ୍ଗାଉଛୁ ବୋଲି ପଚାରିବାରୁ ଗଧ କହିଲା "ସ୍ୱର, କଅଣ କହିବି, ଗୋଟାଏ ଡାଙ୍ଗ ଡେଇଁ ଯାଉଁ ଯାଉଁ ଗୋଟାଏ ମୁନିଆ କଣ୍ଟା ଗୋଡ଼ରେ ଗଳିଗଲା । ମୋ ଗୋଡ଼ରୁ କଣ୍ଟାଟି ବାହାର କରିଦେଇ ମତେ ଖାଅ, ତା ନ ହେଲେ ତମ ତଣ୍ଟିରେ କଣ୍ଟା ଲାଗିବ ।" ବାଘ ଏଥିରେ ରାଜି ହୋଇ ଗଧ ଗୋଡ଼ ଟେକି କଣ୍ଟା କେଉଁଠାରେ ଅଛି ବୋଲି ଖୁବ୍ ମନଦେଇ ଖୋଜିବାକୁ ଲାଗିଲା । ଗଧ ଏପରି ସମୟରେ ବାଘ ମୁହଁରେ ଗୋଟିଏ ଶକ୍ତ ନାତ ମାରିଦେଇ ଦୌଡ଼ି ପଳାଇଗଲା । ବିଚ୍ଛୁ ବାଘ କଷ୍ଟରେ ଛଟପଟ ହୋଇ ଭାବିଲା, "ମତେ ବେଶ୍ ଶାସ୍ତି ହୋଇଛି । ମୋ ବାପ ମତେ କେବଳ କଂସେଇ ବିଦ୍ୟା ଶିଖେଇ ଥିଲା । ମୁଁ ଡାକ୍ତରି ବ୍ୟବସାୟ କରିବାକୁ ଗଲି କାହିଁକି ?"

## ପିମ୍ପୁଡ଼ି ଓ କାପ୍ତା

ଦିନେ ଗୋଟିଏ ପିମ୍ପୁଡ଼ି ପାଣି ପିଇବାକୁ ନଈକୁ ଯାଇ ସୁଅରେ ଭାସିଗଲା । ସେ ବୁଡ଼ିଯିବାକୁ ବସିଛି ଏପରି ସମୟରେ ଗୋଟିଏ କାପ୍ତା ନଈକୂଳରେ ଗୋଟିଏ ଗଛରେ ବସି ଏହା ଦେଖି ପାରିଲା । ସେ ଦୟା କରି ଗଛରୁ ଗୋଟିଏ ପତ୍ର ଛିଣ୍ଡାଇ ପିମ୍ପୁଡ଼ି ପାଖକୁ ପକାଇ ଦେଲା । ପିମ୍ପୁଡ଼ି ପତ୍ର ଉପରେ ଚଢ଼ି ଯାଇ କୂଳରେ ଲାଗିଲା ଓ ସେଥିରେ ତାର ଜୀବନ ରକ୍ଷା ହେଲା ।

କିଛିଦିନ ପରେ ଗୋଟିଏ କେଳା ସେହି କାପ୍ତାକୁ ଧରିବାଲାଗି ଗଛରେ ନଳ ଟେକୁଥିଲା । ପିମ୍ପୁଡ଼ି ଏହା ଦେଖି ପାରି କେଳାକୁ ଖୁବ୍ ଜୋରରେ ଗୋଟେ କାମୁଡ଼ି ଦେବାରୁ ତାହା ହାତରୁ ନଳ ଖସି ପଡ଼ିଲା ଓ କାପ୍ତାଟି ଉଡ଼ିଯାଇ ରକ୍ଷା ପାଇଲା !

ଉପକାରୀ ଲୋକର ଉପକାର ବୃଥା ହୁଏ ନାହିଁ । ଉଧାର ସେବକ କେବେ ଠକି ପାଆ ନୁହେ ।

## ତନ୍ତୀ, ତାର ପୁଅ ଓ ଗଧ

ଗୋଟିଏ ତନ୍ତୀ ଓ ତାର ପୁଅ ହାଟରେ ବିକି କରିବା ପାଇଁ ଗୋଟିଏ ଗଧକୁ ଅଡ଼ାଇ ନେଇ ଯାଉଥିଲେ । କିଛି ଦୂର ଯାଇ ସେମାନେ ଗୋଟିଏ କୂଅ

ନିକଟରେ ଗୁଡ଼ିଏ ସ୍ତ୍ରୀଲୋକ କଥାବାର୍ତ୍ତା ହେଉଥିବାର ଦେଖିଲେ । ସେମାନଙ୍କୁ ଦେଖି ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଦେଖ, ଏପରି ଲୋକ ତମେ କେବେ କେଉଁଠି ଦେଖିଛ ? ଗଧଟାକୁ ଚଲାଇ ନେଉଛନ୍ତି ପଛକେ ତା ଉପରେ କେହି ଚଢ଼ିବାକୁ ନାହିଁ ।" ଏ କଥା ଶୁଣି ବୁଢ଼ା ଶୀଘ୍ର ତା ପୁଅକୁ ଗଧ ଉପରେ ଚଢ଼ାଇ ଦେଲା ଓ ନିଜେ ସଙ୍ଗେ ସଙ୍ଗେ ଚାଲିଲା ।

ଆଉ କିଛି ଦୂର ଯାଇ ସେମାନେ ଦଳେ ବୁଢ଼ାଲୋକ ତର୍କ କରି କରି ଆସୁଥିବାର ଦେଖିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା, "ମୁଁ ଯାହା କହୁଥିଲି ସତ କି ନା, ହେଉ ଦେଖ । ଆଜିକାଲି ବୁଢ଼ାଲୋକଙ୍କୁ ମାନ୍ୟ କରୁଛନ୍ତି କିଏ ? ଦେଖୁଛ ତ ସେ ଅଳସୁଆ ଟୋକାଟା ଗଧ ଉପରେ ବସିଛି, ଆଉ ବିଚରା ବୁଢ଼ାଟି ଚାଲି ଚାଲି ଯାଉଛି ।" ଏ କଥା ଶୁଣି ବୁଢ଼ା ପୁଅକୁ ଓହ୍ଲାଇ ଦେଇ ନିଜେ ଗଧ ଉପରେ ବସିଲା ।

ଏହିପରି ଭାବରେ ସେମାନେ ଖଣ୍ଡେ ଦୂର ଯାଉଛନ୍ତି, ଏପରି ସମୟରେ ବାଟରେ ଆଉ ଦଳେ ସ୍ତ୍ରୀଲୋକଙ୍କୁ ଭେଟିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଦେଖୁଛ, ସେ ବୁଢ଼ାଟା କେଡ଼େ ଆପସୁଖୀ; ନିଜେ ଗଧ ଉପରେ ବସି ଯାଉଛି, ଆଉ ପିଲାଟାକୁ ଚଲାଇ ଚଲାଇ ନେଉଛି ।" ବୁଢ଼ା ତତ୍‌କ୍ଷଣାତ୍ ପୁଅକୁ ନେଇ ତା ପଛରେ ବସାଇ ଦେଲା ।

ଏପରି ଭାବରେ ସେମାନେ ପ୍ରାୟ ସହରର ପାଖାପାଖି ହୋଇ ଯିବାରୁ ଜଣେ ଲୋକ ପଚାରିଲା, "ଭାଇ ! ଏ ଗଧଟି କଣ ତମର ?" ବୁଢ଼ା ହଁ କରିବାରୁ ସେ କହିଲା, "ତମେ ତା ଉପରେ ଯେଉଁ ବୋଝ ଦେଇଛ ସେଥିରୁ ଏ ଗଧ ତମର ବୋଲି ତ ବିଶ୍ୱାସ ହେଉ ନାହିଁ । କାହିଁକି ? ତମେ ଦୁହେଁ ଯାକ ତ ବରଂ ଏହିକ୍ଷଣି ଗଧଟାକୁ ବୋହି ନେଇ ପାରନ୍ତ ।" ଏ କଥା ଶୁଣି ବୁଢ଼ା ଓ ତାର ପୁଅ ଗଧରୁ ଓହ୍ଲାଇ ପଡ଼ି ତାର ସବୁ ଗୋଡ଼ ବାନ୍ଧି ଦେଲେ ଓ ଦୁହେଁ ଯାକ ଗୋଟାଏ ବାଉଁଶରେ ତାକୁ ବୋହି ଚାଲିବାକୁ ଲାଗିଲେ । ଏ ରହସ୍ୟ ଦେଖି ଅନେକ ଲୋକ ସେଠାରେ ଗଦା ହୋଇ ପଡ଼ି ହସିବାକୁ ଲାଗିଲେ । ଅବଶେଷରେ ଗଧ ଏ ସବୁ ଗୋଳମାଳ ଦେଖି ଦୌଡ଼ି ଛଟ୍ରାଇ ବାଉଁଶ ଉପରକୁ ଡେଇଁ ନଈ ଭିତରେ ଯାଇ ପଡ଼ିଲା । ବୁଢ଼ାଟି ଅତଶୟ ଲଜ୍ଜିତ ହୋଇ ଗଧଟିକୁ ହରାଇ ଘରକୁ ଫେରି ଆସିଲା ଓ ବୁଝି ପାରିଲା ଯେ, ସମସ୍ତଙ୍କୁ ଖୁସି କରିବାକୁ ଗଲେ କାହାରିକୁ ଖୁସି କରି ହୁଏ ନାହିଁ ।

## ବାଳକ ଓ ବାଟୋଇ

ଗୋଟିଏ ବାଳକ ନଈରେ ଗାଧୋଉ ଗାଧୋଉ ବେଶି ପାଣିକୁ ଚାଲିଯିବାରୁ ଆଉ ତାର ହାତ ଗୋଡ଼ ପାଇଲା ନାହିଁ । ସେ ବୁଡ଼ି ଯିବାକୁ ବସିଲା । ଏପରି ସମୟରେ

ହେଉ ବାଟ ଦେଇ ଗୋଟିଏ ଲୋକ ଯାଉଥିବାର ଦେଖି ସେ ବଡ ପାଟି କରି ତାକୁ ଡାକିଲା । ଲୋକଟି ତାକୁ ପାଣିରୁ ଉଠାଇ ଆଣିବାକୁ ନ ଯାଇ ନିଶ୍ଚିନ୍ତ ଭାବରେ କୂଳରେ ଠିଆ ହୋଇ କାହିଁକି ତୁ ଏତେ ପାଣିକି ଗଲୁ ବୋଲି ବାଳକକୁ ଗାଳି ଦେବାକୁ ଲାଗିଲା ।

ବାଳକଟି କହିଲା, "ମହାଶୟ, ଆଗେ ମୋର ଜୀବନଟା ରଖ, ପରେ ପଛେ ଯେତେ ଇଚ୍ଛା ଗାଳି ଦେବ ।"

ସାହାଯ୍ୟ ନ କରି ଶୁଷ୍କ ଉପଦେଶ ଦେଲେ କିଛି ଫଳ ହୁଏ ନାହିଁ ।

## ଗଧିଆ ଓ ମେଣ୍ଢାଜଗୁଆଳ

ଗୋଟିଏ ଗଧିଆ ମେଣ୍ଢାପଲଙ୍କ ପଛେ ବରାବର ବୁଲୁଥାଏ ଓ କାହାରିକି କେବେ କିଛି ଅନିଷ୍ଟ କରେ ନାହିଁ । ମେଣ୍ଢାଜଗୁଆଳ ପ୍ରଥମେ ତାକୁ ଶତ୍ରୁ ମନେ କରି ସତର୍କ ହୋଇ ତା ଉପରେ କଡ଼ା ନଜର ରଖିବାକୁ ଲାଗିଲା । କିନ୍ତୁ ଯେତେବେଳେ ଦେଖିଲା ଯେ ମେଣ୍ଢାମାନଙ୍କ ମେଳରେ ରହି ସୁଦ୍ଧା ସେ କାହାରି କିଛି ଅନିଷ୍ଟ କରୁ ନାହିଁ, ଜଗୁଆଳ ମନରୁ ସନ୍ଦେହ ଚାଲିଗଲା । ସେ ଗଧିଆକୁ ମେଣ୍ଢାଙ୍କର ଶତ୍ରୁ ମନେ ନ କରି ସେମାନଙ୍କର ଜଗୁଆଳ ବୋଲି ଭାବିଲା । ଦିନେ ତାର ସହରରେ କାମ ଥିବାରୁ ସେ ମେଣ୍ଢାମାନଙ୍କୁ ତା ଜିମାରେ ଛାଡ଼ି ଦେଇ ଚାଲିଗଲା । ଗଧିଆ ଏ ସୁବିଧା ଦେଖି ପଲରୁ ଅନେକ ମେଣ୍ଢା ମାରି ପକାଇଲା ।

ଦୁଷ୍ଟ ଲୋକକୁ କଦାପି ବିଶ୍ୱାସ କରିବ ନାହିଁ ।

## ଜ୍ୟୋତିଷ

ଜଣେ ଜ୍ୟୋତିଷ ବଜାର ମଧ୍ୟରେ ବସି ଲୋକମାନଙ୍କ ହାତ ଦେଖି କାହା ଭାଗ୍ୟରେ କଣ ଅଛି ସବୁ କହୁଥିଲେ । ହଠାତ ଗୋଟିଏ ଲୋକ ଦୌଡ଼ି ଆସି ତାଙ୍କୁ କହିଲା, "ତମ ଘର କବାଟ ଭାଙ୍ଗି ଚୋରମାନେ ସବୁ ଜିନିଷପତ୍ର ବୋହି ନେଇ ଯାଉଛନ୍ତି" । ଏ କଥା ଶୁଣି ଜ୍ୟୋତିଷ ତରତର ହୋଇ ଘରକୁ ଦୌଡ଼ିଲେ । ଜଣେ ଲୋକ ତାଙ୍କୁ ବାଟରେ ଦେଖି କହିଲା, "କହୋ, ତମେ ତ ଅନ୍ୟ ଲୋକମାନଙ୍କର କଣ ହେବ ଗଣନା କରି କହୁଛ, ତମ ନିଜ ଭାଗ୍ୟରେ କଣ ହେବ ଜାଣି ପାରିଲ ନାହିଁ କିପରି ?"

"କହି ଦେଉଥାଏ ପରକୁ, ବୁଦ୍ଧି ନ ଦିଶଇ ଘରକୁ ।"

## ବିଲୁଆ ଓ ମାଙ୍କଡ଼

ଗୋଟିଏ ବିଲୁଆ ଓ ଗୋଟିଏ ମାଙ୍କଡ଼ ଏକ ସଙ୍ଗରେ ବାଟରେ ଯାଉଥିଲେ, ଯାଉ ଯାଉ ସେମାନେ ଗୋଟିଏ ମଶାଣିପଦାରେ ଗୁଡ଼ିଏ ଦେଉଳ ଦେଖି ପାଇଲେ । ମାଙ୍କଡ଼ କହିଲା, "ଏ ଯେଉଁ ସବୁ ଦେଉଳ ଦେଖୁଛ ଏ ସବୁ ଆମ ପୂର୍ବପୁରୁଷମାନଙ୍କ ସ୍ମୃତିରକ୍ଷା ଲାଗି ତୋଳା ହୋଇଛି । ସେମାନେ ଖୁବ ନାମଯାଦା ଲୋକ ଥିଲେ । ସେମାନେ ଅନେକ ଭଲ କାମ କରିଥିଲେ ଓ ସେମାନଙ୍କର ଯଶ ପୃଥିବୀଯାକେ ବ୍ୟାପି ଯାଇଥିଲା ।" ବିଲୁଆ କହିଲା "ଯାହାହେଉ ତମେ ମିଛ କହିବାର ଗୋଟିଏ ଭଲ ଫିକର ବାହାର କରିଛ । ତମେ ଏପରି ଗୋଟିଏ କଥା କହିଛ ଯାହା ମିଛ ବୋଲି ପ୍ରମାଣ କରିବାକୁ ମୋର ଉପାୟ ନାହିଁ । ତମ ପୂର୍ବପୁରୁଷମାନେ ଏଠାରେ ନାହାନ୍ତି କି ଯେଉଁମାନେ ଏ ଦେଉଳ ତୋଳାଇଛନ୍ତି ସେମାନେ ନାହାନ୍ତି ।"

ମିଛ କଥାଟା ବଡ଼ ଶୀଘ୍ର ଧରା ପଡ଼ିଯାଏ ।

## କୁକୁର ଓ ତାର ଛାଇ

ଗୋଟିଏ କୁକୁର ମୁହଁରେ ଖଣ୍ଡେ ମାଂସ ଧରି ଗୋଟିଏ ପୋଲ ଉପର ଦେଇ ନଈ ପାରି ହୋଇ ଯାଉଥିଲା । ନଈପାଣିରେ ତାର ଯେଉଁ ଛାଇ ପଡ଼ିଥିଲା, ତାକୁ ଦେଖି ସେ ମନେ କଲା ଆଉ ଗୋଟାଏ କୁକୁର ଖଣ୍ଡେ ବଡ଼ ମାଂସ ନେଇ ଯାଉଛି । ଏହି ବଡ଼ ମାଂସଖଣ୍ଡ ଲୋଭରେ ସେ ନିଜ ମାଂସଖଣ୍ଡ ଛାଡ଼ି ଦେଇ ଅନ୍ୟ କୁକୁରକୁ ଆକ୍ରମଣ କରିବାକୁ ଗଲାବେଳକୁ ଦେଖିଲା ସେ ଖାଲି ନିଜର ମାଂସ-ଖଣ୍ଡିକ ନଈ ସୁଅରେ ପଡ଼ି ଭାସି ଯାଉଛି । ଶେଷରେ ସେ ହତାଶ ହୋଇ ଭାବିଲା, ଯେଉଁମାନେ ଲୋଭରେ ପଡ଼ି ଅନିଶ୍ଚିତ ଲାଭ ଲାଗି ଦୌଡ଼ନ୍ତି ତାଙ୍କର ଏହି ଦଶା ଘଟେ ।

## ପଶୁ, ପକ୍ଷୀ ଓ ବାଦୁଡ଼ି

ପଶୁମାନଙ୍କ ସଙ୍ଗେ ପକ୍ଷିମାନଙ୍କର ଯୁଦ୍ଧ ଲାଗିବାରୁ କେତେବେଳେ ଏ ପକ୍ଷ ଓ କେତେବେଳେ ସେ ପକ୍ଷ ଜୟୀ ହୁଅନ୍ତି । ବାଦୁଡ଼ି ଯୁଦ୍ଧର ଏପରି ଅନିଶ୍ଚିତ ଫଳ ଦେଖି କେତେବେଳେ ପଶୁ ଓ କେତେବେଳେ ପକ୍ଷୀ ବୋଲି ପରିଚୟ ଦେଇ ଯେତେବେଳେ ଯେଉଁ ପକ୍ଷ ପ୍ରବଳ ହୁଅନ୍ତି ସେତେବେଳେ ସେହି ପକ୍ଷ ସଙ୍ଗେ ମିଶେ । ଯୁଦ୍ଧ ପରେ ଯେତେବେଳେ ସନ୍ଧି ହେଲା ଉଭୟ ପକ୍ଷ ବାଦୁଡ଼ିର ଶଠତା ବୁଝି ପାରି ତାକୁ ବିଶ୍ୱାସଘାତକ ବୋଲି ପାଖରୁ ତଡ଼ି ଦେଲେ । କେହି ଆଉ ତା ସଙ୍ଗେ

କିଛି ଦେଖିଲେ ନାହିଁ । ସେହିଦିନଠାରୁ ସେ ଜଙ୍ଗଲରେ ଦିନବେଳେ ଅନ୍ଧକାର ସ୍ଥାନରେ ଲୁଚି ରହେ ଓ ରାତିରେ ଏକୁଟିଆ ଘୂରିଆଡ଼େ ଉଡ଼ି ବୁଲେ ।

## ଗଧ ଓ ତାର ଖରିଦ୍‌ଦାର

ଜଣେ ଲୋକ ଗୋଟିଏ ଗଧ କିଣିବାକୁ ଯାଇ ଗଧର ମାଲିକକୁ କହିଲା—ମୁଁ ଗଧଟିକୁ କିଣିବା ପୂର୍ବରୁ ଥରେ ପରୀକ୍ଷା କରି ଦେଖିବି । ମାଲିକ ଏଥିରେ ରାଜି ହେବାରୁ ସେ ଗଧଟିକୁ ଘରକୁ ନେଇଗଲା ଓ ତାର ଯେଉଁଠାରେ ସବୁ ଗଧମାନେ ଦାନା ଖାଉଥିଲେ ସେହିଠାରେ ନେଇ ତାକୁ ଛାଡ଼ି ଦେଲା । ଏ ଗଧଟି ଯାଙ୍କେ ଯାଙ୍କେ ଅନ୍ୟାନ୍ୟ ଗଧମାନଙ୍କ ସଙ୍ଗ ଛାଡ଼ି ସବୁଠାରୁ ଅଳସୁଆ ଓ ପେଟୁ ଗଧମାନଙ୍କ ମେଳରେ ଯାଇଁ ଯୋଗ ଦେଲା । ଲୋକଟି ଏହା ଦେଖି ଗଧକୁ ବାନ୍ଧି ତାର ମାଲିକ ନିକଟକୁ ନେଇଗଲା ।

ମାଲିକ ଯେତେବେଳେ ପଚାରିଲା ଯେ ଏତେ ଅଳ୍ପ ସମୟ ମଧ୍ୟରେ ତମେ କିପରି ପରୀକ୍ଷା କଲ, ସେ ଲୋକଟି ଉତ୍ତରରେ କହିଲା, "ପରୀକ୍ଷା କରିବାର ଆଉ ଆବଶ୍ୟକ ନାହିଁ । ମୁଁ ଜାଣେ ଯେ ସେ ସବୁ ଗଧଙ୍କୁ ଛାଡ଼ି ଯାଇ ଯେଉଁ କିସ୍ମୀ ସଙ୍ଗୀମାନଙ୍କ ସଙ୍ଗେ ଯୋଗ ଦେଲା, ସେ ସେହିପରି ଠିକ୍ ଗୋଟାଏ ହେବ । ଏପରି ଗଧକୁ ମୁଁ କିଣିବାକୁ ଚାହେଁ ନାହିଁ ।"

ଲୋକର ସଙ୍ଗୀମାନଙ୍କ ଦ୍ୱାରା ଲୋକକୁ ଚିହ୍ନାଯାଏ ।

## ମାଛି ଓ ଗଧିଆ

ଗୋଟିଏ ଭୋକିଲା ଗଧିଆ ଦିନେ ସକାଳେ ଛପି ଛପି ଏଆଡ଼େ ସେଆଡ଼େ ଶିକାର ଖୋଜି ବୁଲୁଥିଲା । ଜଙ୍ଗଲ ନିକଟରେ ଥିବା ଗୋଟିଏ କୁଡ଼ିଆ ଘର ବାଟେ ଯାଉ ଯାଉ ସେ ଶୁଣି ପାରିଲା ଯେ ଗୋଟିଏ ସ୍ତ୍ରୀଲୋକ ତାର ପୁଅକୁ ଡ଼ରାଇ କରି କହୁଛି "ରୁନ୍ଦ, ନ ହେଲେ ମୁଁ ତତେ ଏହି ଝରକାବାଟେ ପଦାକୁ ପକାଇ ଦେବି ଯେ ଗଧିଆ ଆସି ନେଇଯିବ ।" ଗଧିଆ ଏ କଥା ଶୁଣି କେତେବେଳେ ପିଲାଟି ପଡ଼ିଲେ ଖାଇବ ଏହି ଆଶାରେ ସେହିଠାରେ ବସି ରହିଲା । ବସି ବସି ପୁଣି ସନ୍ଧ୍ୟାବେଳେ ଶୁଣି ପାରିଲା ଯେ ସେହି ସ୍ତ୍ରୀଲୋକ ତାର ପୁଅକୁ ଗେଲ କରି କହୁଛି, "ଆମ ପୁଅ ଭଲ ହେଲାଣି, ଏଥର ଯେବେ ଗଧିଆ ଆସିବ ତାକୁ ମାରି ପକାଇବୁଁ ।" ଗଧିଆ ଏତକ ଶୁଣି ଭୋକ ଶୋଷରେ ବଡ଼ କଷ୍ଟ ପାଇ ହତାଶ ହୋଇ ଘରକୁ ଫେରିଗଲା । ଗୁହା ନିକଟରେ ପହଞ୍ଚିଲା, ବାଘୁଣୀ ତାକୁ ପଚାରିଲା ତମେ କାହିଁକି ଆଜି ଏପରି କ୍ଲାନ୍ତ ହୋଇ କିଛି ନ ଖାଇ ନ ପିଇ ଫେରି ଆସିଲ ? କେବେ ତ

ତୁମର ଏପରି ହୁଏ ନାହିଁ । ଗଧିଆ କହିଲା, "ଏହାର କାରଣ ଏହି ଯେ ମୁଁ ଜଣେ ସ୍ତ୍ରୀଲୋକର କଥାରେ ବିଶ୍ୱାସ କରିଥିଲି ।"

## ଗଧ ଓ ଘୋଡ଼ା

ଗୋଟିଏ ଘୋଡ଼ା ଗଛ ମୂଳରେ ବନ୍ଧା ହୋଇ ଦାନା ଖାଉଥିଲା; ଗୋଟିଏ ଗଧ ସେଠାକୁ ଆସି ଘୋଡ଼ାକୁ ଦାନା ମାଗିବାରୁ ସେ କହିଲା, "ହାଁ, ମୋର ମର୍ଯ୍ୟାଦା ରକ୍ଷା କରିବା ଲାଗି ମୁଁ ଯାହା ଖାଉଛି ସେଥିରୁ ଯଦି ବଳେ ତେବେ ତୁମକୁ କିଛି ଦେଇ ପାରେ । କିନ୍ତୁ ମୁଁ ଯେତେବେଳେ ମୋ ଶାଳରେ ପହଞ୍ଚିବି ସେତେବେଳେ ଯଦି ତୁମେ ସେଠାକୁ ଯାଅ ତାହାହେଲେ ମୁଁ ତୁମକୁ ଏକ ବସ୍ତା ଦାନା ଦେବି ।" ଗଧ ଉତ୍ତର କଲା, "ହଉ, ତୁମକୁ ଶତ ଧନ୍ୟବାଦ ! ତୁମେ ଯେତେବେଳେ ମତେ ସାମାନ୍ୟ ଗୋଟିଏ ଜିନିଷ ଦେବାକୁ ନାରାଜ, ତୁମେ ଯେ କେତେବେଳେ ମତେ ବେଶୀ ଦେବ ଏ କଥା ମୁଁ ବିଶ୍ୱାସ କରିବି କିପରି ?"

## କାଉ ଓ ମେଣ୍ଢା

ଥରେ ଗୋଟିଏ ଦୁଷ୍ଟ କାଉ ଗୋଟିଏ ମେଣ୍ଢାର ପିଠି ଉପରେ ବସିପଡ଼ି ତାକୁ ଖୁମ୍ପିବାକୁ ଲାଗିଲା । ମେଣ୍ଢା ଅସ୍ଥିର ହୋଇ ପିଠି ଝାଡ଼ି କାଉକୁ ଏପାଖ ସେପାଖ କରିବାକୁ ଲାଗିଲା । କିନ୍ତୁ ତଥାପି କାଉ ପିଠିରୁ ଉଠିଲା ନାହିଁ । ଶେଷରେ ମେଣ୍ଢା ବିରକ୍ତ ହୋଇ କହିଲା, "ତୁମେ ଯଦି ଗୋଟିଏ କୁକୁର ସଙ୍ଗେ ଏହିପରି ବ୍ୟବହାର କରିଥାନ୍ତ ତାହାହେଲେ ସେ ତାର ମୁନିଆ ଦାନ୍ତଦ୍ୱାରା ତୁମକୁ ଭଲ କରି ଏହାର ପ୍ରତିଫଳ ଦେଇଥାନ୍ତା ।" କାଉ ହସି ହସି କହିଲା, "ମୁଁ ସେପରି ଲୋକ ସଙ୍ଗେ କଦାପି ଲାଗେ ନାହିଁ । ମୁଁ ଦୁର୍ବଳମାନଙ୍କୁ ଘୃଣା କରେ ଓ ବଳୁଆ ଲୋକ ଦେଖିଲେ ନଇଁ କରି ଚଳେ । କାହା ସଙ୍ଗେ ବିବାଦ କରିବାକୁ ହେବ ଏ କଥାଟି ମୁଁ ଭଲକରି ଜାଣେ । ଏଥିପାଇଁ ବୋଲି ତ ଆମ୍ଭେମାନେ ବେଶୀ ଦିନ ବଞ୍ଚି ରହୁଁ ।"

## ଲୁଣମହାଜନ ଓ ଗଧ

ଜଣେ ଲୁଣମହାଜନ ତାର ଗଧଟିକୁ ଘେନି ଲୁଣ କିଣିବାକୁ ସମୁଦ୍ର କୂଳକୁ ଯାଇଥିଲା । ଲୁଣ ଘେନି ଘରକୁ ଫେରିବାବେଳେ ଗୋଟିଏ ନଈକୂଳରେ ଆସୁ ଆସୁ ଦୈବାତ୍ ଗଧର ଗୋଡ଼ ଖସି ଯାଇ ସେ ପାଣିରେ ପଡ଼ିଗଲା । ପାଣି ଲାଗି ଲୁଣ ସବୁ ମିଳାଇ ଯିବାରୁ ଗଧକୁ ବଡ଼ ଉଶ୍ୱାସ ଲାଗିଲା । ମହାଜନ ଫେରି ଯାଇ ବସ୍ତାରେ ପୂର୍ବ ଅପେକ୍ଷା ଆହୁରି ବେଶୀ ଲୁଣ ଭର୍ତ୍ତି କରି ଆଣିଲା । ପୁଣି

ଯେତେବେଳେ ସେମାନେ ସେହି ନଈ କୂଳକୁ ଆସିଲେ ଗଧ ଜାଣି ଶୁଣି ପାଣିରେ ପଡ଼ିଗଲା । ବୋଝ ଅନେକ ପରିମାଣରେ କମିଯିବାରୁ ଗଧ ଆନନ୍ଦରେ ଗର୍ଜନ କରିବାକୁ ଲାଗିଲା ।

ମହାଜନ ଗଧର ଚାଲାକ ବୁଝି ପାରି ତାକୁ ଶିକ୍ଷା ଦେବା ଲାଗି ଏଥର ଲୁଣ ବଦଳରେ ତା' ଉପରେ ଗୁଡ଼ାଏ ତୁଳା ବୋଝାଇ କଲା । ପୁଣି ମଧ୍ୟ ଗଧ ସେହିପରି ଠକାମି କରି ନଈକୂଳକୁ ଆସି ପାଣିରେ ଖସି ପଡ଼ିଲା । କିନ୍ତୁ ଏଥର ତୁଳା ଭିତରେ ପାଣି ପଶିଗଲା ଓ ଏତେ ଭାରି ହେଲା ଯେ ଗଧ ଆଉ ଉଠାଇ ପାରିଲା ନାହିଁ । ନିଜ ଚାଲାକରେ ନିଜେ ଠକି ଗଧ ମନରେ ବଡ଼ କଷ୍ଟ ହେଲା ।

## ଜଣେ ଲୋକ ଓ ତାର ଦୁଇ ସ୍ତ୍ରୀ

ଜଣେ ଅଧବୁଢ଼ା ଲୋକର ଦୁଇଟି ସ୍ତ୍ରୀ ଥିଲେ । ସେଥି ମଧ୍ୟରୁ ଗୋଟିଏ ଯୁବତୀ ଓ ଆଉ ଗୋଟିଏ ବୁଢ଼ୀ । ସେ ଲୋକଟିର ମୁଣ୍ଡରୁ ପ୍ରାୟ ଅଧାଅଧି ବାଳ ପାଚି ଯାଇଥିଲା । ସ୍ୱାମୀର ବୟସ ତାହାଠାରୁ କମ୍ ବୋଲି ବୁଢ଼ୀକୁ ବଡ଼ ଲାଜ ମାଡ଼େ । ସେଥିଲାଗି ସେ ଯେତେବେଳେ ପାରେ ସ୍ୱାମୀ ମୁଣ୍ଡରୁ ଗୁଡ଼ାଏ କଳାବାଳ ଉପାଡ଼ି ପକାଏ । ଯୁବତୀଟି ମଧ୍ୟ ସେହିପରି ବୁଢ଼ା ସ୍ୱାମୀର ସ୍ତ୍ରୀ ବୋଲି ଲଜ୍ଜିତ ହୋଇ ସୁବିଧା ଦେଖି ସ୍ୱାମୀ ମୁଣ୍ଡରୁ ପାଚିଲା ବାଳତକ ଉପାଡ଼ି ଦିଏ । ଲୋକଟି ମଧ୍ୟ ମୋହମତରେ କାହାକୁ କିଛି କହି ପାରେ ନାହିଁ । ଶେଷରେ ଏପରି ହେଲା ଯେ ଉଭୟ ସ୍ତ୍ରୀଙ୍କ ମୋହମତରେ ପଡ଼ି ବିଚାରା ସ୍ୱାମୀଟିର ମୁଣ୍ଡରେ ଆଉ ଗୋଟିଏ ବାଳ ରହିଲା ନାହିଁ ।

ସମସ୍ତଙ୍କର ମନ ରକ୍ଷା କରିବାକୁ ଗଲେ ନିଜର ଅନିଷ୍ଟ ଘଟେ ।

## ସିଂହ ଓ ବରାହ

ଗ୍ରୀଷ୍ମକାଳରେ ଥରେ ଗୋଟିଏ ସିଂହ ଗୋଟିଏ ବରାହ ପାଣି ପିଇବାଲାଗି ଏକସଙ୍ଗରେ ଆସି ଗୋଟିଏ ଛୋଟ ଗାଡ଼ିଆ ନିକଟରେ ପହଞ୍ଚିଲେ । କିଏ ପ୍ରଥମେ ପାଣି ପିଇବ ଏଥିଲାଗି କଜିଆ ଲାଗୁ ଲାଗୁ ଶେଷରେ ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଅନେକ ଲକ୍ଷଣ ଯୁଦ୍ଧ କରି କରି ଯେତେବେଳେ ଦୁହେଁଯାକ କ୍ଳାନ୍ତ ହୋଇ ପଡ଼ିଲେ ସେମାନଙ୍କ ମଧ୍ୟରେ କଥା ହେଲା ଯେ, କିଛିକ୍ଷଣ ବିଶ୍ରାମ କରି ପୁଣି ଯୁଦ୍ଧ କରିବା । ଯୁଦ୍ଧ ବନ୍ଦ କରି ବସିଅଛନ୍ତି ଏପରି ସମୟରେ ଦେଖିଲେ ଯେ ଦଳେ ଶାଗୁଣା ଉପରେ ଝାଙ୍କ କରି ବସିଛନ୍ତି, ସିଂହ ଓ ବରାହ ମଧ୍ୟରୁ ଯେ ଆଗେ ମରିବ ତାକୁ ଖାଇବେ । ଏହା ଦେଖି ସେମାନେ ଭାବିଲେ କାହିଁ ଶାଗୁଣାଙ୍କ ଆହାର ହେବା

ଅପେକ୍ଷା ଏକସଙ୍ଗେ ମିଳି ମିଶି ରହିବା ଶତ ଗୁଣରେ ଭଲ । ଏହା ଶୁଣି ସେମାନେ କଳିଆ ଭାଙ୍ଗି ଦେଇ ସେହି ଦିନଠାରୁ ବନ୍ଧୁଭାବରେ ଚଳିଲେ ।

## ମୂଷା ଓ ନେଉଳ

ମୂଷା ଓ ନେଉଳମାନଙ୍କ ମଧ୍ୟରେ ଅନେକ ଥର ଯୁଦ୍ଧ ହେଲା । କିନ୍ତୁ ସବୁଥର ମୂଷାମାନେ ହାରିଗଲେ । ମୂଷାମାନେ ବିଚାରିଲେ, ଆମ୍ଭମାନଙ୍କୁ ଚଳାଇବାକୁ କେହି ସର୍ଦ୍ଦାର ନ ଥିବାରୁ ଆମ୍ଭମାନଙ୍କ ମଧ୍ୟରେ କିଛି ନିୟମ ରହି ପାରୁ ନାହିଁ । ସେଥିଲାଗି ଆମ୍ଭେମାନେ ବରାବର ହାରି ଯାଉଅଛୁଁ । ଏହା ଭାବି ଯେଉଁମାନଙ୍କର ବୁଦ୍ଧି, ବଳ ଓ ସାହସ ବେଶି ଏହିପରି କେତୋଟି ମୂଷାଙ୍କୁ ବାଛି ସେମାନେ ସର୍ଦ୍ଦାର କରିଦେଲେ । ସର୍ଦ୍ଦାରମାନଙ୍କୁ ଚିହ୍ନାଯିବ ବୋଲି ସେମାନଙ୍କ ମୁଣ୍ଡରେ ଖଣ୍ଡେ ଖଣ୍ଡେ କନା ଗୁଡ଼ାଇ ଦିଆଗଲା । ଏସବୁ ହେଲାରୁ ସର୍ଦ୍ଦାରମାନଙ୍କୁ ଆଗରେ କରି ମୂଷାମାନେ ଯୁଦ୍ଧ କରିବାକୁ ବାହାରିଲେ । ମୂଷାମାନଙ୍କ ଠାରୁ ନେଉଳମାନଙ୍କର ବଳ ଖୁବ୍ ବେଶି । ଯୁଦ୍ଧ ହେଲା ମାତ୍ରେ ମୂଷାମାନେ ପ୍ରାଣ ଭୟରେ ଯାଇ ନିଜ ନିଜ ଗାତ ଭିତରେ ପଶିଲେ । କିନ୍ତୁ ବିଚାରା ସର୍ଦ୍ଦାରଗଣଙ୍କ ମୁଣ୍ଡରେ ପଗଡ଼ି ଥିବାରୁ ସେମାନେ ଗାତରେ ଗଳି ପାରିଲେ ନାହିଁ, ନେଉଳମାନଙ୍କ ହାତରେ ପଡ଼ି ପ୍ରାଣ ହରାଇଲେ ।

ଯେଉଁମାନଙ୍କର ଯେତିକି ମାନ୍ୟ, ସେମାନଙ୍କର ସେତିକି ବିପଦ ।

## ଗଧ, କୁକୁଡ଼ା ଓ ସିଂହ

ଗୋଟିଏ ଗଧ ଓ ଗୋଟିଏ କୁକୁଡ଼ା ଏକସଙ୍ଗେ ଗୋଟିଏ ଖୋଲା ଅଗଣାରେ ଥାଆନ୍ତି । ଦିନେ ହଠାତ୍ ଗୋଟିଏ ସିଂହ ଆସି ସେଠାରେ ପହଞ୍ଚିଲା । ସିଂହକୁ ଦେଖି ଗଧ ଭୟରେ ଥର ଥର ହେବାକୁ ଲାଗିଲା ।

ସିଂହ ଗଧ ଉପରକୁ ଝାମ୍ପ ମାରିବାକୁ ବସିଲାବେଳକୁ କୁକୁଡ଼ା ଡେଣା ପିଟି କରି ଥରେ ଡାକ ଦେଲା । ପ୍ରବାଦ ଅଛି, କୁକୁଡ଼ା ଡାକ ଶୁଣିଲେ ସିଂହ ଭାରି ବିରକ୍ତ ହୁଏ ଓ ସାଙ୍ଗେ ସାଙ୍ଗେ ସେଠାରୁ ପଳାଇଯାଏ । କୁକୁଡ଼ା ଡାକ ଶୁଣି ସିଂହ ଆଉ ସେଠାରେ ନ ରହି ଶୀଘ୍ର ପଳାଇଗଲା । ଏହା ଦେଖି ଗଧ ମନେ ବିଚାରିଲା, ସାମାନ୍ୟ ଗୋଟାଏ କୁକୁଡ଼ା ଡାକ ଶୁଣି ଯେତେବେଳେ ସିଂହର ଏତେ ଭୟ ହେଲା, ମୁଁ ତେବେ ଆଉ ତାକୁ ଡରିବି କାହିଁକି ? ଏହା ଭାବି ଗଧ ସିଂହକୁ ଧରିବି ବୋଲି ସାହସ କରି ତା' ପଛେ ପଛେ ଗୋଡ଼ାଇଲା । ଅଳ୍ପଦୂର ନ ଯାଉଣୁ ସିଂହ ପଛକୁ ଫେରି ଗଧକୁ ଖଣ୍ଡ ଖଣ୍ଡ କରି ପକାଇଲା ।

## ଗଧିଆ ଓ ସିଂହ

ଗୋଟିଏ ଗଧିଆ ଅନେକରୁ ଗୋଟିଏ ମେଣ୍ଢାଛୁଆ ଧରି ଆଣି ନିଜ ଗୁହାକୁ ନେଇ ଯାଉଥିଲା । ଗୋଟିଏ ସିଂହ ତାକୁ ବାଟରେ ଦେଖି ମେଣ୍ଢାଛୁଆଟି ତାହାଠାରୁ ଛଡ଼ାଇ ନେଇଗଲା । ଗଧିଆ ଟିକିଏ ଦୂରରେ ଛିଡ଼ା ହୋଇ ପାଟି କରି କହିଲା "ମୋ ଜିନିଷକୁ ତେମେ ବଡ଼ ଅନ୍ୟାୟରେ ମୋଠାରୁ ନେଇଗଲ ।" ସିଂହ ହସି କରି କହିଲା "ଠିକ କଥା, ଏ ଜିନିଷଟି ନ୍ୟାୟରେ ଏବା ତମର ହୋଇଛି ! କୁହେଁ ? ତୁମର କେହି ବନ୍ଧୁ ତୁମକୁ ଉପହାର ଦେଇଥିଲେ ନା କଣ ?"

## ଗଧିଆ ଓ ମେଣ୍ଢାଛୁଆ

ଥରେ ଗୋଟିଏ ଗଧିଆ ଗୋଟିଏ ମେଣ୍ଢାଛୁଆକୁ ଦେଖି ମନେ କଲା ମୁଁ ଏହା ଉପରେ ପ୍ରକାଶ୍ୟରେ କିଛି ଅତ୍ୟାଚାର ନ କରି ଏପରି ଗୋଟିଏ ବାହାନା କରିବ, ଯେପରି ମେଣ୍ଢାଛୁଆ ନିଜେ ବୁଝି ପାରିବ ଯେ ତାକୁ ଖାଇବାକୁ ମୋର ଅଧିକାର ଅଛି । ଏହା ଭାବି ସେ ମେଣ୍ଢାଛୁଆକୁ କହିଲା, "ଗତବର୍ଷ ତମେ ମୋତେ ବଡ଼ ଅପମାନ ଦେଇଥିଲ ।" ମେଣ୍ଢାଛୁଆ କାତର-ଭାବରେ କହିଲା, "ମୁଁ ତ ସେତେବେଳକୁ ଜନ୍ମ ହୋଇ ନାହିଁ !" ଗଧିଆ କହିଲା, "ତମେ ମୋ ପଡ଼ିଆରୁ ବରାବର ଘାସ ଖାଉଛ ।" ମେଣ୍ଢାଛୁଆ ଉତ୍ତର କଲା, "ମୁଁ ତ ଏପର୍ଯ୍ୟନ୍ତ ଘାସ କଣ ଚାଖି ନାହିଁ !" ତହୁଁ ସେ ଗଧିଆ କହିଲା, "ତମେ ମୋ ଝରଣାରୁ ପାଣି ପିଉଛ ।" ମେଣ୍ଢାଛୁଆ ଚିତ୍କାର କରି କହିଲା "ମୁଁ ଏପର୍ଯ୍ୟନ୍ତ ମୋଟେ ପାଣି ପିଇ ନାହିଁ ।" କାରଣ ମାଆର ଦୁଧ ଏପର୍ଯ୍ୟନ୍ତ ମୋର ଖାଇବା ଓ ପିଇବା ଦୁଇ କାମ ତୁଲାଉଛି !"

ଏ କଥା ଶୁଣି ଗଧିଆ ମେଣ୍ଢାଛୁଆକୁ ଧରି ଆହାର କରିବା ସମୟରେ କହିଲା, "ବାଃ, ତମେ ମୋର ସବୁ ଯୁକ୍ତି କାଟିଇ ଦେବ ବୋଲି ମୁଁ ତ ଆଉ ଉପାସରେ ରହିବ ନାହିଁ !"

ଦୁଷ୍ଟ ଲୋକ କିଛି ନା କିଛି ଗୋଟାଏ ବାହାନା କରି ନିଜର ଉଦ୍ଦେଶ୍ୟ ସାଧନ କରେ ।

## ଭାଲୁ ଓ ବିଲୁଆ

ଗୋଟିଏ ଭାଲୁ ଥରେ ଗର୍ବ କରି କହିଲା, ମୋଠାରୁ ବଳି ଉପକାରୀ ଜନ୍ତୁ ଆଉ କେହି ନାହିଁ । ମନୁଷ୍ୟ ପ୍ରତି ମୋର କି ସୁନ୍ଦର ବ୍ୟବହାର ! ମନୁଷ୍ୟକୁ ମୁଁ ଏତେଦୂର ଭକ୍ତି କରେ ଯେ ତାର ମୃତଦେହକୁ ସୁଦ୍ଧା ସ୍ପର୍ଶ କରେ ନାହିଁ ।" ବିଲୁଆ

ଶାଳୁଅ ଏ କଥା ଶୁଣି ହସି ହସି କହିଲା, "ତମେ ଯଦି ଜୀଅନ୍ତା ମନୁଷ୍ୟଙ୍କୁ ନ ଖାଇ ମଲା ମନୁଷ୍ୟଙ୍କୁ ଖାଉଥାଆନ୍ତ ତାହାହେଲେ ଅଧିକ ଭଲ ହେଉଥାନ୍ତା । ତାହା କରୁଥିଲେ ଉପକାର କାହାର କିଛି ନ ହେଉ ଅପକାର ହେଉ ନ ଥାନ୍ତା ।"

## ବୁଢ଼ୀ ଓ ଡାକ୍ତର

ଗୋଟିଏ ବୁଢ଼ୀର ଆଖିକି ଆଉ ନ ଦିଶିବାରୁ ସେ ଜଣେ ଡାକ୍ତର ଆଣି ଦେଖାଇଲା । ଡାକ୍ତର ଆଖି ଭଲ କରିଦେବାକୁ କହିବାରୁ ତା' ସଙ୍ଗେ ଏହି ଚୁକ୍ତି ହେଲା ଯେ ଯଦି ଭଲ କରିଦିଏ ତେବେ ବୁଢ଼ୀ ତାକୁ ଶହେ ଟଙ୍କା ଦେବ; କିନ୍ତୁ ଭଲ ନ କଲେ ଡାକ୍ତର କିଛି ପାଇବ ନାହିଁ । ଏହିପରି ଚୁକ୍ତି ହେଲାପରେ ଡାକ୍ତର ଥରକୁ ଥର ଆସି ବୁଢ଼ୀ ଆଖିରେ ଗୋଟିଏ ଲେପ ଦେଇଯାଏ ଏବଂ ପ୍ରତିଥର ତା ଘରୁ କିଛି ଜିନିଷ ସ୍ତେଶ କରି ନେଇଯାଏ । ବୁଢ଼ୀକୁ କିଛି ଦିଶୁ ନ ଥିବାରୁ ସେ କିଛି ଜାଣି ପାରେ ନାହିଁ । ଏହିପରି କରି ସେ ବୁଢ଼ୀର ସବୁ ସମ୍ପତ୍ତି ନେଇଗଲା ।

ଶେଷରେ ବୁଢ଼ୀର ଆଖି ଭଲ ହୋଇଯିବାରୁ ଡାକ୍ତର ତାକୁ ଟଙ୍କା ମାଗିଲା । ବୁଢ଼ୀ ଭଲ ହୋଇ ଯାଇ ଯେତେବେଳେ ଦେଖିଲା ଯେ ତାର ଘରେ ଆଉ ଜିନିଷ-ପତ୍ର କିଛି ନାହିଁ, ସେ ଆଉ ଡାକ୍ତରକୁ କିଛି ଦେଲା ନାହିଁ । ଡାକ୍ତର କିନ୍ତୁ ନିଜର ଦାବି ନ ଛାଡ଼ି ବୁଢ଼ୀ ନାମରେ ନାଲିଶ କଲା । ବୁଢ଼ୀ ଅଦାଲତରେ ଛିଡ଼ା ହୋଇ କହିଲା, "ଡାକ୍ତର ଯାହା କହୁଅଛି ସବୁ ସତ; ପ୍ରକୃତରେ ମୁଁ ଭଲ ହେଲେ ତାକୁ ଶହେ ଟଙ୍କା ଦେବି ବୋଲି କହିଥିଲି । ତାହା ସଙ୍ଗେ ଏତିକି ମଧ୍ୟ କହିଥିଲି ଯେ ଭଲ ନ ହେଲେ କିଛି ଦେବି ନାହିଁ । ବର୍ତ୍ତମାନ ସେ କହେ ଯେ ମୁଁ ଭଲ ହୋଇ ଗଲିଣି, କିନ୍ତୁ ମୁଁ କହେ ଯେ ପୂର୍ବ ପରି ଅନ୍ଧ ଅଛି, କାରଣ ମୁଁ ଯେତେବେଳେ ଅନ୍ଧ ହୋଇ ନ ଥିଲି ସେତେବେଳେ ମୁଁ ମୋ ଘରେ ଅନେକ ଜିନିଷପତ୍ର ଦେଖୁଥିଲି, କିନ୍ତୁ ବର୍ତ୍ତମାନ ଗୋଟିଏ କିଛି ଦେଖି ପାରୁ ନାହିଁ । ତେବେ ଆଉ ଭଲ ହେଲି କିପରି ?" ବୁଢ଼ୀର କଥା ଶୁଣି ଅଦାଲତରେ ଗୋଟିଏ କୌତୁକର ଚହଳ ପଡ଼ିଗଲା ।

## କୁକୁର, କୁକୁଡ଼ା ଓ ବିଲୁଆ ।

ଗୋଟିଏ କୁକୁର ଓ ଗୋଟିଏ କୁକୁଡ଼ା ଉଭୟଙ୍କର ବଡ଼ ମନ ମିଳୁଥିଲା । ସେମାନେ ଦିନେ ଏକ ସଙ୍ଗରେ ବୁଲିବାକୁ ଯାଇ ଯାଇ ଏକ ଜଙ୍ଗଲ ମଧ୍ୟରେ ରାତି ହୋଇଗଲା, ରାତିରେ କୁକୁଡ଼ା ଯାଇଁ ଗୋଟିଏ ଗଛ ଉପରେ ବସିଲା ଏବଂ କୁକୁର

ସେହି ଗଛ ତଳେ ଶୋଇଲା । ରାତି ପାହିବାରୁ କୁକୁଡ଼ା ନିଜର ସ୍ୱଭାବ ଅନୁସାରେ ଉଚ୍ଚସ୍ୱରରେ ଡାକିବାକୁ ଲାଗିଲା । କୁକୁଡ଼ାର ଡାକ ଶୁଣି ଗୋଟିଏ ବିଲୁଆ ମନେ କଲା ଗୋଟିଏ କିଛି କୌଶଳ କରି ଆଜି ଏହି କୁକୁଡ଼ାଟିକୁ ଖାଇବି । ଏହିପରି ଭାବି ବିଲୁଆ ସେହି ଗଛ ନିକଟକୁ ଯାଇଁ କୁକୁଡ଼ାକୁ ଡାକ କହିଲା, "ଭାଇ ତମଠାରୁ ବଳି ଉପକାରୀ ପକ୍ଷୀ ଆଉ କେହି ନାହାନ୍ତି । ତମ ଗଳାଟି ବଡ଼ ସୁନ୍ଦର, ତମ ଡାକ ଶୁଣି ମୁଁ ତମ ସଙ୍ଗେ କୋଳାକୋଳି କରିବାକୁ ଆସିଛି, ତେବେ ତଳକୁ ଓହ୍ଲାଇ ଆସ, ଏଠାରେ ବସି ଆଳାପ କରିବା ।" କୁକୁଡ଼ା ବିଲୁଆର ଚାଲାକି ବୁଝି ପାରି ତାକୁ ପ୍ରତିଫଳ ଦେବାଲାଗି କହିଲା, "ଭାଇ, ଗଛ ତଳେ ମୋର ଦରୁଆନ ଶୋଇଛି, ତମେ ଯଦି ଦୟା କରି ତାକୁ ଉଠାଇ ଦିଅ ତାହାହେଲେ ସେ ଦରଜା ଖୋଲିଦେଲେ ମୁଁ ତଳକୁ ଯିବି ।" ବିଲୁଆ ଏ କଥା ଶୁଣି ଖୁସି ହୋଇ ଗଛ-ମୂଳକୁ ଗଲାମାତ୍ରେ କୁକୁର ତାକୁ ଧରି ଖଣ୍ଡ ଖଣ୍ଡ କରି ପକାଇଲା ।

ପର ଲାଗି ଯେ ଫାନ୍ଦ ବସାଏ, ସେ ଫାନ୍ଦରେ ସେ ନିଜେ ପଡ଼େ ।

## ବାଘ ଓ ପୋଷାକୁକୁର

ଗୋଟିଏ ମୋଟାସୋଟା କୁକୁର ସଙ୍ଗେ ଥରେ ଗୋଟିଏ ଦୁର୍ବଳ ବାଘର ଦେଖା ହେଲା । ପ୍ରଥମେ ଟିକିଏ ଆଳାପ ହୋଇଗଲା ପରେ ବାଘ କହିଲା, "ତମକୁ ଗୋଟିଏ କଥା ପଚାରିବି । ତମେ ତ ବଡ଼ ମୋଟାସୋଟା ଦିଶୁଛ । ତମେ କଣ ଆହାର କର ଏବଂ ତମ ଆହାର ବା କିପରି ମିଳେ ? ମୁଁ ତ ଦିନ ରାତି ଆହାର ଖୋଜି ଖୋଜି ଥରେ ପୁରା ପେଟ ପୂରାଇ ଖାଇବାକୁ ପାଏ ନାହିଁ । କେବେ କେବେ ଉପାସରେ ମଧ୍ୟ ରହିବାକୁ ପଡ଼େ । ସେଥିଲାଗି ଦେଖୁଚ ମୁଁ କିପରି ଦୁର୍ବଳ ହୋଇ ପଡ଼ିଛି ।"

କୁକୁର କହିଲା, "ତମେ ଯଦି ମୋ ପରି କରନ୍ତ ତେବେ ତମର ଆଉ ଆହାରର ଅଭାବ ହୁଅନ୍ତା ନାହିଁ ।" ବାଘ କହିଲା, "ତମକୁ କଣ କରିବାକୁ ହୁଏ ?" କୁକୁର କହିଲା, "କିଛି ନୁହେଁ । କେବଳ ରାତିରେ ଖାଉନ୍ଦର ଘରଟା ଟିକିଏ ଜଗିବାକୁ ପଡ଼େ ।" ବାଘ କହିଲା, "ମୁଁ ଏତିକି କରିବାକୁ ରାଜି ଅଛି । ଖରା ବର୍ଷାରେ ରାତି ଦିନ ବୁଲି ବୁଲି ମୋର ବଡ଼ କଷ୍ଟ ହେଲାଣି । ମୁଁ ଆଉ ଏସବୁ ସହି ପାରିବି ନାହିଁ ।" ବାଘର ଦୁଃଖ କଥା ଶୁଣି କୁକୁର କହିଲା, "ତମେ ତେବେ ମୋ ସାଙ୍ଗରେ ଆସ । ମୁଁ ଖାଉନ୍ଦକୁ କହି ସବୁ ବନ୍ଦୋବସ୍ତ କରି ଦେବି ।" ବାଘ କୁକୁର ସାଙ୍ଗରେ ଚାଲିବାକୁ ଲାଗିଲା ।

ଏଥିରେ ଦୂର ଯାଇ ବାଘ କୁକୁର ବେକରେ ଗୋଟିଏ ଦାଗ ଦେଖି ପଚାରିଲା, "ଭାଇ, ତମ ବେକରେ ଏଇଟା କି ଦାଗ ?" କୁକୁର କହିଲା, "ସେଇଟା କିଛି ନୁହେଁ, ବୋଧହୁଏ ଶିକୁଳିର ଦାଗ ।" ବାଘ କହିଲା, "ଶିକୁଳି ଦିଆଯାଏ କାହିଁକି ?" କୁକୁର କହିଲା, "ମୋତେ ଦିନବେଳେ ବାନ୍ଧି ରଖନ୍ତି ଓ ରାତିରେ ଛାଡ଼ି ଦିଅନ୍ତି, ସେତେବେଳକୁ ଯେଉଁ ଆଡ଼େ ଇଚ୍ଛା ସେଆଡ଼େ ମୁଁ ଯାଇ ପାରେ । ଏହା ଛଡ଼ା ଚାକରମାନେ ମତେ କେଡ଼େ ଆଦର କରି ଅଇଁଠି କରି ଭଲ ଖାଇବାକୁ ଦିଅନ୍ତି, ଗାଧୋଇ ଦିଅନ୍ତି । ଖାଉନ୍ଦ ମଧ୍ୟ ମତେ ବଡ଼ ଆଦର କରି ଆଉଁସା ଆଉଁସି କରେ । ଦେଖିଲ, ମୁଁ କିପରି ସୁଖରେ ଅଛି !"

ବାଘ କହିଲା, "ଭାଇ ତମ ସୁଖ ତମ ପାଖରେ ଥାଉ, ମୁଁ ଏପରି ସୁଖ ଚାହେଁ ନାହିଁ । ପରାଧୀନ ହୋଇ ରାଜଭୋଗ ପାଇବା ଅପେକ୍ଷା ସ୍ୱାଧୀନ ହୋଇ ଆହାର କଷ୍ଟ ଭୋଗ କରିବା ଲକ୍ଷେ ଗୁଣରେ ଭଲ ।" ଏହା କହି ବାଘ ଚାଲିଗଲା ।

## ମେଣ୍ଢାଜଗୁଆଳ ଓ ଗଧିଆ

ଦିନେ ଗୋଟିଏ ମେଣ୍ଢାଜଗୁଆଳ ଗୋଟିଏ ମେଣ୍ଢା ମାରି ଓ ତାକୁ ରାନ୍ଧି ବନ୍ଧୁବାନ୍ଧବମାନଙ୍କ ସଙ୍ଗରେ ବସି ଆନନ୍ଦରେ ଆହାର କରୁଥିଲା । ଏପରି ସମୟରେ ଗୋଟିଏ ଗଧିଆ ସେହି ବାଟ ଦେଇ ଚାଲି ଯାଉ ଯାଉ ଏସବୁ ଦେଖି କହିଲା, "ଭାଇ ତମେମାନେତ ମେଣ୍ଢାକୁ ମାରି ବଡ ଆନନ୍ଦରେ ବସି ଖାଉଛ । ଯଦି ମତେ ତମେମାନେ ଏହିପରି ମେଣ୍ଢାମାଂସ ଖାଇବାର ଦେଖିଥାନ୍ତ, ତାହାହେଲେ ତମେମାନେ ଯେଉଁ ଗୁମୁଳ କାଣ୍ଡ କରିଥାନ୍ତ ତାର ଠିକଣା ନାହିଁ ।"

ଅନ୍ୟମାନେ ଯେଉଁ କାର୍ଯ୍ୟ କଲେ ଲୋକେ ଟାଳି ଦିଅନ୍ତି, ନିଜେ ସେ କାର୍ଯ୍ୟ କଲାବେଳେ ଆଉ ତାକୁ ଦୋଷ ବୋଲି ମନେ କରନ୍ତି ନାହିଁ ।

## କାଠୁରିଆ ଓ ଯମ

ଗୋଟିଏ ବୁଢ଼ା ପ୍ରତିଦିନ ଜଙ୍ଗଲରୁ କାଠ ଆଣି ଓ ତାକୁ ବିକି ଅତି କଷ୍ଟରେ କାଳ କଟାଏ । ଦିନେ ଖରାଦିନ ଦିପହରଆବେଳେ ସେ ଗୋଟିଏ ଶକ୍ତ କାଠ ବୋଝ ମୁଣ୍ଡାଇ ବଣରୁ ଫେରୁଥିଲା । ଭୋକରେ ପେଟ ଜଳି ଯାଉଛି, ଶୋଷରେ ତଣ୍ଟି ଶୁଖି ଯାଉଛି, ଖରାରେ ଦେହ ମୁଣ୍ଡରୁ ଝାଳ ବୋହି ଯାଉଛି, ତତଲା ବାଲିରେ ଗୋଡ ପୋଡ଼ି ଯାଉଛି, ଏପରି ଅବସ୍ଥାରେ ଅତିଶୟ କ୍ଳାନ୍ତ ହୋଇ ସେ କାଠ ଗୋଛାଟି ପକାଇ

ଦେଇ ଗୋଟିଏ ଗଛ ଗ୍ରୁଡ଼ରେ ବସି ପଡ଼ିଲା । ବସି ବସି ଭାବିଲା "ଏପରି କଷ୍ଟଭୋଗ କରିବା ଅପେକ୍ଷା ମରଣ ଶତ ଗୁଣରେ ଭଲ । ଏତେ ଲୋକଙ୍କୁ ଆସି ଯମ ନେଉଛି, ମତେ ନେଉ ନାହିଁ କାହିଁକି ? ମରିଗଲେ ଏସବୁ ଦୁଃଖ କଷ୍ଟରୁ ରକ୍ଷା ମିଳନ୍ତା," ଏହିପରି ଦୁଃଖ କରି ସେ ଯମକୁ ଡାକିବାକୁ ଲାଗିଲା । କହିଲା, "ଯମ, ତୁ ଆସି ମତେ ଶୀଘ୍ର ନେଇ ଯା । ଏପରି କଷ୍ଟରେ ମୋର ଦଣ୍ଡେ ବଞ୍ଚିବାକୁ ଇଚ୍ଛା ନାହିଁ ।"

ତାହାର କଥା ଶେଷ ନ ହେଉଣୁ ଯମ ଆସି ତା' ନିକଟରେ ଛିଡ଼ା ହେଲା । ଯମର ବିକଟାଳ ମୂର୍ତ୍ତି ଦେଖି ଭୟ ପାଇ ବୁଢ଼ା କହିଲା, "ଆପଣ କିଏ, ଏଠାକୁ ବା କାହିଁକି ଆସିଲେ ?" ଯମ କହିଲା, "ମୁଁ ଯମ, ତୁମେ ମତେ ଡ଼ାକୁଥିଲ, ମୁଁ ସେଥି-ଲାଗି ଆସିଛି । ବର୍ତ୍ତମାନ କଣ କରିବି କହ ।" ବୁଢ଼ା କହିଲା, "ଯଦି ଆସିଛ ଦୟା କରି ଏ କାଠଗୋଛିଟି ମୋ ମୁଣ୍ଡକୁ ଦିଅ, ତାହାହେଲେ ମୋର ବଡ଼ ଉପକାର ହେବ ।" ଯମ ବୁଢ଼ା କଥା ଶୁଣି ଟିକିଏ ହସି ସେଠାରୁ ଚାଲିଗଲା ।

## ବେଙ୍ଗମାନଙ୍କର ରଜା ଲାଗି ପ୍ରାର୍ଥନା

ବେଙ୍ଗମାନେ ଥରେ ବଡ ଦୁଃଖିତ ହୋଇ ମନେ କଲେ, ସମସ୍ତଙ୍କର ଜଣେ ଜଣେ ରଜା ଅଛନ୍ତି, ଅମ୍ଭମାନଙ୍କର କେହି ନାହିଁ । ଏହିପରି ଭାବି ଗୋଟିଏ ରଜା ମାଗିବା ପାଇଁ ସେମାନେ ଇନ୍ଦ୍ରଙ୍କ ନିକଟକୁ ଜଣେ ଦୂତ ପଠାଇଲେ । ଇନ୍ଦ୍ର ସେମାନଙ୍କର ସରଳତା ଦେଖି ରଜା ବୋଲି ପୋଖରୀରେ ଖଣ୍ଡେ ବଡ଼ କାଠ ପକାଇ ଦେଲେ । କାଠଖଣ୍ଡ ଏପରି ଶବ୍ଦରେ ପଡ଼ିଲା ଯେ ବେଙ୍ଗମାନେ ଭୟପାଇ ପୋଖରୀ ଭିତରେ ଯାଇ ଲୁଚିଗଲେ । କିନ୍ତୁ ଯେତେବେଳେ ସେମାନେ ଦେଖିଲେ ଯେ କାଠଖଣ୍ଡ ଖାଲି ସ୍ଥିର ହୋଇ ପଡ଼ି ରହିଅଛି, କାହା'କୁ କିଛି କହୁ ନାହିଁ, ସେମାନେ ଭୟ ଛାଡ଼ି କ୍ରମେ ଉପରକୁ ବାହାରିଲେ ଏବଂ ଶେଷରେ ଏପରି ହେଲା ଯେ ସେମାନେ ସେହି କାଠ ଉପରେ ଚଢ଼ି ନାଚ କୁଦା କରିବାକୁ ଲାଗିଲେ ।

କିଛି ସମୟ ପରେ ସେମାନେ ମନେ କଲେ ଏପରି ଗୋଟିଏ ନିର୍ଜୀବ ରଜା ଦେଇ ଇନ୍ଦ୍ର ଅମ୍ଭମାନଙ୍କ ପ୍ରତି ଅନ୍ୟାୟ କରିଅଛନ୍ତି । ଏହିପରି ଭାବି ସେମାନେ ଇନ୍ଦ୍ରଙ୍କ ନିକଟକୁ ପୁଣି ଗୋଟିଏ ଦୂତ ପଠାଇ ପ୍ରାର୍ଥନା କଲେ ଯେ ଆମ୍ଭମାନଙ୍କୁ ଆଉ ଗୋଟିଏ ରଜା ଦିଆଯାଉ ।

ସେମାନଙ୍କୁ ଶାସନ କରିବା ଲାଗି ଇନ୍ଦ୍ର ଏଥର ଗୋଟିଏ ଭଲ ମାଛ

ପଠାଇ ଦେଲେ । ବେଙ୍ଗମାନେ ଯେତେବେଳେ ମାଛର ସରଳ ସହଜ ପ୍ରକୃତ ଦେଖି ପାରିଲେ, ସେମାନେ ପୁଣି ଆଉ ଗୋଟିଏ ରଜାପାଇଁ ପ୍ରାର୍ଥନା କଲେ ।

ଇନ୍ଦ୍ର ସେମାନଙ୍କର ଏହି ଆପତ୍ତିରେ ବିରକ୍ତ ହୋଇ ଶେଷରେ ଗୋଟିଏ ବଗ ପଠାଇ ଦେଲେ । ବଗ କ୍ରମେ ସେମାନଙ୍କୁ ଗୋଟି ଗୋଟି କରି ଖାଇବାକୁ ଲାଗିଲା ଏବଂ ଶେଷରେ ପୋଖରୀରେ ଆଉ ଗୋଟିଏ ମାତ୍ର ବେଙ୍ଗ ବାକି ରହିଲେ ନାହିଁ ।

## ଶିକାରୀ ଓ କେଉଟ

ଜଣେ ଶିକାରୀ ଜଙ୍ଗଲରୁ ଶିକାର କରି ଫେରି ଆସିବା ସମୟରେ ଘଟଣା କ୍ରମେ ବାଟରେ ତାର ଜଣେ କେଉଟ ସଙ୍ଗରେ ଦେଖା ହେଲା । କେଉଟ ମଧ୍ୟ ମାଛ ଧରି ଫେରୁଥିଲା । ଶିକାରୀର ମାଛତକ ନେବାକୁ ଇଚ୍ଛା ହେଲା ଏବଂ କେଉଟର ମଧ୍ୟ ଶିକାର ପାଇବାଲାଗି ବଡ ଲୋଭ ହେଲା । ସେମାନଙ୍କ ମଧ୍ୟରେ ଶୀଘ୍ର ଗୋଟିଏ ଚୁକ୍ତି ହେଲା ଯେ ଏ ତାର ମାଛତକ ନେବ ଓ ସେ ସ୍ୱାର ମାଂସତକ ପାଇବ । ଏହିପରି କରିବାରେ ସେମାନଙ୍କ ମନରେ ଏପରି ଆନନ୍ଦ ହେଲା ଯେ ସେମାନେ ପ୍ରତିଦିନ ସେହିପରି ଅଦଳ ବଦଳ କରିବାକୁ ଲାଗିଲେ । ଦିନେ ଜଣେ ପଡୋଶୀ ସେମାନଙ୍କୁ କହିଲା "ତୁମ୍ଭେମାନେ ଯଦି ଏହିପରି ବରାବର କର ତାହାହେଲେ ତମର ଆଉ ବଦଳ କରିବାର ଗୋଟାଏ ଆନନ୍ଦ ରହିବ ନାହିଁ ଏବଂ ଶେଷରେ ତମେମାନେ ପୁଣି ନିଜ ନିଜର ଶିକାର ରଖିବାଲାଗି ଇଚ୍ଛା କରିବ ।"

ନିବୃତ୍ତିଦ୍ୱାରା ଉପଭୋଗ ବୃଦ୍ଧି ପାଏ ।

## ଠେକୁଆ ଓ କଇଁଛ

ଦିନେ ଗୋଟିଏ ଠେକୁଆ ଗୋଟିଏ କଇଁଛର ମଠ ଚାଲି ଦେଖି ତାକୁ ଅନେକ ଅଟ୍ଟା ପରିହାସ କଲା । କଇଁଛ ଟିକିଏ ହସି କରି କହିଲା, "ତମେ ଚଞ୍ଚଳ ଚାଲ ସତ, କିନ୍ତୁ ବାଜି ମାରି ଦୌଡ଼ିଲେ ମୁଁ ତମକୁ ହଟାଇ ଦେବି । ଏତେ କଥାରେ ଫଳ କଣ ? ଚାଲ ଦୁହେଁଯାକ ଏକ ସଙ୍ଗରେ ଚାଲିବା, ଦେଖାଯାଉ କିଏ ଆଗ ପହଞ୍ଚିବ ।" ଠେକୁଆ କଇଁଛ କଥାରେ ରାଜି ହେଲା । ଉଭୟେ ଭାଲୁଆଙ୍କୁ ଭଲଲୋକ କରି ଦୌଡ଼ିବା ବାଟ ଓ ସ୍ଥାନ ସ୍ଥିର କଲେ ଏବଂ ଏକ ସମୟରେ ଦୁହେଁଯାକ ଚାଲିବାକୁ ଆରମ୍ଭ କଲେ ।

କଇଁଛ ବଡ଼ ଧୀରେ ଧୀରେ ଚାଲେ, ଏଥିଲାଗି ସେ ଥରେ ସୁଦ୍ଧା ନ ରହି ବରାବର ଚାଲିବାକୁ ଲାଗିଲା । ଠେକୁଆ ଖୁବ୍ ଚଞ୍ଚଳ ଚାଲେ ବୋଲି ଭାବିଲା, "ମୋର ଏତେ ତତ୍ପର ହେବାର ଦରକାର୍ କଣ ? କଇଁଛ ଯେତେ ଚାଲୁ ପଛକେ

ମୁଁ ଏକାଦୌଡ଼କେ ଯାଇଁ ଆଗ ପହଞ୍ଚିବ । ଏହିପରି ଭାବି ସେ ଖଣ୍ଡେ ଦୂର ଯାଇଁ ଗୋଟିଏ ଗଛ ମୂଳରେ ବିଶ୍ରାମ କରୁ କରୁ ଶୋଇ ପଡ଼ିଲା । ତାର ଯେତେବେଳେ ନିଦ ଭାଙ୍ଗିଲା ସେ ଲକ୍ଷ୍ୟ ସ୍ଥଳକୁ ଯାଇଁ ଦେଖିଲା ଯେ କଇଁଛ ଅନେକ ପୂର୍ବରୁ ପହଞ୍ଚି ଅତି ନିଶ୍ଚିନ୍ତରେ ଶୋଇଛି ।

ଧୀର ପାଣି ପଥର୍ କାଟେ ।

## ମନୁଷ୍ୟ ଓ ସିଂହ

ଥରେ ଜଙ୍ଗଲ ମଧ୍ୟରେ ଜଣେ ମନୁଷ୍ୟ ଓ ଗୋଟିଏ ସିଂହର ଭେଟ ହେଲା । ଅନ୍ୟ କଥା ହେଉ ହେଉ ଉଭୟଙ୍କ ମଧ୍ୟରେ ବଳ ଓ ସାହସରେ କିଏ ବଡ଼ ଏଥିଲାଗି ଅନେକ ତର୍କ ହେଲା । ମନୁଷ୍ୟ କହେ ମୁଁ ବଡ଼, ସିଂହ କହେ ମୁଁ ବଡ଼ । ଏପରି ବିବାଦ କରି ଯାଉ ଯାଉ ସେମାନେ ବାଟରେ ଗୋଟିଏ ପଥରର ମୂର୍ତ୍ତି ଦେଖି ପାରିଲେ । ସେ ମୂର୍ତ୍ତିରେ ଜଣେ ମନୁଷ୍ୟ ଗୋଟିଏ ସିଂହର ତଣ୍ଟି ଚିପି ମାରି ପକାଉ-ଥିବାର ଛବି ଖୋଳା ହୋଇଅଛି । ଏହା ଦେଖି ମନୁଷ୍ୟ କହିଲା, "କିଏ କାହାଠାରୁ ବେଶି ବଳବାନ୍ ଏହି ଛବିରେ ତାହା ଲେଖା ହୋଇଅଛି । ଦେଖ ମନୁଷ୍ୟର ବଳ ବେଶି ବୋଲି ସେ ସିଂହକୁ ହଟାଇ ଦେଇଅଛି ।" ଏହା ଶୁଣି ସିଂହ କହିଲା, "ଏ ଛବିଟି ତମ ମନୁଷ୍ୟ ମଧ୍ୟରୁ ଜଣେ ଖୋଳିଛି ବୋଲି ଏପରି ହୋଇଅଛି । ସିଂହମାନେ ଯଦି ଛବି ତିଆରି କରି ପାରୁଥାନ୍ତେ ତାହାହେଲେ ଦେଖିଥାନ୍ତ ଯେ ମନୁଷ୍ୟ ସିଂହର ଗୋଡ଼ତଳେ ପଡ଼ି ଛଟପଟ ହେଉଥାନ୍ତା ।"

## ଗଧ ଓ ତାର ଛାଇ

ଜଣେ ଲୋକ ଦୂରଦେଶକୁ ବୁଲି ଯିବା ଲାଗି ଗୋଟିଏ ଗଧ ଭଡ଼ା କଲା । ଖୁବ୍ ଟାଣ ଖରା ହୋଇ ବେଶୀ ଗରମ ହେବାରୁ ସେ ବିଶ୍ରାମ କରିବା ଲାଗି ଏକ ସ୍ଥାନରେ ରହି ଗଧର ଛାଇତଳେ ଯାଇ ବସିଲା । ଗଧର ଛାଇ କେବଳ ଜଣେ ଲୋକକୁ ଆଶ୍ରୟ ଦେଇ ପାରେ । ଏଥିଲାଗି ଗଧର ମାଲିକ ଓ ପଥିକ ମଧ୍ୟରେ ଝଗଡ଼ି କଲି ଲାଗିଲା । ମାଲିକ କହିଲା, "ମୁଁ ତତେ କେବଳ ଖାଲି ଗଧଟି ଭଡ଼ା ଦେଇଛି । ତାର ଛାଇ ଭଡ଼ା ଦେଇ ନାହିଁ । ପଥିକ କହିଲା, "ମୁଁ ଗଧଟି ଭଡ଼ା ନେବା ସଙ୍ଗେ ସଙ୍ଗେ ତାର ଛାଇ ମଧ୍ୟ ଭଡ଼ା ନେଇଛି । ଏହିପରି କଳି କ୍ରମେ ଗାଳିରୁ ମାଡ଼-ପିଟରେ ପହଞ୍ଚିଲା । ଉଭୟଙ୍କର ଏପରି ମାଡ଼ପିଟ ହେଉଥିବା ସମୟରେ ଗଧଟି ଡ଼ିଆଁ ମାରି ପଳାଇଗଲା ।

ଅନେକ ସମୟରେ ଆମ୍ଭେମାନେ ଛାଇ ଲାଗି କଳି କରୁ କରୁ ମୂଳ ହରାଇ ବସୁ ।

## କଇଁଛ ଓ ଈଗଲ ପକ୍ଷୀ

ଗୋଟିଏ କଇଁଛ ଦିନେ ଖୁବ ଯୋରିରେ ପକ୍ଷୀମାନଙ୍କ ନିକଟରେ ଦୁଃଖ କରି କହିଲା, "ମୋର ଉଡ଼ିବାକୁ ବଡ଼ ଇଚ୍ଛା ହେଉଛି; କିନ୍ତୁ ମୋତେ କେହି ଟିକିଏ ଉଡ଼ିବାକୁ ଶିଖାଇ ଦେଲେ ନାହିଁ । ଥରେ ମତେ କେହି ଆକାଶକୁ ଉଠାଇ ଦେଲେ ମୁଁ ତମମାନଙ୍କ ପରି ସ୍ୱଚ୍ଛନ୍ଦରେ ଉଡ଼ି ବୁଲନ୍ତି । ଗୋଟିଏ ଈଗଲପକ୍ଷୀ କଇଁଛର ଏକଥା ଶୁଣି କହିଲା, "ଆରେ ନିର୍ବୋଧ, ତୁ ଭୂଇଁରେ ଚାଲିବା ଜନ୍ତୁ, ତୁ ଆକାଶରେ ଉଡ଼ିବୁ କିପରି ? ତୋ ପକ୍ଷରେ ଉଡ଼ିବା ଅସମ୍ଭବ; ତୁ ଏପରି ବୃଥା ଆଶା କାହିଁକି କରୁଛୁ ? ମୁଁ ଯଦି ତତେ ଉପରକୁ ଉଠାଇ ଦିଏଁ ତାହାହେଲେ ଫଳ ହେବ ଏହି ଯେ, ତୁ ଅକାରଣେ ତଳେ ପଡ଼ି ମରିଯିବୁ ।" କଇଁଛ କିନ୍ତୁ ଏସବୁ କଥା ନ ମାନି କହିଲା, "ଭାଇ, ତୁମେ ଯଦି ଦୟା କରି ଥରେ ମତେ ଉପରକୁ ଉଠାଇ ଦିଅ, ତାହାହେଲେ ସମୁଦ୍ରରେ ଯେତେ ମଣିମୁକ୍ତା ଅଛି ସେ ସବୁ ମୁଁ ତମକୁ ଦେବି । ତେଣିକି ମୁଁ ଉଡ଼ିପାରେ ତ ଉଡ଼ିବି, ନ ଉଡ଼ି ପାରିଲେ ମରିବି । ତମର ସେ ଭାବନା କରିବା ଆବଶ୍ୟକ ନାହିଁ ।"

ଏହିପରି ବେଶି ଜିଦ୍ କରିବାରୁ ଈଗଲପକ୍ଷୀ ଟିକିଏ ହସି କଇଁଛକୁ ଧରି ଉପରକୁ ଉଠିଲା । ଅନେକ ଉପରକୁ ଯାଇ ଶେଷରେ "ତମେ ତେବେ ଏଣିକି ଉଡ଼" ଏହା କହି ତାକୁ ଛାଡ଼ି ଦେଲା । ଛାଡ଼ିଦେବା ମାତ୍ରେ ବିଚରା କଇଁଛଟି ଗୋଟିଏ ପାହାଡ ଉପରେ ପଡ଼ି ଚୂନା ହୋଇଗଲା । ମରିବା ସମୟରେ କଇଁଛ ଭାବିଲା, "ମତେ ଉପଯୁକ୍ତ ଶାସ୍ତି ହୋଇଛି । ଭୂଇଁରେ ଟିକିଏ ଚାଲିବା ଯାହା ପକ୍ଷରେ କଷ୍ଟକର ତାର ଆକାଶରେ ଉଡ଼ିବାକୁ ଚେଷ୍ଟା କରିବା କି ଆବଶ୍ୟକ ଥିଲା ? ମୁଁ ବାମନ ହୋଇ ଚନ୍ଦ୍ରକୁ କାହିଁକି ହାତ ବଢ଼ାଇବାକୁ ଗଲି ?"

ମନୁଷ୍ୟ ଯାହା ଚାହେଁ ସବୁ ଯଦି ସେ ପାଉଥାନ୍ତା, ତାହାହେଲେ ତା'ର ଦୁର୍ଦ୍ଦଶାର ଆଉ ସୀମା ରହନ୍ତା ନ ଥାନ୍ତା ।

## କାଉ ଓ ମୟୂରପୁଚ୍ଛ

ଗୋଟିଏ କାଉ ଦେଖିଲା ଯେ ଏକ ସ୍ଥାନରେ କେତେଗୁଡ଼ିଏ ମୟୂରପୁଚ୍ଛ ପଡ଼ିଅଛି । ସେ ମନେ କଲା, ଯଦି ମୁଁ ଏହି ପୁଚ୍ଛଗୁଡ଼ିକ ମୋ ପକ୍ଷୀରେ ଖୋସିଦିଏଁ ତାହାହେଲେ ମୁଁ ମୟୂରପରି ବଡ଼ ସୁନ୍ଦର ଦିଶିବି । ଏହା ଭାବି ସେ ମୟୂରପୁଚ୍ଛଗୁଡ଼ିକ ଆପଣା ପକ୍ଷୀରେ ଲଗାଇ ଦେଲା ଏବଂ କାଉମାନଙ୍କ ନିକଟକୁ ଯାଇ କହିଲା,

ତମେମାନେ ବଡ଼ ନୀଚ ଓ ଅସୁନ୍ଦର । ମୁଁ ଆଉ ତମମାନଙ୍କ ସଙ୍ଗେ ରହିବ ନାହିଁ । ଏହିପରି କହି ସେ ମୟୂରମାନଙ୍କ ସଙ୍ଗେ ମିଶିବାକୁ ଗଲା ।

ମୟୂରମାନେ ଦେଖିଲାମାତ୍ରେ ତାକୁ କାଉ ବୋଲି ଚିହ୍ନିପାରି ତାହାଠାରୁ ପ୍ରତ୍ୟେକେ ଗୋଟିଏ ଗୋଟିଏ କରି ମୟୂରପୁଚ୍ଛତକ ସବୁ କାଢ଼ିନେଲେ ଓ ତାକୁ ନିତାନ୍ତ ନିର୍ବୋଧ ମନେକରି ଏପରି ଭାବରେ କାମୁଡ଼ିବାକୁ ଲାଗିଲେ ଯେ, ସେ ବିଚରା ଅସ୍ଥିର ହୋଇ ସେଠାରୁ ପଳାଇ ଆସିଲା । ହତାଶ ହୋଇ ଶେଷରେ ସେ ନିଜ ଦଳରେ ମିଶିବାକୁ ଗଲା । ତାକୁ ଦେଖି କାଉମାନେ ନାନା ଅଣ୍ଟା ପରିହାସ କରି କହିଲେ, "ତୋଠାରୁ ବଳି ନିର୍ବୋଧ ଆଉ କେହି ନାହିଁ । ଯେତେବେଳେ ଦେହରେ ଏହି ମୟୂରପୁଚ୍ଛ ଖୋସିଦେଇ ତୁ ଗର୍ବରେ ଆମ୍ଭମାନଙ୍କୁ ଘୃଣା କରି ଯାଇଥିଲୁ, ବର୍ତ୍ତମାନ ପୁଣି କେଉଁ ନିର୍ଲଜ୍ଜ ମୁହଁରେ ଏଠାକୁ ଆସିଛୁ ? ଏପରି ଲୋକଙ୍କୁ ଆମ୍ଭେମାନେ ଆଉ ଦଳରେ ରଖିବାକୁ ଇଚ୍ଛୁ ନାହୁଁ ।" ଏହିପରି ନାନା ଗାଳି ଦେଇ ସେମାନେ କାଉଟିକୁ ତଡ଼ିଦେଲେ ।

ଯେ ଯେଉଁ ଅବସ୍ଥାର ଲୋକ ସେ ଯଦି ସେହି ଅନୁସାରେ ନ ଚଳେ ତାହାହେଲେ ତାକୁ ପଦେ ପଦେ ଅପଦସ୍ଥ ହେବାକୁ ପଡ଼େ ।

## ଧୋବା ଓ କୋଇଲା ବ୍ୟବସାୟୀ

ଜଣେ କୋଇଲା ବ୍ୟବସାୟୀ ତାର ନିଜ ଘରେ ଥାଇ ବ୍ୟବସାୟ କରୁଥାଏ । ଦିନେ ସେ ତାର ବନ୍ଧୁ ଧୋବାକୁ ଦେଖି କହିଲା, "ତୁମେ ଆସ, ଆମ୍ଭେମାନେ ଏହିଠାରେ ଏକାସଙ୍ଗରେ ରହିବା । ତାହାହେଲେ ଆମ୍ଭମାନଙ୍କର ବନ୍ଧୁତା ଦୃଢ଼ ରହିବ ଏବଂ ଖରଚ ମଧ୍ୟ ଅନେକ ପରିମାଣରେ କମିଯିବ ।" ଧୋବା କହିଲା, "ଭାଇ ଏହା ହେଲେ ଭଲ ହୁଅନ୍ତା ସତ କିନ୍ତୁ ତାହା ହେଲେ ମୋର ବ୍ୟବସାୟ ଆଉ ଚଳି ପାରିବ ନାହିଁ । ମୁଁ ଯାହା ବହୁ ପରିଶ୍ରମ କରି ସଫା କରିବି, ତୁମେ ତାକୁ ସାଙ୍ଗେ ସାଙ୍ଗେ ତୁମ କୋଇଲା ଦ୍ୱାରା କଳା କରି-ଦେବ ।"

ସମାନ ସମାନ ମଧ୍ୟରେ ବନ୍ଧୁତା ହୁଏ ।

## ବିଲୁଆ ଓ କାଠୁରିଆ

ଦିନେ କେତେଗୁଡ଼ିଏ ଶିକାରୀ କୁକୁରମାନଙ୍କ ସହିତରେ ଗୋଟିଏ ବିଲୁଆକୁ ତଡ଼ିବାରୁ ସେ ଦୌଡ଼ି ଆସି ଗୋଟିଏ କାଠୁରିଆ ନିକଟରେ ପହଞ୍ଚି କହିଲା, "ଭାଇ

ଯଦି ଦୟା କରି ମତେ ଟିକିଏ ଆଶ୍ରୟ ଦିଅନ୍ତ ତାହାହେଲେ ମୁଁ ଏଥର ରକ୍ଷା ପାଇ ଯାଆନ୍ତି । କାଠୁରିଆ କହିଲା, "କିଛି ଭୟ ନାହିଁ, ମୋ କୁଡ଼ିଆ ଭିତରକୁ ଯାଇ ତମେ ଲୁଚି ରହ ।" ବିଲୁଆ କୁଡ଼ିଆରେ ପଶି ଗୋଟିଏ କଣରେ ଛପି ରହିଲା ।

କିଛିକ୍ଷଣ ପରେ ଶିକାରୀମାନେ ସେଠାରେ ପହଞ୍ଚି କାଠୁରିଆକୁ ପଚାରିଲେ, "ଭାଇ ଏ ବାଟକୁ ଗୋଟିଏ ବିଲୁଆ ପଳାଇ ଆସିଲା, କୁଆଡ଼େ ଗଲା କହି ପାରିବ ?" ସେ କିଛି ନ କହି କୁଡ଼ିଆ ଆଡ଼କୁ ଆଙ୍ଗୁଠି ଦେଖାଇ ଦେଇ ରହିଲା । ଶିକାରୀମାନେ ତାର ସଙ୍କେତ ବୁଝି ନ ପାରି ଫେରିଗଲେ ।

ଶିକାରୀମାନେ ଚାଲିଯିବାରୁ ବିଲୁଆ କୁଡ଼ିଆରୁ ବାହାରି କାଠୁରିଆକୁ କିଛି ନ କହି ଚାଲିଯିବାକୁ ଲାଗିଲା । ଏହା ଦେଖି କାଠୁରିଆ ବିଲୁଆକୁ ଗାଳି ଦେଇ କହିଲା, "ତୁମେ ବଡ଼ ଅଭଦ୍ର । ମୁଁ ବିପଦ ସମୟରେ ଆଶ୍ରୟ ଦେଇ ତୁମର ପ୍ରାଣ ରକ୍ଷା କଲି, କିନ୍ତୁ ତୁମେ ଯିବା ସମୟରେ ମତେ ପଦେ କଥା କହି ଗଲ ନାହିଁ ?" ବିଲୁଆ କହିଲା, "ଭାଇ, ତୁମେ କଥାରେ ଯେପରି ଭଦ୍ରତା ଦେଖାଇଲ, ଆଙ୍ଗୁଠିରେ ଯଦି ସେପରି କରିଥାନ୍ତ ତାହାହେଲେ ମୁଁ ତୁମଠାରୁ ବିଦାୟ ନ ନେଇ କଦାପି ଯାଇ ନ ଥାନ୍ତି ।"

ପଦେ କଥାରେ ଯେତେ ଅନିଷ୍ଟ ହୁଏ ଟିକିଏ ଇଙ୍ଗିତରେ ମଧ୍ୟ ସେହିପରି ଅନିଷ୍ଟ ହୋଇପାରେ ।

## ପେଟ ଓ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ

ଏକ ସମୟରେ ହାତ ,ଗୋଡ଼ ପ୍ରଭୃତି ଅଙ୍ଗପ୍ରତ୍ୟଙ୍ଗମାନେ ମିଳି ବିଚାର କଲେ, "ଦେଖ ଆମ୍ଭେମାନେ ସର୍ବଦା ପରିଶ୍ରମ କରି ପେଟର ସେବା କରୁଛୁଁ, କିନ୍ତୁ ପେଟ କିଛି ନ କରି ନିଶ୍ଚିନ୍ତ ହୋଇ ବସି ରହୁଛି । ସେ ସୁଖରେ ବସି ସମୟ କଟାଇବ, ଆମ୍ଭେମାନେ କାହିଁକି ମିଛରେ ତାର ସେବା କରି ମରିବା ? ତେବେ ଚାଲ ପ୍ରତିଜ୍ଞା କରିବା ଆଜିଠାରୁ ଆଉ କେହି ପେଟକୁ ସାହାଯ୍ୟ କରିବା ନାହିଁ ।" ଏହିପରି ଏକମେଳ ହୋଇ ସେମାନେ ନିଜ ନିଜର ପରିଶ୍ରମ ଛାଡ଼ିଦେଲେ । ଗୋଡ଼ ଆଉ ଖାଇବା ସ୍ଥାନକୁ ଗଲା ନାହିଁ । ହାତ ଆଉ ପାଟିକି ଆହାର ନେଲା ନାହିଁ । ପାଟି ଆଉ ଖାଇଲା ନାହିଁ । ଦାନ୍ତ ଆଉ ଚୋବାଇଲା ନାହିଁ । ଜିଭ ଆଉ ସ୍ୱାଦ ବାରିଲା ନାହିଁ ।

ପେଟକୁ ଶିକ୍ଷା ଦେବାଲାଗି ଏହିପରି ଦୁଇ ଚାରି ଦିନ କରିବାରୁ ଦେହ ଶୁଷ୍କ ହୋଇ ଆସିଲା । ଅଙ୍ଗପ୍ରତ୍ୟଙ୍ଗମାନେ ଏପରି ନିସ୍ତେଜ ହୋଇ ପଡ଼ିଲେ ଯେ ଆଉ

ସେମାନଙ୍କର ଚଳିବାର ଶକ୍ତି ରହିଲା ନାହିଁ । ଶେଷରେ ସେମାନେ ବୁଝି ପାରିଲେ ଯେ ପେଟ ପରିଶ୍ରମ ନ କଲେ କଣ ହେବ, ଆମ୍ଭେମାନେ ଯେପରି ତାକୁ ସାହାଯ୍ୟ କରୁଛୁ ସେ ମଧ୍ୟ ସେହିପରି ଆମ୍ଭମାନଙ୍କୁ ସାହାଯ୍ୟ କରେ । ପେଟ ଆମ୍ଭମାନଙ୍କ ପରି ଦେହର ଗୋଟିଏ ପ୍ରଧାନ ଅଙ୍ଗ । ସୁସ୍ଥ ରହିବାକୁ ହେଲେ ପ୍ରତି ଅଙ୍ଗପ୍ରତ୍ୟଙ୍ଗକୁ ନିଜ ନିଜର କାର୍ଯ୍ୟ କରିବାକୁ ହେବ, ନ ହେଲେ କାହାରି ରକ୍ଷା ନାହିଁ ।

## ବୁଢ଼ା ସିଂହ

ଗୋଏଟି ସିଂହ ବୁଢ଼ା ହେବାରୁ ଅତିଶୟ ଦୁର୍ବଳ ଓ ଅକ୍ଷମ ହୋଇ ପଡ଼ିଲା । ଦିନେ ସେ ଭୂଇଁରେ ପଡ଼ି ଯନ୍ତ୍ରଣାରେ ଛଟପଟ ହେଉଛି, ଏପରି ସମୟରେ ଗୋଟିଏ ବରାହ ସେଠାରେ ପହଞ୍ଚିଲା । ଏହି ବରାହ ସାଙ୍ଗରେ ସିଂହର ପୂର୍ବରୁ ବିରୋଧ ଥିଲା । ସିଂହକୁ ଏପରି ଅବସ୍ଥାରେ ପଡ଼ିଥିବାର ଦେଖି ସେ ଅନେକ ଥର ତାକୁ ଦାନ୍ତରେ ଭୁସିଦେଇ ଚାଲିଗଲା । ସିଂହର ତ ଆଉ ଉଠିବାର କ୍ଷମତା ନାହିଁ, ସେ ବାଧ୍ୟ ହୋଇ ସବୁ ସହିଲା । କିଛିକ୍ଷଣ ପରେ ଗୋଟିଏ ଷଣ୍ଢ ଆସି ସେଠାରେ ପହଞ୍ଚିଲା । ଏହା ସାଙ୍ଗେ ମଧ୍ୟ ସିଂହର ପୂର୍ବ ବିବାଦ ଥିଲା; ସେ ସୁବିଧା ଦେଖି ସିଂହକୁ ଦି ଚାରି ମୁଣ୍ଡିଆ ପକାଇ ଚାଲିଗଲା । ଅପମାନ ମଧ୍ୟ ସିଂହ ସହ୍ୟ କରି ରହିଲା ।

ଏ ସବୁ ଦେଖି ଗଧ ମନେ କଲା, ସିଂହର ଯେତେବେଳେ ବଳ ବୟସ ଥିଲା, ସେ ଆମ୍ଭମାନଙ୍କ ଉପରେ ନାନା ଅତ୍ୟାଚାର କରିଛି । ସେଥିଲାଗି ସମସ୍ତେ ଆସି ତାର ପ୍ରତିଶୋଧ ନେଉଅଛନ୍ତି । ସିଂହର ତ ଆଉ ସେ ତେଜ ନାହିଁ, ସେ କାହାରିକୁ କିଛି କରିପାରୁ ନାହିଁ । ମୁଁ ବା ଏ ସୁଯୋଗ ଛାଡ଼ିବି କାହିଁକି । ଏହା ଭାବି ଗଧ ଯାଇଁ ସିଂହର ମୁଣ୍ଡରେ ଦୁଇଟା ଗୋଇଠା ମାରିଲା । ଏ ସବୁ ଦେଖି ସିଂହ ଭାବିଲା, "ହାରେ ଅଦୃଷ୍ଟ । ଯେଉଁମାନେ ମତେ ଦେଖିଲାମାତ୍ରେ ଭୟରେ କମ୍ପୁଥିଲେ, ସେମାନେ ଆସି ମତେ ଏପରି ଅପମାନ ଦେଇଗଲେ ? ଆଉ କଣ ଭାଗ୍ୟରେ ଅଛି କେଜାଣି ? ଯାହାହେଉ, ବରାହ ଓ ଷଣ୍ଢ ବଳବାନ୍ ଜନ୍ତୁ, ସେମାନଙ୍କ ଅତ୍ୟାଚାର ଅବା ସହ୍ୟ ହେଲା, କିନ୍ତୁ ଗଧ ଯେ କି ପଶୁମାନଙ୍କ ମଧ୍ୟରେ ଅଧମ ସେ ଆସି ମତେ ଏପରି ଅପମାନ ଦେଇ ଗଲା ! ଏହା ଅପେକ୍ଷା ମରଣ ଶତ-ଗୁଣରେ ଭଲ ।"

## ଷଣ୍ଢ ଓ ମଶା

ଗୋଟିଏ ମଶା କିଛିକ୍ଷଣ ଉଡ଼ି ଉଡ଼ି ଗୋଟିଏ ଷଣ୍ଢର ଶିଙ୍ଗ ଉପରେ ବସି ପଡ଼ିଲା । ସେ ଭାବିଲା, ମୁଁ ଯେ ଷଣ୍ଢ ଉପରେ ବସିଲି ଏଥିରେ ତାର ବଡ଼ କଷ୍ଟ ହେଉଥିବ ପରା । ସେ ଷଣ୍ଢକୁ ପଚାରିଲା, "ଭାଇ ମୋ ଭାର ତମେ ଯଦି ସହିପାରୁ

ନାହିଁ, ତେବେ କାହିଁ ମୁଁ ଏଠାରୁ ଛାଡ଼ିଯିବ । ତମକୁ ବୃଥାରେ କଷ୍ଟଦେବା ମୋର ଇଚ୍ଛା ନୁହେଁ ।'' ଏଣୁ ହସିକରି କହିଲା, ସେଥିଲାଗି ତମକୁ ଚିନ୍ତା କରିବାକୁ ହେବ ନାହିଁ । ତମର ବସିବା ନ ବସିବା ମୋ ପକ୍ଷରେ ସମାନ. ତମେ କେତେବେଳେ ଆସି ମୋ ଉପରେ ବସିଲ ତାହା ମୁଁ ଜାଣେ ନାହିଁ, ଆଉ ତମେ ଗ୍ଭଲଗଲେ ମଧ୍ୟ ମୁଁ କିଛି ଜାଣି ପାରିବି ନାହିଁ ।''

ଯାର ମନ ଯେତେ କ୍ଷୁଦ୍ର ତାର ଅହଙ୍କାର ସେତେ ବେଶି ।

## ଦାର୍ଶନିକ, ପିମ୍ପୁଡ଼ି ଓ ଦେବଦୂତ

ଥରେ ଜଣେ ଦାର୍ଶନିକ ପଣ୍ଡିତ ସମୁଦ୍ର କୂଳରେ ବୁଲୁ ବୁଲୁ ଦେଖିଲେ ଝଡ଼ ହୋଇ ଗୋଟିଏ ଜାହାଜ ବୁଡ଼ିଗଲା ଏବଂ ସେଥିରେ ଯେତେ ଲୋକ ଥିଲେ ସମସ୍ତେ ବୁଡ଼ିଗଲେ । ସେ ବିଗ୍ଭରିଲେ, ଈଶ୍ୱରଙ୍କର ଏ କି ଅବିଗ୍ଭର ! ହୁଏତ ଜାହାଜ ମଧ୍ୟରେ ଜଣେ କି ଦୁଇଜଣ ମାତ୍ର ଦୋଷୀ ଥିବେ, ସେଥିଲାଗି ଏତେଗୁଡ଼ିଏ ନିର୍ଦ୍ଦୋଷୀ ଲୋକ ପ୍ରାଣ ହରାଇଲେ କାହିଁକି ? ଏହିପରି ମନେ ମନେ ଭାବୁଥିଲେ, ଏପରି ସମୟରେ ସେ ଗୋଟିଏ ପିମ୍ପୁଡ଼ି ବସା ଉପରେ ଗୋଡ଼ ପକାଇ ଦେବାରୁ, ଦଳେ ପିମ୍ପୁଡ଼ି ଆସି ତାଙ୍କୁ ଘେରି ପକାଇଲେ । ସେଥି ମଧ୍ୟରୁ ଗୋଟିଏ ପିମ୍ପୁଡ଼ି ଉପରକୁ ଉଠିଯାଇ ତାଙ୍କୁ ସ୍ୱେଚ୍ଛେ କାମୁଡ଼ି ଦେଲା । ଦାର୍ଶନିକ ଆଉ ସମ୍ଭାଳି ନ ପାରି ସବୁ ପିମ୍ପୁଡ଼ିଗୁଡ଼ିକ ଗୋଡରେ ଦଳି ମାରି ପକାଇଲେ । ଏପରି ସମୟରେ ଜଣେ ଦେବଦୂତ ତାଙ୍କ ନିକଟକୁ ଆସି କହିଲେ, "ତୁମେ ପରା ଏହିକ୍ଷଣି ଈଶ୍ୱରଙ୍କୁ ନିନ୍ଦା କରୁଥିଲ ? ତୁମେ ନିଜେ କାହିଁକି ଏ ନିର୍ଦ୍ଦୋଷୀ ପିମ୍ପୁଡ଼ିଗୁଡ଼ିକୁ ଦଳି ପକାଇଲ ? ଗୋଟିଏ ଯୋଡ଼ିଏ ପିମ୍ପୁଡ଼ି ଅବା ତୁମକୁ କାମୁଡ଼ି ଥିବେ । ଅନ୍ୟ ପିମ୍ପୁଡ଼ିମାନେ ତ ତମର କିଛି କରି ନ ଥିଲେ । ଈଶ୍ୱରଙ୍କ କାର୍ଯ୍ୟର ଭଲ ମନ୍ଦ ବିଗ୍ଭର କରିବାକୁ ତମର କି ଅଧିକାର ଅଛି ?"

## ଠେକୁଆ ଓ ବେଙ୍ଗ

ଠେକୁଆଗୁଡ଼ିକ ବଡ଼ ଦୁର୍ବଳ ଓ ଡ଼ରୁଆ । ବଡ଼ ବଡ଼ ଜନ୍ତୁମାନେ ସେମାନଙ୍କୁ ଦେଖିଲାମାତ୍ରେ ଖାଇଦିଅନ୍ତି । ଏଥିଲାଗି ସେମାନେ ଜୀବନ ଭୟରେ ବଡ଼ ଶଙ୍କିତ ହୋଇଥାନ୍ତି । ଥରେ ସେମାନେ ବିଗ୍ଭର କଲେ, ସର୍ବଦା ଏପରି ଭୟରେ ବଞ୍ଚି ରହି ଫଳ କଣ ? ଗ୍ଭଲ ଆମ୍ଭେମାନେ ଆଜି ପାଣିରେ ବୁଡ଼ି ମରିବା, ସର୍ବଦା ମରିବାକୁ ଭୟ କରି ରହିବା ଅପେକ୍ଷା ଥରେ ମରିଯିବା ଭଲ । ଏହିପରି ପ୍ରତିଜ୍ଞା କରି

ସେମାନେ ଗୋଟିଏ ପୋଖରୀରେ ଡେଇଁପଡ଼ି ମରିବାଲାଗି ତହିଁକୁ ଯାଇଁ ପହଞ୍ଚିଲେ ।

ସେହି ପୋଖରୀକୂଳରେ କେତେଗୁଡ଼ିଏ ବେଙ୍ଗ ଥିଲେ । ସେମାନେ ଠେକୁଆମାନଙ୍କ ପାଦ ଶବ୍ଦ ଶୁଣି ଭୟରେ ଫକ୍ ଫକ୍ ହୋଇ ପାଣିକି ଡେଇଁ ପଡ଼ିଲେ । ଏହା ଦେଖି ଗୋଟିଏ ଠେକୁଆ କହିଲା, "ଦେଖ ଭାଇମାନେ, ଆମ୍ଭମାନଙ୍କଠାରୁ ବଳି ଦୁର୍ବଳ ଓ ଡରୁଆ ଜନ୍ତୁ ମଧ୍ୟ ସଂସାରରେ ଅଛନ୍ତି, ତେବେ ଆମ୍ଭେମାନେ ବୃଥାରେ କାହିଁକି ଭୟରେ ପ୍ରାଣ ହରାଇବା ।"

ନିଜର ଅବସ୍ଥା ଖରାପ ବୋଲି ଯେଉଁମାନେ ଦୁଃଖ କରନ୍ତି, ସେମାନେ ଆହୁରି ଖରାପ ଅବସ୍ଥାର ଲୋକ ଦେଖିଲେ ସେମାନଙ୍କର ଟିକିଏ ସାନ୍ତ୍ୱନା ଆସେ ।

## ଗଧ ଓ ମନୁଷ୍ୟ

ଥରେ ଗୋଟିଏ ମନୁଷ୍ୟ ତାର ପାଖରେ ଗଧଟିକୁ ଚରିବାକୁ ଛାଡ଼ିଦେଇ ପାଖରେ ଛିଡ଼ା ହୋଇଥିଲା । ହଠାତ୍ ଶତ୍ରୁ ଆସିବାର ଶବ୍ଦ ଶୁଣିପାରି ସେ ଗଧକୁ କହିଲା, "ଶତ୍ରୁ ଆସି ପହଞ୍ଚିଲେଣି । ଆସ ଶୀଘ୍ର ପଳାଇବା, ନ ହେଲେ ଦୁହେଁଯାକ ଧରା ପଡ଼ିବା ।" ଗଧ କହିଲା, "ତୁମେ ପଳାଉଛ ପଳାଅ, ମୁଁ କାହିଁକି ପଳେଇବି ? ତୁମେ କଣ ମନେ କରୁଛ ଶତ୍ରୁ ଆସି ମତେ ଧରିଲେ ମୋ ଉପରେ ଦି'ଟା ବୋଝ ଲଦିବ ?" ଲୋକଟି କହିଲା, "ନାହିଁ ।" ଗଧ କହିଲା, "ତେବେ ମୋର ପଳାଇବାର ଆବଶ୍ୟକ କଣ ? ତମେ ଲଦିଲେ ମୋ ପକ୍ଷରେ ଯାହା, ଆଉ ସେ ଲଦିଲେ ସେଇଆ ।"

ଏକ ରଜା ଯାଇ ଅନ୍ୟ ରଜା ଆସିଲେ ଗରିବଙ୍କର ସେଥିରେ କିଛି ଯାଏ ଆସେ ନାହିଁ, କେବଳ ରଜାର ନାମଟି ବଦଳେ ମାତ୍ର ।

## ପକ୍ଷୀ ଓ ଶବର

ଜଣେ ଶବର ଜାଲ ପକାଇ ଗୋଟିଏ ପକ୍ଷୀ ଧରିଲା । ପକ୍ଷୀଟି ଶବରକୁ ନାନା ପ୍ରକାର ବିନତି କରି କହିଲା, "ଭାଇ ମତେ ଛାଡ଼ିଦିଅ, ମୁଁ ପ୍ରତିଜ୍ଞା କରି କହୁଛି ମତେ ଛାଡ଼ିଦେଲେ ମୁଁ ଅନ୍ୟାନ୍ୟ ପକ୍ଷୀମାନଙ୍କୁ ଭୁଲାଇ ଆଣି ତମ ଜାଲରେ ପକାଇବି, ତାହାହେଲେ ଭାବି ଦେଖ ତମର କେତେ ଲାଭ ହେବ । ଗୋଟିଏ ପକ୍ଷୀ ବଦଳରେ ତମ କୋଡ଼ିଏ ପକ୍ଷୀ ପାଇ ପାରିବ ।"

ଶବର କହିଲା, "ନା ମୁଁ ତୁମକୁ ଛାଡ଼ିବ ନାହିଁ । ଯେ ନିଜର ମଙ୍ଗଳ ପାଇଁ ଆପଣାର ବନ୍ଧୁବାନ୍ଧବମାନଙ୍କର ସର୍ବନାଶ କରିବାକୁ ଚାହେଁ ତାହାଠାରୁ ବଳି ଦୋଷୀ ଆଉ କେହି ନାହାନ୍ତି । ସେ ମଲେ ସଂସାରର ମଙ୍ଗଳ ।"

## କୁରାଢ଼ି ଓ ଜଳଦେବତା

ଗୋଟିଏ ଦୁଃଖୀଲୋକ ନଈ କୂଳରେ କାଠ ହାଣୁଥିଲା । ହଠାତ୍ ତାର କୁରାଢ଼ି ଖଣ୍ଡିକ ହାତରୁ ଖସି ଯାଇ ପାଣିରେ ପଡ଼ି ବୁଡ଼ିଗଲା । ଆଉ କୁରାଢ଼ିଖଣ୍ଡି ପାଇବ ନାହିଁ ଭାବି ଅତି ଦୁଃଖିତ ହୋଇ ସେ କାନ୍ଦିବାକୁ ଲାଗିଲା । ତା'ର କାନ୍ଦ ଶୁଣି ଜଳଦେବତାଙ୍କର ଦୟା ହେଲା । ସେ ତା' ନିକଟକୁ ଆସି କହିଲେ, "ତୁମେ କାନ୍ଦୁଛ କାହିଁକି ?" ସେ ସମୁଦାୟ ବିଷୟ କହିବାରୁ ଜଳଦେବତା ନଈରେ ବୁଡ଼ି ହାତରେ ଖଣ୍ଡିଏ ସୁନାର କୁରାଢ଼ି ଧରି ତାକୁ ପଚାରିଲେ, "ଏ କୁରାଢ଼ି ତୁମର ?" ସେ କହିଲା, "ନା ଏ କୁରାଢ଼ି ମୋର ନୁହେଁ ।" ଜଳଦେବତା ପାଣିରେ ବୁଡ଼ି ଆଉ ଖଣ୍ଡିଏ ରୁପାର କୁରାଢ଼ି ଧରି ତା ନିକଟକୁ ଆସି ପୂର୍ବପରି ପଚାରିଲେ । ସେ କହିଲା, "ଏ ମଧ୍ୟ ମୋର ନୁହେଁ ।" ସେ ଆଉ ଥରେ ପାଣିରେ ବୁଡ଼ି ତାର ଲୁହା କୁରାଢ଼ିଖଣ୍ଡି ଧରି ପଚାରିଲେ, "ଏ କଣ ତୁମ କୁରାଢ଼ି ?" ସେ ନିଜର କୁରାଢ଼ିଖଣ୍ଡି ଦେଖି ଅତି ଖୁସି ହୋଇ କହିଲା, "ହଁ ମହାଶୟ, ଏ ଖଣ୍ଡି ମୋ କୁରାଢ଼ି । କୁରାଢ଼ି ଖଣ୍ଡି ପାଇବ ବୋଲି ମୋର ଆଶା ନ ଥିଲା, କେବଳ ଆପଣଙ୍କ ଅନୁଗ୍ରହରୁ ପାଇଲି । ମୁଁ ବଡ଼ ଦୁଃଖୀ, ଆପଣ ମୋର ଯେଉଁ ଉପକାର କଲେ, ତାହା ମୁଁ ଜୀବନରେ ଭୁଲି ପାରିବି ନାହିଁ ।" ଜଳଦେବତା ତାର ନିଜର କୁରାଢ଼ିଖଣ୍ଡି ତାକୁ ଦେଲେ ଓ ସେ ଅତି ନିର୍ଲୋଭୀ ଓ ସତ୍ୟବାଦୀ ବୋଲି ଖୁସି ହୋଇ ସୁନା ଓ ରୁପାର କୁରାଢ଼ି ଦୁଇଖଣ୍ଡି ମଧ୍ୟ ତାକୁ ପୁରସ୍କାର ଦେଲେ । ଦୁଃଖୀ ଲୋକଟି ସୁନା ଓ ରୁପାର କୁରାଢ଼ି ଦୁଇଖଣ୍ଡି ପାଇ ଘରକୁ ଆସି ଯାଇ ପଡ଼ୋଶୀ ସମସ୍ତଙ୍କ ଆଗରେ ଏ ଅଦ୍ଭୁତ ଘଟଣା କହିଲା । ସମସ୍ତେ ଶୁଣି ବଡ଼ ଆଶ୍ଚର୍ଯ୍ୟ ହେଲେ ।

ଏ କଥା ଶୁଣି ଗୋଟିଏ ଲୋକର ବଡ଼ ଲୋଭ ହେଲା । ତହିଁ ଆରଦିନ ସକାଳୁ ସେ ଖଣ୍ଡିଏ କୁରାଢ଼ି ଧରି ନଈକୂଳକୁ ଗଲା । ଗୋଟିଏ ଗଛରେ ଦି ଧରି ଚୋଟ ମାରି ହାତରୁ ଖସି ଯିବାର ବାହାନା କରି ସେ କୁରାଢ଼ି ଖଣ୍ଡି ପାଣିକି ପକାଇ ଦେଲା ଏବଂ 'ଆହା କଣ ହେଲା' ବୋଲି ବଡ଼ ପାଟିରେ କାନ୍ଦିବାକୁ ଲାଗିଲା । ଜଳଦେବତା ତା' ନିକଟକୁ ଆସି କାହିଁକି କାନ୍ଦୁଛ ବୋଲି ପଚାରିବାରୁ ସେ କୁରାଢ଼ି ପଡ଼ିଯିବା କଥା କହି ବଡ଼ ଦୁଃଖ କଲା । ଜଳଦେବତା ପୂର୍ବପରି ପାଣିରେ ବୁଡ଼ି

ଖଣ୍ଡିଏ ସୁନାର କୁରାଢ଼ି ଧରି ତାକୁ ପଚାରିଲେ, "ଏ କୁରାଢ଼ି ତୁମର ?" ସୁନା କୁରାଢ଼ି ଦେଖି ସେ ଲୋଭ ସମ୍ଭାଳି ନ ପାରି କହିଲା, "ହଁ ଏ ମୋ କୁରାଢ଼ି ।" ଜଳଦେବତା ତାକୁ ଲୋଭୀ ଓ ମିଥ୍ୟାବାଦୀ ବୋଲି ଗାଳିଦେଇ କୁରାଢ଼ି ଖଣ୍ଡି ପାଣିରେ ପକାଇ ଦେଇ ସେଠାରୁ ଚାଲିଗଲେ । ଲୋକଟି ହତାଶ ହୋଇ ଭାବିଲା, ମୋର ଯେପରି କାର୍ଯ୍ୟ ସେପରି ଫଳ ହୋଇଛି ।

## ସିଂହ ଓ ମେଣ୍ଢା ଜଗୁଆଳ

ଥରେ ଗୋଟିଏ ସିଂହ ଜଙ୍ଗଲରେ ବୁଲୁ ବୁଲୁ ଗୋଟିଏ କଣ୍ଟା ମାଡ଼ି ପକାଇଲା । ସେ ଯନ୍ତ୍ରଣାରେ କାତର ହୋଇ ଗୋଟିଏ ମେଣ୍ଢା ଜଗୁଆଳ ପାଖକୁ ଗଲା ଏବଂ ଲାଙ୍ଗୁଡ଼ ହଲାଇ ଅନୁନୟ କରି ସେପରି ତାକୁ କହିଲା, "ମୁଁ କଷ୍ଟରେ ପଡ଼ି ତୁମର ସାହାଯ୍ୟ ଲୋଡ଼ିବାକୁ ଆସିଛି ।" ମେଣ୍ଢା ଜଗୁଆଳ ସାହସ କରି ସିଂହକୁ ପରୀକ୍ଷା କରି ତାହା ଗୋଡ଼ରେ କଣ୍ଟା ଦେଖି ପାରିଲା ଓ ତାହା କୋଳରେ ସିଂହ ଗୋଡ଼କୁ ରଖି କଣ୍ଟାଟି ବାହାର କରି ଆଣିଲା । ସିଂହର ଗୋଡ଼ ଭଲ ହୋଇ ଯିବାରୁ ସେ ଖୁସି ହୋଇ ଜଙ୍ଗଲକୁ ଚାଲିଗଲା ।

ଏହାର କିଛି ସମୟ ପରେ ସେହି ମେଣ୍ଢା ଜଗୁଆଳକୁ ଗୋଟାଏ ମିଥ୍ୟା ଅପରାଧରେ କଏଦୀ କରି ରଜା ହୁକୁମ ଦେଲେ ଯେ ତାର ଦୋଷର ଦଣ୍ଡସ୍ୱରୂପ ତାକୁ ସିଂହର ଗ୍ରାସରେ ଦେବାକୁ ହେବ । ସିଂହକୁ ଯେତେବେଳେ ପିଞ୍ଜରାରୁ ବାହାର କରି ଦିଆଗଲା, ସେ ମେଣ୍ଢା ଜଗୁଆଳ ପାଖକୁ ଯାଇ ଚିହ୍ନି ପାରିଲା ଯେ ଲୋକ ତାର ଗୋଡ଼ ଭଲକରି ଦେଇଥିଲା ଏ ସେହି । ତହୁଁ ତାର କିଛି ଅନିଷ୍ଟ କରିବା ଦୂରେ ଥାଉ, ସେ ଧୀରଭାବରେ ତା' କୋଳରେ ଗୋଡ଼ ରଖି ତାକୁ ଅନାଇ ରହିଲା । ରଜା ଶେଷରେ ସବୁ କଥା ଶୁଣି ପାରି ସିଂହକୁ ଜଙ୍ଗଲକୁ ଛାଡ଼ିଦେଲେ ଓ ମେଣ୍ଢା ଜଗୁଆଳର ଦୋଷ କ୍ଷମା କରି ତାକୁ ଖଲାସ ଦେଲେ ।

## ଘୋଡ଼ା ଓ ହରିଣ

ଗୋଟିଏ ଘୋଡ଼ା ପଡ଼ିଆରେ ଏକା ମାଲିକ ଥିଲା । ଗୋଟିଏ ହରିଣ ସେଠାରେ ଆସି ଚରି ତା' ଚରାରୁ ଭାଗ ନେବାରୁ ଘୋଡ଼ା ମନରେ ବଡ଼ ରାଗ ହେଲା । ସେ ହରିଣ ଉପରେ କିପରି ପ୍ରତିହିଂସା ନେବ ବୋଲି ଭାବି ଜଣେ ମନୁଷ୍ୟକୁ ଡାକି କହିଲା, "ତୁମେ ଯଦି ଟିକିଏ ସାହାଯ୍ୟ କରନ୍ତ ଏହି ହରିଣଟାକୁ ଖୁବ୍ ଶାସ୍ତି ଦିଅନ୍ତେ ।" ମନୁଷ୍ୟ କହିଲା, "ତୁମେ ଯଦି ପାଟିରେ ଲଗାମ ଧରି

ମତେ ବୋଧ କରି ନେବ ତେବେ ମୁଁ ହରିଣକୁ ଖୁବ୍ ଶାସ୍ତି ଦେବ । ଘୋଡ଼ା ଏଥିରେ ରାଜି ହୋଇ ମନୁଷ୍ୟକୁ ତାହା ଉପରେ ଚଢ଼ିବାକୁ ଦେଲା । ସେହି ସମୟ-ଠାରୁ ଘୋଡ଼ା ଦେଖି ପାରିଲା ଯେ ହରିଣକୁ ଶାସ୍ତି ଦେବା ଦୂରେ ଥାଉ ସେ ନିଜେ ମନୁଷ୍ୟ ପାଖରେ ଚାକର ହୋଇ ରହିଲା ।

## ସିଂହ ଓ ଠେକୁଆ

ଗୋଟିଏ ସିଂହ ବୁଲୁ ବୁଲୁ ଦେଖି ପାରିଲା ଯେ ଗୋଟିଏ ଠେକୁଆ ତା' ବସାରେ ଖୁବ୍ ନିଦରେ ଶୋଇଛି । ସେ ଠେକୁଆକୁ ଧରିବାକୁ ଚାଲୁଥିଲାକୁ ଗୋଟିଏ ହରିଣ ସେହି ବାଟଦେଇ ଦୌଡ଼ିଗଲା । ସେ ମନେ କଲା ଠେକୁଆ ତ ଏହିକ୍ଷଣି ଶୋଇଛି, ଟିକଏ ପରେ ତାକୁ ଖାଇଲେ ଚଳିବ, ଆଗେ ହରିଣଟାକୁ ଧରେଁ । ଏହାଭାବି ସେ ଠେକୁଆକୁ ଛାଡ଼ିଦେଇ ହରିଣ ପଛେ ପଛେ ଗୋଡ଼ାଇଲା । ଏ ଗୋଳମାଳରେ ଠେକୁଆ ନିଦ ଭାଙ୍ଗିଯିବାରୁ ସେ ଉଠି ପଳାଇ ଗଲା । ସିଂହ ଅନେକଦୂର ଦୌଡ଼ି ଦୌଡ଼ି ହରିଣକୁ ଧରି ନ ପାରି ଠେକୁଆକୁ ଖାଇବ ବୋଲି ଫେରି ଆସିଲା । ଯେତେବେଳେ ଦେଖିଲା ଯେ ଠେକୁଆ ମଧ୍ୟ ପଳାଇ ଗଲାଣି ସେ ମନେ ମନେ କହିଲା, "ମୁଁ ଯେତେବେଳେ ବେଶି ପାଇବା ଲୋଭରେ ହାତରୁ ଶିକାର ଛାଡ଼ି ଦେଇଛି ମତେ ଆଉ ଭଲ ଯୋଗ ହୁଅନ୍ତା କିପରି ?"

## ଛେଳିଛୁଆ ଓ ଗଧିଆ

ଗୋଟିଏ ଛେଳିଛୁଆ ଏକୁଟିଆ ଚରାଭୂଇଁରୁ ଫେରୁଥିବାର ଦେଖି ଗୋଟିଏ ଗଧିଆ ତାକୁ ଧରିବାକୁ ଗୋଡ଼ାଇଲା । ଛେଳିଛୁଆ ଫେରିପଡ଼ି ଗଧିଆକୁ କହିଲା, "ଗଧିଆ ଭାଇ, ମୁଁ ଜାଣେ ଯେ ମୁଁ ଆଜି ତୁମର ଆହାର ହେବି । କିନ୍ତୁ ମରିବା ପୂର୍ବରୁ ମୋର ତୁମକୁ ଗୋଟିଏ ମାଗୁଣି ଅଛି । ମାଗୁଣି ଏଇଆ ଯେ ତୁମେ ଥରେ ବଂଶୀ ବଜାଇଲେ ମୁଁ ଟିକଏ ନାଚନ୍ତି ।" ଗଧିଆ ଏଥିରେ ରାଜି ହୋଇ ବଂଶୀ ବଜାଇବାରୁ ଛେଳିଛୁଆ ନାଚିବାକୁ ଲାଗିଲା । ବଂଶୀ ଶବ୍ଦ ଶୁଣି ବଳିଆ କୁକୁରମାନେ ବାହାରିପଡ଼ି ଗଧିଆକୁ ଗୋଡ଼ାଇଲେ । ଗଧିଆ ଛେଳିଛୁଆ ଆଡ଼କୁ ଫେରି କହିଲା, "ମୋ ପ୍ରତି ଠିକ୍ ବ୍ୟବହାର ହୋଇଛି । ମୋର ତ କଂସେଇ ବ୍ୟବସାୟ । ତୁମକୁ ଖୁସି କରାଇବା ଲାଗି ମୁଁ ବଂଶୀ ବଜାଇବାକୁ ଗଲି କାହିଁକି ?"

## ଦୁଇଜଣ ବାଟୋଇ ଓ କୁରାଢ଼ି

ଦୁଇଜଣ ଲୋକ ଏକ ସଙ୍ଗରେ ଯାଉଥିଲେ । ସେଥି ମଧ୍ୟରୁ ଜଣେ ବାଟରେ ଖଣ୍ଡିଏ କୁରାଢ଼ି ପଡ଼ିଥିବାର ଦେଖିପାରି ତାକୁ ଗୋଟାଇ ଆଣି କହିଲା, "ମୁଁ

ଖଣ୍ଡେ କୁରାଢ଼ି ପାଇଲି ।" ଅନ୍ୟ ଜଣକ କହିଲା, "ଭାଇ 'ମୁଁ' ବୋଲି କାହିଁକି କହୁଛ, 'ଆମ୍ଭେମାନେ କୁରାଢ଼ି ଖଣ୍ଡି ପାଇଲୁଁ' ବୋଲି କହ ।" ସେମାନେ ବେଶୀଦୂର ନ ଯାଉଣୁ ଦେଖି ପାରିଲେ ଯେ କୁରାଢ଼ିର ମାଲିକ ସେମାନଙ୍କୁ ଡାକୁଛି । ଯେ କୁରାଢ଼ି ଖଣ୍ଡି ଗୋଟାଇଥିଲା ସେ କହିଲା, "ଭାଇ, ଆମ୍ଭମାନଙ୍କର ସର୍ବନାଶ ହେଲା ।" ଅନ୍ୟ ଜଣକ ତହୁଁ କହିଲା, "ଭାଇ, ତୁମେ ପ୍ରଥମେ ଯେପରି କହୁଥିଲ, ବର୍ତ୍ତମାନ ସେହିପରି କହ, 'ମୋର ସର୍ବନାଶ ହେଲା', 'ଆମ୍ଭମାନଙ୍କର' ନୁହେଁ ।"

## ଭାଇ ଓ ଭଉଣୀ

ଗୋଟିଏ ଲୋକର ଗୋଟିଏ ପୁଅ ଓ ଗୋଟିଏ ଝିଅ ଥିଲେ । ପୁଅଟି ଦେଖିବାକୁ ଖୁବ୍ ସୁନ୍ଦର, କିନ୍ତୁ ଝିଅଟିର ଚେହେରା ଅତି କୁତ୍ସିତ । ଦିନେ ଖେଳୁ ଖେଳୁ ଦୈବାତ ମାଙ୍କ ଦର୍ପଣ ଉପରେ ଏକସମୟରେ ସେମାନଙ୍କ ଦୃଷ୍ଟି ପଡ଼ିଲା । ବାଳକ ଦର୍ପଣରେ ନିଜ ଚେହେରା ଦେଖି ବଡ଼ ଖୁସି ହେଲା । ବାଳିକାଟି କିନ୍ତୁ ଭାଇକୁ ନିଜର ପ୍ରଶଂସା କରିବାର ଦେଖି ବଡ଼ ରାଗିଗଲା । ସେ ମନେ କଲା, ମୋର ଅସୁନ୍ଦର ଚେହେରା ଦେଖି ଏ ମତେ ଅଣ୍ଟା କରି ଏପରି କହୁଛି । ସେ ଭାଇକୁ ଗାଳି ଖୁଆଇବ ବୋଲି ଦୌଡ଼ିଯାଇ ବାପାଙ୍କୁ କହିଲା, "ଝିଅମାନଙ୍କର କେବଳ ଦର୍ପଣରେ ମୁହଁ ଦେଖିବାର କଥା, କିନ୍ତୁ ଏ ପୁଅ ହୋଇ ଦର୍ପଣରେ ମୁହଁ ଦେଖୁଛି ।" ଲୋକଟି ପୁଅ ଝିଅ ଉଭୟଙ୍କୁ ସ୍ନେହରେ କୋଳରେ ଧରି ଓ ସେମାନଙ୍କର ମୁଖ ଚୁମ୍ବନ କରି କହିଲା, "ମୋର ଇଚ୍ଛା ଯେ ତୁମେ ଉଭୟେ ପ୍ରତି-ଦିନ ଦର୍ପଣରେ ମୁହଁ ଦେଖ । ତାହାହେଲେ ପୁଅ, ତୁ ଆଉ ମନ୍ଦ ଆଚରଣଦ୍ୱାରା ନିଜର ଚେହେରା ନଷ୍ଟ କରିବୁଁ ନାହିଁ ଏବଂ ତୁ ମଧ୍ୟ ଝିଅ, ସଦ୍‌ଗୁଣ ଦ୍ୱାରା ତୋର ସୁନ୍ଦରପଣର ଅଭାବ ପୂରଣ କରିବୁ ।"

## ସିଂହ, ଗଧିଆ ଓ କୋକଶିଆଳି

ଗୋଟିଏ ସିଂହ ବୁଢ଼ା ହୋଇଯିବାରୁ ବେମାର ହୋଇ ତାର ଗୁହାରେ ପଡ଼ି ରହିଲା । ସବୁ ଜନ୍ତୁମାନେ ତାକୁ ଦେଖିବାକୁ ଆସିଲେ । କେବଳ କୋକ-ଶିଆଳି ଆସିଲା ନାହିଁ । ଗଧିଆ ଏ ସୁଯୋଗ ପାଇ ସିଂହ ପାଖରେ କୋକ-ଶିଆଳିର ଦୋଷ ଦେଖାଇ କହିଲା, "କୋକଶିଆଳି ତୁମକୁ ମାନେ ନାହିଁ, ସେଥି-ଲାଗି ସେ ତୁମକୁ ଥରେ ସୁଦ୍ଧା ଦେଖିବାକୁ ଆସିଲା ନାହିଁ ।" ଠିକ୍ ଏହି ସମୟରେ କୋକଶିଆଳି ଆସି ପହଞ୍ଚି ଗଧିଆର ଶେଷ କଥା ଶୁଣି ପାରିଲା । ସିଂହ ତାକୁ ଦେଖି

ସ୍ୱରରେ ଗର୍ଜ୍ଜନ କରି ଉଠିବାରୁ ସେ ନିଜକୁ ରକ୍ଷା କରିବାଲାଗି କହିଲା "ଯେଉଁମାନେ ତୁମକୁ ଦେଖିବାକୁ ଆସିଅଛନ୍ତି ସେମାନେ ତୁମର କି ଉପକାର କରିଅଛନ୍ତି ? କିନ୍ତୁ ମୁଁ ନାନା ସ୍ଥାନରେ ବୁଲି ବୈଦ୍ୟ ଖୋଜି ତୁମକୁ ଭଲ କରିବାର ଉପାୟ ଜାଣିକରି ଆସିଅଛି ।" ସିଂହ ଏହା ଶୁଣି ଆରୋଗ୍ୟ ହେବାର ଉପାୟ ସାଙ୍ଗେ ସାଙ୍ଗେ କହିବାକୁ ହୁକୁମ ଦେବାରୁ କୋକିଶିଆଳ କହିଲା "ତୁମେ ଗୋଟିଏ ଜୀଅନ୍ତା ଗଧଆର ଚମଡ଼ା ଛଡାଇ ସେହି ଚମଡ଼ାକୁ ସେହିକ୍ଷଣି ଦେହରେ ଘୋଡ଼ିହେଲେ ତୁମର ରୋଗ ଭଲ ହୋଇଯିବ । ସାଙ୍ଗେ ସାଙ୍ଗେ ସେହି ଗଧଆକୁ ଧରି ତାହାର ଚମଡ଼ା ଛଡ଼ାଗଲା । ଏହା ଦେଖି କୋକିଶିଆଳ ଟିକିଏ ହସି ଗଧଆକୁ କହିଲା, "ତୁମେ ମୁନିବର ମନକୁ ବିଗାଡ଼ି ନ ଦେଇ ଭଲ ଦରକୁ ନେଇଥିଲେ ଏପରି ହୋଇ ନ ଥାନ୍ତା ।"

## ଭାଣ୍ଡ ଓ ଗାଉଁଲି ଲୋକ

ଜଣେ ଧନଲୋକ ଥରେ ଥିଏଟର କରାଇ ବିନା ପଇସାରେ ଆସି ଦେଖିବାକୁ ଲୋକମାନଙ୍କୁ ଅନୁମତି ଦେଲେ ଓ ଗୋଟିଏ ବିଜ୍ଞାପନ ଦେଲେ ଯେ ଗୋଟିଏ କିଛି ନୂଆ କୌତୁକ ବାହାର କରି ଦେଖାଇ ପାରିବ ତାକୁ ଯଥେଷ୍ଟ ପୁରସ୍କାର ଦିଆ-ଯିବ । ଏ ପୁରସ୍କାର ପାଇଁ ଅନେକ ଲୋକ ଅନେକ ଖେଳ ଦେଖାଇଲେ । ଶେଷରେ ଜଣେ ଭାଣ୍ଡ ଆସି କହିଲା, "ମୁଁ ଏପରି ଗୋଟିଏ ଖେଳ ଦେଖାଇବି ଯାହା କେବେ କେହି ଦେଖାଇ ନାହିଁ । ତାର ଥଟ୍ଟା ତାମସାଯୋଗୁଁ ଲୋକମାନେ ସେ ଭାଣ୍ଡକୁ ଭଲକରି ଜାଣିଥିଲେ । ଏ ଖବର ରାଷ୍ଟ୍ର ହେବାରୁ ସେ ସ୍ଥାନରେ ଗୋଟିଏ ଚହଳ ପଡ଼ିଗଲା ଓ ଥିଏଟରର ଘରଆଡ଼େ ଲୋକରେ ପୂର୍ଣ୍ଣ ହୋଇଗଲା ।

ଭାଣ୍ଡ କିଛି ଜିନିଷପତ୍ର ବା ଅନ୍ୟ କେହି ସଙ୍ଗୀକୁ ନ ନେଇ ଯାଇ ମଞ୍ଚ ଉପରେ ଛିଡ଼ା ହେଲା ଏବଂ ଲୋକମାନେ ଅତି ଆଗ୍ରହରେ ଚୁପ୍‌ଚାପ୍ ହୋଇ ସେହି ଆଡ଼କୁ ଅନାଇ ରହିଲେ । ଭାଣ୍ଡ ହଠାତ୍ ତାର ଗ୍ରୀବା ଆଡକୁ ମୁଣ୍ଡ ନୁଆଁଇ ଏପରି ସୁନ୍ଦର ଭାବରେ ଘୁଷୁରିପରି ବୋବାଇଲା ଯେ ସମସ୍ତେ କହିଲେ ସେ ତାର ପୋଷାକ ତଳେ ଗୋଟିଏ ଘୁଷୁରିଛୁଆ ରଖିଛି । କିନ୍ତୁ ସେ ଯେତେବେଳେ ତାର ପୋଷାକ ଝାଡ଼ି ଦେଖାଇଦେଲା ଯେ କିଛି ନାହିଁ, ସମସ୍ତେ ତାକୁ ଭାରି ପ୍ରଶଂସା କରିବାକୁ ଲାଗିଲେ । ଜଣେ ଗାଉଁଲି ଲୋକ ଏହା ଦେଖି ଭାବିଲା ଏ ବିଦୂଷରେ ଏ ମତେ ହଟାଇ ପାରିବ ନାହିଁ । ସେହିକ୍ଷଣି ସେ ସମସ୍ତଙ୍କୁ ଜଣାଇ ଦେଲା ଯେ ସେ କାଲି ସେହିପରି ଖେଳ ଏହା ଅପେକ୍ଷା ଆହୁରି ଭଲ ରୂପେ କିଛି ଦେଖାଇଦେବ । ତହିଁ-ଆରଦିନ ଆହୁରି ବେଶୀଲୋକ ଜମା ହେଲେ । ପ୍ରାୟ ଅଧିକାଂଶ ଲୋକ ଭାଣ୍ଡ ପକ୍ଷ

ନେଇ ଗାଉଁଲୋକକୁ ପରିହାସ କରିବେ ବୋଲି ଆସିଥିଲେ । ବୁଦ୍ଧିଆ ଯାକ ଯାଉଁ ମଞ୍ଚରେ ଛିଡ଼ା ହେଲା ପରେ ପ୍ରଥମେ ଭଣ୍ଡ ଘୁଷୁରିପରି ବୋବାଇବାରୁ ପୂର୍ବଦିନ ପରି ଲୋକମାନେ ତାକୁ ପ୍ରଶଂସା କରି ତାଳି ଦେଲେ । ତାହା ପରେ ଗାଉଁଲି ଲୋକଟି ଆରମ୍ଭ କଲା । ସେ ବାହାନା କରି ଲୋକମାନଙ୍କୁ ଦେଖାଇଲା ଯେପରି କି ତା'ର ଲୁଗାତଳେ ସେ ଗୋଟିଏ ଘୁଷୁରିଛୁଆ ଲୁଚାଇ ରଖିଛି, ମାତ୍ର ଲୋକମାନେ କେହି ସନ୍ଦେହ କଲେ ନାହିଁ । କିନ୍ତୁ ପ୍ରକୃତରେ ସେ ଗୋଟିଏ ଘୁଷୁରି ଛୁଆ ଲୁଚାଇକରି ଧରିଥିଲା । ଲୁଗା ଭିତରେ ହାତ ପୂରାଇ ତାର କାନ ମୋଡ଼ି ଦେବାରୁ ସେ ଯନ୍ତ୍ରଣାରେ ଅବିକଳ ଘୁଷୁରିପରି ଚିତ୍କାର କରି ଉଠିଲା; କିନ୍ତୁ ଲୋକମାନେ ଏକବାକ୍ୟରେ ପାଟି କରି କହିଲେ, "ଭଣ୍ଡ ଏହା ଅପେକ୍ଷା ଭଲ ଭାବରେ ଘୁଷୁରିପରି ବୋବାଇଥିଲା । ଅତଏବ ଏହାକୁ ମଞ୍ଚରୁ ବାହାର କରି ଦିଆଯାଉ ।"

ଏହା ଶୁଣି ଗାଉଁଲି ଲୋକଟି ତାର ଲୁଗା ଭିତରୁ ଘୁଷୁରିଛୁଆଟିକୁ ବାହାର କରିଦେଇ ସଫା ଦେଖାଇ ଦେଲା ଯେ ସେମାନଙ୍କର ଭ୍ରମ କେତେଦୂର । ସେ କହିଲା, "ଏଇ ଦେଖ, ଏଥିରୁ ଜଣାପଡ଼ୁଛି ତୁମମାନଙ୍କର ବିଚାର କିପରି !"

## ଈଗଲପକ୍ଷୀ ଓ କାଉ

ଗୋଟିଏ ଈଗଲପକ୍ଷୀ ଗୋଟିଏ ଉଚ୍ଚ ପାହାଡ଼ ଉପରୁ ଓହ୍ଲାଇ ଆସି ଗୋଟିଏ ମେଣ୍ଢା ଛୁଆକୁ ନଖରେ ଧରି ଉପରକୁ ନେଇଗଲା । ଏହା ଦେଖି ଗୋଟିଏ କାଉ ମନରେ ବଡ଼ ଈର୍ଷା ହେଲା । ସେ ଈଗଲପରି ଉଡ଼ିବାକୁ ଓ ବଳ ଦେଖାଇବାକୁ ମନେ ମନେ ସଙ୍କଳ୍ପ କଲା । ଏହା ଭାବି ସେ ଡେଣାକୁ ଖୁବ୍ ଜୋରରେ ହଲାଇ ଉଡ଼ିଯାଇ ଗୋଟିଏ ବଡ଼ ମେଣ୍ଢା ଉପରେ ବସି ପଡ଼ିଲା । ଉଦ୍ଦେଶ୍ୟ ଯେ ତାକୁ ବୋହି କରି ନେଇଯିବ, କିନ୍ତୁ ତାର ନଖ ମେଣ୍ଢା ଲୋମରେ ଲାଖିଯିବାରୁ ସେ ଯେତେ ବାଡ଼େଇପିଟି ହେଲା ଆଉ ନଖ ଛଡ଼ାଇ ପାରିଲା ନାହିଁ । ମେଣ୍ଢା ଜଗୁଆଳି ଏହା ଦେଖିପାରି ଦୌଡ଼ିଯାଇ କାଉକୁ ଧରି ପକାଇଲା । ସେ ତାର ଡେଣା ଦୁଇଟି କାଟିଦେଇ ଘରକୁ ନେଇ ତାର ପିଲମାନଙ୍କୁ ଦେଲା । ପିଲମାନେ ଯେତେବେଳେ ପଚାରିଲେ ଏଟି କି ପକ୍ଷୀ, ମେଣ୍ଢା ଜଗୁଆଳି କହିଲା, "ମୁଁ ନିଶ୍ଚୟ କରି ଜାଣେ ଯେ ଏ ଗୋଟିଏ କାଉ । କିନ୍ତୁ ସେ ନିଜେ ମନେକରେ ସେ ଗୋଟିଏ ଈଗଲ ପକ୍ଷୀ ।"

## କୁକୁର ଓ ଚମଡ଼ା

କେତେଗୁଡ଼ିଏ କୁକୁର ଭୋକରେ କାତର ହୋଇ ଦେଖିଲେ ଯେ ନଦୀ

ଭିତରେ କେତେଗୁଡ଼ିଏ ଗୋରୁ ଚମଡ଼ା ବୁଡାହୋଇ ରଖା ହୋଇଛି । ଚମଡ଼ା ପାଖକୁ ଯାଇ ନ ପାରି ସେମାନେ ନଈଟାକୁ ପିଇଦେବେ ବୋଲି ସ୍ଥିର କଲେ । କିନ୍ତୁ ଫଳରେ ହେଲା ଯେ ସେମାନେ ଚମଡ଼ା ପାଖରେ ପହଞ୍ଚିବା ପୂର୍ବରୁ ପାଣି ପିଇ ପିଇ ପେଟ ଫାଟି ମରିଗଲେ ।

ଅସମ୍ଭବ କାର୍ଯ୍ୟରେ ହାତ ଦେବା ଉଚିତ ନୁହେଁ ।

## ଘୋଡ଼ା ଓ ସହିସ

ଗୋଟିଏ ସହିସ ଦିନତମାମ ଲାଗି ପଡ଼ି ଘୋଡ଼ାକୁ ଖରଡ଼ା କରେ ଓ ଘଷେ, କିନ୍ତୁ ତାର ଦାନାତକ ଚୋରାଇ ନେଇ ବିକି କରି ଖାଏ । ଦିନେ ଘୋଡ଼ା କହିଲା, "ତୁମେ ଯଦି ମତେ ଭଲ ଅବସ୍ଥାରେ ରଖିବାକୁ ଚାହଁ ତେବେ ମତେ କମ୍ ଘଷାମଜା କରି ବେଶି ଖାଇବାକୁ ଦିଅ ।"

ପେଟକୁ ଖେଣ୍ଡି ଖାଲି ପିଠି ଆଉଁସିଲେ କିଛି ଫଳ ହୁଏ ନାହିଁ ।

## ଚୋର ଓ ତା'ର ମା'

ଗୋଟିଏ ପିଲା ତାର ଗୋଟିଏ ସଙ୍ଗୀ ଇସ୍କୁଲପିଲାର ଖଣ୍ଡିଏ ପଢ଼ାବହି ଚୋରି କରି ତାର ମା' ପାଖକୁ ନେଇଗଲା । ତାର ମା' ତାକୁ ମାରିବା ଦୂରେ ଥାଉ ବରଂ ପୁଅକୁ ଏଥିରେ ଉତ୍ସାହ ଦେଲା । ଆଉ ଥରେ ସେ ପିଲାଟି ଗୋଟିଏ ପୋଷାକ ଚୋରିକରି ନେଇ ତା ମା'କୁ ଦେବାରୁ ସେ ତାକୁ ଆହୁରି ପ୍ରଶଂସା କଲା । ପିଲାଟି ଯେତେବେଳେ ବଡ଼ ହେଲା ସେ କ୍ରମେ ବେଶି ବେଶି ଦାମ୍‌ର ଜିନିଷ ଚୋରି କରିବାକୁ ଲାଗିଲା । ଶେଷରେ ଦିନେ ସେ ଧରାପଡ଼ିବାରୁ ତାର ହାତ ପଛଆଡ଼େ ବାନ୍ଧି ତାକୁ ଫାସି ଦେବାକୁ ନେଇଗଲେ । ତାର ମା ପଛେ ପଛେ ଗୋଡ଼ାଇ ଦୁଃଖରେ ଛାତି କୋଡ଼ି ହେବାକୁ ଲାଗିଲା । ଏହା ଦେଖି ତା' ପୁଅ କହିଲା, "ମୁଁ ମୋ ମା' କାନରେ ଗୋଟିଏ କଥା କହିବାକୁ ଚାହେଁ ।" ତାର ମା' ଯେତେବେଳେ ପାଖକୁ ଆସିଲା ସେ ଦାନ୍ତରେ ମା'ର କାନକୁ ଧରି ଛିଣ୍ଡାଇ ନେଇଗଲା । ମା' ତାକୁ କୁଳାଙ୍ଗାର ପୁଅ ବୋଲି ଗାଳିଦେବାରୁ ସେ ଉତ୍ତର କଲା, "ଅହା ! ମୁଁ ଯେଉଁଦିନ ପ୍ରଥମେ ସେହି ପଢ଼ାବହି ଚୋରିକରି ତୋ ପାଖକୁ ଆଣିଥିଲି, ସେ ଦିନ ଯଦି ତୁ ମତେ ମାଡ଼ ଦେଇ ମନା କରି ଦେଇଥାନ୍ତୁ ତାହାହେଲେ ମୋର ଏ ଦଶା ହୋଇ ନ ଥାନ୍ତା !"

## ଗୋରୁ ଓ କଂସେଇ

କଂସେଇମାନେ ଗୋରୁମାନଙ୍କୁ ମାରି ବ୍ୟବସାୟ କରୁଥିବାରୁ ଦିନେ ଗୋରୁମାନେ ସେମାନଙ୍କୁ ମାରପକାଇବାକୁ ସ୍ଥିର କଲେ । ଏଥିଲାଗି ସେମାନେ ଏକାଠି ହୋଇ ସେମାନଙ୍କର ଶିଂଘ ଘଷି ଆକ୍ରମଣ କରିବାକୁ ପ୍ରସ୍ତୁତ ହେଲେ । ସେଥି ମଧ୍ୟରୁ ଗୋଟିଏ ବୁଢାଗୋରୁ ବାହାରି କହିଲା, "କଂସେଇମାନେ ଆମ୍ଭମାନଙ୍କୁ ମାରନ୍ତି ସତ, କିନ୍ତୁ ସେମାନେ ଏପରି କୌଶଳରେ ମାରନ୍ତି ଯେ ସେଥିରେ ବେଶି କଷ୍ଟ ହୁଏ ନାହିଁ । ଆମ୍ଭେମାନେ ଯଦି ସେମାନଙ୍କୁ ମାରିପକାଉଁ ତାହାହେଲେ ଅନାଡ଼ି ଲୋକଙ୍କ ହାତରେ ପଡ଼ି ଆମ୍ଭମାନଙ୍କର ଦୋହରା ମରଣ ହେବ, କାରଣ ଏହା ନିଶ୍ଚୟ ଜାଣିଥାଅ ଯେ ସବୁ କଂସେଇ ଯାକ ମଲେ ସୁଦ୍ଧା ମନୁଷ୍ୟମାନେ ଗୋରୁମାଂସ ନ ଖାଇ ରହିବେ ନାହିଁ ।"

ଗୋଟିଏ ବିପଦରୁ ଉଦ୍ଧାର ପାଇବାକୁ ଯାଇ ସମସ୍ତ ସମୟରେ ଆମ୍ଭେମାନେ ଆହୁରି ବଡ଼ ବିପଦକୁ ଡାକି ଆଣୁ ।

## ହରିଣ, ଗଧିଆ ଓ ମେଣ୍ଢା

ଗୋଟିଏ ହରିଣ ଗୋଟିଏ ମେଣ୍ଢାକୁ କିଛି ଗହମ ଧାର ମାଗିଲା ଓ କହିଲା ଗଧିଆ ମୋ ପାଇଁ ଜାମିନ୍ ହେବ । ମେଣ୍ଢା ମନରେ ସନ୍ଦେହ ହେବାରୁ ସେ ଧାର ନଦେଇ କହିଲା, "ଗଧିଆର ଅଭ୍ୟାସ ଯେ ସେ ଯାହା ସ୍ପର୍ଶିବ ଧରି ପଳାଇବ । ଆଉ ତୁମେ ମଧ୍ୟ ଦୌଡ଼ିଲେ ମୁଁ ତୁମକୁ ଗୋଡ଼ାଇ ପାରିବି ନାହିଁ । ତେବେ ସୁଝିବା ଦିନ ମୁଁ ତୁମମାନଙ୍କୁ କିପରି ପାଇବି ?

ଦୁଇଟା କଳା କନକ ମିଶି ଗୋଟାଏ ଧଳା କନକ ହୋଇ ନ ପାରେ କିମ୍ବା ଦୁଇଜଣ ଠକ ମିଳି ଜଣେ ସାଧୁଲୋକ ହୋଇ ନ ପାରେ ।

## ସିଂହ, ବ୍ରହ୍ମା ଓ ହାତୀ

ସିଂହ ବ୍ରହ୍ମାଙ୍କ ପାଖକୁ ଯାଇ ଆପତ୍ତିକରି କହିଲା, "ମୁଁ ଆକାରରେ ବଡ଼, ମୋର ବଳ ଖୁବ୍ ବେଶୀ ଓ ମୁଁ ଦେଖିବାକୁ ସୁନ୍ଦର । ମୋର ଦାନ୍ତ ଓ ନଖ ଖୁବ୍ ମଜବୁତ୍ ଓ ମୁଁ ପଶୁମାନଙ୍କର ରଜା । କିନ୍ତୁ ବଡ଼ ଲଜ୍ଜାର କଥା ଯେ ମୁଁ କୁକୁଡ଼ା ଡ଼ାକ ଶୁଣିଲେ ବଡ଼ ଭୟ ପାଏଁ ।" ବ୍ରହ୍ମା କହିଲେ, "ତୁ କାହିଁକି ବୃଥା ଆପତ୍ତି କରୁଛୁ ? ମୋର ନିକଟରେ ଯାହା ଭଲ ଗୁଣ ମୁଁ ସେ ସବୁ ତତେ ଦେଇଛି । ଆହ

କେବଳ ସେହି ଗୋଟାକ କଥା ଛଡ଼ା ତୋର ସାହସ କଛି ଊଣା ନୁହେ।" ସିଂହ ଏ କଥାରେ ବଡ଼ ଦୁଃଖିତ ହୋଇ କାନ୍ଦିବାକୁ ଲାଗିଲା ଓ ତାର ଡ଼ର ଆପଣ ଲାଗି ନିଜକୁ ଅନେକ ଧିକ୍କାର କରି ମରିଯିବା ପାଇଁ ଇଚ୍ଛା କଲା।

ଏହି ସମୟରେ ହାତୀ ଆସି ପହଞ୍ଚିଲା। ସେ ହାତ ଯୋଡ଼ି ବ୍ରହ୍ମାଙ୍କୁ କହିଲା, "ପ୍ରଭୋ, ମୋତେ ଆପଣ ପଶୁମାନଙ୍କ ମଧ୍ୟରେ ସର୍ବବୃହତ୍‌କାୟ ଓ ସର୍ବାଧିକ ବଳଶାଳୀ କରି ସୃଷ୍ଟି କରିଛନ୍ତି। କିନ୍ତୁ ଗୋଟିଏ ମଶା ସବୁବେଳେ ମୋ ମୁଣ୍ଡ ଉପରେ ବସି ମତେ କାମୁଡ଼ିବାରେ ଲାଗିଛି। ତା କାମୁଡ଼ାରେ ମୁଁ ଏତେ ଯନ୍ତ୍ରଣା ପାଉଛି ଯେ ମୁଁ ମରିଯିବାକୁ ଠିକ୍ କରିଛି।" ବ୍ରହ୍ମା ଏହା ଶୁଣି ହସି ହସି କହିଲେ ମହାବଳଶାଳୀ ହାତୀ ଯଦି ସାମାନ୍ୟ ମଶାକୁ ଡର ମରିବାକୁ ବୁଝେଁ, ମହାବିକ୍ରମୀ ସିଂହ ଯଦି ସାମାନ୍ୟ କୁକୁଡ଼ାକୁ ଏତେ ଭୟ କରେ ତେବେ ମୁଁ ନାଚାର ! ବଳବାନ୍ ଲୋକେ ଦୁର୍ବଳର ସାମାନ୍ୟ ସାମାନ୍ୟ ଆଘାତ ନ ସହି ପାରିଲେ ମୋ ସୃଷ୍ଟି କେବେ ରହି ପାରିବ ନାହିଁ।

ଏହା ଶୁଣି ହାତୀ ଓ ସିଂହ ମନେ ମନେ ଲଜ୍ଜିତ ହେଲେ। ସେମାନେ ବ୍ରହ୍ମାଙ୍କୁ ନମସ୍କାର କରି ନିଜ ନିଜ ସ୍ଥାନକୁ ଫେରି ଆସିଲେ।

## ସ୍ତ୍ରୀଲୋକ ଓ ତା'ର କୁକୁଡ଼ା

ଜଣେ ସ୍ତ୍ରୀଲୋକର ଗୋଟିଏ କୁକୁଡ଼ା ଥିଲା ଯେ ସେ ପ୍ରତିଦିନ ଗୋଟିଏ ଲେଖାଏଁ ଡ଼ିମ୍ବ ପାଉଥିଲା। ସ୍ତ୍ରୀଲୋକଟି ମନେ ମନେ ଭାବିଲା, କି ଉପାୟ କଲେ କୁକୁଡ଼ା ଦୁଇଟି କରି ଡ଼ିମ୍ବ ଦେବ। ଶେଷରେ ସେ ତାକୁ ଯାହା ଖାଇବାକୁ ଦେଉଥିଲା ତାର ଦୁଇଗୁଣ ଦେବାର ସ୍ଥିର କଲା। ସେହିଦିନଠାରୁ କୁକୁଡ଼ାଟି ଖୁବ୍ ମୋଟା ଓ ଚିକଣିଆ ହୋଇ ଆଉ ଜମା ଡ଼ିମ୍ବ ପାରିଲା ନାହିଁ।

ଅତିଲୋଭରୁ ମୂଳ ବୁଡେ।

## ଭରତଆପକ୍ଷୀ ଓ ତାର ଛୁଆ

ଗୋଟିଏ ଗହମ କ୍ଷେତରେ ଭରତିଆ ପକ୍ଷୀଟିଏ ବସା ବାନ୍ଧିଥାଏ। ତାର ଅଣ୍ଡା ଫୁଟି ଦୁଇଟି ଛୁଆ ବାହାରିଲେ। କ୍ରମେ ଛୁଆ ଦୁଇଟି ବଢ଼ି ବଡ ହେଲେ। ଡ଼େଣାରେ ବଳ ଆସିବାରୁ ଏଣେତେଣେ ଖଣ୍ଡି ଉଡ଼ା ଦେବାକୁ ଲାଗିଲେ।

ଏହି ସମୟରେ କ୍ଷେତର ଗହମ ପାଚି ଆସିଲା। କ୍ଷେତର ମାଲିକ କ୍ଷେତକୁ ଆସି ଦେଖିଲା ଏବଂ ସେହି ଗାଆଁର ଚାରି ଜଣେ ବନ୍ଧୁଙ୍କୁ ଡ଼ାକି କହିଲା, "ମୋ ଗହମ

ଯାକ କାଟି ନେଇ ମୋ ଘରେ ଦେଇ ଆସିବୁ"। ଏହା ଶୁଣିସାରି ଛୁଆ ଚଢ଼େଇରୁ ଗୋଟିଏ କହିଲା, "ମାଆଲୋ, ଚାଲ ଆମେ ଏଠୁ ପଳାଇବା । କାଲି ଗହମ କାଟିନେଲେ କେଜାଣି ଆମକୁ ମାରି ପକାଇବେ।" ମାଆ ଭରଡଆ କହିଲା "ପୁଅରେ ସେ ବେଳ ଏବେ ଆସିନାହିଁ । ଥୟ ଧର।" ଯେଉଁ ଲୋକ ଫସଲ କାଟିବା ପାଇଁ ତାର ବନ୍ଧୁବାନ୍ଧବଙ୍କ ଉପରେ ନିର୍ଭର କରେ, ଜାଣିବ ତାର ସେଥିରେ ବେଶି ଗରଜ ନାହିଁ ।"

କିଛିଦିନ ପରେ କ୍ଷେତର ମାଲିକ ଆଉ ଥରେ କ୍ଷେତକୁ ଆସି ଯେତେବେଳେ ଦେଖିଲା ଯେ, ଗହମ ସବୁ ବେଶି ପାଚି ତଳେ ଝଡ଼ି ପଡ଼ୁଛି, ସେ କହିଲା, "କାଲି ମୁଁ ମୋର ହଳିଆ ଓ ଆଉ କେତେଜଣ ଦାଣ୍ଡ ମୂଲିଆ ଆଣି ଗହମ କାଟି ପକାଇବି।" ଭରଡଆପକ୍ଷୀ ଏକଥା ଶୁଣି ତାର ଛୁଆମାନଙ୍କୁ କହିଲା, "ଏଥର ଆସି ଆମର ଯିବାର ସମୟ ହେଲା । ଫସଲ କାଟିବାକୁ ଏଥର ଲୋକଟିର ପ୍ରକୃତ ମନ ହେଲାଣି, ସେ ଆଉ ବନ୍ଧୁବାନ୍ଧବଙ୍କ ଉପରେ ନିର୍ଭର ନକରି ନିଜେ କାଟିବାକୁ ସ୍ଥିର କଲାଣି।"

ନିଜେ ନ କରି ପର ଉପରେ ନିର୍ଭର କଲେ କୌଣସି କାର୍ଯ୍ୟ ଭଲ ହୁଏ ନାହିଁ ।



# ପୂର୍ବାଭାସ

ବୀରବଲ ଜଣେ ଇତିହାସ ପ୍ରସିଦ୍ଧ ବ୍ୟକ୍ତି । ସେ ଆକବରଙ୍କ ଦରବାରର ଜଣେ ଉଜ୍ଜ୍ୱଳ ରତ୍ନ ଥିଲେ । ଆକବରଙ୍କ ଅନେକ ମହତ୍ ଗୁଣ ମଧ୍ୟରେ ଗୁଣୀର ଆଦର ତାଙ୍କ ଚରିତ୍ରର ବିଶେଷତ୍ୱ ଥିଲା । ସେଥିପାଇଁ ଅନେକ କବି, ପଣ୍ଡିତ, ରାଜନୀତିଜ୍ଞ, ଦାର୍ଶନିକ, ସଙ୍ଗୀତଜ୍ଞ ତାଙ୍କ ସଭାରେ ସ୍ଥାନ ପାଇଥିଲେ । ସେମାନଙ୍କ ମଧ୍ୟରେ ଆବୁଲଫଜଲ, ରାଜା ମାନସିଂହ, ଟୋଡରମଲ୍ଲ, ଫୈଜି, ତାନ୍‌ସେନ୍, ଖାନଖାନାନ, ବୀରବଲ, କବୀର ଓ ଦୋପିଆଜା ଏହି ନବରତ୍ନ ପ୍ରଧାନ ।

କିନ୍ତୁ ସମସ୍ତଙ୍କ ଠାରୁ ବୀରବଲ ଆକବରଙ୍କ ବିଶେଷ ସ୍ନେହ ଓ ଶ୍ରଦ୍ଧାର ପାତ୍ର ଥିଲେ । ବୀରବଲ ପଣ୍ଡିତ, କବି ଓ ରାଜନୀତିଜ୍ଞ ଥିଲେ । କିନ୍ତୁ ତାଙ୍କର ତୀକ୍ଷ୍ଣବୁଦ୍ଧି, କବି ପ୍ରତିଭା ଓ ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ଆକବର ବିଶେଷ ଭାବରେ ତାଙ୍କ ଅନୁରକ୍ତ ହୋଇଥିଲେ । କୌଣସି ରାଜନୈତିକ ସମସ୍ୟା ଉପସ୍ଥିତ ହେଲେ ସେ ବୀରବଲଙ୍କ ପରାମର୍ଶ ନେଉଥିଲେ ଓ ତାଙ୍କଠାରୁ ତାହାର ସହଜ ସମାଧାନ ପାଇ ପାରୁଥିଲେ । ଚିତ୍ତବିନୋଦନ ବିଷୟରେ ବୀରବଲ ଅଦ୍ୱିତୀୟ ଥିଲେ । ସେଥିପାଇଁ ଆକବର ବେଶୀ ସମୟ ତାଙ୍କ ସଙ୍ଗରେ କଟାଉଥିଲେ, କିନ୍ତୁ ସେ ସାଧାରଣ ବିଦୂଷକ ବା ଭଣ୍ଡ ପରି କେବଳ ରଙ୍ଗ-ତାମାସା, ଅଶ୍ଳୀଳ ଅଟ୍ଟହାସ, ମିଛ ତୋଷାମୋଦ ଇତ୍ୟାଦି ଦ୍ୱାରା ପ୍ରଭୁଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁନଥିଲେ । ତାଙ୍କର ବାକ୍‌ଚାତୁରୀ, ରଙ୍ଗରସ ଓ ପ୍ରତ୍ୟୁତ୍ପନ୍ନମତିତା ଅତି ଉଚ୍ଚ ଧରଣର ଥିଲା । ସେ ସବୁ ବିଶ୍ୱ-ସାହିତ୍ୟରେ ବହୁଭାବରେ ସ୍ଥାନ ପାଇଛି ।

ବୀରବଲଙ୍କ ଜନ୍ମସ୍ଥାନ ଓ ଜୀବନ ଚରିତ ବିଷୟରେ ଲୋକମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । କେହି କହନ୍ତି, ସେ କନୌଜର ଗୋଟିଏ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେ ପ୍ରଥମେ ଅମ୍ବରର ରାଜା ଭଗବାନ ଦାସଙ୍କର ରାଜକବି ଥିଲେ ଏବଂ ସେହି ଅମ୍ବରର ରାଜା ତାଙ୍କୁ ଆକବରଙ୍କୁ ଉପହାର ସ୍ୱରୂପ ଦେଇଥିଲେ । ଆଉ ଜଣେ କହନ୍ତି ଯେ ବୀରବଲ କାଲ୍‌ପୀ ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ ଓ ତାଙ୍କର ମୂଳ ନାମ ଥିଲା ମହେଶ ଦାସ ।

ଆକବରଙ୍କ ସଭାସଦ ଥିଲେ ମଧ୍ୟ ନିଜର ଅସାଧାରଣ ପ୍ରତିଭା ଯୋଗୁଁ ସେ ସମସ୍ତ ଭାରତରେ ଖ୍ୟାତି ଓ ପ୍ରତିପତ୍ତି ଲାଭ କରିଥିଲେ ।

ବୀରବଲଙ୍କ ବିଷୟରେ ଅନେକ କୌତୁକ କାହାଣୀ ବହୁ କାଳରୁ ଲୋକମୁଖରେ ଓ ପୁସ୍ତକମାନଙ୍କରେ ଭାରତର ସବୁ ଅଞ୍ଚଳରେ ପ୍ରଚଳିତ ହୋଇଆସୁଅଛି । ଅନେକ ସାହିତ୍ୟିକ ଗ୍ରନ୍ଥରେ ମଧ୍ୟ ଏ ସବୁର ଉଲ୍ଲେଖ ଦେଖାଯାଏ । ଏଥିରେ ସତ୍ୟ କେତେ, ଓ କଳ୍ପନା କେତେ ପାଠକମାନେ ବିଚାର କରିବେ । ସେହି ଗଳ୍ପରୁ କେତେଗୁଡ଼ିଏ ଏ କ୍ଷୁଦ୍ର ପୁସ୍ତକରେ ସନ୍ନିବେଶିତ ହେଲା । ବିଭିନ୍ନ ଗ୍ରନ୍ଥରୁ ଏଗୁଡ଼ିକ ସଙ୍କଳନ କରାଯାଇଛି । ବିଶେଷତଃ ଏମ୍. ଏସ୍. ପଟେଲ୍‌ଙ୍କ 'Witty Tales of Badsah & Birbal ପୁସ୍ତକଠାରେ ମୁଁ ବିଶେଷ ଋଣୀ ।

ଲେଖକ

# ସୂଚୀପତ୍ର





# ଈଶ୍ୱରଙ୍କ ଠାରୁ ବଡ଼

ଥରେ ଆକବର ସଭାରେ ବସି କୌତୁକରେ ପଚାରିଲେ, "ମୁଁ ବଡ଼ ନା ଈଶ୍ୱର ବଡ଼ ?"

ବୀରବଲ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ଆଜ୍ଞା, ନିଶ୍ଚୟ ଆପଣ ବଡ଼, କାରଣ ଆପଣ ଯାହା କରି ପାରିବେ ଈଶ୍ୱର ତାହା ପାରିବେ ନାହିଁ ।"

ବାଦ୍‌ସା ବିରକ୍ତ ହୋଇ କହିଲେ, "ତୁମେ କ'ଣ ପାଗଳ ! ଏପରି କିଛି କଣ ଥାଇପାରେ ଯାହା ମୁଁ କରିପାରିବି, ଅଥଚ ଭଗବାନ କରିପାରିବେ ନାହିଁ ?"

ବୀରବଲ କହିଲେ, "ନିଶ୍ଚୟ ଅଛି !"

ଜଣେ ସଭାସଦ କହିଲେ, "ତାହାହେଲେ ସେ କୌଣସି ଜଘନ୍ୟ କାର୍ଯ୍ୟ ହୋଇପାରେ ।"

ବୀରବଲ କହିଲେ, "ତେବେ କଣ କହୁଛ, ଆମ ବାଦସା ଜଘନ୍ୟ କାର୍ଯ୍ୟ କରନ୍ତି ?"

"ନା ନା ତାହା ନୁହେଁ । ମୁଁ ଈଶ୍ୱରଙ୍କ କଥା କହୁଥିଲି ।"

"ବାଦସା ବାଧା ଦେଇ କହିଲେ, "ଅଚ୍ଛା, ସେ କଥା ଥାଉ । ବୀରବଲ ତୁମେ କହିଲ ଦେଖି, ଈଶ୍ୱର କଣ କରି ନପାରନ୍ତି ?"

ବୀରବଲ ପଚାରିଲେ, "ହଜୁର, ଆପଣ ଦରକାର ହେଲେ ଜଣେ ଲୋକକୁ ତ ରାଜ୍ୟରୁ ବାହାର କରିଦେଇ ପାରନ୍ତି ?"

"ନିଶ୍ଚୟ, ଯଦି ଗୁରୁତର ଅପରାଧ ହୋଇଥାଏ, ମୁଁ ଦୋଷୀକୁ ରାଜ୍ୟରୁ ତଡ଼ି ଦେବାକୁ କୁଣ୍ଠିତ ହେବି ନାହିଁ ।"

"କିନ୍ତୁ ଈଶ୍ୱର ଇଚ୍ଛା କଲେ ମଧ୍ୟ ଏପରି ଦଣ୍ଡ ଦେଇପାରିବେ ନାହିଁ ।"

"କିପରି ? କାହିଁକି ନୁହେଁ ?"

"କାରଣ ଈଶ୍ୱର ହେଉଛନ୍ତି ସମସ୍ତ ବିଶ୍ୱର ରାଜା । ଏପରି କୌଣସି ସ୍ଥାନ ଜଗତରେ ନାହିଁ ଯାହାକି ତାଙ୍କର ରାଜ୍ୟ ନୁହେଁ । ତେବେ ସେ ଯଦି ଜଣେ ଲୋକକୁ ରାଜ୍ୟରୁ ତଡ଼ି ଦିଅନ୍ତି, ସେ ତାକୁ କେଉଁଠାକୁ ପଠାଇବେ ? ତାଙ୍କ ରାଜ୍ୟ ବାହାରେ

ତ ଆଉ ସ୍ଥାନ ନାହିଁ । ଅତଏବ ଜଣେ ଲୋକ ଯେତେ ଗୁରୁତର ଦୋଷ କଲେମଧ ଈଶ୍ୱର ତାକୁ ନିର୍ବାସନ ଦଣ୍ଡ ଦେଇ ପାରିବେ ନାହିଁ । କିନ୍ତୁ ଆପଣ ସେପରି ଦଣ୍ଡ ଦେଇପାରିବେ । ସେଥିପାଇଁ ମୁଁ କହେ, ଏପରି କେତେକ କାର୍ଯ୍ୟ ଅଛି, ଯାହା ଆପଣ କରିପାରିବେ, କିନ୍ତୁ ଈଶ୍ୱର କରି ପାରିବେ ନାହିଁ ।'

ଏ ଉତ୍ତରରେ ବାଦସା ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ଓ ସଭାସଦମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

## ପେଟୁ କିଏ ?

ଥରେ ଆକବର ତାଙ୍କ ବେଗମ୍‌ଙ୍କ ସାଙ୍ଗେ ଏକାଠି ବସି ଖଟ ଉପରେ ଆମ୍ବ ଖାଉଥିଲେ । ଆକବର ଅମ୍ବର ରସ ଚୁଚୁମି କରି ଖାଇ ସାରିଲା ପରେ ଟାକୁଆ ଓ ଚୋପାତକ ସବୁ ବେଗମଙ୍କ ପାଖରେ ରଖି ଦେଉଥାନ୍ତି । କିଛି ସମୟ ପରେ ବୀରବଲ ଆସି ସେଠାରେ ପହଞ୍ଚିଲେ । ସେ ବାଦସାଙ୍କ ଅନ୍ଦର ମହଲକୁ ଯେତେବେଳେ ଇଚ୍ଛା ଯାଇପାରୁଥିଲେ — ସେଥିରେ କିଛି ବାଧା ନଥିଲା ।

ବୀରବଲଙ୍କୁ ଦେଖି ବାଦସା ବେଗମଙ୍କୁ ଟିକିଏ ଥଟ୍ଟା କରିବାକୁ ଆରମ୍ଭ କଲେ । ସେ କହିଲେ, "ଦେଖୁଛ ବୀରବଲ, ବେଗମ୍ କେଡ଼େ ପେଟୁ । କେତେ ଟାକୁଆ ଓ ଚୋପା ତାଙ୍କ ପାଖରେ ଜମା ହେଲାଣି ।

ବେଗମ୍ ଏକଥାରେ ଅପ୍ରସ୍ତୁତ ହୋଇଗଲେ । ତାଙ୍କ ମୁହଁ ଟିକିଏ ମଳିନ ପଡ଼ିଗଲା । ବୀରବଲ ସାଙ୍ଗେ ସାଙ୍ଗେ ବେଗମ୍‌ଙ୍କ ପକ୍ଷ ନେଇ କହିଲେ, "ମନୁଷ୍ୟ ଯେପରି ଲୋକ ସାଙ୍ଗରେ ରହେ ସେହିପରି କାମ କରେ ।"

ବାଦସା କହିଲେ, "ତୁମେ କଣ କହୁଛ, ମୋ ସଂପର୍କରେ ଆସି ତାଙ୍କର ଏପରି ପେଟୁ ପଣିଆ ହୋଇଛି ?"

"ହଜୁର, ସ୍ତ୍ରୀ ସବୁବେଳେ ସ୍ୱାମୀର ପଦାଙ୍କ ଅନୁସରଣ କରେ ।"

"କିନ୍ତୁ ମୁଁ ତ ପେଟୁ ନୁହେଁ । ସବୁ ଟାକୁଆ ଓ ଚୋପା ତାଙ୍କରି ପାଖରେ ଅଛି । ମୋ ପାଖରେ କିଛି ନାହିଁ ।"

"ଅଜ୍ଞା, ମୁଁ ତ ସେହି କଥା କହୁଛୁ । ବେଗମ୍ ସାହେବା କେବଳ ଆମ୍ବର ରସତକ ଖାଇଛନ୍ତି, କିନ୍ତୁ ଆପଣ ତ ଟାକୁଆ ଓ ଚୋପାତକ ମଧ୍ୟ ଶେଷ କରି ଦେଇଛନ୍ତି ।"

ବାଦସା ଏ ଉତ୍ତରରେ ଚୁପ୍ ହୋଇଗଲେ । ବେଗମ୍ ଆନନ୍ଦରେ ଅଧୀର

ହୋଇ କହିଲେ, "ଖାଲି କଣ ସେତିକି ? ମୁଁ ନଥିଲେ ତ ସେ ଏ ଟାକୁଆ ମୁଣ୍ଡ ଗଦାକ ମଧ୍ୟ ଶେଷ କରି ଦେଇଥାନ୍ତେ ।'

## ଚୋର ଧରିବା କୌଶଳ

ଥରେ ଗୋଟିଏ ଜାହାଜରେ ଗୋଟାଏ ବଡ ଧରଣର ଚୋରି ହେଲା । ଜାହାଜର କପ୍ତାନ ଚୋରକୁ ଧରିବାକୁ ଅନେକ ଉପାୟ କଲେ । କିନ୍ତୁ ଚୋର ଧରି ପାରିଲେ ନାହିଁ । ଶେଷରେ ଯେଉଁ ଯେଉଁ ଲୋକଙ୍କୁ ସେ ସନ୍ଦେହ କଲେ ସେ ସମସ୍ତଙ୍କୁ ଆକବରଙ୍କ ପାଖରେ ହାଜର କରି ବିଗ୍ରର କରିବାକୁ କହିଲେ । ଆକବର ସବୁକଥା ଭଲକରି ଶୁଣିସାରି ଚୋର ବାଛିବା ଭାର ବୀରବଲଙ୍କ ଉପରେ ଦେଲେ ।

ଦୋଷୀକୁ ବାହାର କରିବାକୁ ବୀରବଲ ଗୋଟିଏ କୌଶଳ ପାଞ୍ଚିଲେ । ସେ ଗୁଡିଏ ଅଟା ମଗାଇ ନେଲେ ଓ ଯେଉଁ ଲୋକମାନଙ୍କୁ ସନ୍ଦେହ କରି ଅଣାଯାଇଥିଲା ସେ ସମସ୍ତଙ୍କ ହାତରେ ମୁଠାଏ ମୁଠାଏ ଅଟା ଦେଇ କହିଲେ, "ତୁମେମାନେ ଏହି ଅଟାକୁ ନିଜ ନିଜ ଛେପରେ ଓଦା କରି ଗୋଟିଏ ଗୋଟିଏ ପେଣ୍ଡୁଲା ତିଆରି କରିବ । ତୁମେମାନେ ଏହା କରି ସାରିଲା ପରେ ମୁଁ ମୋର ଦୈବୀଶକ୍ତି ବଳରେ ଚୋରକୁ ବାହାର କରିଦେବି ।"

"ସମସ୍ତେ ଛେପଦେଇ ଅଟାକୁ ଭିଜେଇବାକୁ ଲାଗିଲେ । କିନ୍ତୁ ବୀରବଲଙ୍କ କଥା ଶୁଣି ଜଣଙ୍କ ପାଟିରୁ ଛେପ ଶୁଖିଗଲା । ତା ପାଟିରୁ ଛେପ ବାହାରିଲା ନାହିଁ କି ସେ ଅଟା ଆଦୌ ଭିଜାଇ ପାରିଲା ନାହିଁ । ବୀରବଲ ତାକୁ ହିଁ ଚୋର ବୋଲି ଜାଣି ପାରିଲେ । ତାକୁ ପଗ୍ରରିବାରୁ ସେ ଚୋରି କଥା ମାନିଗଲା ଓ ଯେଉଁଠାରେ ଚୋରି ଜିନିଷ ସବୁ ରଖିଥିଲା ଦେଖାଇ ଦେଲା ।

ବାଦଶା ଚୋର ଧରିବାର ଏ ନୂତନ ଉପାୟ ଦେଖି ଭାରି ଖୁସି ହୋଇଗଲେ ଓ ବୀରବଲଙ୍କୁ ଉପଯୁକ୍ତ ପୁରସ୍କାର ଦେଲେ ।

## ପଣ୍ଡିତଙ୍କ ପରାଭବ

ଦିନେ ଆକବରଙ୍କ ଦରବାର ବସିଛି, ସଭାସଦମାନେ ସମସ୍ତେ ଅଛନ୍ତି, ସଙ୍ଗୀତଜ୍ଞମାନେ ସଙ୍ଗୀତ କରୁଛନ୍ତି । ଏପରି ସମୟରେ ଜଣେ ବିଦେଶୀ ପଣ୍ଡିତ ସେଠାରେ ଆସି ଉପସ୍ଥିତ ହେଲେ । ସେ କିଛି ସମୟ ବସି ସଭାସଦ୍‌ମାନଙ୍କର ଯୁକ୍ତିତର୍କ ଓ ସଙ୍ଗୀତ ଶୁଣି ସାରିଲା ପରେ ଠିଆ ହୋଇ କହିଲେ, "ହଜୁର, ଅନୁମତି ଦେଲେ ମୁଁ ସଭାସଦ ମାନଙ୍କୁ କେତୋଟି ପ୍ରଶ୍ନ କରିବି ।"

"ବାଦସା କହିଲେ, "କିଛି ଆପତ୍ତି ନାହିଁ । ଆପଣ ବିନା ସଙ୍କୋଚରେ ପ୍ରଶ୍ନ କରନ୍ତୁ ।"

ପଣ୍ଡିତ କହିଲେ, "ହଜୁରଙ୍କ ଜଣେ ସଭାସଦ ଗୋଟିଏ ମାତ୍ର ପ୍ରଶ୍ନର ଉତ୍ତର ଦେବେ । ଯଦି ସେ ପ୍ରଶ୍ନର ଠିକ୍ ଉତ୍ତର ଦେଇ ନ ପାରନ୍ତି ତେବେ ସେ ଅନ୍ୟ ପ୍ରଶ୍ନର ଉତ୍ତର ଦେଇ ପାରିବେ ନାହିଁ ।"

ବାଦସା ଏଥିରେ ମଞ୍ଜୁର ଦେବାରୁ ପଣ୍ଡିତେ ପଚାରିଲେ, "ଯୌବନ ସମୟରେ ମନୁଷ୍ୟ କଣ କରିବା ଉଚିତ ?" ଜଣେ ସଭାସଦ କହିଲେ, "ତାଙ୍କର ଭଲ କାର୍ଯ୍ୟ କରିବା ଉଚିତ ।" ପଣ୍ଡିତେ କହିଲେ, "ନା, ଏହା ଠିକ୍ ନୁହେଁ । ମନୁଷ୍ୟ ସବୁ ସମୟରେ ଭଲ କାର୍ଯ୍ୟ କରିବା ଉଚିତ । କେବଳ ଯୌବନ ସମୟରେ କାହିଁକି ?"

ଆଉ ଜଣେ ଉତ୍ତର ଦେଲେ, "ମନୁଷ୍ୟ ଈଶ୍ୱରଙ୍କ ଇଚ୍ଛା ଅନୁସାରେ ଚଳିବା ଉଚିତ ।"

"ପଣ୍ଡିତେ ଏ ଉତ୍ତରକୁ ଠିକ୍ ମନେ କଲେ ନାହିଁ । ଏହା ପରେ ଆଉ କୌଣସି ସଭାସଦ କିଛି ଉତ୍ତର ଦେଲେ ନାହିଁ । ଦିଲୀର ଦରବାରର ଧର୍ମ ପଡ଼ିଯିବ ବୋଲି ସମସ୍ତେ ନୀରବ ରହିଲେ । ସେଦିନ ଜଗନ୍ନାଥ ପଣ୍ଡିତ ସଭାରେ ଉପସ୍ଥିତ ନଥିଲେ । ତହୁଁ ପ୍ରଶ୍ନର ଉତ୍ତର ଦେବା ବୀରବଲଙ୍କ ଉପରେ ପଡ଼ିଲା ।

ବୀରବଲ ଠିଆ ହୋଇ କହିଲେ, "ପଣ୍ଡିତେ, ବୃଦ୍ଧ କାଳରେ ସୁଖ ପାଇବା ପାଇଁ ମନୁଷ୍ୟ ଯୌବନ ସମୟରେ ଉପାୟ ବାହାର କରିବା ଉଚିତ ।"

ପଣ୍ଡିତେ ଏ ଉତ୍ତରରେ ସନ୍ତୁଷ୍ଟ ହେଲେ । ଏହାପରେ ଉଭୟଙ୍କ ମଧ୍ୟରେ ବୁଦ୍ଧିର ଯୁଦ୍ଧ ଚାଲିଲା ।

ପଣ୍ଡିତ—"କେଉଁ ଜିନିଷ ବିଳମ୍ବରେ ଆସେ ଓ ଶୀଘ୍ର ଯାଏ ?

ବୀରବଲ—"ଦାନ୍ତ ସବୁ ଜନ୍ମପରେ ଆସନ୍ତି ଓ ମୃତ୍ୟୁ ପୂର୍ବରୁ ଯାଆନ୍ତି ।"

ପଣ୍ଡିତ—"କେଉଁ ଜିନିଷ ନଷ୍ଟ ହୋଇଯାଏ ନାହିଁ ?"

ବୀରବଲ—"ସୁନାମ ।"

ପଣ୍ଡିତ—"ଦୁଇଟି ଜିନିଷ କହ, ଯେଉଁମାନେ କି ଖୁବ୍ ପାଖେ ପାଖେ ଥାନ୍ତି, କିନ୍ତୁ କେବେ ମିଳିତ ହୋଇ ପାରନ୍ତି ନାହିଁ ।"

ବୀରବଲ—"ଆଖି ଦୁଇଟି । ସେମାନେ ଲଗାଲଗି ହୋଇ ଥାନ୍ତି, କିନ୍ତୁ ମଝିରେ ନାକ ଥିବାରୁ କେବେ ଏକାଠି ହୋଇ ପାରନ୍ତି ନାହିଁ ।"

ପଣ୍ଡିତ—"ସୁଖ ପାଇବାର ସୂତ୍ର କଣ ?"

ବୀରବଲ—"ସନ୍ତୋଷ ।"

ପଣ୍ଡିତ—"କେଉଁ ଜିନିଷ ଖୁବ୍ ମୂଲ୍ୟବାନ ଓ ପ୍ରଶଂସାର ଯୋଗ୍ୟ ?"

ବୀରବଲ—"ହାତ ତିଆରି ସୂକ୍ଷ୍ମ ଶିଳ୍ପ ।"

"ପଣ୍ଡିତ– ସବୁଠାରୁ ଭଲ ବ୍ୟବସାୟ କ'ଣ ?"

ବୀରବଲ—"କୃଷି, କାରଣ ଲୋକମାନଙ୍କର ଜୀବନ ରକ୍ଷା ଏହା ଦ୍ୱାରା ହୁଏ ।"

ପଣ୍ଡିତ—"ନିର୍ବୋଧ କିଏ ?"

ବୀରବଲ—"ଯେ ନିଜର ସ୍ୱାର୍ଥ ବା କେଉଁଥିରେ ନିଜର ଭଲହେବ ନ ବୁଝେ ।"

ପଣ୍ଡିତ—କଳି କଜିଆର ମୂଳ କାରଣ କଣ ?"

ବୀରବଲ—"ଅଣ୍ଠା ପରିହାସ ।"

ପଣ୍ଡିତ—"କେଉଁ ଜିନିଷ ଆଖପାଖ ଜିନିଷକୁ ନିଜ ପରି କରିଦିଏ ?"

ବୀରବଲ—"ଚନ୍ଦନ କାଠ ।"

ପଣ୍ଡିତ—"କେତେବେଳେ କାର୍ଯ୍ୟଟିଏ ନିର୍ବିଘ୍ନରେ ହୋଇପାରେ ?"

ବୀରବଲ—"ଯେତେବେଳେ ଆମେମାନେ କାହା ଉପରେ ନିର୍ଭର ନକରି ନିଜେ ନିଜେ ତାହା କରୁଁ ।"

ପଣ୍ଡିତ ବୀରବଲଙ୍କ ଉତ୍ତରରେ ସନ୍ତୁଷ୍ଟ ହେଲେ ଓ ନିଜର ପରାଜୟ ସ୍ୱୀକାର କଲେ । ଆକବର ଖୁବ୍ ଖୁସି ହୋଇ ଉଭୟଙ୍କୁ ପୁରସ୍କାର ଦେଲେ ।

## ଅଦ୍ଭୁତ ବଗ୍ରାଘର

ଥରେ ଆକବର ସାମାନ୍ୟ କାରଣରୁ ବୀରବଲଙ୍କ ଉପରେ ରାଗିଗଲେ ଓ ତାଙ୍କୁ ସଭାକୁ ଆସିବାକୁ ମନା କରିଦେଲେ । ବୀରବଲ ଦିଲ୍ଲୀ ଛାଡ଼ି ବହୁ ଦୂରରେ ଗୋଟିଏ ରାଜ୍ୟରେ ଆଶ୍ରୟ ନେଲେ । ସେ ଦେଶର ରାଜା ବୀରବଲଙ୍କ ବୁଦ୍ଧି ବୃତ୍ତି ଓ ଅନ୍ୟାନ୍ୟ ଗୁଣ ଜାଣି ପାରି ତାଙ୍କୁ ଆଦରରେ ରାଜଅତିଥି କରି ରଖିଲେ ।

କିଛିଦିନ ପରେ ଆକବର ବୀରବଲଙ୍କ ଅଭାବ ଅନୁଭବ କଲେ ଓ ନିଜର କାର୍ଯ୍ୟ ପାଇଁ ବଡ଼ ଅନୁତାପ କଲେ । ସେ ଚାରିଆଡ଼େ ଦୂତ ପଠାଇ ବୀରବଲଙ୍କର ଅନୁସନ୍ଧାନ କଲେ, କିନ୍ତୁ କେଉଁଠାରେ ତାଙ୍କର ପତ୍ତା ମିଳିଲା ନାହିଁ । ଶେଷରେ ବୀରବଲ କେଉଁଠାରେ ଅଛନ୍ତି ଜାଣିବା ପାଇଁ ସେ ଗୋଟିଏ କୌଶଳ କଲେ । ସେ ସବୁ ରାଜାମାନଙ୍କୁ ଚିଠିଦେଲେ, "ଆମ ନଦୀର ବିବାହର ଆସନ୍ତା ମାସ ପନ୍ଦର ତାରିଖକୁ ସ୍ଥିର ହୋଇଛି । ମୋର ଅନୁରୋଧ, ଆପଣ ଅନୁଗ୍ରହ କରି ବିବାହ ଉତ୍ସବରେ ଯୋଗ ଦେବା ପାଇଁ ଆପଣଙ୍କ ନଦୀମାନଙ୍କୁ ପଠାଇବେ ।"

"ଏପରି ଅଦ୍ଭୁତ ନିମନ୍ତ୍ରଣ ପାଇ କୌଣସି ରାଜା କିଛି ଉତ୍ତର ଦେଲେ ନାହିଁ । କିନ୍ତୁ ଯେଉଁ ରାଜ୍ୟରେ ବୀରବଲ ଥିଲେ, ସେଠିକାର ରାଜା ଲେଖିଲେ, "ଆମର ସବୁ ନଦୀ ବିବାହ ପାଇଁ ଆପଣଙ୍କ ରାଜ୍ୟକୁ ଯିବାକୁ ପ୍ରସ୍ତୁତ । ଆପଣ ଅନୁଗ୍ରହ କରି ଆପଣଙ୍କର କୂଅମାନଙ୍କୁ ପଠାଇଲେ ସେମାନେ ବାଟ ଦେଖାଇ ନେଇଯିବେ ।"

ଏ ପତ୍ର ପାଇ ଆକବର ବୁଝିପାରିଲେ ଯେ ବୀରବଲଙ୍କ ଛଡ଼ା ଅନ୍ୟ କେହି ଏପରି ବୁଦ୍ଧିର ସନ୍ଦତ ଉତ୍ତର ଦେଇ ପାରିବେ ନାହିଁ । ତେଣୁ ଆକବର ସେ ରାଜ୍ୟକୁ ସୈନ୍ୟ ସାମନ୍ତ ପଠାଇ ବୀରବଲଙ୍କୁ ଫେରି ଆସିବାକୁ ଅନୁରୋଧ କଲେ । ବୀରବଲ ଖୁସି ହୋଇ ଫେରି ଆସିଲେ । ସମସ୍ତେ ଆନନ୍ଦରେ ବୀରବଲଙ୍କୁ ଆଦର କରି ପାଛୋଟି ଆଣିଲେ । ରାଜ୍ୟରେ ଆନନ୍ଦ ଉତ୍ସବ ଲାଗିଗଲା ।

## ଅନ୍ଧ କିଏ ?

ଦିନେ ଆକବର ବୀରବଲଙ୍କୁ କହିଲେ, "ଗୋଟାଏ ହିସାବ କରି ଦେଖ, ପୃଥିବୀରେ ଅନ୍ଧଲୋକ କେତେ ଓ ଆଖିଥିବା ଲୋକ କେତେ ?"

ବୀରବଲ କହିଲେ, "ଭଲ କରି ବୁଝି ଦେଖିଲେ ଜଣା ପଡ଼ିବ ଯେ ଆଖିଥିବା ଲୋକଙ୍କ ଠାରୁ ଅନ୍ଧଲୋକଙ୍କ ସଂଖ୍ୟା ଢେର୍ ବେଶୀ ।"

ବାଦ୍‌ଶା ପଚାରିଲେ, "ତୁମେ କଣ ଏହାର ପ୍ରମାଣ ଦେଇପାରିବ ?"

ବୀରବଲ କହିଲେ, "ହଁ ଆଜ୍ଞା, ମୁଁ କାଲି ଏହାର ପ୍ରମାଣ ଦେବି ।"

ତହିଁ ପରଦିନ ବୀରବଲ ଗୋଟିଏ ଖଟିଆର କାଠଫର୍ମା ଓ କିଛି ସୁତୁଲି ନେଇ ଉଆସରେ ପହଞ୍ଚିଲେ । ସେ ବାଦ୍‌ଶାଙ୍କୁ କହିଲେ, ଆପଣ ମୋ ସାଙ୍ଗେ ନଦୀ କୂଳକୁ ଆସନ୍ତୁ, ମୁଁ ଆପଣଙ୍କୁ ଅନେକ ଅନ୍ଧ ଲୋକ ଦେଖାଇ ଦେବି ।"

ନଦୀ କୂଳରେ ପହଞ୍ଚି ବୀରବଲ ଖଟିଆକୁ ତଳେ ଥୋଇ ଦେଇ ସେଥିରେ ସୁତୁଲି ସବୁ ଗୁନ୍ଥିବାକୁ ଲାଗିଲେ । ତାଙ୍କୁ ଏପରି କରିବାର ଦେଖି ବାଦ୍‌ସା ଆଶ୍ଚର୍ଯ୍ୟ ହୋଇଗଲେ ଓ ଅଧୈର୍ଯ୍ୟ ହୋଇ ପଚାରିଲେ, "କହୋ, ଏହବୁ କଣ କରୁଛ ?"

ବୀରବଲ ସାଙ୍ଗରେ ଜଣେ କରାନ ନେଇଥିଲେ । ସେ ତାଙ୍କୁ କହିଲେ, "ଅନ୍ଧମାନଙ୍କ ତାଲିକାର ପ୍ରଥମରେ ବାଦ୍‌ସାଙ୍କ ନାମ ଲେଖ ।" କରାନ ସେହିପରି ଲେଖିଲେ ।

କ୍ରମେ କ୍ରମେ ଅନେକ ରଜା, ଜମିଦାର, ସରଦାର, ବ୍ୟବସାୟୀ ଓ ଅନ୍ୟାନ୍ୟ ଭଦ୍ରଲୋକ ସେଠାରେ ରୁଣ୍ଡ ହେଲେ । ସମସ୍ତେ ବୀରବଲଙ୍କୁ ସେହିପରି ପ୍ରଶ୍ନ କଲେ । କିଏ କହିଲା, "କହୋ କଣ ହେଉଛି କି ?" କିଏ କହିଲା, "କଣ ଶୋଇବାକୁ ଏ ଖଟ ତିଆରି କରୁଛ କି ?" ଯେଉଁମାନେ ଏପରି କହିଲେ, ସେମାନଙ୍କର ନାମ ଅନ୍ଧ ତାଲିକାଭୁକ୍ତ ହେଲା । ଯେଉଁମାନେ କିଛି ନକହି କେବଳ ଦେଖିବାକୁ ଲାଗିଲେ, ସେମାନଙ୍କ ନାମ ଆଖିଥିବା ଲୋକଙ୍କ ତାଲିକାରେ ଲେଖାଗଲା । ପ୍ରାୟ ଘଣ୍ଟାଏ ପରେ ଦେଖାଗଲା, ପାଞ୍ଚଶ ଲୋକଙ୍କ ନାମ ଅନ୍ଧ ତାଲିକାରେ ଓ ଶହେ ଲୋକଙ୍କ ନାମ ଆଖିଥିବା ଲୋକଙ୍କ ତାଲିକାରେ ଲେଖା ହୋଇଛି ।

ଶେଷରେ ବୀରବଲ ଦୁଇଟି ତାଲିକା ବାଦ୍‌ସାଙ୍କ ହାତକୁ ବଢ଼ାଇ ଦେଲେ । ବାଦ୍‌ସା ନିଜ ନାମ ଅନ୍ଧ ତାଲିକାର ପ୍ରଥମରେ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ ମୋତେ ଅନ୍ଧ ବୋଲି କାହିଁକି ଲେଖିଛ ?"

ବୀରବଲ କହିଲେ, "ହଜୁର, ମୁଁ ଯେତେବେଳେ କାର୍ଯ୍ୟ ଆରମ୍ଭ କଲି, ଆପଣ ନିଜେ ଦେଖିଲେ ମୁଁ କଣ କରୁଛି, ତଥାପି ମୁଁ କଣ କରୁଛି ବୋଲି ପଚାରିଲେ । ଏହା କଣ ଅନ୍ଧର ଲକ୍ଷଣ ନୁହେଁ ?" ତାଲିକାକୁ ଆପଣ ଦେଖନ୍ତୁ, ଅନ୍ଧଙ୍କ ସଂଖ୍ୟା ଆଖିଥିବା ଲୋକଙ୍କ ସଂଖ୍ୟାର ପାଞ୍ଚଗୁଣ ?"

ବାଦ୍‌ସା ଓ ଆଉ ସମସ୍ତେ ବୀରବଲଙ୍କ ବୁଦ୍ଧିର ବହୁତ ପ୍ରଶଂସା କଲେ ।

## ହାତ ପାପୁଲି ବାଳ

ଥରେ ରାଜକାର୍ଯ୍ୟ ଶେଷ କରି ବାଦସା ଓ ବୀରବଲ ଏକାଠି ବସି ଖୁସି ଗପ କରୁଥିଲେ । ବାଦସା ହଠାତ୍ ବୀରବଲଙ୍କୁ ପଚାରିଲେ, "ବୀରବଲ, ମୋ ହାତ ପାପୁଲିରେ କାହିଁକି ବାଳ ନାହିଁ ?

ବୀରବଲ ସାଙ୍ଗେ ସାଙ୍ଗେ କହିଲେ, "ଆଜ୍ଞା । ଏଥିରେ ଆଶ୍ଚର୍ଯ୍ୟର କଥା କଣ ଅଛି ? ସାଧୁ ପଣ୍ଡିତ ଧନ ଦୁଃଖୀଙ୍କୁ ଦାନ ଦେବାରେ ସବୁବେଳେ ଘଷି ହୋଇ ବାଳସବୁ ଉଠିଯାଇଛି, ଆଉ ଉଠିବାର ସୁବିଧା ପାଉନାହିଁ ।"

ଆକ୍‌ବର ଏଥିରେ ସନ୍ତୁଷ୍ଟ ନହୋଇ ପଚାରିଲେ, "ତେବେ ତୁମ ହାତ ପାପୁଲିରେ କାହିଁକି ବାଳ ନାହିଁ ?"

ବୀରବଲ ଉତ୍ତର କଲେ, "ହଜୁର, ମୁଁ ମଧ୍ୟ ସେହିପରି ସବୁବେଳେ ଆପଣଙ୍କ ଠାରୁ ଦାନ ନେଇ ନେଇ ମୋର ହାତ ପାପୁଲିର ବାଳ କ୍ଷୟ ହୋଇ ଯାଇଛି ।"

ଆକ୍‌ବର କିଛିକ୍ଷଣ ଚିନ୍ତାକରି ପୁଣି ପଚାରିଲେ, "ଆଚ୍ଛା, ଅନ୍ୟାନ୍ୟ ସଭାସଦମାନଙ୍କ ହାତରେ ତ ବାଳ ନାହିଁ । ତାର କାରଣ କଣ ?"

ବୀରବଲ କହିଲେ, "ଏହାର ମଧ୍ୟ କାରଣ ଅଛି । ଆପଣ ଯେତେବେଳେ ମତେ ବା ଅନ୍ୟମାନଙ୍କୁ ଦାନ ଦିଅନ୍ତି, ସେମାନେ ତାହା ଆଦୌ ସହି ପାରନ୍ତି ନାହିଁ । ସେମାନଙ୍କ ମନରେ ଏତେ ହିଂସା ହୁଏ ଯେ, ସେମାନେ ଦୁଇ ହାତକୁ ଘଷି ପକାନ୍ତି । ଏଥିରେ ଆଉ ହାତ ପାପୁଲିରେ ବାଳ ରହିବ କିପରି ?"

ବାଦ୍‌ସା ଏ ଉତ୍ତରରେ ବଡ଼ କୌତୁକ ଅନୁଭବ କଲେ । ସଭାସଦମାନେ ଲଜ୍ଜାରେ ମୁହଁ ତଳକୁ ପୋତି ରହିଲେ ।

## ପ୍ରିୟତମ ଜିନିଷ

ଥରେ ଆକ୍‌ବର କୌଣସି କାରଣରୁ ତାଙ୍କ ବେଗମ୍‌ଙ୍କ ଉପରେ ଅତ୍ୟନ୍ତ ବିରକ୍ତ ହୋଇ ହୁକୁମ ଦେଲେ, "ତୁମେ ଏହିକ୍ଷଣି ଏ ରାଜପ୍ରାସାଦ ଛାଡ଼ି ତୁମ ବାପ-ଘରକୁ ଚାଲିଯାଅ ।"

ବେଗମ କାନ୍ଦି କାନ୍ଦି ବାଦ୍‌ସାଙ୍କୁ କ୍ଷମା ମାଗିଲେ, କିନ୍ତୁ କିଛି ଫଳ ହେଲା ନାହିଁ । ବାଦସାଙ୍କ ହୁକୁମ ଅମାନ୍ୟ କରିବାକୁ କାହାର କ୍ଷମତା ନାହିଁ—ବେଗମଙ୍କର ମଧ୍ୟ ନାହିଁ । କିଛି ଉପାୟ ନ ଦେଖି ବେଗମ ମନ କଷ୍ଟରେ ବୀରବଲଙ୍କୁ ଡକାଇ ପଠାଇଲେ । ସବୁକଥା ଶୁଣିସାରି ବୀରବଲ ବେଗମଙ୍କୁ ଚୁପ୍‌ଚାପ୍ କରି ଗୋଟିଏ ଉପାୟ କହିଦେଇ ସେଠାରୁ ଚାଲିଗଲେ । ବେଗମ ଚାକରମାନଙ୍କୁ ଜିନିଷପତ୍ର ବାନ୍ଧିବାକୁ କହିଦେଇ ବାଦସାଙ୍କ ପାଖକୁ ବିଦାୟ ନେବାକୁ ଗଲେ । ଏଥି ମଧ୍ୟରେ ବେଗମ ଏକଗ୍ଲାସ ସରବତ ତିଆରି କରି ତହିଁରେ ଗୋଟିଏ ନିଦ ଔଷଧ ମିଶାଇ ଦେଲେ ।

ବାଦସାଙ୍କ ପାଖକୁ ଯାଇ ବେଗମ ଆଉ ଥରେ କ୍ଷମା ପ୍ରାର୍ଥନା କଲେ । ବାଦ୍‌ସା ଦୃଢ଼ ଭାବରେ କହିଲେ, ମୋର ହୁକୁମ ବଦଳିବ ନାହିଁ । କେବଳ ମୁଁ ତୁମକୁ ଅନୁମତି ଦେଉଛି ଯେ ତୁମେ ଯେଉଁ ଜିନିଷ ଖୁବ୍ ଭଲ ପାଅ ତାକୁ ସାଙ୍ଗରେ ନେଇଯାଇ ପାରିବ ।

ବେଗମ ଅତି ଦୁଃଖରେ କହିଲେ, "ହୁକୁମ ଯଦି ବଦଳିବ ନାହିଁ, ବିଦାୟ ବେଳେ ମୋର ଗୋଟିଏ ପ୍ରାର୍ଥନା ରକ୍ଷା କରନ୍ତୁ । ମୋର ଆଉ କେବେ ଭାଗ୍ୟରେ ଘଟିବ କି ନାହିଁ ମୁଁ ଜାଣେନା, ସେଥିପାଇଁ ମୋର ଅନୁରୋଧ ଯେ, ମୁଁ ହାତରେ ଏକଗ୍ଲାସ ସରବତ କରିଦେବି, ଆପଣ ତାକୁ ପାନ କରନ୍ତୁ । ତାହାହେଲେ ମୁଁ କୃତାର୍ଥ ହେବି । ଏହି ସାମାନ୍ୟ ଅନୁଗ୍ରହ କଣ ମୁଁ ପାଇ ପାରିବି ନାହିଁ ?" ବାଦସା ବେଗମଙ୍କର ପ୍ରାର୍ଥନା ମଞ୍ଜୁର କଲେ । ବେଗମ ସରବତ ଆଣି ଦେଲେ ଓ ବାଦସା ସାଙ୍ଗେ ସାଙ୍ଗେ ତାକୁ ପିଇ ଦେଲେ । ଅଳ୍ପ ସମୟ ମଧ୍ୟରେ ଔଷଧର କାର୍ଯ୍ୟ ଆରମ୍ଭ ହେଲା । ବାଦସା ଗାଢ଼ ନିଦରେ ଶୋଇ ପଡ଼ିଲେ, ତାଙ୍କର ଚେତା ରହିଲା ନାହିଁ ।

ବେଗମ ପୂର୍ବରୁ ସବୁ ଉପାୟ ଠିକ୍ କରି ରଖିଥିଲେ । ତାଙ୍କ ହୁକୁମରେ ବାଦସାଙ୍କୁ ଗୋଟିଏ ସବାରି ଭିତରକୁ ନିଆଗଲା । ସେ ନିଜେ ଆଉ ଗୋଟିଏ ସବାରିରେ ବସିଲେ । ସନ୍ଧ୍ୟା ସମୟରେ ବେଗମ୍ ବାଦସାଙ୍କୁ ନେଇ ତାଙ୍କ ବାପ ଘରେ ପହଞ୍ଚିଲେ । ସେ ପର୍ଯ୍ୟନ୍ତ ବାଦସା ସେହିପରି ଅଚେତନ ଅବସ୍ଥାରେ ଥାଆନ୍ତି । ତାଙ୍କୁ ଗୋଟିଏ ବହୁମୂଲ୍ୟ ପଲଙ୍କରେ ନେଇ ଶୁଆଇ ଦିଆଗଲା ।

କିଛି ସମୟ ପରେ ଔଷଧର ବଳ କମିଗଲା । ବାଦସାଙ୍କର ନିଦ ଭାଙ୍ଗିଲା । ସେ ପଲଙ୍କରେ ବସି ଚାରି ଆଡ଼କୁ ଅନାଇ କହିଲେ, "ଇଏ କଣ ? ମୁଁ କଣ ସ୍ୱପ୍ନ ଦେଖୁଛି ନା ଆଉ କେଉଁଠାକୁ ଚାଲି ଆସିଲି ?" ଏହି ସମୟରେ ବେଗମ ଦାନ୍ତଘଷା ଓ ଗାଧୁଆ ସାମଗ୍ରୀ ସବୁ ନେଇ ସେଠାରେ ପହଞ୍ଚିଲେ । ତାଙ୍କୁ ଦେଖି ବାଦସା ପଚାରିଲେ "ମୁଁ କଣ ସ୍ୱପ୍ନ ଦେଖୁଛି ନା ଜାଗ୍ରତ ଅଛି ?"

ବେଗମ କହିଲେ, "ନା ମହାରାଜ, ଆପଣ ପୂରା ଜାଗ୍ରତ ଅଛନ୍ତି । ଆପଣ ନିତ୍ୟକର୍ମ ଶେଷ କରି ପ୍ରାର୍ଥନା କରିବାକୁ ଯାଆନ୍ତୁ ।"

ବାଦସା କିଛି ବୁଝି ନ ପାରି କହିଲେ, "ଏତ ଆମର ନିଆସ ନୁହେଁ । ଶୀଘ୍ର କହ ଆମେ କେଉଁଠାରେ ?"

ବେଗମ କହିଲେ, "ମହାରାଜ, ଏ ମୋର ବାପାଙ୍କ ନିଆସ । ଆପଣଙ୍କ ଆଦେଶ ଅନୁସାରେ ମୁଁ ଏଠାକୁ ଆସିଛି ।"

"କିନ୍ତୁ ମୁଁ ଏଠାକୁ କିପରି ଆସିଲି ?"

"ମହାରାଜ, ଆପଣ ମତେ ଅନୁମତି ଦେଇଥିଲେ ଯେ, ମୁଁ ଯେଉଁ ଜନିଷ ସବୁଠାରୁ ଭଲପାଏଁ, ତାକୁ ସାଙ୍ଗରେ ନେଇ ଆସି ପାରିବ । ଆପଙ୍କେ ଅପେକ୍ଷା ମୁଁ କେଉଁ ଜନିଷ ବେଶୀ ଭଲ ପାଇପାରେ ? ସେଥିପାଇଁ ମୁଁ ଆପଙ୍କୁ ସାଙ୍ଗରେ ଆଣିଛି ।"

ବେଗମଙ୍କର କୌଶଳରେ ବାଦସା ଖୁବ୍ ଖୁସି ହେଲେ ଓ ତାଙ୍କର ଅଗାଧ ସ୍ନେହ ଦେଖି ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ଶ୍ୱଶୁରଙ୍କ ଘରେ ବାଦସା କେତେଦିନ ରହି ବେଗମଙ୍କ ସହିତ ପୁଣି ଦିଲ୍ଲୀ ଫେରି ଆସିଲେ । କିଛିଦିନ ପରେ ବେଗମ ତାଙ୍କୁ କହିଲେ ଯେ ବୀରବଲ ତାଙ୍କୁ ଏ ଉପାୟ ଶିଖାଇ ଦେଇଥିଲେ ।

ବାଦସା ଓ ବେଗମ ଉଭୟେ ବୀରବଲଙ୍କୁ ପ୍ରଚୁର ଧନରତ୍ନ ଦେଇ ଅନେକ ସମ୍ମାନ ଦେଖାଇଲେ ।

## ପୃଥିବୀର କେନ୍ଦ୍ର

ଦିନେ ଆକ୍‌ବର ବେଗମ୍‌ଙ୍କୁ କହିଲେ, "ଆପଣ ତ ମନେ କରନ୍ତି ଯେ, ବୀରବଲ ଅତ୍ୟନ୍ତ ବୁଦ୍ଧିମାନ । ମୁଁ ତାଙ୍କର ବୁଦ୍ଧି ପରୀକ୍ଷା କରିବାକୁ ଚାହେଁ । ସେ ଯଦି ଠିକ୍ ଉତ୍ତର ଦିଅନ୍ତି ମୁଁ ତାଙ୍କୁ ଉପଯୁକ୍ତ ପୁରସ୍କାର ଦେବି, ନହେଲେ ତାଙ୍କୁ ରାଜ୍ୟରୁ ବାହାର କରି ଦିଆଯିବ ।"

ବାଦସା ବୀରବଲଙ୍କୁ ଡକାଇ ପଠାଇଲେ । ବେଗମ ବାଦସାଙ୍କୁ କହିଲେ, "ମୋର ପ୍ରଶ୍ନ ହେଉଛି, ପୃଥିବୀର କେନ୍ଦ୍ର କେଉଁଠାରେ ?"

ବାଦସା ପ୍ରଶ୍ନଟି ବୀରବଲଙ୍କୁ ପଚାରିଲେ, ବୀରବଲ ସାଙ୍ଗେ ସାଙ୍ଗେ ଉତ୍ତର କଲେ, "ହଜୁର, ଆପଣଙ୍କ ଦରବାର ହେଉଛି ପୃଥିବୀର କେନ୍ଦ୍ର ।"

ବାଦ୍‌ସା କହିଲେ, "ଏହାର ପ୍ରମାଣ କଣ ?"

ବୀରବଲ କହିଲେ, " ଆପଣ ପୃଥିବୀକୁ ମାପ କରାଇ ନେଲେ ମୋର କଥା ଠିକ୍ କି ନା ବୁଝି ପାରିବେ । ଆପଣଙ୍କ ବାପ୍ ରାଜଧାନୀ ହେଉଛି ଦିଲ୍ଲୀ । ଏଠାକୁ ହଜାର ହଜାର ମାଇଲ ଦୂରରୁ ପଣ୍ଡିତ, ବଣିକ, ଧନୀମାନୀ, ଦୁଃଖୀ ଦରିଦ୍ର ସମସ୍ତେ ଆସୁଛନ୍ତି । ପୁଣି ଆପଣଙ୍କ ଦରବାର ହେଉଛି ପୃଥିବୀର କେନ୍ଦ୍ର । ଆଉ ପୁଣି କେନ୍ଦ୍ର କେଉଁଠାରେ ଥାଇପାରେ ?"

ଏ ଉତ୍ତରରେ ବେଗମ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ବୀରବଲଙ୍କୁ ଯଥେଷ୍ଟ ପୁରସ୍କାର ଦେଲେ । ବେଗମ ବୁଝି ପାରିଲେ ଯେ ବୀରବଲଙ୍କୁ ପରାସ୍ତ କରିବା ସମ୍ଭବ ନୁହେଁ ।

## କିଏ ଜିତିବ ?

ଥରେ ଆକ୍‌ବର ଯୁଦ୍ଧ କ୍ଷେତ୍ରକୁ ବାହାରିଲା ବେଳେ ବୀରବଲ ପାଇଁ ପହଞ୍ଚିଲେ । ବାଦଶା ପଚାରିଲେ, "ବୀରବଲ, କହିଲ ଭଲା, ମୁଁ ଯୁଦ୍ଧରେ ଜିତିବି ନା ହାରିବି ?"

ବୀରବଲ କହିଲେ, "ମୁଁ ଯୁଦ୍ଧଭୂମିରେ ଏହାର ଉତ୍ତର ଦେବି ।"

ଯୁଦ୍ଧ ଭୂମିରେ ପହଞ୍ଚିଲା ପରେ ବୀରବଲ କହିଲେ, "ଆପଣଙ୍କ ଶତ୍ରୁ ରାଜା ଯେଉଁ ହାତୀ ଉପରେ ଚଢ଼ିଛନ୍ତି ସେ ଗୋଟିଏ ଅଲକ୍ଷଣା ହାତୀ । ସେ ତା'ର ମୁଣ୍ଡ ଉପରକୁ ଧୂଳି ପକାଉଛି । ମାତ୍ର ଆପଣଙ୍କ ଘୋଡ଼ା ବଡ଼ ଲକ୍ଷଣବନ୍ତ । ତା'ଠାରେ ମୁଁ ଅନେକ ଭଲ ଲକ୍ଷଣ ଦେଖି ପାରୁଛି ।"

ସେଦିନ ଯୁଦ୍ଧରେ ଆକବର ଜୟଲାଭ କଲେ ଓ ଶତ୍ରୁ ରାଜା ନିହତ ହେଲେ । ଆକବର ଖୁସି ହୋଇ ବୀରବଲଙ୍କୁ ମୂଲ୍ୟବାନ୍ ଉପହାର ଦେଲେ ।

## ବୁଦ୍ଧି ସାଗର

ବୀରବଲଙ୍କର ଅସାଧାରଣ ବୁଦ୍ଧି କଥା ଲୋକମୁଖରୁ ଶୁଣି ପାରସ୍ୟର ସାହା (ବାଦଶା) ବୀରବଲଙ୍କୁ ଆଗ୍ରହରେ ତାଙ୍କ ପାଖକୁ ପଠାଇବାକୁ ଆକବରଙ୍କୁ ଅନୁରୋଧ କରି ପତ୍ର ଦେଲେ । ଆକବର ଖୁସି ହୋଇ ଖୁବ୍ ଆଡ଼ମ୍ବରରେ ବୀରବଲଙ୍କୁ ପାରସ୍ୟକୁ ପଠାଇଲେ । ପାରସ୍ୟ ରାଜଧାନୀରେ ପହଞ୍ଚି ବୀରବଲ ତାଙ୍କର ଆସିବା ଖବର ଦୂତ ହାତରେ ପଠାଇଦେଲେ ।

ସାହା ବୀରବଲଙ୍କ ବୁଦ୍ଧି ପରୀକ୍ଷା ନିମନ୍ତେ ତାଙ୍କର ସବୁ ଚାକରଙ୍କୁ ଅବିକଳ ତାଙ୍କରି ପୋଷାକ ପରି ପୋଷାକ ପିନ୍ଧିବାକୁ ଆଦେଶ ଦେଲେ ଓ ସମସ୍ତଙ୍କୁ ସମାନ ଆସନରେ ବସିବାର ବ୍ୟବସ୍ଥା କରାଇଲେ । ହେଲେ ଢ଼ୋଇ ସଭାରେ ଆସି ସମସ୍ତେ ବସିଲେ । କିଏ ସାହା ଚୋଳି ଚହ୍ନିବାର କଷ୍ଟକର ହେଲା । ଏହାପରେ ବୀରବଲଙ୍କୁ ସଭାକୁ ଡ଼କାଗଲା । ସଭାରେ ପହଞ୍ଚିଲା ମାତ୍ରେ ସେ ଜାଣି ପାରିଲେ ଯେ ତାଙ୍କର ବୁଦ୍ଧି ପରୀକ୍ଷା ନିମନ୍ତେ ଗୋଟାଏ କୌଶଳ କରାଯାଇଛି । ବୀରବଲ ଟିକିଏ ରହିଯାଇ ଚାରିଆଡ଼କୁ ଥରେ ତୀକ୍ଷ୍ଣ ଦୃଷ୍ଟିରେ ଅନାଇଗଲେ ଓ ସାହାଙ୍କ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଲେ । କିଛି ଦୂରରେ ରହି ସେ ରାଜୋଚିତ ସମ୍ମାନର ସହିତ ସାହାଙ୍କୁ ସଲାମ୍ ଦେଇ ଠିଆ ହୋଇ ରହିଲେ ।

ସାହା ଏହା ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ ଓ ବୀରବଲଙ୍କୁ ଆଦରର

ସହିତ ଅଭ୍ୟର୍ଥନା କରି ପାଖରେ ବସାଇଲେ । ସେ ତହୁଁ ବୀରବଲଙ୍କୁ ପଚାରିଲେ, “ଆପଣ ମତେ ଚିହ୍ନି ପାରିଲେ କିପରି ?”

ବୀରବଲ କହିଲେ, “ହଜୁର, ମୁଁ ଦେଖି ପାରିଲି ଯେ, ସମସ୍ତଙ୍କ ଦୃଷ୍ଟି ଆପଣଙ୍କ ଉପରେ ରହିଛି, କିନ୍ତୁ ଆପଣ ଜଣେ କାହା ଉପରେ ଦୃଷ୍ଟି ନଦେଇ ସମସ୍ତଙ୍କୁ ସମାନ ଭାବରେ ଚାହିଁ ରହିଛନ୍ତି ।”

ଏ ଉତ୍ତରରେ ସାହା ଏତେଦୂର ଖୁସି ହୋଇଗଲେ ଯେ ସେ ତତ୍‌କ୍ଷଣାତ ତାଙ୍କ ରାଜ୍ୟର ସର୍ବଶ୍ରେଷ୍ଠ “ବୁଦ୍ଧି ସାଗର” ଉପାଧି ତାଙ୍କୁ ପ୍ରଦାନ କଲେ । ବୀରବଲ କିଛିଦିନ ସେଠାରେ ରହି ସାହାଙ୍କୁ ଅନେକ ବୁଦ୍ଧିର ପରିଚୟ ଦେଇଥିଲେ । ସାହା ତାଙ୍କ ପାଇଁ ରାଜ୍ୟରେ ଅନେକ ଭୋଜି ଓ ଉତ୍ସବ ଆୟୋଜନ କରିଥିଲେ । ସେ ଯେତେବେଳେ ଭାରତକୁ ଫେରି ଆସିଲେ ସାହା ତାଙ୍କୁ ଅନେକ ଅମୂଲ୍ୟ ଉପହାର ଦେଇ ବିଦାୟ ଦେଇଥିଲେ ।

## ପଞ୍ଚାୟେତ୍

ଦିନେ ଆକ୍‌ବର ଓ ବୀରବଲ ବସି ନାନା ବିଷୟରେ କଥାବାର୍ତ୍ତା କରୁଥିଲେ । ବାଦ୍‌ସାଙ୍କ ମନ ଖୁସି ଥିଲା । ବୀରବଲ ହଠାତ୍ କହିଲେ, “ହଜୁର, ମୁଁ ଗୋଟିଏ ଅନୁଗ୍ରହ ଭିକ୍ଷା କରୁଛି, ମୁଁ ଯଦି କେବେ କିଛି ଅପରାଧ କରେ, ମୋର ଅନୁରୋଧ ଯେ ପଞ୍ଚାୟେତ୍ ବା ଯେଉଁମାନେ ମୋର ବିଚାର କରିବେ, ମୁଁ ସେମାନଙ୍କୁ ବାଛିବି ।” ବାଦସା ଏଥିରେ ରାଜି ହୋଇଗଲେ ।

ଅନେକ ଦିନ ପରେ ବୀରବଲ ଜାଣିଶୁଣି ଗୋଟିଏ ଅପରାଧ କଲେ । ବାଦସା ତାଙ୍କୁ ଦଣ୍ଡ ଦେବାର ସ୍ଥିର କଲେ । ବୀରବଲ ଦେଖିଲେ, ଏଥିରେ ଅନ୍ତତଃ ଦଶହଜାର ଟଙ୍କା ଜରିମାନା ହେବ । ସେ ବାଦସାଙ୍କୁ ତାଙ୍କର ପ୍ରତିଶ୍ରୁତି ସ୍ମରଣ କରାଇ ଦେଇ ନିଜେ ପଞ୍ଚାୟେତ୍ ବା ବିଚାରକ କରିବାକୁ କହିଲେ । ବାଦସା ଏଥିରେ ରାଜି ହୋଇ କହିଲେ, “ତୁମେ ପାଞ୍ଚଜଣ ବିଚାରକ ବାଛ । ସେମାନେ ଯେଉଁ ଦଣ୍ଡ ଦେବେ, ତୁମେ ତାହା ଗ୍ରହଣ କରିବ ।”

ବୀରବଲ କହିଲେ, “ସହରର ପାଞ୍ଚଜଣ (ଅସ୍ପୃଶ୍ୟ) ଅଛୁଆ ଲୋକଙ୍କୁ ଡକାନ୍ତୁ ।”

ବାଦସା କହିଲେ, “ଏ କି କଥା ? ଶ୍ରେଷ୍ଠ ଲୋକଗୁଡ଼ାକ ତମର କଣ ବିଚାର କରିବେ ? ତୁମେ କେତେ ଜଣ ବିଶିଷ୍ଟ ଭଦ୍ରଲୋକଙ୍କ ନାମ କହୁ ନାହିଁ ?”

ବୀରବଲ୍ କହିଲେ, "ଅନ୍ୟମାନେ ଯାହା ଭାବନ୍ତୁ ପଛେ ମୁଁ ସେହିମାନଙ୍କୁ ମୋର ଭାଇ ଓ ସମସ୍ତର ମନେକରେ । ଭଗବାନଙ୍କ ପାଖରେ ଆମେମାନେ ସମସ୍ତେ ସମାନ । ସେହିମାନେ ହିଁ ମୋର ବିଚାର କରିବେ ।"

ସେହି ଅନୁସାରେ ପାଞ୍ଚଜଣ ଅଛୁଆ ଜାତିର ଲୋକଙ୍କୁ ଡକାଗଲା । ବାଦସା ସେମାନଙ୍କୁ ମକଦ୍ଦମାର ବିଷୟଟି ବୁଝାଇ ଦେଲେ ଓ ସେମାନଙ୍କୁ ବିଚାର କରି ରାୟ ଦେବାକୁ କହିଲେ । ସେ ପାଞ୍ଚଜଣ ଲୋକ ଏଥିରେ ଖୁସି ହୋଇ ମକଦ୍ଦମାଟି ବିଚାର କରିବାକୁ ଗୋଟିଏ ଘର ଭିତରକୁ ଗଲେ ।

ପଞ୍ଚାୟେତ୍ ମଧ୍ୟରୁ ଜଣେ କହିଲା, "ଅପରାଧ ବଡ଼ ଗୁରୁତର । ଶହେ ଟଙ୍କା ଜରିମାନା କରାଯାଉ ।"

ଆଉ ଜଣେ କହିଲା, "ନା, ନା, ଏଟା ଅନ୍ୟାୟ ହେବ । ବିଚରା ଏଥିରେ ମରିଯିବ । ତାର ପୁଅପିଲା ଖାଇବାକୁ ନପାଇ ପଥର ଭିକାରୀ ହୋଇଯିବେ । ଷାଠିଏ ଟଙ୍କା ଜରିମାନା ହେଲେ ଠିକ୍ ହେବ ।"

ତୃତୀୟ ଜଣକ ଜରିମାନା ଆହୁରି କମ୍ କରିବାକୁ କହିଲା । ଶେଷରେ ଅନେକ ଯୁକ୍ତିତର୍କ ପରେ ତିରିଶ ଟଙ୍କା ଜରିମାନା ଠିକ୍ ହେଲା ।

ବିଚାର ସରିଲା ପରେ ସରପଞ୍ଚ (ପ୍ରଧାନ ପଞ୍ଚାୟେତ୍) ବାଦସାଙ୍କ ନିକଟକୁ ଯାଇ ସେମାନଙ୍କର ନିଷ୍ପତ୍ତି ଜଣାଇଲେ । ସେ କହିଲା, "ହଜୁର, ବୀରବଲଙ୍କର ଦୋଷ ବଡ଼ ଗୁରୁତର ଥିବାରୁ ଆମେମାନେ ଏ କଠିନ ଅର୍ଥଦଣ୍ଡ କରିବାକୁ ବାଧ୍ୟ ହେଲୁଁ । ଏହା ଦ୍ୱାରା ତାଙ୍କର ଯଥେଷ୍ଟ ଜ୍ଞାନ ଶିକ୍ଷା ହେବ । ଆମେମାନେ ଜାଣିଛୁଁ ଯେ ଏ ଦଣ୍ଡ ତାଙ୍କ ପକ୍ଷରେ ବଡ଼ କଷ୍ଟକର ହେବ । ଆମ୍ଭମାନଙ୍କର ତାଙ୍କ ପ୍ରତି ଦୟା ହେଉଛି । କିନ୍ତୁ ଉପାୟ ନାହିଁ । ଯେପରି ଦୋଷ ସେହିପରି ଦଣ୍ଡ ହେବା ଦରକାର ।"

ଏକଥା ଶୁଣି ବାଦସା ବୀରବଲଙ୍କ କୌଶଳ ଜାଣି ପାରିଲେ । ସେ ବୁଝିଲେ ଯେ ଗରିବ ଲୋକମାନେ ସେମାନଙ୍କର ନିଜ ନିଜ ଆର୍ଥିକ ଅବସ୍ଥା ଦୃଷ୍ଟିରେ ବୀରବଲଙ୍କ ଅବସ୍ଥା ବିଚାର କରି ତାଙ୍କୁ ଏତେ ସାମାନ୍ୟ ଦଣ୍ଡ ଦେଲେ । ଧନୀ ଲୋକମାନେ ବିଚାର କରିଥିଲେ ଏହାର ଅନେକ ଗୁଣ ବେଶୀ ଦଣ୍ଡ ଦେଇଥାନ୍ତେ ।

ବାଦସା ପଞ୍ଚାୟେତମାନଙ୍କୁ ଘରକୁ ଯିବାକୁ କହିଲେ । ସେ ବୀରବଲଙ୍କ ମନୁଷ୍ୟ ଚରିତ୍ର ବିଷୟରେ ସୂକ୍ଷ୍ମ ଜ୍ଞାନ ଦେଖି ମୁଗ୍ଧ ହୋଇ ଯାଇଥିଲେ । ସେଥିପାଇଁ ବାଦସା ତାଙ୍କୁ ପୁରାପୁରି କ୍ଷମା ଦେଲେ ।

# ଦୁଇଟି ଅଦ୍ଭୁତ ପ୍ରାଣୀ

ଥରେ ଆକବର ବୀରବଲଙ୍କୁ କହିଲେ, "ମୁଁ ଏପରି ଦୁଇଟି ପ୍ରାଣୀ ଚାହେଁ ଯହିଁରୁ ଗୋଟିଏ ହୋଇଥିବ ଖାଲି କୃତଜ୍ଞ ଓ ଆଉ ଗୋଟିଏ ହୋଇଥିବ ଖାଲି ଅକୃତଜ୍ଞ।" ବୀରବଲ ହଠାତ୍ କିଛି ଜବାବ ଦେଇ ପାରିଲେ ନାହିଁ। ବାଦଶା କହିଲେ, "ଏପରି ଦୁଇଟି ପ୍ରାଣୀ ନ ଆଣିବା ପର୍ଯ୍ୟନ୍ତ ତୁମେ ସଭାକୁ ଆସି ପାରିବ ନାହିଁ।"

ବୀରବଲ ମନ ଦୁଃଖରେ ଘରକୁ ଫେରିଲେ। ତାଙ୍କର ଶତ୍ରୁମାନେ ମନେ ମନେ ଖୁବ ଖୁସି ହେଲେ। ବୀରବଲ ଘରକୁ ଯାଇ ଖିଆ ପିଆ ନକରି ମୁହଁ ଶୁଖାଇ ବସି ରହିଲେ। କପରି ବାଦଶାଙ୍କ ହୁକୁମ ପାଳନ କରିବେ ସେହି ଭାବନା ତାଙ୍କୁ ଅସ୍ଥିର କରିଦେଲା। ବୀରବଲଙ୍କ ଗୋଟିଏ ଝିଅ ଥିଲା, ସେ ଖୁବ ବୁଦ୍ଧିମତୀ। ସେ ବାପାଙ୍କଠାରୁ ସବୁ କଥା ଶୁଣି କହିଲା, "ଏ ତ ଅତି ସାମାନ୍ୟ କଥା ! ଏଥିପାଇଁ ଚିନ୍ତା କାହିଁକି ? ମୁଁ କାଲି ଏହାର ଉପାୟ କରିଦେବି।"

ବୀରବଲ ଝିଅର ଅସାଧାରଣ ବୁଦ୍ଧି କଥା ଜାଣନ୍ତି। ସେଥିପାଇଁ ସେ ନିଶ୍ଚିନ୍ତ ରହିଲେ।

ତହିଁ ଆରଦିନ ବୀରବଲ ସଭାକୁ ବାହାରିଲା ବେଳେ ଝିଅ କହିଲା, "ବାପା, ସାଙ୍ଗରେ ତୁମ ଜ୍ୱାଇଁଙ୍କୁ ଓ ଆମ କୁକୁରଟିକୁ ନେଇଯାଅ।"

ଏ କଥା ଶୁଣି ବୀରବଲଙ୍କ ମୁଣ୍ଡରେ ବିଜୁଳି ପରି ବୁଦ୍ଧି ଖେଳିଗଲା। ଜ୍ୱାଇଁଙ୍କୁ ଓ କୁକୁରକୁ ସାଙ୍ଗରେ ନେଇ ରାଜସଭାକୁ ଗଲେ। ଏହା ଦେଖି ସଭାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ ଭାବିଲେ ବୀରବଲଙ୍କ ବୁଦ୍ଧି ଲୋପ ହୋଇଯାଇଛି। ବାଦଶା ମଧ୍ୟ ସଭାରେ କୁକୁରଟାଏ ଦେଖି ବିରକ୍ତ ହୋଇ ଉଠିଲେ।

ବୀରବଲ ବାଦଶାଙ୍କୁ କହିଲେ, "ହଜୁର, ଯେଉଁ ଦୁଇଟି ଜନ୍ତୁ ଆଣିବାକୁ ଆଦେଶ ଦେଇଥିଲେ ସେମାନଙ୍କୁ ନେଇକରି ଆସିଛି।" ଆକବର କହିଲେ, "ତୁମେ କଣ ମୋ ସାଙ୍ଗେ ଥଟ୍ଟା କରୁଛ ?" ବୀରବଲ କହିଲେ, "ନାହିଁ ହଜୁର, ମୁଁ ବୁଝାଇ ଦେଉଛି। ଏ ଜନ୍ତୁ ଦୁଇଟିରୁ ଗୋଟିଏ ହେଉଛି ମୋର ଜ୍ୱାଇଁ। ସେ ବଡ଼ ଅକୃତଜ୍ଞ। ତାକୁ ଯେତେ ଦେଲେ ସେ ସନ୍ତୁଷ୍ଟ ନୁହେଁ। ତାର ଲୋଭ ଅତି ପ୍ରଚଣ୍ଡ। କୃତଜ୍ଞତା ବୋଲି ଜିନିଷ କଣ ସେ ଜାଣି ନାହିଁ। ଯେତେଦିଅ ସେ

ଆହୁରି ବୁଝିବ । କିନ୍ତୁ ଏ କୁକୁରଟି କୃତଜ୍ଞତାର ଅବତାର । କି ଦୁଃଖ, କି ସୁଖ ସବୁବେଳେ ସେ ତାର ପ୍ରଭୁର ପାଖେ ପାଖେ । ଯେତେ ଆପଦ୍‌ବିପଦ ହେଉ, ଝଡ ତୋଫାନ ହେଉ ସେ ତାର ପ୍ରଭୁକୁ ଛାଡ଼ି କୁଆଡେ ଯିବ ନାହିଁ ।

ବାଦ୍‌ସା ବୀରବଲଙ୍କ କଥାରେ ସନ୍ତୁଷ୍ଟ ହେଲେ; କିନ୍ତୁ ହୁକୁମ ଦେଲେ, "ତୁମ ଜ୍ୱାଇଁକୁ ରାଜ୍ୟରୁ ବାହାର କରି ଦିଆଯିବ । ମୋ ରାଜ୍ୟରେ ଅକୃତଜ୍ଞ ଲୋକର ସ୍ଥାନ ନାହିଁ ।"

ବୀରବଲ କହିଲେ, "କେବଳ ମୋ ଜ୍ୱାଇଁ ନୁହେଁ, ସବୁ ଜ୍ୱାଇଁ ଏହିପରି । ଆଉ ଆମେମାନେ ସମସ୍ତେ କାହାର ନା କାହାର ଜ୍ୱାଇଁ । ଠିକ ବାଛୁ ବାଛୁ ତ ଗାଁ ଉଜାଡ଼ । ଆପଣ କାହାକୁ ତଡ଼ିବେ, କାହାକୁ ରଖିବେ ?

ବାଦସା ବୀରବଲଙ୍କ ଉତ୍ତରରେ ଖୁବ୍ ଖୁସି ହୋଇ ତାଙ୍କୁ ଅନେକ ପୁରସ୍କାର ଦେଲେ ।

## କାଉ ଗଣତି

ଦିନେ ଆକବରଙ୍କର ଗୋଟିଏ ଅଦ୍ଭୁତ ଖିଆଲ ହେଲା । ଦିଲ୍ଲୀରେ ଯେତେ କାଉ ଅଛନ୍ତି ତାର ଗୋଟିଏ ହିସାବ କରିବାକୁ ସେ ବୀରବଲଙ୍କୁ ହୁକୁମ ଦେଲେ ।

ବୀରବଲ କହିଲେ, "ମୁଁ ଆଗରୁ ଦିଲ୍ଲୀର କାଉମାନଙ୍କୁ ଗଣତି କରି ରଖିଛି । ମୋଟରେ ଏଠାରେ ଷାଠିଏ ହଜାର ପାଞ୍ଚଶ କାଉ ଅଛନ୍ତି ।"

ଆକବର ଏ ଉତ୍ତରରେ ଆଶ୍ଚର୍ଯ୍ୟ ହୋଇଯାଇ କହିଲେ, "ଆଚ୍ଛା, ଯଦି ସେମାନଙ୍କର ସଂଖ୍ୟା ଏଥିରୁ ବେଶି ବା କମ୍ ହେବ ?"

ବୀରବଲ କହିଲେ, "ସେଥିରେ କିଛି ଯାଏ ଆସେ ନାହିଁ । ଯଦି ସେମାନଙ୍କର ସଂଖ୍ୟା ବେଶି ହୁଏ, ତେବେ ବୁଝିବାକୁ ହେବ ଯେ ସେମାନଙ୍କର ବନ୍ଧୁବାନ୍ଧବ କେହି ଦୂରରୁ ଆସି ଅତିଥି ହୋଇଥିବେ । ଆଉ ଯଦି ସେମାନଙ୍କର ସଂଖ୍ୟା କମ ହୁଏ, ତେବେ ଜଣାଯିବ ଯେ ଏଠାରେ କେତେକ କାଉ ସେମାନଙ୍କର ବନ୍ଧୁ ବାନ୍ଧବଙ୍କୁ ଦେଖିବାକୁ ଦୂର ଦେଶକୁ ଯାଇଛନ୍ତି । ମୁଁ ଯେଉଁ ହିସାବ ଦେଇଛି ସେଟା ଦିଲ୍ଲୀର ସ୍ଥାୟୀ ବାସିନ୍ଦା କାଉଙ୍କର ହିସାବ ।"

ବୀରବଲଙ୍କ ଯୁକ୍ତି ଓ ଉପସ୍ଥିତ ବୁଦ୍ଧି ଦେଖି ଆକବର ଅତ୍ୟନ୍ତ ସନ୍ତୁଷ୍ଟ ହୋଇଗଲେ ।

## ଯୁଦ୍ଧର ପ୍ରଧାନ ଅସ୍ତ୍ର

ଥରେ ଆକବର ବୀରବଲଙ୍କୁ ପଚାରିଲେ, "ଯୁଦ୍ଧ ସମୟରେ ସବୁଠାରୁ ବେଶୀ ଦରକାର କଣ ?"

ବୀରବଲ ଉତ୍ତର ଦେଲେ, "ଉପସ୍ଥିତ ବୁଦ୍ଧି ।" ଆକବର କହିଲେ, "ଯୁଦ୍ଧବେଳେ ଢାଣ୍ଡୁଆ ଅସ୍ତ୍ରଶସ୍ତ୍ର ବିନା କେଉଁ । ଉପସ୍ଥିତ ବୁଦ୍ଧିରେ କଣ ହେବ ?"

ବୀରବଲ କହିଲେ, "ମୋ ମତରେ ଉପସ୍ଥିତ ବୁଦ୍ଧି ସବୁଠାରୁ ଢାଣ୍ଡୁଆ ଅସ୍ତ୍ର । ପରୀକ୍ଷା କଲେ ଜଣା ପଡ଼ିବ ।"

ଆକବର କହିଲେ, "ଆଚ୍ଛା ଦେଖିବା ।"

ତହିଁ ଆରଦିନ ବାଦସା ଗୋଟାଏ ହାତୀକୁ ଗୋଟିଏ ସ୍ରେଟ ଗଳି ଭିତରେ ଛାଡ଼ିଦେଲେ ଓ ବୀରବଲଙ୍କୁ କହିଲେ, "ତୁମେ ବର୍ତ୍ତମାନ ଏହି ଗଳି ଦେଇ ଘରକୁ ଯାଅ ।

ହୁକୁମ ପାଇ ବୀରବଲ ଗଳି ଭିତରକୁ ଗଲେ । ବାଘୁଆ ହାତୀ ବୀରବଲଙ୍କୁ ଦେଖିଲା ମାତ୍ରେ ଲାଙ୍ଗୁଡ଼ ଟେକି ଗର୍ଜନ କରି ତାଙ୍କ ଆଡ଼କୁ ଦୌଡ଼ିଗଲା । ବୀରବଲ ଦେଖିଲେ ଗୋଟାଏ କଣରେ ଗୋଟାଏ କୁକୁର ଶୋଇଛି । ବୀରବଲ ଯାଙ୍ଗେ ଯାଙ୍ଗେ କୁକୁରର ପଛ ଗୋଡ଼ ଦୁଇଟା ଧରି ବୁଲେଇ ବୁଲେଇ ଖୁବ୍ ଜୋରରେ ହାତୀ ଉପରକୁ ଫିଙ୍ଗିଦେଲେ । କୁକୁରଟା ଯାଇ ଶୁଣ୍ଢ ଉପରେ ପଡ଼ି ଖୁବ୍ ଜୋର୍‌ରେ ହାତୀକୁ କାମୁଡ଼ି ଦେଲା । ହାତୀର ଏତେ କଷ୍ଟ ହେଲା ଯେ ସେ ବୀରବଲଙ୍କ କଥା ଭୁଲିଯାଇ ଯନ୍ତ୍ରଣାରେ ଗର୍ଜନ କରି ସେଠାରୁ ପଳାଇଗଲା । ବୀରବଲ ଏହି ଅବସରରେ ଅସ୍ତେ ଅସ୍ତେ ଗଳି ପାର ହୋଇ ପଳାଇଗଲେ । ଯେଉଁମାନେ ଦୂରରେ ଠିଆ ହୋଇ ଦେଖୁଥିଲେ ବୀରବଲଙ୍କ ବୁଦ୍ଧି ଓ ସାହସକୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ବାଦସାଙ୍କୁ ଯାଇ ସବୁ କଥା ଜଣାଇଲେ । ବାଦ୍‌ସା ବୀରବଲଙ୍କର ଖୁବ୍ ପ୍ରଶଂସା କରି ତାଙ୍କୁ ଅନେକ ଧନରତ୍ନ ଦେଲେ ।

## ବଣୁଆ ଗଛ ଓ ବଗିଚା ଗଛ

ଥରେ ଆକବର ଓ ତାଙ୍କ ବେଗମଙ୍କ ଭିତରେ ମନାନ୍ତର ହେଲା । ବାଦସା ପୂର୍ବପରି ବେଗମଙ୍କୁ ଆଦର କରନ୍ତି ନାହିଁ କି ତାଙ୍କ ସଙ୍ଗେ ଭଲକରି କଥାବାର୍ତ୍ତା

କରନ୍ତୁ ନାହିଁ । ବେଗମଙ୍କ ମନରେ ଏଥିପାଇଁ ଭାରି ଦୁଃଖ । କିନ୍ତୁ ସେ କାରଣ କିଛି ବୁଝି ପାରିଲେ ନାହିଁ । ଆକବରଙ୍କୁ ମଧ୍ୟ କିଛି ପଚାରିବାର ଉପାୟ ନାହିଁ ।

ଅନେକ ଭାବିଚିନ୍ତି ବେଗମ ବୀରବଲଙ୍କୁ ଡକାଇ ପଠାଇଲେ । ବୀରବଲ ତ ଅନ୍ଦର ମହଲକୁ ଅବାଧରେ ଯିବା ଆସିବା କରନ୍ତି ଓ ଯେତେବେଳେ ଇଚ୍ଛା ଯାଇ ବେଗମଙ୍କ ସଙ୍ଗେ ଦେଖା କରନ୍ତି । ତେଣୁ ତାଙ୍କ ଯିବାର କିଛି ଆପତ୍ତି ନଥିଲା । ବେଗମ ବୀରବଲଙ୍କୁ କହିଲେ, "ବାଦ୍‌ଶା ମୋ ଉପରେ ବିରକ୍ତ ହୋଇଛନ୍ତି । ମୋ ଆଡ଼କୁ ଭଲକରି ସୁଦ୍ଧା ଚାହୁଁ ନାହାନ୍ତି । ତୁମେ ଏହାର କିଛି ଉପାୟ କର ।"

ବୀରବଲ କହିଲେ, "ତାଙ୍କ ରାଗର କାରଣ କ'ଣ ?"

ବେଗମ କହିଲେ, "ମୁଁ ତ କିଛି କାରଣ ବୁଝି ପାରୁନାହିଁ । ମୁଁ ଅନେକ ଭାବିଲେଣି; କିନ୍ତୁ କିଛି ଜାଣି ପାରୁ ନାହିଁ । ଜାଣିଥିଲେ ମୁଁ ନିଶ୍ଚୟ କ୍ଷମା ପ୍ରାର୍ଥନା କରିଥାନ୍ତି । ସେ କିଛି କହୁନାହାନ୍ତି ।"

"ସେ କଣ ଆପଣଙ୍କୁ ଗାଳି ଦେଉଛନ୍ତି ନା କିଛି ଦଣ୍ଡ ଦେଉଛନ୍ତି ?"

"ନା, ସେପରି କିଛି ନୁହେଁ ।"

"ତେବେ କାହିଁକି ଆପଣ ଭାବୁଛନ୍ତି ଯେ ସେ ବିରକ୍ତ ହୋଇଛନ୍ତି ?"

"ତେବେ ଶୁଣ । ମୋର ଏତେବେଳେ ଟିକିଏ ଅଡ଼ୁଆ ସମୟ, ସେଥିପାଇଁ ମୋର ଦେହ ଭଲ ରହୁ ନାହିଁ । ମୁଁ କିଛି କାମଦାମ କରି ପାରୁନାହିଁ । ରାଜବୈଦ୍ୟ ଔଷଧ ଦେଉଛନ୍ତି ଏବଂ ମୋ ପାଇଁ ଅନେକ ରକମ ପଥ୍ୟର ବ୍ୟବସ୍ଥା କରିଛନ୍ତି । ଏଥିଯୋଗୁଁ ତିନି ଚାରିଜଣ ଦାସୀ ସବୁବେଳେ ମୋ ସେବାରେ ଲାଗି-ଛନ୍ତି । ମତେ ଜଣାଯାଉଛି, ବାଦସାଙ୍କୁ ଏସବୁ ଭଲ ଲାଗୁନାହିଁ । ସେ କହନ୍ତି, "ମୁଁ ଦେହ ଖରାପ ହେବା ବାହାନା କରୁଛି, ଏତେ ସବୁ ଆଡ଼ମ୍ବର କିଛି ଦରକାର ନାହିଁ ।"

ବୀରବଲ ବୁଝି ପାରିଲେ ଯେ ବେଗମ ଗର୍ଭବତୀ ହୋଇଛନ୍ତି । ସେ ପଚାରିଲେ "ଆପଣଙ୍କର ଦେହର ଅବସ୍ଥା ଏପରି ବୋଲି କଣ ବାଦସା ଜାଣନ୍ତି ନାହିଁ ?"

ବେଗମ ଲଜ୍ଜାରେ ମୁହଁ ପୋତି କହିଲେ, "ନ ଜାଣିବେ କିପରି ? ପ୍ରଥମେ ପ୍ରଥମେ ସେ ମୋ ଦେହକଥା ବରାବର ପଚାରୁଥିଲେ । ଔଷଧ ଖାଇବାକୁ ଓ ଭଲଭଲ

ଖାଦ୍ୟ ଖାଇବାକୁ ମଧ୍ୟ ଭଲ ପାଉଥିଲେ । ହଠାତ୍ କେବେ ବଦଳିଗଲେ ତାହାଁକୁ ମୁଁ ବୁଝିପାରୁ ନାହିଁ । ସେ ଦାସୀମାନଙ୍କୁ ବାହାର କରିଦେବାକୁ ହୁକୁମ ଦେଉଛନ୍ତି । ମୋର ଔଷଧ ଓ ଭଲଭଲ ଖାଦ୍ୟ ମଧ୍ୟ ବନ୍ଦ କରି ଦେଇଛନ୍ତି ।"

ବୀରବଲ କହିଲେ, "ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ମୁଁ ଏହାର ଉପାୟ ସ୍ଥିର କରି ଆପଙ୍କୁ କହିବି ।"

ଦୈବାତ୍ ସେହି ଦିନ ସନ୍ଧ୍ୟାବେଳେ ଆକବର ଓ ବୀରବଲ ଏକ ସାଙ୍ଗରେ ବୁଲି ବାହାରିଲେ । ଯାଉ ଯାଉ ଆକବର କଥା ପ୍ରସଙ୍ଗରେ କହିଲେ, "କିଛିଦିନ ତଳେ ମୁଁ ଏହି ସ୍ଥାନରେ ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖିଥିଲି—ଯାହାକି ମୁଁ ଭୁଲି ପାରୁନାହିଁ ?"

ବୀରବଲ ପଚାରିଲେ, "କି ଦୃଶ୍ୟ ?"

ଆକବର କହିଲେ, "ଦିନେ ଉପରବେଳା ମୁଁ ଗୋଟିଏ ଅନ୍ତଃର୍ଣ୍ଣୀ ସ୍ତ୍ରୀକୁ ସେହି ବରଗଛ ମୂଳେ ବସିଥିବାର ଦେଖିଲି । ମୁଁ ତା ମୁହଁରୁ ବୁଝି ପାରିଲି ଯେ, ତାର ଖୁବ୍ କଷ୍ଟ ହେଉଛି । ମୁଁ ତା ପାଖକୁ ଯାଇ ପଚାରିବାକୁ ଭାବୁଛି, ଅତି ଆଶ୍ଚର୍ଯ୍ୟର କଥା, ହଠାତ୍ ଦେଖିଲି ତାର ଗୋଟିଏ ପିଲା ଜନ୍ମ ହୋଇ ପଡ଼ିଲା । ସେ ଏପରି ଅବସ୍ଥାରେ କ'ଣ କରିବ ବୋଲି ଭାବି ମୁଁ ବଡ଼ ବ୍ୟସ୍ତ ହୋଇ ପଡ଼ିଲି । କିନ୍ତୁ ଦେଖିଲି, ସେ ସଙ୍ଗେ ସଙ୍ଗେ ଉଠିପଡ଼ି ପିଲାକୁ ଧୋଇ ପକାଇଲା ଓ ତାକୁ ଗୋଟିଏ ବୋଝ ଭିତରେ ରଖିଦେଇ ବୋଝଟିକୁ ଧରି ଘରକୁ ବାହାରିଲା । ଯେପରିକି ତାର କିଛି ହୋଇ ନାହିଁ । ଏଥିରୁ ମୁଁ ବୁଝି ପାରିଲି ଯେ ଆମେମାନେ ଆମର ଗର୍ଭିଣୀ ସ୍ତ୍ରୀମାନଙ୍କୁ ଅତି ବେଶୀ ସେବା ଯତ୍ନ ଦେଇ ଖରାପ କରୁଁ । ସେମାନଙ୍କର ଟିକିଏ କ'ଣ କଷ୍ଟ ହେଲେ ଆମେମାନେ ଅସ୍ଥିର ହୋଇ ନାନା ପ୍ରକାର ଔଷଧ, ପଥ୍ୟ ଆଦି ବ୍ୟବସ୍ଥା କରୁଁ । ବୃଥା ଏତେ ଆଡ଼ମ୍ବରର ପ୍ରୟୋଜନ କଣ ?"

ଆକବରଙ୍କ କଥାରୁ ତାଙ୍କର ବେଗମଙ୍କ ପ୍ରତି ମନୋଭାବ ବଦଳିବାର କାରଣ ବୀରବଲ ବେଶ୍ ବୁଝି ପାରିଲେ । ସେ ସମୟରେ ଆକବରଙ୍କୁ କିଛି କହିବା ସେ ଉଚିତ ମନେ କଲେ ନାହିଁ ।

ତହିଁ ଆରଦିନ ସକାଳେ ବୀରବଲ ବେଗମଙ୍କ ପାଖକୁ ଯାଇ ସମୁଦାୟ କଥା ବୁଝାଇ ଦେଇ କହିଲେ, "ବର୍ତ୍ତମାନ ବୁଝି ପାରୁଥିବେ ବାଦସାଙ୍କର ମନ ପରିବର୍ତ୍ତନର କାରଣ କ'ଣ ?"

ବେଗମ କହିଲେ, "ବୁଝିଲି । କିନ୍ତୁ ତାଙ୍କ ସଙ୍ଗେ ତ ଯୁକ୍ତି କରି ହେବ ନାହିଁ । ତାଙ୍କର ଏ ଭାବ ବଦଳିବ କିପରି ?"

"ମୁଁ ଯେପରି କହିବି ଆପଣ ସେହିପରି କରିବେ । ଦେଖିବେ ମନକୁ ସବୁ ବଦଳି ଯିବ ।" ଏହା କହି ବୀରବଲ ବେଗମଙ୍କୁ କ'ଣ କ'ଣ କରିବାକୁ ହେବ ଶିଖାଇ ଦେଇ ଚାଲିଗଲେ ।

ବେଗମ୍ ବଗିଚାର ସର୍ଦ୍ଦାର ମାଳୀକୁ ଡକାଇ ହୁକୁମ ଦେଲେ ଯେ କିଛିଦିନ ପାଇଁ ବଗିଚାର କୌଣସି ଗଛରେ ପାଣି ଦିଆଯିବ ନାହିଁ ।

ସର୍ଦ୍ଦାର ମାଳି ଅତିଶୟ ଆଶ୍ଚର୍ଯ୍ୟ ହୋଇ କହିଲା, "ମୁଁ ଏହା କିପରି କରିବି ? ସବୁ ଗଛଗୁଡ଼ିକ ପାଣି ବିନା ମରିଯିବ ।"

ବେଗମ୍ କହିଲେ, "ମରୁ । ମୋର ହୁକୁମ । ତୋର କ'ଣ ଅଛି ?"

ସର୍ଦ୍ଦାର ମାଳି ଭୟରେ ଅସ୍ଥିର ହୋଇ କହିଲା, "ବାଦ୍‌ସାଙ୍କର କେତୋଟି ଅତି ପ୍ରିୟ ଗଛ ଅଛି । ସେଗୁଡ଼ିକ ମରିଗଲେ ମୋର ମୁଣ୍ଡ କାଟ ହେବ । ମତେ କ୍ଷମା କରନ୍ତୁ । ମୁଁ ଏହା କରି ପାରିବି ନାହିଁ ।"

ବେଗମ ରାଗିକରି କହିଲେ, "ମୋର ହୁକୁମ ମାନିବାକୁହିଁ ହେବ । ନ ହେଲେ ଏହିକ୍ଷଣି ତତେ ଜେଲ୍‌କୁ ପଠାଇ ଦେବି ।"

ମାଳି ସର୍ଦ୍ଦାର ଶେଷରେ ରାଜି ହେଲା । ବେଗମ ତାକୁ ସାନ୍ତ୍ୱନା ଦେଇ କହିଲେ, "ତୋର କିଛି ଭୟ ନାହିଁ । ଦରକାର ହେଲେ ମୁଁ ତତେ ରକ୍ଷା କରିବି ।"

ଏହାର ସାତଦିନ ପରେ ଦିନେ ବାଦସା ରାଗରେ ଗରଗର ହୋଇ ବେଗମଙ୍କ ପାଖରେ ପହଞ୍ଚି ପଚାରିଲେ, "ତୁମେ କଣ ବଗିଚା ଗଛମାନଙ୍କରେ ପାଣି ଦେବାକୁ ସର୍ଦ୍ଦାର ମାଳିକୁ ମନା କରି ଦେଇଥିଲ ?"

"ହଁ, କରିଥିଲି ।"

"ତୁମେ ଏପରି ହୁକୁମ୍ ଦେଇଛ ବୋଲି ନ କହିଥିଲେ, ଆଜି ତାର ମୁଣ୍ଡ-କାଟ ହୋଇଥାନ୍ତା । ତୁମେ ଏପରି ଅଦ୍ଭୁତ ହୁକୁମ କାହିଁକି ଦେଲ ?"

"ପ୍ରଭୁ, ମୁଁ ବିନା କାରଣରେ ଏପରି କରି ନାହିଁ ।"

"କି କାରଣ କହ ।"

"କିଛି ଦିନ ପୂର୍ବେ ମୁଁ ଗୋଟିଏ ଜଙ୍ଗଲକୁ ବୁଲିବାକୁ ଯାଇଥିଲି । ମୁଁ ଦେଖିଲି, ସେଠାରେ ଅନେକ ବଡ଼ ବଡ଼ ଗଛରେ ଫଳଫୁଲ ଭର୍ତ୍ତି ହୋଇ ରହିଛି ।

ପତ୍ର ସବୁ ତାଜା ରହିଛି ଓ ଗଛଗୁଡ଼ିକ ଖୁବ ସୁନ୍ଦର ଦେଖା ଯାଉଛି । ପଚାରି ବୁଝିଲି ଯେ ସେ ସବୁ ଗଛରେ କେହି ପାଣି ଦିଅନ୍ତି ନାହିଁ । ମୁଁ ମନେକଲି, ସେ ସବୁ ଗଛ ଗୁଡ଼ିକ ଯେବେ ବିନା ମାଳି, ବିନା ପାଣିରେ ଏପରି ସୁନ୍ଦର ଭାବରେ ବଢ଼ିଛି, ତେବେ ଆମ ବଗିଚାର ଗଛ ଗୁଡ଼ିକ ସେପରି କାହିଁକି ନ ହେବ । ସେଥିପାଇଁ ମୁଁ ସର୍ଦ୍ଦାର ମାଳିକୁ ଗଛରେ ପାଣି ଦେବାକୁ ମନା କରି ଦେଇଥିଲି ।"

"କିନ୍ତୁ ବଗିଚାର ଗଛ ସବୁ ଜଙ୍ଗଲ ଗଛଠାରୁ ଭିନ୍ନ ।"

"ସେହିପରି ବେଗମ୍ ଜଣେ ଅନ୍ଧୁଣୀ ସ୍ତ୍ରୀ ଠାରୁ ଭିନ୍ନ ।"

ଆକବର ଆଶ୍ଚର୍ଯ୍ୟ ହୋଇ କହିଲେ, "ଓ ଏବେ ବୁଝିଗଲି, ବୀରବଲ ନିଶ୍ଚୟ ତୁମକୁ ଏ କୌଶଳ କହି ଦେଇଛନ୍ତି । ବର୍ତ୍ତମାନ ମୁଁ ମୋର ଭୁଲ୍ ବୁଝି ପାରିଲି । ମତେ କ୍ଷମା ଦେବ । ଏଣିକି ମୋଠାରୁ ଆଉ ସେପରି ବ୍ୟବହାର ପାଇବ ନାହିଁ । ବାସ୍ତବିକ୍ ବୀରବଲ ଗୋଟିଏ ରତ୍ନ ।"

ବେଗମ ବୀରବଲଙ୍କୁ ଡକାଇ ଆଣି ଅଶେଷ ଧନ୍ୟବାଦ ଦେଲେ ଓ ଅନେକ ଧନରତ୍ନ ଦେଇ ତାଙ୍କୁ ଖୁସି କଲେ ।"

## ଦୀପ ତଳ ଅନ୍ଧାର

ଦିନେ ସନ୍ଧ୍ୟାବେଳେ ଆକବର ନଅରର ସବା ଉପର ମହଲାର ଗୋଟିଏ କୋଠରୀରେ ବସି ବୀରବଲଙ୍କ ସହିତ ରାଜ୍ୟ ବିଷୟରେ କିଛି ମନ୍ତ୍ରଣା କରୁଥିଲେ । ଏହି ସମୟରେ ସେମାନେ ଗୋଟାଏ ଚିତ୍କାର ଶୁଣି ପାରିଲେ । ତଳକୁ ଚାହିଁ ଦେଖିଲେ ଯେ ଦଳେ ଦସ୍ୟୁ ଜଣେ ବଣିକକୁ ଆକ୍ରମଣ କରି ତାହାଠାରୁ ଧନରତ୍ନ ଲୁଟି ନେଇ ଯାଉଛନ୍ତି । ବଣିକ ବାଦସାଙ୍କୁ ଦେଖିପାରି, "ରକ୍ଷା କର, ରକ୍ଷା କର" ବୋଲି ଆତୁର ପାଟି କରି ଉଠିଲା । ଦସ୍ୟୁମାନେ ଧନ ନେଇ ଦୌଡ଼ି ପଳାଇଲେ । ବଣିକଟି ସେହିଠାରେ ପଡ଼ି ରହିଲା ।

ବୀରବଲଙ୍କ ଉପରେ ରାଜ୍ୟ ରକ୍ଷାର ଭାର ଥିଲା । ସେ ତଳକୁ ଚାଲିଯାଇ କୋଟୱାଲକୁ ଡକାଇ ବଣିକର ଯତ୍ନ ନେବାକୁ ଓ ଦସ୍ୟୁମାନଙ୍କର ସନ୍ଧାନ ନେବାକୁ ହୁକୁମ ଦେଇ ଆସିଲେ ।

ବୀରବଲ ଫେରିବାରୁ ବାଦସା କହିଲେ, "ରାଜ୍ୟ ରକ୍ଷାର ବନ୍ଦୋବସ୍ତ କଣ ଏହିପରି ହୋଇଛି ? ତୁମେ ସବୁବେଳେ କହ ଯେ, ରାଜ୍ୟରେ ଶାନ୍ତି ଓ ଶୃଙ୍ଖଳା

ଅଛୁ । କିନ୍ତୁ ମୁଁ ଆଜ ଆଖିରେ ଯାହା ଦେଖିଲି, ତୁମର କୌଣସି କଥାରେ ମୋର ବିଶ୍ୱାସ ନାହିଁ, ତୁମେ ସବୁ କଥା ମୋତେ ଲୁଚାଉଛ ।"

ବୀରବଲ କହିଲେ, "ଗୋଟିଏ ପୁରୁଣା କଥା ଅଛି, ଆପଣ ଜାଣନ୍ତି-ଦୀପ ତଳ ଅନ୍ଧାର ।" ମୁଁ ଦେଖୁଛି ଏ କଥାଟା ସବୁବେଳେ ସତ । ମୁଁ ଭଲ କରି ଜାଣେ ରାଜ୍ୟର ଚାରିଆଡ଼େ ଶାନ୍ତି ବିରାଜୁଛି । କିନ୍ତୁ ଆପଣ ହେଉଛନ୍ତି ରାଜ୍ୟର ଦୀପ । ସେଥିପାଇଁ ଆପଣଙ୍କ ନଅର ତଳଟା ଅନ୍ଧାର । ସେହି ଯୋଗୁଁ ଏଠାରେ ଏପରି ଗୋଟାଏ କାଣ୍ଡ ହୋଇଗଲା । ଅନୁସନ୍ଧାନ କଲେ ବୁଝି ପାରିବେ, ଆପଣଙ୍କ ଦୀପ ତେଜରେ ଆଉ କେଉଁଠାରେ ଅନ୍ଧାର ନାହିଁ ।

## ଠିକ୍ ବାଟ

ଥରେ ଆକବର ଓ ବୀରବଲ ନଅରର ବଗିଚାରେ ବୁଲୁଥିଲେ । ବୀରବଲ କଥା ପ୍ରସଙ୍ଗରେ କହିଲେ, "ଟଙ୍କା ପାଇଁ ମନୁଷ୍ୟ ଯେ କୌଣସି ଦୁଃଖକଷ୍ଟ ସହିପାରେ ।" ସେ ସମୟରେ ଶୀତକାଳ । ଥଣ୍ଡା ପବନ ଯୋଗୁ ମଣିଷ ଥରି ଯାଉ-ଥାଏ । ବଗିଚାରେ ଗୋଟିଏ ପୋଖରୀ ଥାଏ । ତାର ପାଣି ବରଫ ପରି ଥଣ୍ଡା । ବାଦସା କହିଲେ, "ତୁମ କଥା ଠିକ୍ ନୁହେଁ । ଯେତେ ଟଙ୍କା ଦେଲେ ମଧ୍ୟ ଏପରି କେହି ଲୋକ ନାହିଁ, ଯେ କି ଏହି ପାଣି ଭିତରେ ପଶି ରାତିଟାଏ କଟାଇ ପାରିବ । ଯଦି କେହି ସେପରି କରେ, ସେ ନିଶ୍ଚୟ ଥଣ୍ଡାରେ ମରିଯିବ ।"

ବୀରବଲ କହିଲେ, "ଟଙ୍କା ଲୋଭରେ ଏପରି କରିବାକୁ ଲୋକ ମିଳି ପାରିବେ ।"

ବାଦସା କହିଲେ, "କଥାଟା ମୁହଁରେ କହିଦେବା ବଡ ସହଜ । ଆଚ୍ଛା, ତୁମେ ଯଦି ସେପରି ଲୋକଟିଏ ଆଣ, ସେ ଯେତେ ଟଙ୍କା ଚାହିଁବ ତାକୁ ଦିଆଯିବ ।"

ବହୁ ଚେଷ୍ଟା କରି ବୀରବଲ ଗୋଟିଏ ଗରିବ ଲୋକଙ୍କୁ ବାଦସାଙ୍କ ପାଖକୁ ନେଇ ଆସିଲେ । ବାଦସା ତାକୁ ପଚାରିଲେ, "ତୁମେ କଣ ରାତିଟା ଯାକ ଏହି ପୋଖରୀ ଭିତରେ ବସି କଟାଇ ପାରିବ ? ପାରିଲେ ତୁମେ ପାଞ୍ଚଶ ଟଙ୍କା ପୁରସ୍କାର ପାଇବ । କିନ୍ତୁ ମନେରଖ, ତୁମେ ନିଆଁ ବା ଅନ୍ୟ କୌଣସି ତାପର ସାହାଯ୍ୟ ନେଇ ପାରିବ ନାହିଁ ।"

ଲୋକଟି ଏଥିରେ ରାଜି ହେବାରୁ ବାଦସା ଲୋକଟିକୁ ଜଗିବା ପାଇଁ ପୋଖରୀର ଚାରିଆଡ଼େ ଜଗୁଆଳି ରଖାଇ ଦେଲେ ।

ଲୋକଟି ସାରା ରାତ ପୋଖରୀ ଭିତରେ କଟାଇ ସକାଳେ ବାଦସାଙ୍କ ନିକଟରେ ହାଜର ହେଲା । ବାଦସା ତାକୁ ବଞ୍ଚିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଓ ଅନେକ ପ୍ରକାର ପ୍ରଶ୍ନ ପଚାରିଲେ ।

ଲୋକଟି କହିଲା, "ଦୁଇ ତିନଥର ମୋର ମନେ ହେଲା ଯେ ମରିଯିବି, ଆଉ ବଞ୍ଚି ପାରିବି ନାହିଁ । ଆପଣଙ୍କ ଦୁଆପରେ ସାତ ମହଲା ଉପରେ ଗୋଟିଏ ମାତ୍ର ଆଲୁଅ ଦେଖା ଯାଉଥାଏ । ସେହିଟିକୁ ଚାହିଁ ଚାହିଁ ମୁଁ ମନରେ ଟିକିଏ ଦମ୍ଭ ଆଣୁଥାଏ ।"

ଏହା ଶୁଣି ଜଣେ ସଭାସଦ୍ କହିଲେ, "ତାହାହେଲେ ଚୁକ୍ତି ଅନୁସାରେ କାମ ହୋଇ ନାହିଁ ।"

ବାଦସା ପଚାରିଲେ, "କିପରି ?"

ସଭାସଦ୍ କହିଲେ, "କଥା ହୋଇଥିଲା ଯେ ସେ କେଉଁଠାରୁ କୌଣସି ତାପର ସାହାଯ୍ୟ ନେଇ ପାରିବ ନାହିଁ । କିନ୍ତୁ ଆଲୁଅ ତ ଗୋଟାଏ ତାପ ।"

ବାଦସା ସେହି କଥାରେ ଭୁଲିଯାଇ ଲୋକଟିକୁ କିଛି ପୁରସ୍କାର ନ ଦେଇ ବିଦା କରିଦେଲେ ।

ଲୋକଟି ବୀରବଲଙ୍କୁ ଯାଇ ତାର ଦୁଃଖ କଥା ସବୁ କହିଲା । ବୀରବଲ କହିଲେ, "କିଛି ଚିନ୍ତା ନାହିଁ । ତୁମେ ପୁରସ୍କାର ଅବଶ୍ୟ ପାଇବ ।"

ଏହାପରେ ବୀରବଲ ଦୁଇଦିନ ସଭାକୁ ଗଲେ ନାହିଁ । ଆକବର ବ୍ୟସ୍ତ ହୋଇ ସମସ୍ତଙ୍କୁ କାରଣ ପଚାରିଲେ । କେହି କିଛି ନ କହି ଚୁପ୍ ରହିଲେ । ଶେଷରେ ଜଣେ କହିଲା, "ତାଙ୍କର ମୁଣ୍ଡ ଟିକିଏ ଗୋଳମାଳ ହୋଇଥିବାର ଜଣା ଯାଉଛି । ସେ ନଦୀ କୂଳରେ ତିନିଟା ବାଉଁଶ ପୋତି କଣ ସବୁ କରୁଚନ୍ତି । କାହାକୁ କିଛି କହୁ ନାହାନ୍ତି । ମୋର ମନେ ହୁଏ, ବେଶୀ ଚିନ୍ତା କରି କରି ସେ ପାଗଳ ହୋଇ ଯାଇଛନ୍ତି ।"

ବାଦସା ଏହା ଶୁଣି ଅସ୍ଥିର ହୋଇ ନିଜେ ଯାଇ ଦେଖିବାକୁ ନଦୀ କୂଳକୁ ବାହାରିଲେ । ଯାଇ ଦେଖିଲେ ନଦୀ କୂଳରେ ତିନିଟା ବାଉଁଶ ପୋତା ହୋଇ ତାହା ଉପରେ ଗୋଟାଏ ହାଣ୍ଡି ରଖା ହୋଇଛି ଏବଂ ତାର ତଳେ ବୀରବଲ ବସି ନିଆଁ ଜାଳୁଛନ୍ତି ।

ଏହା ଦେଖି ବାଦସା ପଚାରିଲେ, "ବୀରବଲ, ଏସବୁ କ'ଣ କରୁଛ ?" ବୀରବଲ କହିଲେ, "ଆଜ୍ଞା, ଭାତ ରାନ୍ଧୁଛି ।"

"ତୁମେ ନିର୍ବୋଧ ନା କ'ଣ ? ଏପରି କଣ ସତ ସମ୍ଭବ ?"

"କାହିଁକି ନୁହେଁ ? ଉପରି ହାଣ୍ଡିରେ ପାଣି ଓ ଚାଉଳ ଅଛି ଓ ଏଠାରେ ନିଆଁ ଅଛି ।"

"ତୁମର ମୁଣ୍ଡ ଖରାପ ହୋଇଗଲାଣି, ବୀରବଲ । ନିଆଁ ପାଖରୁ ପ୍ରାୟ କୋଡ଼ିଏ ହାତ ଉପରେ ହାଣ୍ଡି ଅଛି । ସେ ତାତିବ କିପରି ?"

"ଏହା ଅସମ୍ଭବ କାହିଁକି ?" ସେଦିନ ତ ସାତ ମହଲା କୋଠା ଉପରେ ଜଳୁଥିବା ବତୀ ପୋଖରୀ ଭିତରେ ଚାପିଥିବା ଗରିବ ଲୋକଟିକୁ ତାତି ଦେଉଥିଲା । ଏହାର ଦୂରତା ତ ତା'ଠାରୁ ଢେର କମ୍ । ତେବେ ଭାତ ରନ୍ଧା ନହେବ କାହିଁକି ?"

ବାଦଶା ବୁଝି ପାରିଲେ ଯେ ପ୍ରକୃତରେ ସେଦିନ ସେ ଗରିବ ଲୋକଟି ପ୍ରତି ଅବିଚାର କରାଯାଇଛି । ସେଥିପାଇଁ ବୀରବଲଙ୍କର ଏପରି କୌଶଳ । ସେ ବୀରବଲଙ୍କୁ କହିଲେ, "ମୁଁ ସବୁ ବୁଝି ପାରୁଛି । ଏ ଅଭିନୟ ବନ୍ଦ କର । ଚାଲ ସଭାକୁ ଯିବା ।"

ବୀରବଲ କହିଲେ, "କିନ୍ତୁ, ହଜୁର ! ମୋର ଭାତ କଣ ହେବ ?" ବାଦଶା କହିଲେ, "ଭାତ ହୋଇଗଲାଣି, ବର୍ତ୍ତମାନ ସେ ଲୋକଟିକୁ ଡାକ ତାର ପୁରସ୍କାର ଦେଇ ଦିଅ । ସେ ଲୋକଟି ପ୍ରତି ପ୍ରକୃତରେ ଅନ୍ୟାୟ କରା ଯାଇଥିଲା । ତୁମେ ମତେ ଠିକ୍ ବାଟ ଦେଖାଇ ଦେଇଛ ।"

## ଭୀଷଣ ପରୀକ୍ଷା

ଥରେ ମାଳବ ଦେଶର ରାଜା ଆକବରଙ୍କ ନିକଟକୁ ଖଣ୍ଡେ ପତ୍ର ଦେଲେ । ସେଥିରେ ଲେଖାଥିଲା, " ମୋର ଏହି ଚାରୋଟି ଜିନିଷ ଲୋଡ଼ା ଅଛି । ଆପଣ ତାକୁ ଶୀଘ୍ର ପଠାଇବାକୁ ଚେଷ୍ଟା କରିବେ । ନହେଲେ, ଯୁଦ୍ଧ ପାଇଁ ପ୍ରସ୍ତୁତ ରହିବେ ।"

୧- ଜଣେ ଲୋକ ଉଚ୍ଚ କୁଳରେ ଜନ୍ମ ହେଲେ ମଧ୍ୟ ନୀଚ ସ୍ୱଭାବ ।

୨- ଜଣେ ଲୋକ ନୀଚ କୁଳରେ ଜନ୍ମ ହେଲେ ମଧ୍ୟ ମହତ୍ ।

୩- ଗୋଟିଏ ରାସ୍ତାର କୁକୁର ।

୪- ରାଜସିଂହାସନରେ ବସିଥିବା ଗୋଟିଏ ଗଧ ।

ଆକବର ସବୁ ସଭାସଦ୍ ଓ ମନ୍ତ୍ରୀମାନଙ୍କୁ ପଚାରିଲେ । କିନ୍ତୁ କେହି ଏ ସମସ୍ୟା ପୂରଣ କରି ପାରିଲେ ନାହିଁ । ବାଦଶାଙ୍କ ଭାବନା ଦେଖି ଶେଷରେ ବୀରବଲ କହିଲେ, "ଏସବୁ ଜିନିଷ ଅଳ୍ପ ସମୟରେ ମିଳି ପାରିବ ନାହିଁ । ଆପଣ ମାଳବ

ରଜାଙ୍କୁ ସଞ୍ଚ ଦଅନ୍ତୁ ସେ ବର୍ଷକ ମଧ୍ୟରେ ତାଙ୍କର ସବୁ ଜନ୍ମପ ପଠାଯିବ । ଆକବର ଏଥିରେ ରାଜି ହେଲେ ଏବଂ ବୀରବଲ ଏ କାର୍ଯ୍ୟର ଭାର ନେଲେ ଓ ସେଥିପାଇଁ ଲକ୍ଷେ ଟଙ୍କା ଖର୍ଚ୍ଚ ହେବ ବୋଲି କହିଲେ । ବୀରବଲଙ୍କୁ ଉକ୍ତ ଟଙ୍କା ଦେବାକୁ ସାଙ୍ଗେ ସାଙ୍ଗେ ହୁକୁମ ହୋଇଗଲା ।

ଏହା ପରେ ଆକବରଙ୍କ ଠାରୁ ବିଦାୟ ନେଇ ବୀରବଲ ମାଳସ୍ତ ଦେଶକୁ ବାହାରିଲେ । ସେ ମହାଜନ ବେଶରେ ଗୋଟିଏ ଭଲ ଘୋଡାରେ ଚଢ଼ି ମାଳସ୍ତରେ ଆସି ପହଞ୍ଚିଲେ । ପ୍ରଥମେ ସେ ସହର ରାସ୍ତାରେ ଭଦ୍ରଲୋକ ବସ୍ତି ମଧ୍ୟରେ ଗୋଟାଏ ବଡ଼ କୋଠା ଭଡ଼ା ନେଇ ରହିଲେ । ଗାଡ଼ିଘୋଡା, ଗୃହର ବାକର ଅନେକ ରଖିଲେ ଓ ଘରଟିକୁ ଖୁବ୍ ସୁନ୍ଦର ଭାବରେ ସଜାଇନେଲେ ।

ତାଙ୍କ କୋଠି ସାମନାରେ ପ୍ରଧାନ କଟୁଆଲ ବାସ କରୁଥିଲେ । ଅଳ୍ପ ସମୟ ମଧ୍ୟରେ ବୀରବଲ ତାଙ୍କ ସଙ୍ଗେ ବନ୍ଧୁତା କରି ପକାଇଲେ ଓ ତାଙ୍କୁ ଅନେକ ଥର ଖାଇବାକୁ ନିମନ୍ତ୍ରଣ କଲେ । କଟୁଆଲ ଦେଖିଲେ ଯେ ସେ ଜଣେ ଖୁବ୍ ଧନୀ ମହାଜନ; ଅତଏବ ତାଙ୍କ ସଙ୍ଗେ ବନ୍ଧୁତା କରି ଲାଭଅଛି । କ୍ରମେ ଉଭୟଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିବାକୁ ଲାଗିଲା । ମହାଜନଙ୍କ ଘରେ ଅନେକ ନାଚତାମସା ଆମୋଦ ପ୍ରମୋଦ ହୁଏ । କଟୁଆଲ ନିଜେ ରହି ସବୁ ବନ୍ଦୋବସ୍ତ କରି ଦଅନ୍ତି । ତାଙ୍କ କଥାରେ ବୀରବଲ ଅକାତରରେ ଅନେକ ଟଙ୍କା ଖର୍ଚ୍ଚ କରନ୍ତି ।

ଥରେ କଟୁଆଲ ସାହେବ ଜଣେ ପ୍ରସିଦ୍ଧ ଗାୟିକାଙ୍କୁ ଆଣି ନୃତ୍ୟଗୀତର ଆୟୋଜନ କଲେ । ସେ ଗାୟିକା ଦେଖିବାକୁ ଯେପରି ଅତ୍ୟନ୍ତ ସୁନ୍ଦରୀ ତାଙ୍କର ନୃତ୍ୟ ଗୀତ ମଧ୍ୟ ସେପରି ଅତି ଉଚ୍ଚ ଧରଣର । ତାଙ୍କ ନାମ ରମ୍ଭା । ତାଙ୍କର ସଙ୍ଗୀତ ଶୁଣି ସମସ୍ତେ ମୁଗ୍ଧ ହୋଇଗଲେ । ବୀରବଲ ଖୁସି ହୋଇ ତାଙ୍କୁ ଦୁଇଶ ଟଙ୍କା ପୁରସ୍କାର ଦେଲେ । ରମ୍ଭା ବୀରବଲଙ୍କର ଉଚ୍ଚ ମିଜାଜ ଓ ସୁନ୍ଦର ବ୍ୟବହାର ଦେଖି ତାଙ୍କ ପାଖରେ ବରାବର ରହିଯିବ ବୋଲି କହିଲା । ବୀରବଲ କହିଲେ, "ତୁମର ଯଦି ମୋ ପ୍ରତି ପ୍ରକୃତ ସ୍ନେହ ଥାଏ ଓ ସୁଖଦୁଃଖରେ ଯଦି ତୁମେ ମୋ ସଙ୍ଗରେ ରହିବାକୁ ରାଜି ଥାଅ, ତେବେ ମୁଁ ତୁମକୁ ସ୍ତ୍ରୀ ରୂପରେ ଗ୍ରହଣ କରିପାରେ । ତୁମେ ବର୍ତ୍ତମାନ ତୁମ ଘରେ ଥାଅ । ମୁଁ ପ୍ରତିଦିନ ତୁମ ଘରକୁ ଯିବି ଓ ତୁମର ଯେତେ ଅଭାବ ସବୁ ପୂରଣ କରିବି । ତୁମର ଯାହା ଦରକାର ମତେ କହିବ ।" ସେହି ଦିନଠାରୁ ବୀରବଲ ପ୍ରତିଦିନ ରମ୍ଭା ଘରକୁ ଯାଇ ଆନନ୍ଦରେ କିଛି ସମୟ କଟାଇ ଆସନ୍ତି । ଏ କଥା ଅନ୍ୟ କେହି ଜାଣନ୍ତି ନାହିଁ ।

ଦିନେ କଟୁଆଲ ବୀରବଲଙ୍କ ଠାରୁ ଜାଣି ପାରିଲେ ଯେ ସେ ବିଭା ହୋଇ ନାହାନ୍ତି । ବୀରବଲ କହିଲେ, "ଶୁଦ୍ଧ ଉଚ୍ଚ ବଂଶର କନ୍ୟା ହେଲେ ମୁଁ ବିଭା ହୋଇ-ପାରେ । ନ ହେଲେ ଜୀବନ ତମାମ ଏହିପରି ଅବିବାହିତ ରହିବି ।"

ଏହାର କିଛିଦିନ ପରେ କଟୁଆଲ ଗୋଟିଏ ଧନୀ ଓ ଉଚ୍ଚବଂଶର କନ୍ୟା ସହିତ ବୀରବଲଙ୍କର ବିବାହ କରାଇ ଦେଲେ । ଖୁବ୍ ଆଡ଼ମ୍ବରରେ ବିଭାଘର ହେଲା । କନ୍ୟାର ନାମ ମନୋରମା ।

ବିଭାଘର ପରେ ବୀରବଲ ପ୍ରତିଦିନ ସକାଳୁ ଉଠି ମନୋରମା ପିଠିରେ ବେତରେ ପାହାରେ ବାଡ଼ାନ୍ତି । ପ୍ରତିଦିନ ଏହିପରି ଚାଲିଲା । ମନୋରମା ଏଥିରେ କିଛି ଆପତ୍ତି କରେ ନାହିଁ କି କିଛି କହେ ନାହିଁ ।

ଦିନେ ବୀରବଲ ବଜାରରୁ ଗୋଟିଏ ପାଚିଲା ତରଭୁଜ କିଣି ଆଣି ତାକୁ ମଝିରୁ ଚିରିଦେଲେ ଓ ଗୋଟାଏ ନାଲି ରୁମାଲରେ ଭଲକରି ଗୁଡ଼ାଇ ଘରକୁ ନେଇ ଆସିଲେ । ଘର ଭିତରେ ଦୌଡ଼ି କରି ପଶିଯାଇ ସେ ମନୋରମାକୁ ଡାକି କହିଲେ, "ଦେଖ ମୁଁ ଜଣେ ରଜା ପୁଅର ମୁଣ୍ଡଟା କାଟିକରି ନେଇ ଆସିଛି । ମୁଁ ଏହାକୁ ଗୋଟିଏ ବାକ୍ସରେ ରଖି ତାଲା ବନ୍ଦ କରି ଦେଉଛି । ଖବରଦାର୍, ଏକଥା କେହି ଯେପରି ନ ଜାଣନ୍ତି । ଜାଣିଲେ ମୋର ତ ସର୍ବନାଶ ହେବ, ମୁଁ ତୋ ମୁଣ୍ଡ ମଧ୍ୟ କାଟି ପକାଇବି ।" ଏ କଥା କହି ଦେଇ ବୀରବଲ ଘରୁ ବାହାରି ଚାଲିଗଲେ ।

ବୀରବଲ ଚାଲିଯିବା ପରେ ମନୋରମା ଅତି ବ୍ୟସ୍ତ ହୋଇ ଓ ଭୟ ପାଇ କଟୁଆଲ ସାହେବଙ୍କୁ ଡକାଇ ପଠାଇଲା । ମନୋରମା କଟୁଆଲଙ୍କୁ କହିଲା, "ଗୋଟାଏ ପଶୁ ସଙ୍ଗେ ବିଭା କରେଇ ଦେଇ ତୁମେ ମୋ ଜୀବନକୁ ନଷ୍ଟ କରି ଦେଇଛ । ମୋର ଦୁଃଖ କଥା ତୁମକୁ କ'ଣ କହିବି ? ଆଜି ତୁମର ବନ୍ଧୁ ଜଣେ ରଜା ପୁଅକୁ ହତ୍ୟା କରି ତାର ମୁଣ୍ଡ ଆଣି ଗୋଟାଏ ବାକ୍ସରେ ତାଲା ବନ୍ଦ କରି ରଖିଦେଇ କୁଆଡ଼େ ଚାଲି ଯାଇଛନ୍ତି । ମୁଁ କାହାକୁ କହିଦେଲେ ମତେ ମଧ୍ୟ ହତ୍ୟା କରିବେ ବୋଲି ଭୟ ଦେଖାଇ ଯାଇଛନ୍ତି । ମୁଁ ଏ ଅବସ୍ଥାରେ କ'ଣ କରିବି ? ମତେ ରକ୍ଷା କର ।" ଏହା କହି ମନୋରମା କାନ୍ଦିବାକୁ ଲାଗିଲା ।

କଟୁଆଲ ଏହା ଶୁଣି ଅତି ବ୍ୟସ୍ତ ହୋଇ କହିଲେ, "ଏ ଲୋକଟା ପ୍ରକୃତରେ ଗୋଟାଏ ପଶୁ । ମୁଁ ତାର ଚିକ୍କଣ କଥାରେ ଭୁଲିଯାଇ ତାକୁ ଚିହ୍ନି

ପାର ନ ଥିଲ । ବର୍ତ୍ତମାନ ମୁଁ ତାକୁ ଉଚିତ ପ୍ରତିଫଳ ଦେଉଛି । ତୁମେ ଆଉ ଦୁଃଖ କରନା ।"

ଏହା କହିଦେଇ କଟୁଆଳ କେତେଜଣ ସିପାହି ନେଇ ବୀରବଲଙ୍କୁ ଖୋଜିବାକୁ ବାହାରିଲେ । କିଛି ସମୟ ପରେ ବୀରବଲ ଧରା ପଡ଼ିଲେ । କଟୁଆଳ ତାଙ୍କୁ ହାତକଡ଼ି ଦେଇ ଥାନାକୁ ନେଇଗଲେ ଓ ସେଠାରେ ତାଙ୍କୁ ଅନେକ ମାଡ ଦେଲେ । ଶେଷରେ ତାଙ୍କୁ ନେଇ ରାଜାଙ୍କ ନିକଟରେ ପହଞ୍ଚିଲେ ଓ ସବୁ କଥା ତାଙ୍କୁ ଜଣାଇଲେ ।

ରାଜା ଆସାମୀ ଠାରୁ କୌଣସି କଥା ନ ଶୁଣି ରାଗରେ ଅସ୍ଥିର ହୋଇ ସାଙ୍ଗେ ସାଙ୍ଗେ ତାକୁ ଫାସିର ହୁକୁମ ଦେଇଦେଲେ । ଫାସି ହୁକୁମ ପାଇଲା ମାତ୍ରେ କଟୁଆଳ ବୀରବଲଙ୍କୁ ଫାସି ଦେବା ସ୍ଥାନକୁ ନେଇଯିବାକୁ ସିପାହି-ମାନଙ୍କୁ ଆଦେଶ ଦେଲେ । ବାଟରେ ଗଲାବେଳେ ବୀରବଲ ତାଙ୍କ ଚାକରକୁ ଦେଖିପାରି ତାଙ୍କ ସ୍ତ୍ରୀ ମନୋରମାଙ୍କୁ ଏ ଖବର ଦେବାକୁ କହି ଦେଲେ ଓ କହିଲେ, "ସେ କ'ଣ କହିବେ ମତେ ଆସି ଶୀଘ୍ର କହିବୁ ।"

ଚାକର ଠାରୁ ଫାସି ହୁକୁମ କଥା ଶୁଣି ମନୋରମା କହିଲେ, "ତାର ଯାହା ହେଉ ମୋର କ'ଣ ଅଛି ? ଯେପରି କାମକୁ ସେପରି ଫଳ । ମୁଁ କଣ କରିବ ?"

ଚାକର ବୀରବଲଙ୍କୁ ଆସି ସେ କଥା କହିବାରୁ ବୀରବଲ କହିଲେ, "ହଉ, ତୁ ଶୀଘ୍ର ଯାଇ ରମ୍ଭାଙ୍କୁ ଏକଥା କହିଦେଇ ଆସ ଯେ ମୁଁ ତାଙ୍କ ଘରବାଟେ ଯାଉଛି, ସେ ମୋ ସଙ୍ଗେ ଦେଖା କରିବ ।"

ଚାକରଠାରୁ ଏ ଖବର ପାଇ ରମ୍ଭା ଆସି ରାସ୍ତା କଡରେ ଠିଆ ହୋଇ ବ୍ୟସ୍ତ ହୋଇ ବୀରବଲଙ୍କ ଅପେକ୍ଷାରେ ରହିଲା । ସିପାହିମାନଙ୍କ ସହିତ ବୀରବଲଙ୍କୁ ନେଇ କଟୁଆଳ ସେଠାରେ ପହଞ୍ଚିଲା ମାତ୍ରେ ରମ୍ଭା କଟୁଆଳଙ୍କ ହାତରେ ଦୁଇଶହ ଟଙ୍କା ଦେଇ ଗୋଡତଳେ ପଡ଼ି କହିଲା, "ଆପଣ ଦୟାକରି ଏହି ଗଛମୂଳେ ଘଣ୍ଟାଟିଏ ଅପେକ୍ଷା କରନ୍ତୁ । ମୁଁ ରାଜାଙ୍କ ପାଖକୁ କ୍ଷମାଭିକ୍ଷା କରିବାକୁ ଯାଉଛି । ଯଦି କିଛି ଫଳ ନହୁଏ, ଆପଣ ଶେଠଜୀଙ୍କୁ ଫାସି ଦେବାକୁ ନେଇଯିବେ ।"

କଟୁଆଳ ଟଙ୍କା ଲୋଭରେ ଏଥିରେ ରାଜି ହେଲେ । ରମ୍ଭା ତାର ସବୁଠାରୁ ଭଲ ଶାଢ଼ୀ ଓ ଅଳଙ୍କାର ପିନ୍ଧି ରାଜାଙ୍କ ନିକଟରେ ଯାଇ ହାଜର ହେଲା । ରାଜା

ରମ୍ଭାର ରୂପ ଯୌବନ ଦେଖି ମୁଗ୍ଧ ହୋଇଗଲେ । ରମ୍ଭା ନାନା ହାବଭାବ ଦେଖାଇ ଗୋଟିଏ ଗୀତ ଗାଇ ବୀରବଲଙ୍କୁ କ୍ଷମା ଦେବାକୁ ବାରମ୍ବାର ପ୍ରାର୍ଥନା କଲା । ରାଜା ରମ୍ଭାର ଗୀତ ଶୁଣି ଆହୁରି ମୁଗ୍ଧ ହୋଇଗଲେ ଓ ବୀରବଲଙ୍କୁ ମୁକ୍ତ ଦେବାର ହୁକୁମ ଦେଲେ । ରମ୍ଭା ଆନନ୍ଦରେ କାନ୍ଦ ପକାଇଲା । ସେ ସାଙ୍ଗେ ସାଙ୍ଗେ ବୀରବଲଙ୍କ ପାଖକୁ ଯାଇ ତାଙ୍କ ହାତ ଧରି ନିଜ ଘରକୁ ଅତି ଆଦରରେ ନେଇଗଲା ।

ରମ୍ଭା ବୀରବଲଙ୍କୁ ଏ ଘଟନା ବିଷୟରେ ପଚାରିବାରୁ ବୀରବଲ କହିଲେ, "ମୋ ପାଇଁ କିଛି ଚିନ୍ତା କର ନାହିଁ । ମୁଁ ଗୋଟିଏ କାରଣରୁ ଏପରି ଘଟନା ସୃଷ୍ଟି କରାଇଥିଲି । ମୁଁ ବର୍ତ୍ତମାନ ଅଳ୍ପଦିନ ପାଇଁ ମୋର ଦେଶକୁ ଯାଉଛି । ଶୀଘ୍ର ଆସି ତୁମକୁ ସେଠାକୁ ନେଇଯିବି ।"

ଏକଥା ଶୁଣି ରମ୍ଭା ମୁଣ୍ଡରେ ବଜ୍ର ପଡ଼ିଗଲା । ସେ ଦୁଃଖରେ ଅଧୀର ହୋଇ ପଡ଼ିଲା । ବୀରବଲ ତାକୁ ବହୁ କଷ୍ଟରେ ସାନ୍ତ୍ୱନା ଦେଇ ବିଦାୟ ନେଇ ନିଜ ଦେଶକୁ ଚାଲିଗଲେ ।

ବୀରବଲ ଦିଲ୍ଲୀରେ ପହଞ୍ଚି ଆକବରଙ୍କୁ କହିଲେ ଯେ ମାଳବ ରାଜା ଯେଉଁ ସବୁ ଜିନିଷ ମାଗିଥିଲେ ସବୁ ଠିକ୍ ହୋଇ ଯାଇଛି । ଆକବର ଶୁଣି ଖୁସି ହୋଇଗଲେ ।

ବୀରବଲ କହିଲେ, "ସେ ସବୁ ଜିନିଷ ରଜାଙ୍କର ନିଜ ରାଜଧାନୀରେ ଅଛି । ବର୍ତ୍ତମାନ ଆପଣଙ୍କର ସହି ମୋହର ଥାଇ ମୋ ହାତରେ ରଜାଙ୍କ ନିକଟକୁ ଖଣ୍ଡେ ପତ୍ର ଦିଅନ୍ତୁ । ସେ ପତ୍ର ନେଇ ମୁଁ ରଜାଙ୍କ ସଙ୍ଗେ ଦେଖା କରି ସବୁ ଜିନିଷ ତାଙ୍କୁ ଦେଇଦେବି ।"

ବୀରବଲ ବାଦଶାଙ୍କଠାରୁ ପତ୍ର ପାଇ ଅନେକ ଲୋକବାକ ସୈନ୍ୟ ଖୁବ୍ ଆଡମ୍ବରରେ ମାଳବ ଦେଶକୁ ବାହାରିଲେ । ସେଠାରେ ପହଞ୍ଚି ସେ ରାଜାଙ୍କ ନିକଟକୁ ଖବର ପଠାଇଲେ ଯେ ଆକବର ବାଦଶାଙ୍କ ପତ୍ର ନେଇ ସେ ଦିଲ୍ଲୀରୁ ଆସିଅଛନ୍ତି । ରାଜା ସଙ୍ଗେ ସଙ୍ଗେ ତାଙ୍କୁ ଡକାଇ ପଠାଇଲେ । ବୀରବଲ ରାଜାଙ୍କ ନିକଟକୁ ଯାଇ ତାଙ୍କୁ ପ୍ରଣିପାତ କରି ଆକବରଙ୍କ ପତ୍ର ଦେଲେ । ରାଜା ପତ୍ର ପଢି ସେହି ସବୁଟି ଜିନିଷ ଆଣିବାକୁ କହିଲେ । ବୀରବଲ ପ୍ରଥମେ ତାଙ୍କ ସୁନ୍ଦର ସ୍ତ୍ରୀ ମନୋରମା ଓ ରମ୍ଭାକୁ ରାଜ ସଭାକୁ ଡକାଇ ପଠାଇଲେ ।

ବୀରବଲ କହିଲେ, "ମହାରାଜ, ମୁଁ କିଛି ଦିନ ତଳେ ଗୋଟିଏ ମହାଜନର ଛଦ୍ମବେଶରେ ଆପଣଙ୍କ ରାଜ୍ୟକୁ ଆସି କଟୁଆଳ ସାହେବଙ୍କ ଘର ପାଖରେ ଗୋଟିଏ କୋଠାରେ ରହୁଥିଲି । କଟୁଆଳ ମୋ ସଙ୍ଗେ ବନ୍ଧୁତା କରି ମତେ ଗୋଟିଏ ଉଚ୍ଚ ବଂଶର କନ୍ୟା ସଙ୍ଗେ ବିଭା କରାଇ ଦେଇଥିଲେ । ସେହି କନ୍ୟା ହେଉଛି ଏହି ମନୋରମା । ଦିନେ ମୋର ସ୍ତ୍ରୀଙ୍କୁ ପରୀକ୍ଷା କରିବା ଲାଗି ମୁଁ ଗୋଟାଏ ପାଚିଲା ତରଭୁଜକୁ ମଝିରୁ କାଟିଦେଇ ଖଣ୍ଡେ ନାଲି ରୁମାଲରେ ବାନ୍ଧି ତା ଜିମା ଦେଇ କହିଲି ଯେ ମୁଁ ଜଣେ ରଜା ପୁଅର ମୁଣ୍ଡ କାଟି ଆଣିଛି । ଏକଥା ଯେପରି ପ୍ରକାଶ ନହୁଏ, ସେଥିପାଇଁ ଖୁବ୍ ସାବଧାନ କରି ଦେଇଥିଲି । କିନ୍ତୁ ସେ କଟୁଆଳ ସାହେବଙ୍କୁ ଏ ଖବର ଦେବାରୁ ସେ ମତେ ବାନ୍ଧି ଆଣି ଆପଣଙ୍କ ପାଖକୁ ବିଚାର ପାଇଁ ନେଇ ଆସିଲେ । ସେଥିରେ ମୋର ମୃତ୍ୟୁଦଣ୍ଡ ହେଲା । ଏ ଖବର ପାଇ ମୋର ସ୍ତ୍ରୀ ଖରି ଖୁସି ହେଲା । ସେ ମୋର ଜୀବନ ରକ୍ଷା ପାଇଁ ଚେଷ୍ଟା କରିବା ଦୂରେ ଥାଉ ମୋ ସଙ୍ଗେ ଥରେ ଦେଖା ସୁଦ୍ଧା କଲା ନାହିଁ । ଅତଏବ ସେହି ହେଉଛି— ଉଚ୍ଚ କୁଳରେ ଜନ୍ମ ହେଲେ ମଧ୍ୟ ନୀଚ ସ୍ୱଭାବ ।"

ରାଜା ପ୍ରଥମ ଜିନିଷ ଠିକ୍ ବୋଲି କହିଲେ ।

ବୀରବଲ କହିଲେ, "ଏହି ରମ୍ଭା ଜଣେ ନର୍ତ୍ତକୀ । ନାଚଗୀତ ତାର ପେଷା । କିନ୍ତୁ ତାର ମୋ ପ୍ରତି ପ୍ରକୃତ ସ୍ନେହ ଅଛି । ସେ ଯେତେବେଳେ ଶୁଣିଲା ଯେ ମତେ ଫାସି ହୁକୁମ ହୋଇଛି, କାନ୍ଦି କାନ୍ଦି ସେ ଅସ୍ଥିର ହୋଇ ପଡ଼ିଲା । ସେ କିପରି ମୋର ପ୍ରାଣ ରକ୍ଷା କଲା ଆପଣ ଜାଣନ୍ତି । ତେଣୁ ସେ ହେଉଛି— ନୀଚ କୁଳରେ ଜନ୍ମ ହେଲେ ମଧ୍ୟ ମହତ୍ । ଏ ହେଲା ଆପଣଙ୍କ ଦ୍ୱିତୀୟ ଜିନିଷ ।

ରାଜା କହିଲେ, "ଠିକ୍ ହେଲା, ତୃତୀୟ ଜିନିଷ କାହିଁ ?"

ବୀରବଲ କହିଲେ, "ଏହି କଟୁଆଳ ସାହେବ ହେଉଛନ୍ତି ଆପଣଙ୍କ ରାସ୍ତାର କୁକୁର । କୁକୁରର ସ୍ୱଭାବ ହେଉଛି ଯେ, ଯେପର୍ଯ୍ୟନ୍ତ ସେ ତୁମଠାରୁ ରୁଟି ଖଣ୍ଡେ, ଭାତ ଗଣ୍ଡାଏ ପାଉଥିବ ସେ ପର୍ଯ୍ୟନ୍ତ ସେ ତୁମର । ଅନ୍ୟ କାହାଠାରୁ ପୁଣି ସେହିପରି ପାଇଲେ ତା' ପଛେ ପଛେ ଗୋଡ଼ାଇବ । ଏହି କଟୁଆଳ ମୋର ଅତି ପ୍ରିୟ ବନ୍ଧୁ ବୋଲି କହି ବୁଲୁଥିଲେ । ମୋ'ଠାରୁ ମଧ୍ୟ ଅନେକ ଉପହାର ପାଇଛନ୍ତି । କିନ୍ତୁ ରଜାଙ୍କଠାରୁ ପୁରସ୍କାର ପାଇବା ଲୋଭରେ ସେ ମତେ ବାନ୍ଧି କରି ନେଇଗଲେ । ମୋର ସ୍ତ୍ରୀଙ୍କ କଥା ଠିକ୍ କି ନା ବୁଝିଲେ ନାହିଁ । କେବଳ ଜଣେ ସ୍ତ୍ରୀ ଲୋକ କଥାରେ ମତେ ନାନା ଅପମାନ ଦେଇ ମାଡ଼ ମରାଇଲେ । ପୂର୍ବ ବନ୍ଧୁତା କଥା

ଏହା ବୋଲକେ ଭୁଲିଗଲେ । ଏଥିରୁ କଣ ଜଣା ପଡ଼ୁ ନାହିଁ ଯେ ସେ ଗୋଟିଏ ସସ୍ତାର କୁକୁର ?"

ରାଜାଙ୍କୁ ଏକଥା ସ୍ୱୀକାର କରିବାକୁ ପଡ଼ିଲା । ଶେଷରେ ସେ ବୀରବଲଙ୍କୁ ଚତୁର୍ଥ ଲକ୍ଷଣ ଦେଖାଇବାକୁ କହିଲେ ।

ବୀରବଲ କହିଲେ, "ମୋର ଦୋଷ କ୍ଷମା ହେଲେ ମୁଁ ଏଥର ଗୋଟିଏ ଅପ୍ରିୟ କଥା କହିବି ।"

ରାଜା କହିଲେ, "କିଛି ଭୟ ନାହିଁ, କହ ।"

ବୀରବଲ କହିଲେ, "ଜଣେ ରଜା ପୁଅକୁ ହତ୍ୟା କରିଯାଇଛି ଶୁଣି ଆପଣ ରାଗରେ ଅନ୍ଧ ହୋଇ ଯାଇଥିଲେ । ସେଥିପାଇଁ ଆପଣଙ୍କର ବିବେକ ବୁଦ୍ଧି ଲୋପ ପାଇଗଲା । ପ୍ରକୃତରେ ରଜାପୁଅ ମରିଛନ୍ତି କି ନା, ବାକ୍ସରେ ତାଙ୍କର ମୁଣ୍ଡ ଅଛି କି ନା ଆପଣ କିଛି ନଦେଖି ସାଙ୍ଗେ ସାଙ୍ଗେ ଫାସିର ହୁକୁମ ଦେଇଦେଲେ । ଏଥିରେ ନ୍ୟାୟ ବିଗିଡ଼ି ହେଲା କି ନା ଆପଣ ବୁଝି ପାରୁଥିବେ । ତେଣୁ ଆପଣଙ୍କର ଚତୁର୍ଥ ଲକ୍ଷଣ ମୋର ଦେଖାଇବା ଦରକାର ନାହିଁ । ନିଜେ ଦର୍ପଣ କରି ଦେଖିଲେ ଆପଣ ଜାଣି ପାରିବେ ।"

ଏକଥା ଶୁଣି ରାଜାଙ୍କ ମୁହଁ ମଳିନ ପଡ଼ିଗଲା । ସେ ଅନୁତାପ କରି କହିଲେ, "ପ୍ରକୃତରେ ମୋର ଅତ୍ୟନ୍ତ ଅନ୍ୟାୟ ହୋଇଛି । ବାସ୍ତବିକ୍ ମୁଁ ହେଉଛି ସିଂହାସନରେ ବସିଥିବା ଗଧ ।"

ଏହାପରେ ରାଜା ବୀରବଲଙ୍କ କୌଶଳ ଓ ବିଚକ୍ଷଣ ବୁଦ୍ଧିର ବହୁତ ପ୍ରଶଂସା କଲେ ଓ ତାଙ୍କୁ ଅନେକ ଧନରତ୍ନ ଦେଲେ ।

## ନିଜ ଆଖିକୁ ମଧ୍ୟ ବିଶ୍ୱାସ ନାହିଁ

ଗୋଟିଏ ଗ୍ରୀଷ୍ମର ଉପରେ ଅନ୍ଦର ମହଲରେ ଆକବରଙ୍କ ବିଛଣା କରିବାର ଭାର ଥିଲା । ଦିନେ ସେ ଭାବିଲା, "ମୁଁ ପ୍ରତିଦିନ ବିଛଣା କରୁଛି, କିନ୍ତୁ ବାଦଶା ସନ୍ତୁଷ୍ଟ ନହୋଇ କାହିଁକି କିଛି ଦୋଷ ବାହାର କରୁଛନ୍ତି । ଆଜି ମୁଁ ଭଲ କରି ବିଛଣା କରିବି ।" ଏହା କହି ସେ ସବୁ ବାରମ୍ବାର ଦେଖି ଝାଡ଼ିଝୁଡ଼ି କରି ଖୁବ୍ ଯତ୍ନରେ ବିଛଣା କଲା । କେଉଁଠାରେ ଧୂଳି ମଳି ଟିକିଏ ରହିଲା ନାହିଁ । ବିଛଣାଟି ଖୁବ୍ ସୁନ୍ଦର ଓ ନରମ ହୋଇଥିବାର ଦେଖି ତା ମନ ଖୁସି ହୋଇଗଲା । ସେ ଭାବିଲା, ଆଚ୍ଛା ମୁଁ ଥରେ ନିଜେ ଶୋଇ କରି ଦେଖେଁ କିପରି ଲାଗୁଛି ।

ଏହା କହି ସେ ବିଛଣା ଉପରକୁ ଗଲା ଓ ଗୋଟିଏ ଦାମୀ କମଳ ଘୋଡ଼ି ହୋଇ ଶୋଇ ରହିଲା । ଦିନସାରା କାମ କରି କରି ସେ ହାଲିଆ ହୋଇ ପଡ଼ିଥିଲା । ଏପରି ନରମ ବିଛଣାରେ ମଧ୍ୟ କେବେ ଶୋଇ ନଥିଲା । କିଛି ସମୟ ବିଛଣାରେ ପଡ଼ି ପଡ଼ି ତାକୁ ନିଦ ଆସିଗଲା । ଅଳ୍ପ ସମୟ ମଧ୍ୟରେ ସେ ଗାଢ଼ ନିଦରେ ଅଚେତା ହୋଇଗଲା ।

କିଛି ସମୟ ପରେ ବେଗମ ଶୋଇବାକୁ ଆସିଲେ । ବିଛଣାରେ ଜଣେ ଦେହ ଘୋଡ଼ି ହୋଇ ଶୋଇଥିବାର ଦେଖି ସେ ମନେକଲେ; ବାଦସା ହାଲିଆ ହୋଇ ଶୋଇ ପଡ଼ିଛନ୍ତି । ସେ କିଛି ପାଟିଗୁଣ୍ଡ ନକରି ଧୀରେ ଧୀରେ ଯାଇ ବାଦସାଙ୍କ ପାଖେ ଶୋଇ ପଡ଼ିଲେ ।

ଅଳ୍ପ ସମୟ ପରେ ବାଦସା ନିଜର କାମଦାମ ଶେଷ କରି ଶୋଇବାକୁ ଆସିଲେ । ବେଗମଙ୍କ ପାଖରେ ଗୋଟିଏ ଲୋକକୁ ଶୋଇଥିବାର ଦେଖି ସେ ରାଗରେ ଜଳି ଉଠି ଖଣ୍ଡା ଆଣି ତାକୁ ହାଣି ଦେବାକୁ ବସିଲେ । ଏହି ସମୟରେ ବୀରବଲଙ୍କର ଗୋଟିଏ କଥା ତାଙ୍କର ମନେ ପଡ଼ିଗଲା । ସେ କହିଥିଲେ, ନିଜର ଆଖିକୁ ମଧ୍ୟ ବିଶ୍ୱାସ ନାହିଁ । ସମୟ ସମୟରେ ଆଖି ଆମକୁ ଭୁଲ ଖବର ଦିଏ । ଏକଥା ତାଙ୍କର ମନକୁ ଆସିବାରୁ ସେ ସାଙ୍ଗେ ସାଙ୍ଗେ ବୀରବଲଙ୍କୁ ଡକାଇ ପଠାଇଲେ ।

ବୀରବଲ ଆସିବାରୁ ଆକବର ତାଙ୍କୁ ସବୁକଥା କହିଲେ । ବୀରବଲ କହିଲେ, "କଥାଟା କଣ ଭଲ କରି ଦେଖିବା ଦରକାର । ଆପଣ ପରଦା ଆଡ଼ୁଆଳରେ ରହନ୍ତୁ । ମୁଁ ଯାଇଁ ଦେଖେଁ ।"

ବୀରବଲ ଶୋଇବା ଘରକୁ ଯାଇ ବେଗମଙ୍କୁ ଉଠାଇ ଦେଲେ । ବୀରବଲ ତାଙ୍କୁ କହିଲେ, "ଆପଣଙ୍କ ପାଖରେ କିଏ ଶୋଇଛି ?"

ବେଗମ ରାଗରେ ତମତମ ହୋଇ କହିଲେ, "ତୁମେ ଏ ସମୟରେ ମୋ ଶୋଇଲା ଘରକୁ ଆସିଛ କାହିଁକି ? ପୁଣି ତୁମର ଏତେ ସାହସ ଯେ ମୋ ପାଖରେ କିଏ ଶୋଇଛି ବୋଲି ପଚାରୁଛ ? ବାଦସାଙ୍କୁ କଣ ତୁମେମାନେ ଟିକିଏ ହେଲେ ବିଶ୍ରାମ ଦେବ ନାହିଁ ? ମୁଁ ଶୋଇବାକୁ ଆସି ଦେଖିଲି ଯେ ବାଦସା ହାଲିଆ ହୋଇ ଶୋଇ ପଡ଼ିଛନ୍ତି । ସେଥିପାଇଁ ତାଙ୍କର ନିଦ ଭାଙ୍ଗିଯିବ ବୋଲି ମୁଁ ଆସି ଚୁପ୍ କରି ଶୋଇ ପଡ଼ିଲି । ତୁମକୁ ଏଠାକୁ ଆସିବାର ଅଧିକାର କିଏ ଦେଲା ? ଆଜି

ବାଦସାଙ୍କ ପାଖରେ ଏହାର ଖବର ହୋଇ ତୁମକୁ କଠିନ ଦଣ୍ଡ ଦିଆଯିବ । ବର୍ତ୍ତମାନ ଚାଲିଯାଅ ଏଠାରୁ ।"

ବୀରବଲ କହିଲେ, "ମୋତେ କ୍ଷମା କରିବେ ବେଗମ ସାହେବା ! ଗୋଟାଏ ଅତି ଜରୁରୀ କାମରେ ମୁଁ ବାଦସାଙ୍କ ସଙ୍ଗେ ଦେଖା କରିବାକୁ ଆସିଛୁ । ଆପଣ ପାଖ ଘରକୁ ଟିକଏ ଚାଲିଯା'ନ୍ତୁ ।"

ବେଗମ ଘର ଛାଡ଼ି ଚାଲିଯିବାକୁ ବୀରବଲ କମ୍ବଳ କାଢ଼ିଦେଇ ଦେଖନ୍ତି ତ ବାଦସାଙ୍କ ଚାକର ଶୋଇଛି । ବୀରବଲ ତାକୁ ଉଠାଇ ଦେଲେ । ଚାକରଟି ଆଖି ମଳି ମଳି ନିଦରୁ ଉଠିଲା । ବୀରବଲଙ୍କୁ ଦେଖି ସେ ଚମକି ପଡ଼ି ଖଟରୁ ଡେଇଁ ପଡ଼ିଲା । ବୀରବଲ ତାକୁ ଧମକାଇ କରି ପଚାରିଥିଲେ, "ତୁ ବଦମାସ୍ ଏଠାରେ କ'ଣ କରୁଥିଲୁ ?"

ଚାକର ଭୟରେ ଥରି ଥରି କହିଲା, "ଆଜ୍ଞା, ବାଦସା ମତେ ସବୁଦିନ ବିଛଣା ଭଲ କରି ପରା ହେଉ ନାହିଁ ବୋଲି ଗାଳି ଦିଅନ୍ତି । ଆଜି ମୁଁ ବହୁତ ଯତ୍ନରେ ବିଛଣା କରିଥିଲି । ବିଛଣା କିପରି ହୋଇଛି ପରଖ କରିବା ପାଇଁ ମୁଁ ତା ଉପରେ ଟିକଏ ଶୋଇ ପଡ଼ିଲି । ଦିନଯାକ କାମ କରି କ୍ଳାନ୍ତ ହୋଇଥିଲି, ସାଙ୍ଗେ ସାଙ୍ଗେ ମତେ ନିଦ ହୋଇଗଲା । ମୋର ଦୋଷ କ୍ଷମା କରନ୍ତୁ ।"

ବୀରବଲ ଚାକରକୁ ଚାଲିଯିବାକୁ କହିଲେ । ଆକବର ସବୁକଥା ନିଜେ ଶୁଣି ବୁଝି ପାରିଲେ ଯେ ବୀରବଲଙ୍କ କଥା ସତ । ଆଖିରେ ଦେଖିବା କଥା ମଧ୍ୟ ଭୁଲ୍ ହୋଇଯାଏ । ସେ ବୀରବଲଙ୍କ ଠାରେ କୃତଜ୍ଞତା ସ୍ୱୀକାର କରି କହିଲେ, "ତୁମ କଥା ମନେ ନ ରଖିଥିଲେ ଆଜି ବଡ଼ ଅନର୍ଥ ହୋଇ ଯାଇଥାନ୍ତା । ତୁମେ ମତେ ସେ ବିପଦରୁ ରକ୍ଷା କରିଛ ।"

## ଧୂଆଁ ପତ୍ର ଖାଏ କିଏ ?

ଦିନେ ଆକବର ଓ ବୀରବଲ ବୁଲି ଯାଉ ଯାଉ ଗୋଟିଏ ଧୂଆଁପତ୍ର କ୍ଷେତ ଦେଖି ପାଇଲେ । ଧୂଆଁପତ୍ର ଗୁଡ଼ିକ ଦୂରରୁ ଖୁବ ସୁନ୍ଦର ଦେଖା ଯାଉଥିଲା । ବୀରବଲ ତାକୁ ପ୍ରଶଂସା କରିବାକୁ ଲାଗିଲେ । ଆକବର ଦେଖି ପାରିଲେ ଯେ ଧୂଆଁ ପତ୍ର କ୍ଷେତ ପାଖରେ ଗୋଟିଏ ଗଧ ଠିଆ ହୋଇଛି । ଆକବର ଧୂଆଁପତ୍ର ବା ତମାଖୁ ଆଦୌ ଭଲ ପାଉ ନ ଥିଲେ । କିନ୍ତୁ ବୀରବଲ ଏସବୁର ଖୁବ ଭକ୍ତ ଥିଲେ । ଆକବର ବୀରବଲଙ୍କୁ ଅଟା କରି ଗଧକୁ ଦେଖାଇ ଦେଇ କହିଲେ, "ବୀରବଲ, ଦେଖ ଦେଖ, ଗଧଟା ମଧ୍ୟ ଧୂଆଁପତ୍ର ଛୁଇଁ ନାହିଁ ।"

"ବୀରବଲ ଧାଡ଼ିରେ ଧାଡ଼ିରେ କହିଲେ, "ହଁ ହଜୁର, କେବଳ ଏହିପରି ଜନ୍ତୁମାନେ ଧୂଆଁପତ୍ର ଖାଆନ୍ତି ନାହିଁ।"

ଆକବର ବୀରବଲଙ୍କ ଚତୁର ଜବାବରେ ଖୁସି ହୋଇ ହସି ଦେଲେ।

## ଫାସିରୁ ଖଲାସ

ଦିଲ୍ଲୀରେ ସ୍ୱରସ୍ୱତ ନାମରେ ଜଣେ ମହାଜନ ଥିଲା। ସମସ୍ତେ କହନ୍ତି ଯେ, ସକାଳୁ ଉଠି ପ୍ରଥମେ ତା ମୁହଁ ଯେ ଦେଖିବ, ତାକୁ ସେଦିନ ଖାଇବାକୁ ମିଳିବ ନାହିଁ। ଆକବର ଏକଥା ଶୁଣିପାରି ପରୀକ୍ଷା କରିବା ଲାଗି ସେ ମହାଜନକୁ ଡକାଇ ଆଣି ରାତରେ ନିଜ ଛାଉଣିରେ ରଖିଲେ ଏବଂ ସକାଳେ ଉଠି ତା ମୁହଁକୁ ଦେଖିଲେ। ମନେ ମନେ କହିଲେ, 'ଆଜି ତ ମୁଁ ପ୍ରଥମେ ଉଠି ସ୍ୱରସ୍ୱତ ମୁହଁ ଦେଖିଛି, ମତେ ଖାଇବାକୁ ମିଳିବ କି ନା ଦେଖାଯାଉ।"

ସେଦିନ ହଠାତ୍ ବେଗମଙ୍କ ଦେହ ଖରାପ ହେଲା। ଡାକ୍ତର ଆସିଲେ, ନାନା ଚିକିତ୍ସାର ବନ୍ଦୋବସ୍ତ କରାଗଲା। ଏହି କାର୍ଯ୍ୟରେ ବ୍ୟସ୍ତ ରହି ବାଦସାଙ୍କ ଖାଇବା ସମୟ ବହୁତ ବିଳମ୍ବ ହୋଇଗଲା। ଏହି ସମୟରେ ବାଦସାଙ୍କ ପେଟକୁ ମାରିଲା। ସେ ବଡ଼ ଅସ୍ଥିର ହୋଇ ପଡ଼ିଲେ। ଡ଼ାକ୍ତର ଦେଖି କହିଲେ, "ଆଜି କିଛି ଖାଇବେ ନାହିଁ। ପେଟରେ ବାୟୁ ବଢ଼ି ଯାଇଛି। ଖାଇଲେ ବେଶି ଖରାପ ହେବ।"

ବାଦସା ନଖାଇ ବିଛଣାରେ ପଡ଼ି ରହିଲେ। ଦିନଗଲା, ରାତି ଆସିଲା। ଡାକ୍ତର ମନା କରିଛି ବୋଲି ସେ ରାତରେ ମଧ୍ୟ କିଛି ଖାଇଲେ ନାହିଁ। ଏଣେ ପେଟମରା ବଢ଼ିବାକୁ ଲାଗିଲା। ଏହି ସମୟରେ ତାଙ୍କର ମନେ ପଡ଼ିଗଲା ଯେ ସେ ଆଜି ସକାଳୁ ଉଠି ସ୍ୱରସ୍ୱତ ମୁହଁ ଦେଖିଥିଲେ। ସେ ମନେ କଲେ, "ଏହି ଲୋକଟାର ମୁହଁ ଦେଖିବାରୁ ମୁଁ ବାଦସା ହୋଇ ଯଦି ମତେ ଖାଇବାକୁ ନ ମିଳିଲା, ତେବେ ସାଧାରଣ ଲୋକଙ୍କର କ'ଣ ନ ହେଉଥିବ। ସେ ଲୋକ ସମାଜ ମଧ୍ୟରେ ରହିବା ଉଚିତ ନୁହେଁ।" ଏହା ଭାବି ବାଦସା ସ୍ୱରସ୍ୱତକୁ ଫାସିର ହୁକୁମ ଦେଲେ।

ସ୍ୱରସ୍ୱତ ଏପରି ଅଦ୍ଭୁତ ହୁକୁମ ପାଇ କାନ୍ଦିବାକୁ ଲାଗିଲା। ତାର ଘରେ କାନ୍ଦ ବୋବାଳି ପଡ଼ିଗଲା। ଅନ୍ୟ ଲୋକମାନେ ମଧ୍ୟ ଏ ଖାମ୍‌ଖିଆଲି ହୁକୁମ କଥା ଶୁଣି ବାଦସାଙ୍କର ନିନ୍ଦା କଲେ। ଶେଷରେ ବୀରବଲ ଆସି ସ୍ୱରସ୍ୱତ ଘରେ ପହଞ୍ଚିଲେ। ସେ କାହାକୁ କିଛି ନକହି ସ୍ୱରସ୍ୱତ ପାଖକୁ ଯାଇ ତା କାନରେ କଣ ସବୁ କହି ଦେଇ ଚାଲିଗଲେ।

ଫାସି ଦେବାର ସମୟ ଆସିଲା । ସ୍ୱାବସ୍ଥନକୁ ଫାସି ସ୍ଥାନକୁ ନିଆଗଲା । ଫାସି ଦେବା ପୂର୍ବରୁ ଦୋଷୀକୁ ତାର ଶେଷ ଇଚ୍ଛା ପୂରଣ କରିବାକୁ ଦିଆଯାଏ । ଏଇଟା ହେଲା ରାଜ୍ୟର ନିୟମ । ସ୍ୱାବସ୍ଥନକୁ ସେହି ଅନୁସାରେ ପଚରା ଗଲା । ସେ କହିଲା, "ମୁଁ ବାଦସାଙ୍କ ସଙ୍ଗେ ଦେଖା କରିବାକୁ ଚାହେଁ ।" ଏ ଖବର ପାଇ ବାଦସା ସେଠାରେ ଆସି ପହଞ୍ଚିଲେ ।

ସେ ସ୍ୱାବସ୍ଥନକୁ ଶେଷ ଇଚ୍ଛା କଣ କହିବାକୁ କହିଲେ । ସ୍ୱାବସ୍ଥନ କହିଲା, "ମୋର କେବଳ ଗୋଟିଏ କଥା ପଚାରିବାର ଅଛି । ଏଇଟା କଣ ପ୍ରକୃତରେ ସତ ଯେ ମୋ ମୁହଁ ଦେଖିବାରୁ ଆପଣଙ୍କୁ ଖାଇବାକୁ ମିଳିଲା ନାହିଁ ?"

ବାଦସା କହିଲେ, "ହଁ, ସତ । ତୁମେ ବଞ୍ଚି ରହିଲେ କେହି ହେଲେ ଜଣେ ଲୋକ ପ୍ରତିଦିନ ଖାଇବାକୁ ପାଇବ ନାହିଁ ।"

ସ୍ୱାବସ୍ଥନ କହିଲା, "କିନ୍ତୁ ଏଟା କଣ ସତ ନୁହେଁ ଯେ ସେଦିନ ମୁଁ ଆପଣଙ୍କ ମୁହଁ ପ୍ରଥମରେ ଦେଖିଥିଲି ?"

ବାଦସା କହିଲେ, "ହଁ, ଠିକ୍ । କିନ୍ତୁ ସେଥିରେ କଣ ହେଲା ?" ସ୍ୱାବସ୍ଥନ କହିଲା, ସେଥିରୁ ଏହି କଥା ବୁଝାଗଲା ଯେ, ମୋ ମୁହଁ ଯେ ଦେଖିବ ତାକୁ ଖାଇବାକୁ ମିଳିବ ନାହିଁ, କିନ୍ତୁ ଆପଣଙ୍କ ମୁହଁ ଯେ ଦେଖିବ ତାର ମୁଣ୍ଡ କାଟ ହେବ । ଆପଣ ବିଚାର କରନ୍ତୁ, ଏକଥା ଶୁଣି ସଂସାରରେ ଲୋକେ ଆପଣଙ୍କୁ କଣ କହିବେ ?"

ଏକଥା ଶୁଣି ବାଦସା ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲେ, ଠିକ୍ କଥା । ମୋ ମନକୁ ଏକଥା ଯାଇ ନଥିଲା । ମୋ ମୁହଁ ଯେ ଦେଖିବ ତାର ସୌଭାଗ୍ୟ ଉଦୟ ହେବାର କଥା ।"

ସ୍ୱାବସ୍ଥନ କହିଲା, "ହଁ ଆଜ୍ଞା, ଆପଣ ହେଉଛନ୍ତି ପରଶୁ ପଥର । ପରଶୁ ପଥର ଲୁହାକୁ ମଧ୍ୟ ସୁନା କରିଦିଏ । ସେଥିପାଇଁ ତ ମୁଁ ଆଶା କରିଥିଲି ଯେ ମୋର ପରମପଦ ଲାଭ ହେବ ।"

ବାଦସା କହିଲେ, "ହଉ, ତୁମର ଫାସିଦଣ୍ଡ କଟିଗଲା । ତୁମେ ମୋ ମୁହଁ ଦେଖିଥିଲ ବୋଲି ତୁମକୁ ଗୋଟାଏ ବଡ଼ ପୁରସ୍କାର ମିଳିବ । ଆଚ୍ଛା କହିଲ ଭଲା, ତୁମକୁ ବୀରବଲ ଏକଥା ଶିଖାଇ ଦେଇଥିଲେ କି ?"

ସ୍ୱାବସ୍ଥନ କହିଲା, "ହଁ ଆଜ୍ଞା, ସେ ମୋର ଜୀବନ ରକ୍ଷା କରିଛନ୍ତି ।"

ମହାଜନ ବାଦସାଙ୍କଠାରୁ ପ୍ରଚୁର ଧନରତ୍ନ ନେଇ ଆନନ୍ଦରେ ଘରକୁ ଫେରିଲା ।

## ଷଣ୍ଢ ଦୁଧ

ଦିନେ ଆକବର ବୀରବଲଙ୍କୁ ଡାକି କହିଲେ, "ବୈଦ୍ୟ ମତେ ଗୋଟାଏ ଔଷଧ ଖାଇବାକୁ ଦେଇଛନ୍ତି, ତାକୁ ଷଣ୍ଢଦୁଧରେ ଖାଇବାକୁ ହେବ ! ଏ ବୈଦ୍ୟଗୁଡ଼ାକ କି ଅଦ୍ଭୁତ ! ତୁମେ ଏହାର ଯୋଗାଡ଼ କର ।"

ବୀରବଲ କହିଲେ, "ଷଣ୍ଢ କିପରି ଦୁଧ ଦେବ ? ଗାଈଦୁଧ ହୋଇପାରିବ ।"

ବାଦସା କହିଲେ, "ମୁଁ ବାରମ୍ବାର ପଚାରି ବୁଝିଛି ସବୁ । ଅନ୍ୟ କିଛି ଦୁଧ ହେବ ନାହିଁ । ଷଣ୍ଢଦୁଧ ହିଁ ଦରକାର । ତୁମ ଉପରେ ଏ ଭାର ରହିଲା । ଶୀଘ୍ର କୌଣସି ପ୍ରକାରେ ଆଣ ।"

ଏକଥା ଶୁଣି ବୀରବଲ ମନ ଦୁଃଖରେ ଘରକୁ ଫେରିଲେ । ତାଙ୍କ କିଛି ବୁଦ୍ଧି ଦିଶୁନଥିଲା ।

ବୀରବଲ ମୁହଁ ଶୁଖାଇ ବସିଥିବାର ଦେଖି ତାଙ୍କ ଝିଅ ପଚାରିଲା, "ବାପା, ତୁମେ କାହିଁକି ଚୂପ୍ ହୋଇ ଏପରି ବସିଛ ? କଣ ହୋଇଛି କି ?"

ବୀରବଲ କହିଲେ, "ମୋର ତ ମୁଣ୍ଡ କ'ଣ ହୋଇଗଲାଣି । ତୁ ପିଲାଟାଏ କଣ କରିବୁ ? ମୁଁ ଗୋଟାଏ ଗୋଳକ ଧନ୍ଦାରେ ପଡ଼ିଛି ।"

ଝିଅ କହିଲା, "ସମସ୍ତ ସମସ୍ୟାରେ ଖଣ୍ଡା ଦ୍ୱାରା ଯେଉଁ କାମ ହୋଇ ନ ପାରେ, ବୁଦ୍ଧିଦ୍ୱାରା ହୋଇଯାଏ । ମତେ କହିଲେ କ୍ଷତି କଣ ?"

ବୀରବଲ ତହୁଁ ଷଣ୍ଢଦୁଧ କଥା ସବୁ ଝିଅକୁ କହିଲେ । ଝିଅଟି ବାପ ପରି ଚାଲାକ ଚତୁର । ସେ କହିଲା, "ବାପା, ତୁମେ କିଛି ଚିନ୍ତା କର ନାହିଁ । ମୁଁ ସବୁ ଠିକ୍ କରିଦେବି ।"

ଏହାର କିଛିଦିନ ପରେ ସେ ଝିଅଟି ଘରୁ ଗୋଟିଏ ମଇଳା ଲୁଗାପଟା ଧରି ରାତିରେ ବାଦସାଙ୍କ ନିଆସ ପାଖ ନଦୀକୁ ଧୋଇବାକୁ ନେଲା । ସେଠାରେ ସେ ଗୋଟାଏ ଗୁଠ ପଥର ଉପରେ ଲୁଗା କାଚି କାଚି "ହାସ୍ ହାସ୍" ଶବ୍ଦ କରିବାକୁ ଲାଗିଲା । ଏ ଶବ୍ଦ ଶୁଣି ବାଦସାଙ୍କ ନିଦ ଭାଙ୍ଗିଗଲା । କଥା କଣ ବୁଝିବାକୁ ସେ ଜଣେ ପହରୀବାଲା ପଠାଇ ଦେଲେ । ପହରୀବାଲା ଝିଅକୁ ପଚାରିଲା,

"ତୁ କିଏ ? ଏଠାରେ କଣ କରୁଛୁ ?"

"ତୁମର କ'ଣ ଆଖି ନାହିଁ, ଦେଖି ପାରୁ ନାହଁ ? ମୁଁ ଜଣେ ସ୍ତ୍ରୀ ଲୋକ, ମଇଳା ଲୁଗା କାଚୁଛି ।"

"ଏଇଟା କଣ ଲୁଗା କାଚିବା ସମୟ ?"

"ମତେ ଯେତେବେଳେ ସମୟ ହେଲା କାଚିଲି ।"

"ତୁ କାହାର ଝିଅ ?"

"ମୋ ବାପାଙ୍କର ।"

"ତୋର ବାପା କିଏ ?"

"ମୋର ମାଆଙ୍କର ସ୍ୱାମୀ ।"

ପହରାବାଲା ବିରକ୍ତ ହୋଇ ଝିଅକୁ ବାଦଶାଙ୍କ ପାଖକୁ ନେଇଯାଇ ସବୁକଥା କହିଲା । ବାଦସା ତାକୁ ପଚାରିଲେ, ତୁ କି'ଏ ? କାହିଁକି ଏପରି ରାତିରେ ଲୁଗା କାଚୁଛୁ ?"

ଝିଅଟି ଭୟ ପାଇଲା ପରି ଥରି ଥରି କହିଲା, "ଆଜ୍ଞା, ମୁଁ, ମୁଁ ।"
ବାଦସା ଧମକ ଦେଖାଇ ପଚାରିଲେ, ଶୀଘ୍ର କହ ।"
ଝିଅ କହିଲା, "ଆଜ୍ଞା, ମୁଁ…ମୁଁ… ।"

ବାଦସା ତାକୁ ବୁଝାଇ କରି କହିଲେ, "କିଛି ଭୟ କରନା, ସବୁ ଖୋଲି କରି କହ ।"

ଝିଅ କହିଲା, "ବାଧ୍ୟ ହୋଇ ମତେ ରାତିରେ ଆସିବାକୁ ପଡ଼ିଛି ।"
"କାହିଁକି ?"

"ସେ କଥା କିପରି ଆପଣଙ୍କୁ କହିବି ? ଆଜି ଦିନ ବେଳେ ମୋ ବାପା ଗୋଟିଏ ପୁଅ ଜନ୍ମ କଲେ । ସେଥିପାଇଁ ମୁଁ ଦିନଯାକ କାମରେ ବ୍ୟସ୍ତ ଥିଲି । ତାଙ୍କର ଆଉ ବେଶି ଲୁଗା ନାହିଁ ବୋଲି ରାତିରେ ମୁଁ ଏସବୁ ଧୋଇବାକୁ ଆଣିଛି ।"

"ତୁ ପାଗଳ ନା ମୋ ସଙ୍ଗେ ଥଟ୍ଟା କରୁଛୁ ? ପୁରୁଷଟାଏ ପିଲା ଜନ୍ମ କରିଛି । ଏକଥା କିଏ କେବେ ଶୁଣିଛି ?"

"ଆଜ୍ଞା, ବିଶ୍ୱାସ ହେବ ନାହିଁ ସତ, କିନ୍ତୁ ଆଜିକାଲି ଆମ ସହରରେ ଏପରି ଅନେକ କଥା ଘଟୁଛି ।"

"କପର ? ବୁଝାଇ କହ କହ ।"

"ଆପଣଙ୍କ ଜଣଙ୍କୁ ଷଣ୍ଢଦୁଧ ଆଣିବାକୁ ବରାଦ କରିଛନ୍ତି । ଷଣ୍ଢ ଯେବେ ଦୁଧ ଦେବ, ପୁରୁଷ କାହିଁକି ପିଲା ଜନ୍ମ ନ କରିବ ?"

ଆକବର କଥାଟା ବୁଝିପାରି ପଚାରିଲେ, "ତୁ ବୀରବଲଙ୍କର କିଏ ହେଉଛୁ ?"

ଝିଅ କହିଲା, "ଆଜ୍ଞା, ମୁଁ ତାଙ୍କର ଝିଅ ।"

ବାଦଶା କହିଲେ, "ଓ , ଏବେ ଜଣାଗଲା ! ଯେମିତି ବାପାକୁ ସେମିତି ପିଲା । ତୁ ଯାଇ ବାପାଙ୍କୁ କହ, ମୁଁ ଷଣ୍ଢଦୁଧ ପାଇଛି । ସେ ଦୁଧ ତାଙ୍କ ପୁଅ ପାଇଁ ମଧ୍ୟ ଲୋଡ଼ା ହେବ ।"

ଝିଅଟି ହସି ଦେଇ ଚାଲିଗଲା । ବୀରବଲ୍ ସବୁ କଥା ଶୁଣି ଖୁବ ଖୁସି ହୋଇଗଲେ ।

ତହିଁ ଆରଦିନ ବୀରବଲଙ୍କୁ ଦେଖି ଆକବର ପଚାରିଲେ, "କହୋ ଏଣ୍ଡୁଡ଼ି-ଶାଳାରୁ କେବେ ବାହାରିଲ ?"

"ବୀରବଲ କହିଲେ, "ଆଜ୍ଞା, କାମ ସରିଗଲା ପରେ ।"

## ଚୋର ଧରା

ଥରେ ଜଣେ ମହାଜନ ଘରୁ ଗୁଡ଼ାଏ ଟଙ୍କା ଚୋରିଗଲା । ମହାଜନ ବୀରବଲ ପାଖରେ ଆସି ସବୁ କଥା କହିଲା, "ମୋ ଘରେ ଛଅ ଜଣ ଚାକର ଛଡ଼ା ଆଉ କେହି ନଥିଲେ । ମୁଁ ସେମାନଙ୍କୁ ଧମକ ଦେଇ, ଲୋଭ ଦେଖାଇ, ଫୁସୁଲା ଫୁସୁଲା କରି ଅନେକ କହିଲି; କିନ୍ତୁ କେହି କିଛି ମାନୁ ନାହାନ୍ତି ।"

ବୀରବଲ କହିଲେ, "ତୁମେ ସେମାନଙ୍କୁ ମୋ ପାଖକୁ ପଠାଇ ଦିଅ, ମୁଁ ଚେଷ୍ଟା କରି ଦେଖିବି ।"

ଚାକରମାନେ ଆସିବାରୁ ବୀରବଲ ସମସ୍ତଙ୍କୁ ଚୋରି କଥା ପଚାରିଲେ । ସମସ୍ତେ "ମୁଁ କରିନାହିଁ, ମୁଁ କରିନାହିଁ" ବୋଲି ପାଟି କରି ଉଠିଲେ ।

ବୀରବଲ ସମସ୍ତଙ୍କୁ ଏକା ମାପର ଛଖଣ୍ଡ ବାଡ଼ି ଦେଇ କହିଲେ, "ମୁଁ ଜଣେ ଯୋଗୀଙ୍କଠାରୁ ଗୋଟିଏ ମନ୍ତ୍ର ପାଇଛି । ସେହି ମନ୍ତ୍ର ପଢ଼ି ମୁଁ ଏସବୁ ବାଡ଼ି ତୁମମାନଙ୍କୁ ଦେଇଛି । ସବୁ ବାଡ଼ିର ଲମ୍ବ ସମାନ । ଏହି ବାଡ଼ିସବୁ ମୁଣ୍ଡତଳେ

ଦେଇ ତୁମେମାନେ ଆଜ ରାତ୍ରରେ ଏଠାରେ ଶୋଇବ । ଯେଉଁଲୋକ ଚୋରି କରିଥିବ ତାର ବାଡ଼ଖଣ୍ଡ ସକାଳୁ ଦୁଇ ଇଞ୍ଚ ବଢ଼ି ଯାଇଥିବ । ତୁମେମାନେ ଯାଇ ଅଲଗା ଘରେ ଶୁଅ । ସକାଳେ ମୁଁ ତୁମ ବାଡ଼ସବୁ ଦେଖିବି ।"

ସମସ୍ତେ ଯାଇ ଯେଝା ଘରେ ଚୁପ୍ ହୋଇ ଶୋଇଲେ । କିନ୍ତୁ ଚୋର ଆଖିରେ ନିଦ୍ରା ନାହିଁ । ସେ ଭାବିଲା, ଯଦି ବୀରବଲଙ୍କ କଥା ସତ ହୁଏ, ତେବେ ମୁଁ ତ କାଲି ଧରା ପଡ଼ିଯିବି । ଅନେକ ଭାବି ସେ ଛୁରି ଖଣ୍ଡେ ନେଇ ତାର ବାଡ଼ିରୁ ଦୁଇ ଇଞ୍ଚ କାଟି ପକାଇଲା । ମନେକଲା, ଏଥର ମୋ ବାଡ଼ି ଅନ୍ୟମାନଙ୍କ ବାଡ଼ି ସଙ୍ଗେ ସମାନ ହୋଇଯିବ । ବୀରବଲ କିଛି ଜାଣି ପାରିବେ ନାହିଁ । ଏହା ଭାବି ସେ ନିଶ୍ଚିନ୍ତରେ ଶୋଇଲା ।

ସକାଳେ ବୀରବଲ ଆସି ସମସ୍ତଙ୍କ ବାଡ଼ି ମାପ କରି ଦେଖିଲେ ଯେ, ଜଣକର ବାଡ଼ି ଦୁଇ ଇଞ୍ଚ ଛୋଟ ଅଛି । ସେ ତତ୍‌କ୍ଷଣାତ୍ କହିଦେଲେ, "ତୁମେ ଚୋରି କରିଛ ।"

ସେ ଲୋକଟି ତଥାପି ମାନିଲା ନାହିଁ । ବୀରବଲ କହିଲେ, "ତୁମେ ଚୋରି କରିଛ, ସେଥିରେ ଆଉ ସନ୍ଦେହ ନାହିଁ । ନିଜେ ମାନି ନଗଲେ ଅନେକ ଦଣ୍ଡ ପାଇବ ।"

ଚୋର ଶେଷରେ ଦୋଷ ମାନି ଯାଇ ଯେଉଁଠାରେ ଟଙ୍କା ପୋତି ରଖିଥିଲା ସେ ସ୍ଥାନ ଦେଖାଇ ଦେଲା । ମହାଜନ ଟଙ୍କା ପାଇ ବୀରବଲଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲା ।

## ଦୁଇଜଣ କବି

ଥରେ ଦୁଇଜଣ କବି ଆସି ଆକବରଙ୍କ ସଭାରେ ପହଞ୍ଚିଲେ । ସେମାନଙ୍କର ପାଣ୍ଡିତ୍ୟ, କବିତା ଇତ୍ୟାଦ ଦେଖି ଆକବର ମୁଗ୍‌ଧ ହୋଇଗଲେ । ଆକବର ଖୁସି ହୋଇ ସେମାନଙ୍କୁ ଅନେକ ଟଙ୍କା ଦେଲେ ଓ ପାଖରେ ରଖାଇ ନେଲେ । କ୍ରମେ ସେମାନେ ବାଦସାଙ୍କର ପ୍ରିୟପାତ୍ର ହୋଇ ଉଠିଲେ । ଏହାଦ୍ୱାରା ଅନ୍ୟ କବିମାନଙ୍କର ଭାରି ହିଂସା ହେଲା । ଦିନେ ସେମାନେ ଷଡ଼ଯନ୍ତ୍ର କରି ସେ ଦୁହିଁଙ୍କ ନାମରେ ଗୋଟିଏ ଗୁରୁତର ଅଭିଯୋଗ ଆଣିଲେ । ପ୍ରକୃତରେ ସେମାନେ କିଛି ଦୋଷ କରି ନଥିଲେ । କିନ୍ତୁ ଅଭିଯୋଗ ଶୁଣି ଆକବର ଯେତେବେଳେ ସେମାନଙ୍କୁ ପଚାରିଲେ, ସେମାନେ ବିଶେଷ କିଛି ନ କହି କଥାଟାକୁ ଉଡ଼ାଇ ଦେବାକୁ ବସିଲେ । ଟିକିଏ ଦୁଃଖ ପ୍ରକାଶ ସୁଦ୍ଧା କଲେ ନାହିଁ । ଏଥିରେ ବାଦସାଙ୍କର ଭାରି ରାଗ ହେଲା । ସେ ତତ୍‌କ୍ଷଣାତ୍

ସେମାନଙ୍କୁ ତାଙ୍କ ରାଜ୍ୟ ଛାଡ଼ି ଚାଲିଯିବାକୁ ହୁକୁମ ଦେଲେ । ସେମାନେ ନିଜର ଭୁଲ ବୁଝିପାରି ବହୁତ ଅନୁତାପ କଲେ, କିନ୍ତୁ ସେତେବେଳକୁ ଆଉ ଉପାୟ ନାହିଁ ।

ଦୁଃଖ କଷ୍ଟରେ ଦୁଇ ଜଣ ଯାକ ଅନେକ ସ୍ଥାନ ବୁଲିଲେ; କିନ୍ତୁ କେଉଁଠାରେ ଶାନ୍ତି ପାଇଲେ ନାହିଁ । ଶେଷରେ ସେମାନେ ଲୁଚି କରି ପୁଣି ଦିଲ୍ଲୀକୁ ଫେରି ଆସିଲେ ।

ଦିନେ ରାତିରେ ସେମାନେ ବୀରବଲଙ୍କ ସଙ୍ଗେ ଦେଖା କରି ତାଙ୍କର ସାହାଯ୍ୟ ମାଗିଲେ । ବୀରବଲ ସେମାନଙ୍କ ଦୁଃଖରେ ବିଗଳିତ ହୋଇ ସେମାନଙ୍କୁ ଗୋଟିଏ କୌଶଳ ବତାଇ ଦେଲେ ।

ତହିଁ ଆରଦିନ ସେମାନେ ବଜାର ଭିତର ଦେଇ ଯାଉଥିବା ସମୟରେ ବାଦସା ସେମାନଙ୍କୁ ଦେଖି ପାରିଲେ । ବାଦସାଙ୍କୁ ଦେଖି ସେମାନେ ଦୌଡ଼ିଯାଇ ଗୋଟିଏ ଗଛରେ ଚଢ଼ିଗଲେ । ବାଦସା ସେମାନଙ୍କ ପଛେ ପଛେ ଯାଇ ସେମାନଙ୍କୁ ଗଛ ଉପରେ ଦେଖିଲେ । ବାଦସା ସେମାନଙ୍କୁ ପଚାରିଲେ, "ଏପର୍ଯ୍ୟନ୍ତ କାହିଁକି ତୁମେମାନେ ରାଜ୍ୟ ଛାଡ଼ି ଯାଇ ନାହଁ ?"

ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଆପଣଙ୍କ ଆଦେଶ ମାନି ଆମେମାନେ ଅନେକ ଦେଶ ବୁଲିଲୁଁ । କିନ୍ତୁ ଯେଉଁଠାକୁ ଗଲୁଁ ଦେଖିଲୁଁ ସେଠା ଆପଣଙ୍କ ରାଜ୍ୟ । ଆପଣଙ୍କ ରାଜ୍ୟର ସୀମା ନାହିଁ । ଶେଷରେ କିଛି ଉପାୟ ନ ଦେଖି ଆମ୍ଭେମାନେ ଏଠାକୁ ଫେରି ଆସିଛୁଁ । ବର୍ତ୍ତମାନ ଏହି ଗଛ ଉପରେ ଚଢ଼ି ଆମ୍ଭେମାନେ ଏଠାରୁ ଆକାଶ ଆଡ଼କୁ ଯିବାକୁ ସ୍ଥିର କରିଛୁଁ; କାରଣ ପୃଥିବୀରେ ଆପଣଙ୍କ ରାଜ୍ୟ ଛଡ଼ା ଆଉ କେଉଁ ରାଜ୍ୟ ଦେଖି ପାରୁ ନାହୁଁ ।"

ଏ ଉତ୍ତର ଶୁଣି ବାଦସା ହସିଦେଲେ ଓ ସେମାନଙ୍କୁ ତଳକୁ ଓହ୍ଲାଇ ଆସିବାକୁ କହିଲେ । ସେମାନେ ତଳକୁ ଆସି ବହୁତ ଅନୁତାପ କରି ବାଦସାଙ୍କୁ କ୍ଷମା ପ୍ରାର୍ଥନା କଲେ । ବାଦସା ସେମାନଙ୍କୁ କ୍ଷମା ଦେଇ ପୁଣି ନିଜ ସଙ୍ଗରେ ରଖାଇଲେ ।

## ତା' ପରେ

ଥରେ ଆକବରଙ୍କୁ ଅନିଦ୍ରା ରୋଗ ହେଲା । ଯେତେ ଚେଷ୍ଟା କଲେ ମଧ୍ୟ ତାଙ୍କୁ ନିଦ ଆସେ ନାହିଁ । ସେ ବୈଦ୍ୟମାନଙ୍କୁ ଡ଼କାଇ ଅନେକ ଔଷଧ ଖାଇଲେ; କିନ୍ତୁ

କିଛି ଫଳ ହେଲା ନାହିଁ । ଜଣେ ବୈଦ୍ୟ କହିଲେ, "ଆପଣ ପ୍ରତିଦିନ ସନ୍ଧ୍ୟାବେଳେ ବିଛଣାରେ ଶୋଇ ସୁନ୍ଦର ସରସ ଗଳ୍ପ ଶୁଣନ୍ତୁ । ସେଥିରେ ମନ ହାଲୁକା ହେବ ଓ ନିଦ ଆସିବ ।"

ସ୍ଥିର ହେଲା ଯେ, ଦରବାରରେ ଯେତେ ଦରବାରୀ ଅଛନ୍ତି ସମସ୍ତେ ପାଳି କରି ଆସି ପ୍ରତିଦିନ ଗପ ଶୁଣାଇବେ । କିନ୍ତୁ ଯେତେ ଗପ ଶୁଣିଲେ ମଧ୍ୟ ସେ ସନ୍ତୁଷ୍ଟ ହୁଅନ୍ତି ନାହିଁ, କହନ୍ତି "ତା' ପରେ ।" ଆଉ ଗୋଟିଏ ଗପ ସରିଲେ ପୁଣି କହନ୍ତି, "ତା' ପରେ ?" ଏହିପରି ପ୍ରତିଦିନ ହୁଏ । ସଭାସଦ୍‌ମାନେ ବିରକ୍ତ ହୋଇଗଲେ । "ତା'ପରେ ?" କଥାଟା ଶେଷରେ ଗୋଟାଏ ଅଙ୍କାରେ ପରିଣତ ହୋଇଗଲା ।

କିଛିଦିନ ପରେ ବୀରବଲଙ୍କ ପାଳି ପଡ଼ିଲା । ସେ ଗୋଟିଏ ଗପ ଶେଷ କଲା-ପରେ ବାଦସା କହିଲେ, "ତା' ପରେ ?" ବୀରବଲ ଏହିପରି ଗପ କହି ଯାଉଥାନ୍ତି ଓ ବାଦସା ସେହିପରି କହୁଥାନ୍ତି, "ତା'ପରେ ?" ଶେଷରେ ବୀରବଲ ବିରକ୍ତ ହୋଇ ମନରୁ ଗୋଟିଏ ଗପ ତିଆରି କରି କହିଲେ ।

ସେ କହିଲେ, "ଜଙ୍ଗଲ ପାଖରେ ଗୋଟିଏ ଭୁଡ଼ିଆରେ ଗୋଟିଏ ଗରିବ ଲୋକ ରହୁଥିଲା ।"

"ତା'ପରେ ?"

"ଭୁଡ଼ିଆ ପାଖରେ ଗୋଟାଏ ବଡ଼ ବରଗଛ ଥାଏ । ସେଥିରେ ଅନେକ ପକ୍ଷୀ ଆସି ବସନ୍ତି । ଲୋକଟିର ଘରେ ଗୁଡ଼ିଏ ଚାଉଳ ଥିଲା । ପକ୍ଷୀଗୁଡ଼ିକ ଆସି ସେ ଚାଉଳକୁ ଥଣ୍ଟରେ ବୋହି ନେଇଯାନ୍ତି । ଲୋକଟି ପକ୍ଷୀମାନଙ୍କ ଉପଦ୍ରବ ଭଡ଼ ଭଡ଼ ବିରକ୍ତ ହୋଇଗଲା । ଶେଷରେ ସେ ଗୋଟାଏ ବଡ ମାଠିଆରେ ଚାଉଳ ତକ ଭର୍ତ୍ତି କରି ତାର ମୁହଁ ବନ୍ଦ କରିଦେଲା ।"

"ତା'ପରେ ?"

"ପକ୍ଷୀମାନେ ଘରେ ଚାଉଳ ନ ଦେଖି ମାଠିଆ ଉପରେ ବସି ତାକୁ ଥୁମ୍ପି-ବାକୁ ଲାଗିଲେ । ଅନେକ ଥୁମ୍ପି ଥୁମ୍ପି ଶେଷରେ ମାଠିଆ ମୁହଁରେ ଗୋଟିଏ ଛୋଟ କଣା ହୋଇଗଲା ।

"ତା'ପରେ ?"

"ମାଠିଆରେ କଣା ହେବାରୁ ଚାଉଳ ଦେଖାଗଲା । ଏହା ଦେଖି ହଜାରେ ଖଣ୍ଡେ ପକ୍ଷୀ ଆସି ସେଠାରେ ଜମା ହୋଇଗଲେ । ଗୋଟିଏ ଚଢ଼େଇ ଗୋଟିଏ ଚାଉଳ ଥଣ୍ଟରେ ଧରି ଉଡ଼ି ପଳାଇଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ଚଢ଼େଇ ଆସି ଗୋଟିଏ ଧାନ ଧରି ଉଡ଼ି ପଳାଇଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ଉଡ଼ିଗଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ଉଡ଼ିଗଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ଉଡ଼ିଗଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ଉଡ଼ିଗଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ଉଡ଼ିଗଲା ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ।"

"ତା'ପରେ ?"

ତା'ପରେ ଆଉ ଗୋଟିଏ ।"

"ତା'ପରେ ?"

"ତା'ପରେ ଆଉ ଗୋଟିଏ ।"

ବାଦସା କହିଲେ, "ବୀରବଲ, ଆଉ କେତୋଟି ଚଢ଼େଇ ଅଛନ୍ତି ?— କେତେ ଧାନ ଅଛି । କେତେବେଳେ ଉଡ଼ା ସରିବ ?"

ବୀରବଲ କହିଲେ, 'ଆପଣଙ୍କ' "ତା'ପରେ ଯେତେବେଳେ ଶେଷ ହେବ ।"

ବାଦସା କଥାଟା ବୁଝିପାରି ଟିକିଏ ହସିଦେଲେ । ସେହି ଦିନଠାରୁ ତାଙ୍କର "ତା'ପରେ ?" ବନ୍ଦ ହେଲା ।

ସମସ୍ତେ ବୁଝିପାରିଲେ, ବୀରବଲ ଠିକ୍ ଲୁହା ଜାଣି ପାଣି ଦେଇଛନ୍ତି ।

## କାହାର ବାପ ?

ଥରେ ବୀରବଲଙ୍କ ଦେହ ଖୁବ ଖରାପ ଥାଏ । ତାଙ୍କର ଅଣ୍ଟା ଓ ବେକ ଏପରି ବଥା କରୁଥାଏ ଯେ ସେ ସିଧା ହୋଇ ଚାଲି ପାରୁ ନଥାନ୍ତି । ବହୁତ କଷ୍ଟରେ ତଳକୁ ମୁହଁ ପୋତି ନଇଁ ନଇଁ ଚାଲୁଥାନ୍ତି ।

ତାଙ୍କୁ ଏପରି ଅବସ୍ଥାରେ ଦେଖି ଆକବର ଥଟ୍ଟା କରି କହିଲେ, "କହୋ ବୀରବଲ, କ'ଣ ଖୋଜୁଛ କି ?"

ବୀରବଲଙ୍କର ଏପରି କଷ୍ଟ ହେଉଥାଏ ଯେ ସେ କଥାକୁ କାନ ଦେଲେ ନାହିଁ । ତାଙ୍କ ମୁହଁରୁ ବାହାରି ଗଲା—ମୋ ବାପା !"

"ବାଦସା କହିଲେ, "ତୁମ ବାପା କ'ଣ ଭୂଇଁ ଭିତରେ ଅଛନ୍ତି ?"

ବୀରବଲ କହିଲେ, "ହଁ ଆଜ୍ଞା ।"

ବାଦସା କହିଲେ, "ତୁମେ ଯଦି ତାଙ୍କୁ ପାଉ ନାହଁ, ମୁଁ ସାହାଯ୍ୟ କରିବ ।"

ବୀରବଲ କହିଲେ, "କଲେ ବଡ ଉପକୃତ ହେବି ।"

ବାଦସା କହିଲେ, "ତୁମ ବାପାଙ୍କୁ ବାହାର କରିଦେଲେ ମତେ କ'ଣ ଦେବ ?"

ବୀରବଲ କହିଲେ, "ଅଧା ଦେବି ଆଜ୍ଞା ।"

ଆକବର ଏହି ପଦେ କଥାରେ ଯୋକ ମୁହଁରେ ଲୁଣ ଦେଲା ପରି ଚୁପ୍ ହୋଇଗଲେ ।

## ପରୀ ଓ ଡାହାଣୀ

ଦିନେ ଆକବର ବୀରବଲଙ୍କୁ କହିଲେ, "ପରୀ ଓ ଡାହାଣୀଙ୍କର ନାମ ଶୁଣିଅଛି । କିନ୍ତୁ ମୁଁ ଆଜ ପର୍ଯ୍ୟନ୍ତ ସେମାନଙ୍କୁ ଦେଖି ନାହିଁ ।

ବୀରବଲ କହିଲେ, "ମୁଁ ଶୀଘ୍ର ଆପଣଙ୍କୁ ଦେଖାଇ ଦେବି ।"

ଏହାପରେ ଦିନେ ବୀରବଲ ନିଜର ସ୍ତ୍ରୀ ଓ ଜଣେ ଅତି ସୁନ୍ଦରୀ ବେଶ୍ୟାକୁ ସାଙ୍ଗରେ ନେଇ ଆକବରଙ୍କ ପାଖରେ ପହଞ୍ଚିଲେ । ବୀରବଲ ନିଜର ସ୍ତ୍ରୀଙ୍କୁ ଦେଖାଇ ଦେଇ ବାଦସାଙ୍କୁ କହିଲେ, 'ଏ ହେଉଛନ୍ତି ପରୀ । ତାଙ୍କ ଗୁଣ ମୁଁ କଥାରେ କହି-ପାରିବି ନାହିଁ । ସେ କେବଳ ମୋର ସ୍ତ୍ରୀ ନୁହନ୍ତି । ସେ ମୋର ସଖୀ, ଭଉଣୀ, ଦାସୀ

ମନ୍ତ୍ରୀ ସବୁ କାମ କରନ୍ତି । କି ସୁଖରେ, କି ଦୁଃଖରେ ସେ ମୋ ପାଖେ ଛାଇ ପରି ରହିଥା'ନ୍ତି । ତାଙ୍କ ସଙ୍ଗେ ତୁଳନା ଦେବାକୁ ମୁଁ ଆଜି ପର୍ଯ୍ୟନ୍ତ କୌଣସି ନାରୀ ଦେଖି ନାହିଁ ।"

ଆକବର କହିଲେ. "ମୁଁ ଶୁଣିଛି, ପଦ୍ମିମାନଙ୍କର ବର୍ଣ୍ଣ ଖୁବ୍ ସଫା ଓ ଉଜ୍ଜ୍ୱଳ । କିନ୍ତୁ ସ୍ତ୍ରୀଙ୍କର ତ ସେପରି ନୁହେଁ ।"

ବୀରବଲ କହିଲେ, "କେବଳ ବାହାରର ବର୍ଣ୍ଣ ଦେଖି ସୌନ୍ଦର୍ଯ୍ୟ ବିଗ୍ଚାର କରାଯାଏ ନାହିଁ । ସ୍ତ୍ରୀର ପ୍ରକୃତ ସୌନ୍ଦର୍ଯ୍ୟ ଥାଏ ଭିତରେ—ଥାଏ ତାର ଗୁଣରେ । ତାଙ୍କ ଯୋଗୁଁ ମୁଁ ଘରେ ସ୍ୱର୍ଗସୁଖ ଅନୁଭବ କରେ । ଏହି ବିଚାରରେ ସେ ପଦ୍ମି, ଦେବୀ ।"

ଅକବର କହିଲେ, ତୁମ କଥା ଠିକ୍ । ମୁଁ ଏଥିରେ ଏକମତ ।"

ବୀରବଲ ବେଶ୍ୟାକୁ ଦେଖାଇ ଦେଇ କହିଲେ, "ସ୍ତ୍ରୀଙ୍କର ବାହାର ରୂପ ଦେଖୁଛନ୍ତି ଅତି ସୁନ୍ଦର । ଯେ କେହି ଲୋକ ଦେଖିଲେ ମୁଗ୍ଧ ହୋଇଯିବ । କିନ୍ତୁ ସେ ରୂପ କେବଳ କୁହୁକ । ଏହି କୁହୁକରେ ପଡ଼ି କେତେ ଲୋକଙ୍କର ଯେ ସର୍ବନାଶ ହେଉଛି ତାର ସୀମା ନାହିଁ । ଏମାନଙ୍କର ସ୍ନେହ ମମତା ନାହିଁ କି ଦୟା ମାୟା ନାହିଁ । ଡାହାଣୀ ଯେପରି ରକ୍ତ ଶୋଷି ନିଏ, ଏମାନେ ସେହିପରି ମନୁଷ୍ୟର ଧନରତ୍ନ ବଳବୟସ ବୁଦ୍ଧି ବିବେକ ସବୁ ଶୋଷି ନିଅନ୍ତି ।"

ବାଦସା ବୀରବଲଙ୍କ କଥାରେ ସନ୍ତୁଷ୍ଟ ହୋଇ ସେ ସମସ୍ତଙ୍କୁ ଯଥେଷ୍ଟ ପୁରସ୍କାର ଦେଇ ବିଦାୟ ଦେଲେ ।

## ଫମ୍ପା ମୁଣ୍ଡ

ବୁଢ଼ା କାଳରେ ଅକବରଙ୍କର ବାଳ ପାଚିଯିବାରୁ ସେ ବାଳରେ ରଙ୍ଗ ଲଗାଉ ଥିଲେ । ରଙ୍ଗ ଲଗାଇଲେ ବାଳ କଳା ଦିଶେ ଓ ଲୋକ ସେତେ ବୁଢ଼ା ଜଣାପଡ଼େ ନାହିଁ ।

ଦିନେ ଅକବର ବାଳରେ ରଙ୍ଗ ଲଗାଉଛନ୍ତି, ଏପରି ସମୟରେ ବୀରବଲ ସେଠାରେ ପହଞ୍ଚିଲେ । "ଆକବର ପଚାରିଲେ, ରଙ୍ଗ ଲଗାଇଲେ କ'ଣ ମସ୍ତିଷ୍କର କିଛି କ୍ଷତି ହୁଏ ?"

ବୀରବଲ କହିଲେ, "ଅଜ୍ଞା, ଯେଉଁମାନେ ବାଳରେ ରଙ୍ଗ ଲଗାନ୍ତି ସେମାନଙ୍କର ମସ୍ତିଷ୍କ ନାହିଁ, ମସ୍ତିଷ୍କର କ୍ଷତି ହେବ କ'ଣ ?"

ବାଦସା କାରଣ ପଚାରିଲେ । ବୀରବଲ କହିଲେ, "ନଦୀରେ ଯେଉଁ ପାଣି ବୋହି ଗଲାଣି ତାକୁ କେହି ଫେରାଇ ଆଣି ପାରିବ ନାହିଁ । ସେହିପରି ଯୌବନକୁ ଫେରାଇ ହୁଏ ନାହିଁ । ଯେଉଁମାନେ ଯୌବନର ସୌନ୍ଦର୍ଯ୍ୟକୁ ପୁଣି ପାଇବାକୁ ଚେଷ୍ଟା କରନ୍ତି ସେମାନେ ନିର୍ବୋଧ । ସେମାନଙ୍କର ମୁଣ୍ଡ ଫମ୍ପା । ସିଂଘ ଦାନ୍ତ ଭାଙ୍ଗିଦେଲେ କ'ଣ ଗାଈଟା ବାଛୁରୀ ହୋଇଯିବ ?"

## ନାହିଁ ନଥିବା କାମ

ଦିନେ ଆକବର ବୀରବଲଙ୍କୁ କହିଲେ, "ତୁମ ପରି ଚତୁର ଲୋକ କମ୍ ଅଛନ୍ତି । ତୁମର ବୁଦ୍ଧି ଯେପରି, ବାକ୍ ସ୍ୱତନ୍ତ୍ର ସେହିପରି ।"

ବୀରବଲ କହିଲେ, "ଏ ସବୁର ମୂଳ ହେଉଛନ୍ତି ଆପଣ । ଆପଣଙ୍କ ପାଖରେ ମୁଁ ନଥିଲେ ଏ ବୁଦ୍ଧି କୁଆଡ଼େ ମିଳେଇ ଯାଆନ୍ତାଣି । ସୂର୍ଯ୍ୟ ନଥିଲେ ଚନ୍ଦ୍ରରେ ଆଲୁଅ ଆସନ୍ତା କୁଆଡ଼ୁ ?"

ବାଦସା କହିଲେ "ତୁମର ତ ଅନେକ ବୁଦ୍ଧିର ପରିଚୟ ପାଇଛୁ । ବର୍ତ୍ତମାନ ମୁଁ ଚାହେଁ, ତୁମେ ଗୋଟାଏ କିଛି ନାହିଁ ନଥିବା କାମ କରି ମତେ ଦେଖାଇ ଦିଅ ।"

ବୀରବଲ କହିଲେ, "ଆପଣଙ୍କ ଇଚ୍ଛା ନିଶ୍ଚୟ ପୂରଣ ହେବ । କିନ୍ତୁ ଯଦି କିଛି ଅପରାଧ ହୁଏ, ମତେ କ୍ଷମା ଦେବେ । ଏଥିରେ ସମୟ ବେଶି ଲାଗିବ ଓ ଅନେକ ଟଙ୍କା ଖର୍ଚ୍ଚ ହେବ ।"

ବାଦଶା କହିଲେ, "ସେଥିପାଇଁ କିଛି ଚିନ୍ତା ନାହିଁ । ଯେତେ ଟଙ୍କା ଦରକାର ତୁମକୁ ଦିଆଯିବ । ତୁମେ କାର୍ଯ୍ୟ ଆରମ୍ଭ କର ।"

ବାଦସାଙ୍କ ହୁକୁମରେ ବୀରବଲ ଚନ୍ଦ୍ରାଘରୁ ଛଅଲକ୍ଷ ଟଙ୍କା ପାଇଲେ । ଟଙ୍କା ନେଇ ସେ ଅନେକ ଦାନ ଖଇରାତ କଲେ ଓ ବାକିଟା ନିଜ ପାଖରେ ରଖିଲେ ।

ଅନେକ ଦିନ ବିତିଗଲା । ଆକବର ସେ କଥା ଭୁଲିଗଲେ । ଦିନେ ସେ ଖବର ପାଇଲେ ଯେ ବୀରବଲ ଶକ୍ତ ବେମାରରେ ପଡ଼ିଛନ୍ତି । ଏହା ଶୁଣି ବାଦସା ତାଙ୍କୁ ଦେଖିବାକୁ ବାହାରିଲେ । ତାଙ୍କ ଘରକୁ ଯାଇ ଦେଖିଲେ ଯେ ବୀରବଲ ମରଣାପନ୍ନ ଅବସ୍ଥାରେ ପଡ଼ିଛନ୍ତି । ଆକବର କହିଲେ, "ମୋତେ ଆଗରୁ ଖବର ଦେଲ ନାହିଁ କାହିଁକି ? ମୁଁ ବର୍ତ୍ତମାନ ଜଣେ ପ୍ରସିଦ୍ଧ ବୈଦ୍ୟ ପଠାଇ ଦେଉଛି । ସେ ଶୀଘ୍ର ତୁମକୁ ଭଲ କରିଦେବେ ।"

ବୀରବଲ କହିଲେ, "ମୁଁ ଆଜି ଜୀବନରେ ଆଶା ଦେଖି ପାରୁ ନାହିଁ । ମରଣକୁ ମୋର ଭୟ ନାହିଁ । କେବଳ ମୋର ପରିବାର ପାଇଁ ମୁଁ ଚିନ୍ତିତ ।"

ଆକବର କହିଲେ, "ତୁମେ ଚିନ୍ତା କର ନାହିଁ । ମୁଁ ସେମାନଙ୍କର ଭାର ନେବି ।"

ଏହାର ତିନିଦିନ ପରେ ଆକବର ବୀରବଲଙ୍କର ମୃତ୍ୟୁ ସମ୍ବାଦ ପାଇଲେ । ସେ ଅତ୍ୟନ୍ତ ଦୁଃଖିତ ହେଲେ । ବାଦଶା ନିଜେ ଓ ତାଙ୍କର ସଭାସଦମାନେ କବର ସ୍ଥାନକୁ ପଟୁଆର କରି ଚଲେ । ତିନିଦିନ ପର୍ଯ୍ୟନ୍ତ ରାଜ୍ୟର ସୁଭଆଡ଼େ ଶୋକ ପ୍ରକାଶ କରାଗଲା ।

ଅନେକ କାଳ ବିତିଗଲା । ଦିନେ ଆକବର ସଭାରେ ବସିଛନ୍ତି, ଦରୁଆନ ଧଇଁସଇଁ ହୋଇ ଦୌଡ଼ି ଆସି କହିଲା, "ହଜୁର, ବୀରବଲ୍ ।"

ଏହି ଅବସରରେ ବୀରବଲ ସଭାରେ ଆସି ଠିଆ ହେଲେ । ସମସ୍ତେ ଭୟ ପାଇ ଚିତ୍କାର କରି ଉଠିଲେ, "ଭୂତ ! ଭୂତ !"

ବାଦଶା ନିଜେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁମେ କଣ ବୀରବଲ ?"

"ଆଜ୍ଞା, ହଁ ।"

"ତୁମେ ଯମପୁରରୁ ଆସିଲ କିପରି ?"

"ମୁଁ ମରିଥିଲି ସତ; କିନ୍ତୁ ଯମରାଜ ମୋର ବାକ୍ ପଟୁତାରେ ଖୁସି ହୋଇ ମତେ ଏଠାକୁ ଆସିବାକୁ ଅନୁମତି ଦେଇଛନ୍ତି ।"

"ତୁମେ ଆସିବାରୁ ମୁଁ ଭାରି ଖୁସି ହୋଇଛି । ତୁମେ ନ ଥିବାରୁ ରାଜସଭା ନୀରସ ହୋଇ ପଡ଼ିଥିଲା ।"

"ମୁଁ ଆପଣଙ୍କ ପାଇଁ ସ୍ୱର୍ଗରୁ ଗୋଟିଏ ପକ୍ଷୀ, ଗୋଟିଏ ଉଆସ ଓ କେତେ-ଗୁଡ଼ିଏ ଅଦ୍ଭୁତ ପୋଷାକ ଆଣିଛି ।"

"କାହିଁ ? ସେ ସବୁ ଦେଖାଅ ।"

"ସେହି ନୂଆ ଉଆସରେ ପକ୍ଷୀ ଅଛନ୍ତି । ଆପଣ ନିଜେ ତାଙ୍କୁ ପାଛୋଟି ଆଣିବାକୁ ନଗଲେ ସେ ଆସିବେ ନାହିଁ ।"

ଆକବର ପ୍ରଥମେ ଜଣେ ମନ୍ତ୍ରୀ ଓ ଆଉ କେତେଜଣ ସଭାସଦଙ୍କୁ ସବୁ ଜିନିଷ ଦେଖି ଆସିବାକୁ ପଠାଇଲେ । ସେମାନେ ଯାଇ ଦେଖିଲେ ଯେ ଗୋଟିଏ ନିର୍ଜନ ସ୍ଥାନରେ ଅତି ସୁନ୍ଦର ପାଞ୍ଚ- ମହଲା ଉଆସଟିଏ ତିଆରି ହୋଇଛି । ବୀରବଲ ଫାଟକ

ପାଖରେ ଠିଆ ହୋଇ ସେମାନଙ୍କୁ କହିଲେ, "ହେଇ ଦେଖନ୍ତୁ, ପାଞ୍ଚ ମହଲର ବାରଣ୍ଡା ଉପରେ ପରୀରାଣୀ ବସିଛନ୍ତି । କି ମନମୁଗ୍ଧକର ସ୍ୱର୍ଗୀୟ ରୂପ ଦେଖୁଛନ୍ତି ତ ?"

ସେମାନେ କହିଲେ, "ବାରଣ୍ଡାରେ ତ ଆମେମାନେ କାହାରିକୁ ଦେଖି ପାରୁ ନାହୁଁ ।"

ବୀରବଲ କହିଲେ, "ଓହୋ ! ମୁଁ ଗୋଟିଏ କଥା କହିବାକୁ ଭୁଲି ଯାଇଥିଲି । ସେ ସ୍ୱର୍ଗର ପରୀ କି ନା, କେବଳ ଯେଉଁମାନଙ୍କର ଜନ୍ମ ବିଷୟରେ କୌଣସି ଗଣ୍ଡଗୋଳ ନାହିଁ ଓ ଯେଉଁମାନଙ୍କର ସ୍ତ୍ରୀ ପ୍ରକୃତରେ ସତୀ, ସେହିମାନେ ହିଁ କେବଳ ତାଙ୍କୁ ଦେଖି ପାରିବେ । ବର୍ତ୍ତମାନ ଆପଣମାନେ ଭଲକରି ଦେଖନ୍ତୁ । ଦେଖି ପାରୁଛନ୍ତି ତ ?"

ମନ୍ତ୍ରୀ କହିଲେ, "ହଁ, ମୁଁ ପରିଷ୍କାର ଦେଖି ପାରୁଛି । କି ଅପୂର୍ବ ରୂପ !"

କାଳେ ତାଙ୍କ ଜନ୍ମ ସମ୍ବନ୍ଧରେ ଓ ନିଜର ସ୍ତ୍ରୀଙ୍କ ସମ୍ବନ୍ଧରେ କାହାର ସନ୍ଦେହ ଆସିବ, ସେଥିଲାଗି ସେ ପରୀଙ୍କୁ ଦେଖିଛନ୍ତି ବୋଲି କହିଦେଲେ । କିନ୍ତୁ ପ୍ରକୃତରେ ସେ ପରୀ ଫରୀ କିଛି ଦେଖି ନାହାନ୍ତି । ତାଙ୍କ ଦେଖା ଶିଖା ଅନ୍ୟ ସଭାସଦ୍‌ମାନେ ମଧ୍ୟ ପରୀ ଦେଖିଛନ୍ତି ବୋଲି କହିଲେ । ସେମାନେ ସମସ୍ତେ ଆସି ବାଦସାଙ୍କ ଆଗରେ ପରୀଙ୍କର ଅସାଧାରଣ ରୂପ ବର୍ଣ୍ଣନା କଲେ ।

ଶେଷରେ ବାଦସା ପଚାଶ ଆଉ କରି ସେହି ଉଆସ ପାଖକୁ ବାହାରିଲେ । ଉଆସଟି ଦେଖି ସେ ଖୁବ ଖୁସି ହୋଇଗଲେ । ବୀରବଲଙ୍କୁ କହିଲେ, "ଚାଲ ତେବେ ପରୀଙ୍କ ପାଖକୁ ଯିବା ।"

ବୀରବଲ କହିଲେ, "ଦେଖନ୍ତୁ, ପରୀରାଣୀ ଆପଣଙ୍କୁ ପାଞ୍ଚ ମହଲ ଉପରୁ ଅନାଇ ରହିଛନ୍ତି ।"

ବାଦସା କହିଲେ, "କାହାନ୍ତି ସେ ?"

ବୀରବଲ କହିଲେ, "ଓହୋ ! ମୁଁ ଗୋଟିଏ କଥା କହିବାକୁ ଭୁଲିଯାଇଛି । ସେ ସ୍ୱର୍ଗର ପରୀ । ସେଥିପାଇଁ ସମସ୍ତେ ତାଙ୍କୁ ଦେଖି ପାରିବେ ନାହିଁ । ଯେଉଁମାନଙ୍କ ଜନ୍ମରେ କିଛି ଗଣ୍ଡଗୋଳ ନାହିଁ ଓ ଯେଉଁମାନଙ୍କର ସ୍ତ୍ରୀ ପ୍ରକୃତରେ ସତୀ, ସେହିମାନେ କେବଳ ତାଙ୍କୁ ଦେଖି ପାରିବେ । ମୁଁ ସ୍ୱର୍ଗରୁ ଯେଉଁ ଅଦ୍ଭୁତ ପୋଷାକ ଆଣିଛି, ତାକୁ ମଧ୍ୟ ସେହିପରି ସମସ୍ତେ ଦେଖି ପାରିବେ ନାହିଁ । ମନ୍ତ୍ରୀ ଓ ସଭାସଦ୍‌ମାନେ ତାକୁ ଦେଖିଛନ୍ତି ।"

ଜଣେ ସଭାସଦ କହିଲେ, "ହଁ, ହେଉଛି ସତ ଠିଆ ହୋଇଛନ୍ତି ।" ଅନ୍ୟମାନେ ସମସ୍ତେ ସେହି କଥା କହିଲେ । ନେତ୍ର ଆକବର ପରୀଙ୍କୁ ଦେଖି ପାରୁନାହାନ୍ତି ବୋଲି କହି ପାରିଲେ ନାହିଁ । ସେ ହଠାତ୍ କହି ପକାଇଲେ, "ହଁ, ହଁ, ତାଙ୍କୁ ଦେଖି ପାରୁଛି । ପ୍ରକୃତରେ ଖୁବ ସୁନ୍ଦରୀ ! ବୀରବଲ, ଏଥର ଚାଲ ତାଙ୍କ ପାଖକୁ ଯିବା ।"

"ବୀରବଲ କହିଲେ, "ଏସବୁ ପୋଷାକ ଛାଡ଼ି ମୁଁ ଯେଉଁ ପୋଷାକ ସବୁ ଆଣିଛି ସେହି ପୋଷାକ ପିନ୍ଧି ସେଠାକୁ ଯିବାକୁ ହେବ ।"

ଏହା କହି ବୀରବଲ ବାଦଶାଙ୍କୁ ଗୋଟିଏ ସୁନ୍ଦର ପୋଷାକ ପିନ୍ଧିବାକୁ ଦେଲେ । ମନ୍ତ୍ରୀଙ୍କୁ କହିଲେ, "ନେଇ ନଅନ୍ତୁ ଆପଣଙ୍କ ପୋଷାକ ।"

ମନ୍ତ୍ରୀ କହିଲେ, "କାହିଁ, ମୁଁ ତ ଦେଖି ପାରୁ ନାହିଁ ?"

ବୀରବଲ କହିଲେ. "ଏଇ ମୋ ହାତରେ ଅଛି ସବୁ । ଦେଖିପାରୁନାହାନ୍ତି ?"

ମନ୍ତ୍ରୀ ନିଜର ମର୍ଯ୍ୟାଦା ହାନି ଭୟରେ କହିଲେ, "ହଁ, ଦେଖିଲି । ଦଅନ୍ତୁ ମୁଁ ପିନ୍ଧି ପକାଏ ।"

ମନ୍ତ୍ରୀ ନିଜର ସବୁ ପୋଷାକ ଉତ୍ତାରି ପକାଇଲେ ଓ ସ୍ୱର୍ଗୀୟ ପୋଷାକ ପିନ୍ଧିଥିବାର ଲୋକମାନଙ୍କୁ ଦେଖାଇଲେ । କିନ୍ତୁ ପ୍ରକୃତରେ ସେ ହୋଇ ଯାଇଥିଲେ ଅର୍ଦ୍ଧ ଲଙ୍ଗଳା ।

ସେହିପରି ଭାବରେ ବୀରବଲ ସବୁ ସଭାସଦ ଓ ଅନ୍ୟାନ୍ୟ ଲୋକଙ୍କୁ ଲଙ୍ଗଳା କରାଇ ଦେଲେ । କାହା ଦେହରେ ଟିକିଏ ସୂତା ମଧ୍ୟ ଦେଖା ନାହିଁ । ଏହାପରେ ସେ ଉଆସ ଭିତରକୁ ଚାଲିଯାଇ ଅଳ୍ପ ସମୟରେ ଫେରି ଆସିଲେ । ବାଦଶାଙ୍କୁ କହିଲେ, "ମହାରାଜ, ମୁଁ ପରୀରାଣୀଙ୍କୁ ପଚାରିବାକୁ ଯାଇଥିଲି । ସେ କହିଲେ ଯେ, ବର୍ତ୍ତମାନ ଶୁଭ ସମୟ ନୁହେଁ । ଦୁଇଦିନ ପରେ ସେ ଆପଣଙ୍କ ଉଆସକୁ ଯାଇ ନିଜେ ଦେଖା କରିବେ ।"

ଆକବର ଏଥିରେ ରାଜି ହେଲେ । ଏହାପରେ ସମସ୍ତେ ପଛକୁ ଆଉ କରି ଫେରିଲେ । କେବଳ ଆକବର ଓ ବୀରବଲ ପୋଷାକ ପିନ୍ଧିଥାନ୍ତି । ଆଉ ସମସ୍ତେ ଲଙ୍ଗଳା । ସହରର ସବୁ ଲୋକ ଏ ଶୋଭାଯାତ୍ରା ଦେଖିବାକୁ ସଡ଼କକୁ ବାହାରି ଆସିଲେ । ଏପରି ଲଙ୍ଗଳା ହୋଇ ବାଦଶାଙ୍କ ଲୋକବାକ ସମସ୍ତେ କାହିଁକି ପଛକୁ ଆଉ କରି ଯାଉଛନ୍ତି କେହି କିଛି ବୁଝି ପାରିଲେ ନାହିଁ । ଶେଷରେ ଗୋଟିଏ ପିଲା ପାଟିକରି

କହିଦେଲା, "ମନ୍ତ୍ରୀ ଲଙ୍ଗଳା ହୋଇଛନ୍ତି ।" ଅନ୍ୟ ପିଲମାନେ ମଧ୍ୟ ସେହିପରି ଚିତ୍କାର କରି ଉଠିଲେ । ଚାରିଆଡେ ହୋ ହୋ ହସ ବୃଷ୍ଟି ହେବାକୁ ଲଗିଲା ।

ଜଣେ ବୁଢା ସଭାସଦ ଆଉ ସମ୍ଭାଳି ନପାରି ମନ୍ତ୍ରୀଙ୍କୁ କହିଲେ, "ଏ ତାମସା ଆଉ କେତେକ୍ଷଣ ଚାଲିବ ? ଧୀରବଲ ଆମ ସମସ୍ତଙ୍କୁ ବୋକା ବନାଇ ଦେଇ ଲଙ୍ଗଳା କରି ନଗ୍ନଇ ସାରିଲେଣି । ସହରର ତମାମ ସମସ୍ତେ ଆମକୁ ଦେଖି ହସୁଛନ୍ତି ।''

ଧୀରବଲ ଦେଖିଲେ ଆଉ ଏଣିକି ବେଶି ସମୟ କଥାଟା ଲୁଗ୍ଇ ରଖିଲେ ଭଲ ହେବ ନାହିଁ । ସେ ବାଦସାଙ୍କ ପାଖକୁ ଯାଇ କହିଲେ, "ମହାରାଜ, ମୋର ଗୋଟିଏ କଥା କହିବାର ଅଛି ।"

"କ'ଣ କଥା ?''

ମନ୍ତ୍ରୀ ଓ ସଭାସଦମାନେ କୌଣସି ପୋଷାକ ପିନ୍ଧିବାର ଆପଣ ଦେଖୁଛନ୍ତି କି ?"

"ସେମାନେ ସବୁ ସ୍ୱର୍ଗୀୟ ପୋଷାକ ପିନ୍ଧିଛନ୍ତି ?"

"ନା ଆଜ୍ଞା, ଏ ସବୁ ମିଛ କଥା । ମନେଥିବ, ଆପଣ ଛ'ମାସ ପୂର୍ବେ ମତେ ଗୋଟିଏ ନାହିଁ ନଥିବା କଥା କରିବାକୁ ହୁକୁମ ଦେଇଥିଲେ ଏବଂ ମୋର କିଛି ଦୋଷ ହେଲେ କ୍ଷମା ଦେବେ ବୋଲି କହିଥିଲେ ।"

"ହଁ, ମୋର ମନେ ପଡୁଛି ।"

"ଆଜ୍ଞା, ଏଇଟା ହେଉଛି ସେହି—ନାହିଁ ନଥିବାର କଥା ।"

"କିପରି ?"

"ଏହା ପୂର୍ବରୁ କେହି କେବେ ଦିଲ୍ଲୀର ରାଜ ଦାଣ୍ଡରେ ଏପରି ଗୁଡ଼ିଏ ବଡ଼ଲୋକଙ୍କୁ ଲଙ୍ଗଳା ହୋଇ ପଟୁଆର କରି ଯିବାର ଦେଖିଛି କି ? ଆପଣଙ୍କ ହୁକୁମ ପାଇ ମୁଁ କୌଶଳରେ ଏପରି କରାଇଛି । ମୋର ମଣବାଠାରୁ ଆରମ୍ଭ କରି ଏ ପର୍ଯ୍ୟନ୍ତ ଯାହାଯାହା ହୋଇଛି, ସବୁ ଭେଲିକି, ଇନ୍ଦ୍ରଜାଲ । ମୋର ଦୋଷ କ୍ଷମା ଦେବେ ।"

ବାଦସା ଏବୁ କଥା ଶୁଣି ପ୍ରଥମେ କ୍ଷଣେ ପାଇଁ ରାଗି ଯାଇଥିଲେ । କିନ୍ତୁ ସଭାସଦମାନଙ୍କ ଲଙ୍ଗଳା ମୂର୍ତ୍ତି ଦେଖି ସେ ହସ ସମ୍ଭାଳି ପାରିଲେ ନାହିଁ । ତାଙ୍କପରି-ଯାକେ ଦିଲ୍ଲୀ ସହରର ଚାରିଆଡେ କେବଳ ହସର ଲହରୀ ଖେଳିବାକୁ ଲାଗିଲା ।

ବୀରବଲ ବାଦସାଙ୍କଠାରୁ ଉପଯୁକ୍ତ ପୁରସ୍କାର ପାଇଲେ । ଲୋକମାନେ ତାଙ୍କର ଉର୍ବର ମସ୍ତିଷ୍କକୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ ।

## ହାତୀର ସଙ୍ଗୀତ ଚର୍ଚ୍ଚା

ଥରେ ଦୁଇଜଣ ସଙ୍ଗୀତଜ୍ଞ ଆକବରଙ୍କ ଦରବାରରେ ବାଦ୍ୟଯନ୍ତ୍ର ସାହାଯ୍ୟରେ ଏପରି ସଙ୍ଗୀତର ଆଳାପ କଲେ ଯେ ସମସ୍ତେ ମୁଗ୍ଧ ହୋଇଗଲେ । ଆକବର ଆନନ୍ଦରେ ଅଧୀର ହୋଇ ପୁରସ୍କାର ସ୍ୱରୂପ ସେମାନଙ୍କୁ ଗୋଟିଏ ହାତୀ ଉପହାର ଦେଲେ । ବିଚରା ସଙ୍ଗୀତଜ୍ଞ ଦୁହେଁ ଖୁସି ହେଲେ ସତ, କିନ୍ତୁ ହାତୀକୁ ନେଇ ସେମାନେ ବିପଦରେ ପଡ଼ିଲେ । ବାଦସା ଅସନ୍ତୁଷ୍ଟ ହେବେ ବୋଲି ହାତୀକୁ ଫେରାଇ ପାରିଲେ ନାହିଁ । ଆଉ ମଧ୍ୟ ବାଦସାଙ୍କ ଉପହାର ବୋଲି ହାତୀକୁ ବିକ୍ରୀ କରିବାର ବା କାହାକୁ ଦେଇ ଦେବାର ଉପାୟ ନାହିଁ ।

କିନ୍ତୁ ହାତୀ ପୋଷିବା ସେମାନଙ୍କ ପକ୍ଷରେ ଅସମ୍ଭବ । ସେମାନଙ୍କ ପାଖରେ ଯାହା ଟଙ୍କା ପଇସା ଥିଲା ସେଥିରେ କିଛି ଦିନ ହାତୀର ଖରଚ ଚଳାଇ ନେଲେ । ପଛକୁ ଆଉ ଚଳିଲା ନାହିଁ । ସେମାନେ ଅତି ବ୍ୟସ୍ତ ହୋଇ ଉଠିଲେ । ଶେଷରେ ବୀରବଲ ସେମାନଙ୍କୁ ଗୋଟିଏ ଉପାୟ ବତାଇ ଦେଲେ ।

ଦିନେ ସେମାନେ ହାତୀ ବେକରେ କେତୋଟି ବାଦ୍ୟଯନ୍ତ୍ର ଏପରି ଭାବରେ ବାନ୍ଧି ଦେଲେ ଯେ ସେ ଯେଉଁଆଡ଼େ ଯିବ ଯନ୍ତ୍ର ସବୁ ବାଜି ଉଠିବ । ଏହିପରି ଭାବରେ ସେମାନେ ହାତୀକୁ ଛାଡ଼ିଦେଲେ । ହାତୀ ନିଜ ଇଚ୍ଛାରେ ଚାରିଆଡ଼େ ବୁଲିଲା ଓ ଲୋକମାନଙ୍କୁ ହଇରାଣ କଲା । ତାର ଅତ୍ୟାଚାରରେ ବ୍ୟତିବ୍ୟସ୍ତ ହୋଇ ଲୋକମାନେ ଯାଇ ଏକଥା ବାଦସାଙ୍କୁ ଜଣାଇଲେ ।

ବାଦସା ହାତୀର ମାଲିକଙ୍କୁ ଧରି ଆଣିବାକୁ କୋଟୁଆଲକୁ ହୁକୁମ ଦେଲେ । କୋଟୁଆଲ ଅନୁସନ୍ଧାନ କରି ବୁଝିଲା ଯେ, ବାଦସା ସଙ୍ଗୀତଜ୍ଞ ଦୁହିଁଙ୍କୁ ଯେଉଁ ହାତୀ ଉପହାର ଦେଇଥିଲେ ଏ ସେହି ହାତୀ । ସେମାନଙ୍କୁ ନେଇ କୋଟୁଆଲ ବାଦସାଙ୍କ ନିକଟରେ ହାଜର ହେଲେ ।

ବାଦସା ପଚାରିବାରୁ ସେମାନେ କହିଲେ, "ଆମେମାନେ ହାତୀକୁ ଅନେକ ଦିନ ପୋଷି ସଙ୍ଗୀତ ବିଦ୍ୟା ଶିକ୍ଷା ଦେଇଥିଲୁଁ । ସେ ଭଲକରି ସଙ୍ଗୀତ ଶିଖିଯିବାରୁ ଆମେମାନେ ତାକୁ ବାଦ୍ୟମନ୍ତ୍ର ଦେଇ ଛାଡ଼ି ଦେଇଛୁଁ । ସେ ଆପଣଙ୍କ ରାଜ୍ୟରେ ଚାରିଆଡ଼େ ବୁଲି ଲୋକଙ୍କୁ ସଙ୍ଗୀତ ଶୁଣାଇବ ଓ ରୋଜଗାର ମଧ୍ୟ କରିବ । ସେହି ରୋଜଗାରରେ ସେ ଚଳିବ ଓ ଆମେମାନେ ମଧ୍ୟ ଚଳିବୁଁ ।"

ଏକଥା ଶୁଣି ବାଦସା ସେମାନଙ୍କର କୌଶଳ ବୁଝିପାରି ନ ହସି ରହି ପାରିଲେ ନାହିଁ । ସେ ଜାଣି ପାରିଲେ ଯେ ସେମାନଙ୍କୁ ହାତୀ ଦେବା ଠିକ୍ ହୋଇ ନାହିଁ । ତେଣୁ ସେ ହାତୀକୁ ଆଣି ନିଜ ହାତୀଶାଳରେ ରଖାଇଲେ ଓ ସେମାନଙ୍କୁ ଖଣ୍ଡେ ଗାଁ ଦେଲେ, ଯେପରି କି ସେମାନେ ଭଲରେ ଚଳିପାରିବେ ।

## ଦାଢ଼ି ଟାଣିବାର ଦଣ୍ଡ

ଥରେ ଆକବର ଅନ୍ଦର ମହଲରେ ବସିଛନ୍ତି, ଏପରି ସମୟରେ ବେଗମ୍ ତାଙ୍କ ନାତିକୁ ଆଣି କୋଳରେ ଦେଇଦେଲେ । ବାଦସା ନାତି ସଙ୍ଗେ ଖେଳିବାକୁ ଲାଗିଲେ । ନାତି ତାଙ୍କ ଦାଢ଼ିକୁ ଧରି ଟିଙ୍କିଲା । ସେ ଯେତେ ଛଡ଼ାଉ ଥା'ନ୍ତି ସେ ହସି ହସି ସେତିକି ଭିଡ଼ୁଥାଏ । ତାଙ୍କୁ କଷ୍ଟ ହେଲେ ମଧ୍ୟ ସେ ନାତି ସଙ୍ଗେ ହସୁଥାନ୍ତି, ଦାଢ଼ିକୁ ଛଡ଼ାଇ ନେଇ ପାରୁ ନ ଥାନ୍ତି ।

କିଛି ସମୟ ପରେ ସେ ବାହାରକୁ ଆସି ବୀରବଲଙ୍କୁ ଦେଖିଲେ । ସେ ପଚାରିଲେ, "କହିଲ ବୀରବଲ, ମୋ ଦାଢ଼ିକୁ ଜଣେ ଯଦି ଭିଡ଼େ, ତାକୁ କି ଦଣ୍ଡ ଦିଆଯିବ ?"

ବୀରବଲ କଥାଟା ବୁଝିପାରି ସାଙ୍ଗେ ସାଙ୍ଗେ କହିଲେ, "ମିଠେଇ, କେବଳ ମିଠେଇ ଦେବେ ।"

ବାଦସା ଖୁସି ହୋଇ ବୀରବଲଙ୍କ ସଙ୍ଗେ ହାତ ମିଳାଇଲେ ।

## ଖବର କିପରି ଦିଆଯିବ ?

ଥରେ ଜଣେ ଫକୀର ଗୋଟିଏ ଅତି ସୁନ୍ଦର ଶୁଆ ଆଣି ଆକବରଙ୍କୁ ଭେଟିଲେ । ଶୁଆଟିକୁ ଅନେକ କଥା ଶିଖା ଯାଇଥିଲା । ସେ ମନୁଷ୍ୟଙ୍କ ପରି କଥା କହି ପାରୁଥିଲା, ହସୁଥିଲା, କାଶୁଥିଲା ଓ ଯାହା କହୁଥିଲା ତାକୁ ନକଲ କରୁଥିଲା । ବାଦସା ଅତି ଆଦରରେ ତାକୁ ପାଳିଲେ । ସେ ଚାକରକୁ କହିଦେଲେ, ଯଦି ତାର କେବେ ଦେହ ଖରାପ ହୁଏ ମତେ ସାଙ୍ଗେ ସାଙ୍ଗେ ଜଣାଇବ, ଆଉ ଯଦି କେହି ଆସି କହେ ଯେ ସେ ମରି ଯାଇଛି, ତାର ମୁଣ୍ଡକାଟ ହେବ । ଖବରଦାର !"

ଚାକରଟି ଖୁବ୍ ଯତ୍ନରେ ଶୁଆଟିକୁ ରଖିଥାଏ । ତା' ଦେହରେ ଯେପରି କୌଣସି ଆଞ୍ଚ ନ ଆସିବ ସେଥିପାଇଁ ସେ ସବୁବେଳେ ସତର୍କ ଥାଏ । କିନ୍ତୁ ଦୈବାତ୍ ଶୁଆଟି ମରିଗଲା । ଚାକର ଭାରି ବ୍ୟସ୍ତ ହୋଇ ପଡ଼ିଲା । ସେ ଭାବିଲା, ମୋର ଆଉ

ରକ୍ଷା ନାହିଁ, ଏ ଖବର ପାଇଲା ମାତ୍ରେ ବାଦସା ମୋର ଫାଶି ହୁକୁମ ଦେବେ । ସେ ବସି କାନ୍ଦିବାକୁ ଲାଗିଲା । ଏହି ସମୟରେ ବୀରବଲ ସେଠାରେ ପହଞ୍ଚିଲେ । ନୃକର ତାଙ୍କୁ ସବୁ କଥା କହି ତାଙ୍କ ଗୋଡ ତଳେ ପଡ଼ିଗଲା । କହିଲା, "ମୋର ପ୍ରାଣ ରକ୍ଷନ୍ତୁ ।"

ବୀରବଲ ନୃକରକୁ ବୋଧ ଦେଇ ବାଦସାଙ୍କ ପାଖକୁ ଯାଇ କହିଲେ, "ଆଜ୍ଞା ଆମ ଶୁଆଟି······।"

"ସେ କଣ ମରିଗଲା ?"

"ନା, ସେ ମରିବ କିପରି ? ସେ ଜଣେ ଯୋଗୀ । ବର୍ତ୍ତମାନ ସେ ଧ୍ୟାନ କରୁଛି । ସେ ଆକାଶ ଆଡକୁ ମୁହଁ କରି ଆଖି ଓ ଥଣ୍ଟକୁ ବନ୍ଦ କରି ବସି ରହିଛି ତାର ନିଶ୍ୱାସ ମଧ୍ୟ ବହୁନାହିଁ । ସେ ଯୋଗ ସମାଧିରେ ଥିଲା ପରି ଜଣା ପଡ଼ୁଛି ।"

ବାଦସା କହିଲେ, "ତାହା ହେଲେ କହୁନା କାହିଁକି ଯେ ସେ ମରି-ଯାଇଛି ?"

"ସେ କଥା ମୁଁ କିପରି କହି ପାରିବି ? ମୋର ମନେହୁଏ ସେ ବୋଧହୁଏ ଯୋଗ ସାଧନା କରୁଛି । ଆପଣ ଆସି ନିଜେ ଦେଖନ୍ତୁ ।"

ବାଦସା ପିଞ୍ଜରା ପାଖକୁ ଯାଇ ମଲା ଶୁଆକୁ ଦେଖି କହିଲେ, "ବୀରବଲ, ତୁମେ ଜଣେ ଜ୍ଞାନୀ ଲୋକ ହୋଇ ଶୁଆଟା ମରିଛି କି ଜୀଇଁଛି ଜାଣି ପାରୁ ନାହିଁ ? ମତେ ଏକଥା ଆଗରୁ କହିଥିଲେ ମୁଁ ଏତେବାଟ ଦେଖିବାକୁ ଆସି ନଥାନ୍ତି ।"

ବୀରବଲ କହିଲେ, "ଯଦି ତାର ମଲା ଖବର ଆପଣଙ୍କୁ ଦେଇଥାନ୍ତି ଆପଣ ମୋର ମୁଣ୍ଡକାଟ କରିଥାନ୍ତେ ।"

ବାଦସା ନୃକରକୁ ପୂର୍ବେ ଯେଉଁ କଥା କହିଥିଲେ ସେ କଥା ତାଙ୍କର ମନେ ପଡ଼ିଗଲା । ସେ ବୀରବଲଙ୍କୁ ଧନ୍ୟବାଦ ଦେଲେ ।

## ମୁକ୍ତା ବୃକ୍ଷ

ଥରେ ଜଣେ ଭଦ୍ରଲୋକ ହତ୍ୟା ଅପରାଧରେ ଧରାଗଲେ । ତାଙ୍କ ଘର ପଛପାଖେ ଗୋଟିଏ ଲୋକର ମୃତଦେହ ପଡ଼ିଥିବାର ଦେଖା ଯାଇଥିଲା । ସେହି ଭଦ୍ରଲୋକ ଉପରେ ପୂର୍ବରୁ କେତେ ଆଳଙ୍କାର ରାଗ ଥିଲା । ସେ ଭଦ୍ରଲୋକଙ୍କୁ ଧରିନେଇ ସାକ୍ଷୀ ପ୍ରମାଣ ଯୋଡ଼ିଦେଇ ମକଦ୍ଦମାକୁ ଏପରି ସଜାଡ଼ି ଦେଲା ଯେ ଲୋକଟି ଉପରେ

ହତ୍ୟା ଅପରାଧ ପ୍ରମାଣ ହୋଇଗଲା; କିନ୍ତୁ ସେ ପ୍ରକୃତରେ ନିର୍ଦୋଷ । ଶେଷରେ ତାଙ୍କର ଫାଶୀ ଦଣ୍ଡ ହୁକୁମ ହେଲା ।

ସେହି ଭଦ୍ରଲୋକଙ୍କ ସଙ୍ଗେ ବୀରବଲଙ୍କର ବନ୍ଧୁତା ଥିଲା । ସେ ଏକଥା ଶୁଣିପାରି ବନ୍ଧୁଙ୍କ ନିକଟକୁ ଯାଇ ତାଙ୍କଠାରୁ ସବୁ କଥା ଶୁଣିଲେ । ତାଙ୍କ ମନରେ ଭାରି ଦୁଃଖ ହେଲା । କିନ୍ତୁ ସେ କିଛି କରି ପାରିଲେ ନାହିଁ । ଶେଷରେ ବନ୍ଧୁଙ୍କ କାନରେ କେତୋଟି କଥା କହିଦେଇ ସେଠାରୁ ଚାଲିଗଲେ ।

ଲୋକଟିକୁ ଫାସିଦେବା ପୂର୍ବରୁ ତାଙ୍କ ଶେଷ ଇଚ୍ଛା କ'ଣ ବୋଲି ତାଙ୍କୁ ପଚରାଗଲା । ସେ କହିଲେ, "ମୁଁ କେବଳ ଥରେ ବାଦଶାଙ୍କ ସଙ୍ଗେ ଦେଖା କରିବାକୁ ଚାହେଁ ।"

ସେହି ଅନୁସାରେ ତାଙ୍କୁ ବାଦଶାଙ୍କ ପାଖକୁ ନିଆଗଲା । ସେ ବାଦଶାଙ୍କୁ କହିଲେ, "ମୋର ତ ଶେଷ ସମୟ ହୋଇଗଲା, ମୁଁ ଗୋଟିଏ ଭଲ ବିଦ୍ୟା ଜାଣି-ଥିଲି, ସେଇଟି ଆପଣଙ୍କୁ ଦେଇଯିବାକୁ ଚାହେଁ । ମୁଁ ମରିଗଲେ ସେ ବିଦ୍ୟା ସଂସାରରୁ ଲୋପ ହୋଇଯିବ ।

ବାଦଶା ଆଗ୍ରହ ଦେଖାଇ କହିଲେ, "ତେବେ ସେ କଥା କହ ।"

ସେ କହିଲେ, "ମୁଁ ମୁକ୍ତା ଫସଲ ତିଆରି କରି ଜାଣେ । ସେଥିରେ ଯେଉଁ ମୁକ୍ତା ଫଳିବ ତାହା ଉତ୍କୃଷ୍ଟ ଧରଣର ସଚା ମୁକ୍ତା । ମୁଁ ସବୁ ଆପଣଙ୍କୁ ଦେଖାଇ ଦେଇଯିବି । କିନ୍ତୁ ଏଥିପାଇଁ ଛଅମାସ ସମୟ ଦରକାର, ଆଉ ଖଣ୍ଡେ ଜମି ଓ ଓ କିଛି ଟଙ୍କା ।"

ବାଦଶା ଏଥିରେ ରାଜି ହୋଇ ତାଙ୍କୁ ସବୁ ଜିନିଷ ଦେଇଦେଲେ । ଫାଶି-ଦଣ୍ଡ ସ୍ଥଗିତ ରହିଲା । ଭଦ୍ରଲୋକ ଜମିରେ ଭଲକରି ଚାଷ କରି ଖତ ଦେଇ ଗୁଡ଼ାଏ ଗହମ ବୁଣିଦେଲେ । ଗଛ ହୋଇ କେତେ ମାସ ପରେ ଗହମ ଫଳିଲା । ଗହମ ଗୁଡ଼ିକ ଭଲ ହୋଇଥାଏ । ଭାରି ସୁନ୍ଦର ଦେଖା ଯାଉଥାଏ ।

ଦିନେ ସେ ଭଦ୍ରଲୋକ ଖୁବ୍ ଭୋରରୁ ଯାଇ ବାଦଶାଙ୍କୁ କହିଲେ, "ମୁକ୍ତା ଫସଲ ହୋଇ ଯାଇଛି । ଆପଣ ଆସିଲେ ଦେଖି ପାରିବେ ।"

ବାଦଶା କେତେଜଣ ଲୋକ ନେଇ ସାଙ୍ଗେ ସାଙ୍ଗେ ସେଠାକୁ ବାହାରିଲେ । ଶୀତଦିନ ସକାଳ, ଚାରିଆଡ଼େ ଟିକିଏ କୁହୁଡ଼ିଆ ହୋଇଛି । ସୂର୍ଯ୍ୟ ଉଇଁ ଆସୁଛନ୍ତି । ଏପରି ସମୟରେ ବାଦଶା ଗହମ କ୍ଷେତରେ ପହଞ୍ଚି ଦେଖିଲେ ଯେ କ୍ଷେତଟି ଭାରି

ସୁନ୍ଦର ହୋଇଛି । ତାକର ପଞ୍ଝ ଗଛରେ ଗହମ ଗୁଣ୍ଡ଼ିକ ଠିକ୍ ମୁକ୍ତା ପରି ଦେଖା ଯା'ଉଛି । ବାଦସାଙ୍କର ଓ ଅନ୍ୟ ଲୋକମାନଙ୍କର ଭ୍ରମ ହେଲା । ସେମାନେ ମନେ କଲେ ପ୍ରକୃତରେ ମୁକ୍ତା ଫଳିଛି । ଭଦ୍ରଲୋକ ମଧ୍ୟ ସେହିପରି ବୁଝାଇ ଦେଲେ । ବାଦସା ଖୁସି ହୋଇ କିଛି ମୁକ୍ତା ତୋଳି ଆଣିବାକୁ କହିଲେ । ଭଦ୍ରଲୋକ କହିଲେ, "ଏଥିରେ କେବଳ ଏତିକି କଥା ଯେ ଯେଉଁ ଲୋକ କେବେ ହେଲେ କୌଣସି ଅପରାଧ କରିନାହିଁ ସେହି ଲୋକ ତୋଳିଲେ ମୁକ୍ତା ହାତକୁ ଆସିବ । ନହେଲେ ସବୁ ମିଳାଇ ଯିବ, ତୋଳିବା ଲୋକର ହାତରେ କୁଷ୍ଠ ହୋଇଯିବ ।" ଏହା ଶୁଣି କେହି ଲୋକ ମୁକ୍ତା ତୋଳିବାକୁ ସାହସ କଲେ ନାହିଁ । ସମସ୍ତେ ମନେ କଲେ ଯେ ସେମାନେ ଜୀବନରେ କିଛି ନା କିଛି ଦୋଷ କରିଛନ୍ତି, ତୋଳିବାକୁ ଗଲେ ଅନିଷ୍ଟ ହେବ ।

ଏହା ଦେଖି ଭଦ୍ରଲୋକ ବାଦସାଙ୍କୁ କହିଲେ, "ମହାରାଜ, ମୁଁ ଦେଖୁଛି କୌଣସି ଲୋକ ଦୋଷରୁ ମୁକ୍ତ ନୁହେଁ । ସମସ୍ତେ ଦୋଷୀ ।...ମୁଁ ତେବେ ଏକା ଦଣ୍ଡର ଭାଗୀ ହେବି କାହିଁକି ? ଏ କଥା ଭଲ କରି ବିଚାର କରାଯାଉ ।"

ବାଦସା ଲୋକଟିର ବୁଦ୍ଧି କୌଶଳ ଦେଖି ଖୁସି ହୋଇଗଲେ । ବୀରବଲ ମଧ୍ୟ ପାଖରେ ଥିଲେ । ସେ ବାଦସାଙ୍କୁ ଲୋକର ନିର୍ଦ୍ଦୋଷତା କଥା ଭଲକରି ବୁଝାଇ ଦେଲେ । ବାଦସା ବୁଝି ପାରିଲେ ଯେ ଏ କୌଶଳ ବୀରବଲଙ୍କ ମୁଣ୍ଡରୁ ବାହାରିଛି ।

ସାଙ୍ଗେ ସାଙ୍ଗେ ଭଦ୍ରଲୋକଙ୍କୁ ଖଲାସ କରି ଦିଆଗଲା ।

## ବାଞ୍ଛା କାମୁଡ଼ା ମନ୍ତ୍ର

ଦିନେ କେତେଜଣ ସଭାସଦ ବୀରବଲଙ୍କ ସଙ୍ଗେ ବସି କଥାବାର୍ତ୍ତା ହେଉ-ଥିଲେ । ନାନା କଥା ପଡ଼ୁ ପଡ଼ୁ ସେମାନେ ବୀରବଲଙ୍କୁ କହିଲେ, "ଆପଣ ଯଦି ରାଜକୁମାରୀଙ୍କୁ ସଭା ମଧ୍ୟରେ ଥରେ ଚୁମ୍ବନ କରିପାରିବେ ଆମେମାନେ ଦଶ ହଜାର ଟଙ୍କା ଦେବୁଁ ।" ବୀରବଲ ଏଥିରେ ରାଜି ହେଲେ ।

ତହିଁ ଆରଦିନ ବୀରବଲ ଅନ୍ଦର ମହଲକୁ ଯାଇ ଏ କଥା ରାଜକୁମାରୀଙ୍କୁ କହିଲେ । ରାଜକୁମାରୀ କହିଲେ, "କାକା, ତୁମେ ଯେତେବେଳେ କଥା ଦେଇଛ ମୋର ଏଥିରେ ଆପତ୍ତି ନାହିଁ । କିନ୍ତୁ ସଭା ମଧ୍ୟରେ ସମସ୍ତଙ୍କ ସାମନାରେ ଏକଥା କିପରି ହୋଇ ପାରିବ ?"

ବୀରବଲ ରାଜକୁମାରୀଙ୍କୁ ଗୋଟିଏ ଉପାୟ କହିଦେଲେ । ରାଜକୁମାରୀ ସେଥିରେ ରାଜି ହୋଇଗଲେ ।

ଏହା ପରଦିନ ଦରବାର ବସିଛି, ସଭାସଦମାନେ ସମସ୍ତେ ଅଛନ୍ତି । ଏପରି ସମୟରେ ରାଜକୁମାରୀ ଦରବାରକୁ ଦୌଡ଼ି ଆସି ପାଟିକରି କାନ୍ଦିବାକୁ ଲାଗିଲେ । ବାଦଶା ବ୍ୟସ୍ତ ହୋଇ ରାଜକୁମାରୀଙ୍କ ପାଖକୁ ଚାଲିଯାଇ କାରଣ ପଚାରିଲେ । ରାଜକୁମାରୀ ବିକଳ ହୋଇ କାନ୍ଦି କହିଲେ, "ମୋ ଗାଲରେ ଗୋଟାଏ ବିଛା କାମୁଡ଼ି ଦେଲା । ଭାରି ବିନ୍ଧୁଛି ।"

ବାଦଶା ଅସ୍ଥିର ହୋଇ ସମସ୍ତଙ୍କୁ ପଚାରିଲେ, "କିଏ କଣ ଉପାୟ ଜାଣ କହ ।"

ସମସ୍ତେ ଚୁପ୍ ରହିଲେ । ବୀରବଲ କହିଲେ, ମୁଁ ଗୋଟିଏ ମନ୍ତ୍ର ଜାଣେ, ସାଙ୍ଗେ ସାଙ୍ଗେ ଭଲ ହୋଇଯିବ । କିନ୍ତୁ ଟିକିଏ ଅସୁବିଧା ଅଛି । ମନ୍ତ୍ର ପଢ଼ିଲା ବେଳେ ବିଛା କାମୁଡ଼ା ସ୍ଥାନକୁ ମୁହଁ ଲଗାଇ ଶୋଷିବାକୁ ହେବ । ସେ କଥା କିପରି ହୋଇ ପାରିବ ?"

ବାଦଶା କହିଲେ, "ସେଥିରେ କଣ ଅଛି ? ମୋ ଝିଅ ତ ପିଲାଟାଏ, ଆଉ ତୁମେ ହେଉଛ ତାର କାକା । ଏଥିରେ ଦୋଷ କଣ ? ଶୀଘ୍ର ଯାଇ ବିଷକୁ ଶୋଷି ବାହାର କରିଦିଅ ।"

ବୀରବଲ ସାଙ୍ଗେ ସାଙ୍ଗେ ଯାଇ ରାଜକୁମାରୀଙ୍କ ଗାଲରେ ବାରମ୍ବାର ଚୁମ୍ବନ ଦେଲେ । ସେହି ସମୟରେ ସେ ସଭାସଦମାନଙ୍କ ଆଡ଼କୁ ଆଖିମିଟିକା ମାରୁଥାନ୍ତି । ଅଳ୍ପ ସମୟ ପରେ ରାଜକୁମାରୀ କହିଲେ, "ମୁଁ ଭଲ ହୋଇଗଲି, ଆଉ ଯନ୍ତ୍ରଣା ନାହିଁ ।" ବୀରବଲ ବାଜି ଜିତିଛନ୍ତି ବୋଲି ସଭାସଦମାନଙ୍କ ଆଡ଼କୁ ଆନନ୍ଦରେ ଚାହିଁ ରହିଲେ । ସଭାସଦମାନେ ବାଦଶାଙ୍କୁ ଅାମ୍ଭେମାନେ ମଧ୍ୟ ଏ ମନ୍ତ୍ର ଜାଣୁ, କିନ୍ତୁ ଆପଣ କଣ ଭାବିବେ ବୋଲି କହିଲୁଁ ନାହିଁ ।"

ବାଦଶା କହିଲେ, "ଭଲ କଥା । ଆଉ କେବେ ଦରକାର ପଡ଼ିଲେ କାମରେ ଲାଗିବ ।"

ଏହାପରେ ବୀରବଲ ସଭାସଦମାନଙ୍କୁ ଟଙ୍କା ମାଗିବାରୁ ସେମାନେ ଟଙ୍କା ନଦେଇ ଗାଲ ଫୁଲେଇ କଲେ । ବୀରବଲ କିଛି ନ କହି ଦିନେ ଏହାର ପ୍ରତିଶୋଧ ନେବେ ବୋଲି ମନେ ମନେ ଠିକ୍ କଲେ ।

କିଛି ଦିନ ପରେ ଦିନେ ବାଦଶା ତାଙ୍କ ସଭାସଦମାନଙ୍କୁ ସେନା ଗୋଟିଏ

ଜଂଗଲକୁ ବଣ ଖୋଜ କରିବାକୁ ଗଲେ । ଦିନତମାମ୍ ହସ ଖେଳ ଆମୋଦ-ପ୍ରମୋଦରେ କଟିଲା । ବେଳବୁଡ଼ ସମୟକୁ ବୀରବଲ ଗୋଟିଏ ବଣବୁଦା ପାଖକୁ ଝାଡ଼ା ଫେରିବାକୁ ଗଲେ । ସେଠାରୁ ସେ ହଠାତ୍ ଚିତ୍କାର କରି ଉଠିଲେ ଯେ ଗୋଟାଏ ବଡ଼ ବିଛା କାମୁଡ଼ି ଦେଲା । ସେଠାରୁ ଚାଲିଆସି ସେ ବିକଳ ହୋଇ ଭୂଇଁରେ ଗଡ଼ିବାକୁ ଲାଗିଲେ । ବାଦସା ବ୍ୟସ୍ତ ହୋଇ ସେହି ସଭାସଦ୍‌ମାନଙ୍କୁ କହିଲେ, "ତୁମେମାନେ ଶୀଘ୍ର ମନ୍ତ୍ର ପଢ଼ି କାମୁଡ଼ା ସ୍ଥାନକୁ ଶୋଷି ପକାଅ ।" ସଭାସଦମାନେ ବୀରବଲଙ୍କ କୌଶଳ ବୁଝି ପାରିଲେ । ସେମାନେ ବାଦସାଙ୍କୁ କହିଲେ, "ହଜୁର, ବିଛା ବୀରବଲଙ୍କ ମଳଦ୍ୱାର ପାଖରେ କାମୁଡ଼ି ଦେଇଛି, ସେ ଅସନା ସ୍ଥାନକୁ ଆମେମାନେ ଶୋଷିବୁଁ କିପରି ?"

ବାଦସା ବିରକ୍ତ ହୋଇ କହିଲେ, "ଏ ଗୋଟାଏ ଜୀବନ ମରଣର କଥା । ଏ ସମୟରେ ଭଲସ୍ଥାନ ମନ୍ଦସ୍ଥାନ ବିଚାର କଲେ ଚଳିବ ନାହିଁ । ଶୀଘ୍ର ଉପାୟ କର । ଲୋକଟାକୁ ମାରିଦେବ ନା କ'ଣ ? ଜଙ୍ଗଲି ବିଛାର ବିଷ ବଡ଼ ଭୟଙ୍କର ।"

ସଭାସଦମାନେ ଆଉ ବାଦସାଙ୍କ ସଂଗେ ଯୁକ୍ତିତର୍କ କରିବାକୁ ସାହସ କଲେ ନାହିଁ । ଏଣେ ବୀରବଲ ବିକଳ ହୋଇ ଖୁବ୍ ଜୋର୍‌ରେ ଚିତ୍କାର କରୁଥାନ୍ତି, ସତେ ଯେପରି ବିଛା କାମୁଡ଼ାରେ ଅସ୍ଥିର ହୋଇ ପଡ଼ିଛନ୍ତି । ବାଦସା ମଧ୍ୟ ପାଟି କରି ସଭାସଦ୍‌ମାନଙ୍କୁ ହୁକୁମ୍ ଦେଉଥାନ୍ତି ।

ଶେଷରେ ସେମାନଙ୍କ ମଧ୍ୟରୁ ଜଣେ ବୀରବଲଙ୍କ ପାଖକୁ ଯାଇ ତୁନିକରି କହିଲେ, "ଆମେମାନେ ଶପଥ କରି କହୁଛୁଁ, ଆପଣଙ୍କୁ ଆଜି ମଧ୍ୟରେ ଆମେ କୋଡ଼ିଏ ହଜାର ଟଙ୍କା ଦେବୁଁ । ଏ ବିପଦରୁ ଆମମାନଙ୍କୁ ରକ୍ଷା କରନ୍ତୁ । କାଳ-କାଳକୁ ଏ ବଦନାମ ରହିଯିବ ।"

ବୀରବଲ ଏ ପ୍ରସ୍ତାବରେ ରାଜି ହୋଇ ବାଦସାଙ୍କୁ ଯାଇ କହିଲେ ଯେ ସେ ଭଲ ହୋଇ ଗଲେଣି ।

ପରେ ବାଦସା ସବୁ ରହସ୍ୟ ଜାଣି ବୀରବଲଙ୍କ ବୁଦ୍ଧିର ଅଜସ୍ର ପ୍ରଶଂସା କଲେ ।

## ଆଲୁଅରେ ଅନ୍ଧାର

ଥରେ ଆକବର ବୀରବଲଙ୍କୁ ପଚାରିଲେ, "ସୂର୍ଯ୍ୟର ଆଲୁଅରେ ସବୁ ଜିନିଷ ତ ଦେଖାଯାଇ ପାରେ । କୌଣସି ଜିନିଷ ଅଛି ଯାହାକି ସୂର୍ଯ୍ୟ ଆଲୁଅରେ ଦେଖା-ନଯିବ ?"

ବୀରବଲ ତତ୍‌କ୍ଷଣାତ୍ କହିଲେ, "ହଁ ଆଜ୍ଞା, ସୂର୍ଯ୍ୟ ଆଲୁଅରେ ଅନ୍ଧକାର ଦେଖାଯାଇ ପାରିବ ନାହିଁ।"

ଏ ତୁରନ୍ତ ଜବାବରେ ଆକବର ମୁଗ୍‌ଧ ହୋଇଗଲେ ।

## ବୁଦ୍ଧି ଥିଲେ ଉପାୟ ଅଛି

ଥରେ ଆକବରଙ୍କ ସଭାରେ ବୀରବଲ ନଥିଲେ । ସଭାସଦମାନେ ବାଦସାଙ୍କୁ କହିଲେ, "ଆପଣ ଆଜିକାଲି ଆମମାନଙ୍କୁ କୌଣସି କଥା ପଚାରୁ ନାହାନ୍ତି ବା କୌଣସି କାର୍ଯ୍ୟର ଭାର ଦେଉନାହାନ୍ତି । କେବଳ ବୀରବଲଙ୍କ ଉପରେ ଆପଣଙ୍କର ପୂର୍ଣ୍ଣ ବିଶ୍ୱାସ । ଆମମାନଙ୍କର କଣ କିଛି ବୁଦ୍ଧି ସୁଦ୍ଧି ନାହିଁ ?"

ଆକବର ଟିକିଏ ହସି ଦେଇ କହିଲେ, "ମୁଁ ତୁମମାନଙ୍କ ଉପରେ ଗୋଟିଏ କାର୍ଯ୍ୟର ଭାର ଦେଉଛି ।" ଏହା କହି ସେ ଗୋଟିଏ ଚାକରକୁ ଡାକି ଠିକ୍ ଅଢ଼େଇ ଫୁଟ ଲମ୍ବର ଖଣ୍ଡେ କନା ଆଣିବାକୁ କହିଲେ । କନା ଆସିବାରୁ ବାଦସା କହିଲେ, "ମୁଁ ବର୍ତ୍ତମାନ ଖଟ ଉପରେ ଶୋଉଛି । ତୁମେମାନେ ଏହି କନାରେ ମୋର ସମୁଦାୟ ଦେହକୁ ଘୋଡାଇ ଦିଅ ।

ଆକବର ଲମ୍ବ ହୋଇ ଖଟରେ ଶୋଇ ପଡ଼ିଲେ । କିନ୍ତୁ ଅଢ଼େଇ ଫୁଟ କନାରେ ତାଙ୍କର ଲମ୍ବା ଦେହ ଘୋଡ଼େଇ ହେବ କିପରି ?

ସଭାସଦମାନେ ଆସି ବାଦସାଙ୍କ ଦେହ ଘୋଡ଼େଇବାକୁ ଅନେକ ଚେଷ୍ଟା କଲେ, କିନ୍ତୁ କିଛି ଫଳ ହେଲା ନାହିଁ । ମୁଣ୍ଡକୁ ଘୋଡ଼ାଇବାକୁ ବସିଲେ ଗୋଡ଼ ଖାଲି ପଡ଼େ, ଗୋଡ଼କୁ ଘୋଡାଇବାକୁ ବସିଲେ ମୁଣ୍ଡକୁ ପାଏ ନାହିଁ । ସମସ୍ତେ ନାନା ଉପାୟ କଲେ, କିନ୍ତୁ କିଛି ହେଲା ନାହିଁ । ଶେଷରେ ବାଦସା ବୀରବଲଙ୍କୁ ଡକାଇ ପଠାଇଲେ । ବୀରବଲ ଆସିବାରୁ ତାଙ୍କୁ କଥାଟା ବୁଝାଇ ଦିଆଗଲା । ସେ କିପରି ଏହାକୁ ସମାଧାନ କରିବେ ବୋଲି ସମସ୍ତେ ଚାହିଁ ବସିଥାନ୍ତି ।

ବୀରବଲ ଖଟ ପାଖକୁ ଯାଇ ଆକବରଙ୍କ ଦୁଇ ଗୋଡ଼କୁ ଧରି ଆଣ୍ଠୁ ପାଖରୁ ଭାଙ୍ଗି ଦେଇ ଟେକେଇ ଦେଲେ । ତାହାଦ୍ୱାରା ବାଦସାଙ୍କ ଦେହ ଯେତେ ଜାଗା ମାଡ଼ି ବସିଥିଲା, ତାହାଠାରୁ କମ୍ ଜାଗାରେ ରହିଗଲା । ତା'ପରେ ସେ କନାଖଣ୍ଡ ଘୋଡାଇ ଦେବାରୁ ଦେହର ମୁଣ୍ଡଆଡ଼କୁ ପାଇଗଲା ।

ବାଦସା କହିଲେ, "ତୁମେ ମୋ ଗୋଡ଼କୁ ଏପରି ଜାକିଦେଲ କାହିଁକି ?"

ବୀରବଲ କହିଲେ, "ମହାରାଜ, ଯେତିକ ଚଦର ସେତିକ ପିଠା । ଯେତିକ ଲୁଗା ଅଛି, ସେହି ଅନୁସାରେ ଗୋଡକୁ ଲମ୍ବାଇବାକୁ ହେବ କମ୍ବା ଜାକିବାକୁ ହେବ ଯିନା ।"

ବୀରବଲଙ୍କର କୌଶଳ ଦେଖି ବାଦସା ଖୁବ୍ ସନ୍ତୁଷ୍ଟ ହେଲେ । ସଭାସଦ୍-ମାନେ ବୁଝି ପାରିଲେ ଯେ ବୁଦ୍ଧିରେ ସେମାନେ ବୀରବଲଙ୍କର ଗୋଡ଼ କାଣି ଆଙ୍ଗୁଠିର ଯୋଗ୍ୟ ନୁହନ୍ତି ।

## ପୁରସ୍କାରରୁ ଅଧେ

ବୀରବଲ ପ୍ରଥମେ ଯେତେବେଳେ ଦିଲ୍ଲୀକୁ ଆସିଲେ ତାଙ୍କୁ ବାଦସାଙ୍କ ପାଖରେ ପରିଚୟ କରାଇ ଦେବାର ଲୋକ କେହି ନଥିଲେ । ସେ ଦିଲ୍ଲୀରେ କାହାରିକୁ ଚିହ୍ନି ନଥିଲେ । ସେ ସମୟରେ ଅନେକ କବି, ପଣ୍ଡିତ, ଚିତ୍ରକର, ସଙ୍ଗୀତଜ୍ଞ ଆକବରଙ୍କ ସଭାକୁ ନିଜ ନିଜର ବିଦ୍ୟା ଦେଖାଇ ଯଥେଷ୍ଟ ପୁରସ୍କାର ପାଉଥିଲେ । ବୀରବଲଙ୍କର ସ୍ଥିର ଆଶା ଥିଲା ଯେ ସେ ନିଜର ବୁଦ୍ଧି ଓ ବାକ୍‌ପଟୁତା ଦ୍ୱାରା ସମସ୍ତଙ୍କୁ ସନ୍ତୁଷ୍ଟ କରି ପାରିବେ । କିନ୍ତୁ ଦରବାରକୁ ଯିବେ କିପରି ? ସେ ଦେଖି ପାରିଲେ ଯେ ଯେତେ ନୂଆ ଲୋକ ଯାଉଛନ୍ତି, ସମସ୍ତେ ଦରୁଆନକୁ କିଛି ବକ୍‌ସିସ୍ ଦେଇ ଯାଉଛନ୍ତି । ମାତ୍ର ତାଙ୍କ ହାତରେ ଟଙ୍କା ପଇସା କିଛି ନାହିଁ । କିଛି ଉପାୟ ନଦେଖି ସେ ଦରବାର ଫାଟକ ନିକଟକୁ ଗଲେ । ଦରୁଆନକୁ କହିଲେ, "ମୁଁ ଅନେକ ଦୂରରୁ ଆସିଛି । ମତେ ଦରବାର ଭିତରକୁ ଟିକିଏ ଛାଡ଼ିଦିଅ ।"

ଦରୁଆନ କହିଲା, "ଏତେ ସହଜରେ ଦରବାରକୁ କେହି ଯାଏ ନାହିଁ । ମୁଁ ବକ୍‌ସିସ୍ ପାଇଲେ ଛାଡ଼ି ଦେଇପାରେ ।"

ବୀରବଲ କହିଲେ, "ଭଲ କଥା ! ମୋ ହାତରେ ବର୍ତ୍ତମାନ କିଛି ନାହିଁ । ମୁଁ ଦରବାରରୁ ଯାହା ପାଇବି ସେଥିରୁ ତୁମକୁ କିଛି ଦେବି ।"

ଦରୁଆନ କହିଲା, "ଯାହା ପାଇବ ତାର ଅଧେ ଦେବାକୁ ହେବ ।"

ବୀରବଲ କହିଲେ, "ହଉ, ମୁଁ ଏଥିରେ ରାଜି ।"

ଏହାପରେ ବୀରବଲ ଦରବାର ଭିତରକୁ ଗଲେ । ସଭାଘରର ସୌନ୍ଦର୍ଯ୍ୟ ଓ ଆଡ଼ମ୍ବର ଦେଖି ସେ ମୁଗ୍‌ଧ ହୋଇଗଲେ । ଅନେକ ଗୁଣୀ ଲୋକ ସଭାରେ ନିଜ ନିଜ ବିଦ୍ୟାର ପରିଚୟ ଦେଇ ସାରିଲା ପରେ ବୀରବଲ କିଛି କହିବାକୁ ଅନୁମତି ମାଗିଲେ । ଅନୁମତି ମିଳିବାରୁ ସେ ତାଙ୍କର ଗଳ୍ପ, ବାକ୍‌ପଟୁତା, ଓ

ରଙ୍ଗ ରସ ଦ୍ୱାରା ସମସ୍ତଙ୍କୁ ମୁଗ୍ଧ କରିଦେଲେ । ବାଦସା ଅତ୍ୟନ୍ତ ଖୁସି ହୋଇ ତାଙ୍କୁ କଣ ପୁରସ୍କାର ଚାହାନ୍ତି ବୋଲି ପଚାରିଲେ । ବୀରବଲ କହିଲେ, "ମହାରାଜ ! ମୁଁ କିଛି ପୁରସ୍କାର ଚାହେଁ ନାହିଁ । ମତେ କେବଳ ଶହେ ବେତ ପ୍ରହାର ପୁରସ୍କାର ମିଳୁ ।"

ବାଦସା ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ କଣ ପାଗଳ ? ବେତ ମାଡ଼ କିଏ କେବେ ପୁରସ୍କାର ମାଗେ ?"

ବୀରବଲ କହିଲେ, "ଆଜ୍ଞା, ହଁ, ମୋର ସେତିକ ଲୋଡ଼ା । ମୁଁ ସ୍ୱେଚ୍ଛାକୃତ ପୁରସ୍କାର ମାଗୁଛି । ଯଦି ନ ଦେବେ ମୁଁ ଚାଲି ଯାଉଛି ।"

ବାଦସା ଦେଖିଲେ ଯେ ବୀରବଲ ଜିଦ୍ କରି ସେହି ପୁରସ୍କାର ଚାହୁଁଛନ୍ତି. ଅନ୍ୟ କିଛି ପୁରସ୍କାର ସେ ନେବେ ନାହିଁ । ବାଧ୍ୟ ହୋଇ ସେ ଜଣେ ଚାକରକୁ ଆସ୍ତେ ଆସ୍ତେ ବେତ ଦେବାକୁ ଆଦେଶ ଦେଲେ । ପଚାଶ ବେତ ଦିଆ ହେଲା ପରେ ବୀରବଲ କହିଲେ, "ସେତିକ ଥାଉ, ଏ ପୁରସ୍କାରରେ ମୋର ଜଣେ ଅଂଶୀଦାର ଅଛନ୍ତି । ସେ ଏଥିରୁ ଅଧେ ପାଇବେ ।"

ବାଦସା ପଚାରିଲେ, "ସେ କିଏ ? ତୁମ ପରି ପାଗଳ କ'ଣ ଆଉଜଣେ ଅଛନ୍ତି ?"

"ସେ ପାଗଳ କି ଠିକ, ମୁଁ ଜାଣେ ନାହିଁ । ସେ ଦରବାର ଫାଟକ ପାଖରେ ଠିଆ ହୋଇଛନ୍ତି । ତାଙ୍କୁ ଆପଣ ଡକାଇଲେ ଜାଣିପାରିବେ ।"

"ତାଙ୍କୁ ଏଠାକୁ ଡ଼ାକି ଆଣ ।"

ବୀରବଲ ଯାଇ ଯାଇ ଯାଇ ଦରୁଆନକୁ ନେଇ ଆସିଲେ ।

ବାଦସା ପଚାରିଲେ, "ତୁମ ଅଂଶୀଦାର କିଏ ?"

ବୀରବଲ ଦରୁଆନକୁ ଦେଖାଇ ଦେଲେ ।

ବାଦସା କହିଲେ, "ସେ ତ ମୋର ଦରୁଆନ, ସେ କିପରି ତୁମର ଅଂଶୀଦାର ହେଲା ?"

ବୀରବଲ କହିଲେ, "ମହାରାଜ, ମତେ ଦରବାର ଭିତରକୁ ଆସିବାକୁ ଅନୁମତି ନ ଦେବାରୁ ମୁଁ ତାଙ୍କୁ ମୋର ପୁରସ୍କାରରୁ ଅଧେ ଦେବି ବୋଲି କବୁଲ ଦେଇଥିଲି । ଏ କବୁଲ ଦେବାରୁ ମତେ ଅନୁମତି ମିଳିଲା ।"

"ଏ ତ ହେଲା ଲାଞ୍ଚ । ତେବେ କଣ ସେ ଲାଞ୍ଚ ଘୁଷିଲା ?"

"ସେ କହିଲେ ଯେ ଏଇଟା ହେଲା ଏଠିକାର ନିୟମ । ବକ୍‌ସିସ୍‌ ନ ଦେଇ କେହି ନୂଆ ଲୋକ ଭିତରକୁ ଯାଇ ପାରନ୍ତି ନାହିଁ ।"

ଆଉ କେତେଜଣ ସଭାସଦ୍‌ କହିଲେ, "ହଁ ଆଜ୍ଞା, ଆମମାନଙ୍କୁ ମଧ୍ୟ ଏହିପରି ବକ୍‌ସିସ୍‌ ଦେବାକୁ ପଡ଼ିଥିଲା ।"

ବାଦସା କହିଲେ, "ଏବେ ବୁଝାଗଲା, ତେବେ ତାକୁ ପୁରସ୍କାରରୁ ଅଧେ ଦିଅ । ଖୁବ୍‌ ଜୋର୍‌ରେ ବେତ ଦିଅ ।"

ଦରୁଆନ କିଛି ବୁଝି ନପାରି ବୀରବଲଙ୍କ ଆଡ଼କୁ ଆବାକାବା ହୋଇ ଚାହିଁ ରହିଲା । ବୀରବଲ କହିଲେ, "ଚୁକ୍ତି ଅନୁସାରେ ତୁମେ ମୋ ପୁରସ୍କାରରୁ ଅଧେ ପାଇବାର କଥା । ମତେ ପୁରସ୍କାର ମିଳିଛି ଶହେ ବେତ ମାଡ଼ । ମୁଁ ପଚାଶ ବେତ ଖାଇ ସାରିଛି । ବର୍ତ୍ତମାନ ତୁମେ ତୁମ ଅଧକ ପାଇବ ।"

ଦରୁଆନକୁ ଖୁବ୍‌ ଜୋରରେ ପଚାଶ ବେତମାଡ଼ ହେଲା । ଏହା ଛଡ଼ା ଲାଞ୍ଚ ନେବା ଅପରାଧରେ ତାକୁ କାର୍ଯ୍ୟରୁ ବାହାର କରି ଦିଆଗଲା ।

ବୀରବଲଙ୍କ ବୁଦ୍ଧି ଓ କୌଶଳରେ ଖୁସି ହୋଇ ବାଦସା ତାଙ୍କୁ ମୂଲ୍ୟବାନ ପୁରସ୍କାର ଦେଲେ ଓ ସ୍ଥାୟୀ ଭାବରେ ନିଜର ସଭାସଦ୍‌ କରିଦେଲେ ।

## ସାହସୀ ଅଥଚ ଭୀରୁ

ଦିନେ ଆକବର ବୀରବଲଙ୍କୁ କହିଲେ, "ମତେ ଏପରି ଜଣେ ଲୋକ ଆଣିଦିଅ ଯେ ଖୁବ୍‌ ସାହସୀ, ଅଥଚ ଭୀରୁ ।"

ବାଦଶାଙ୍କ କଥାରେ ବୀରବଲ ପ୍ରଥମେ ଟିକିଏ ବିଚଳିତ ହୋଇପଡ଼ିଲେ, କିନ୍ତୁ ପରେ କହିଲେ, "ହଉ, ମୁଁ ଖୋଜିବାକୁ ଯାଉଛି ।"

"କିଛି ସମୟ ପରେ ସେ ଗୋଟିଏ ସ୍ତ୍ରୀ ଲୋକକୁ ସାଙ୍ଗରେ ନେଇ ବାଦଶାଙ୍କ ନିକଟରେ ପହଞ୍ଚିଲେ । ସେ କହିଲେ, "ଏହି ସ୍ତ୍ରୀ ଲୋକଟି ଖୁବ୍‌ ସାହସୀ, ଅଥଚ ଭାରି ଭୀରୁ ।"

ବାଦସା ପଚାରିଲେ, "କପରି ?"

ବୀରବଲ କହିଲେ, "ସେ ପ୍ରଭାତର ଅଧ ସମୟରେ ତାର ପ୍ରେମିକକୁ ଭେଟିବାକୁ ଅନେକ ଦୂର ଯାଏ । ଅତି ଅନ୍ଧାର ସମୟ ହୋଇଥାଉ, ଘୋର ବର୍ଷା ହୋଇଥାଉ, ସେ କିଛି ମାନେ ନାହିଁ । ବାଟରେ ସର୍ପବ୍ୟାଘ୍ର ଦେଖିଲେ ସେ ଡରେ ନାହିଁ । କିଛି ଗୋଟାଏ ବାହାନା କରି ସେମାନଙ୍କୁ ଭୁଲାଇ ଦିଏ । ସେତେବେଳେ ତାର ସାପ କି ବାଘର ଭୟ ମଧ୍ୟ ନଥାଏ । ଏହାଠାରୁ ବଳି ସାହସର କଥା ଆଉ କଣ ଅଛି ? କିନ୍ତୁ ସେ ଯେତେବେଳେ ଘରେ ଶୋଇଥାଏ, ସେତେବେଳେ ମୂଷାଟିଏ ସାମାନ୍ୟ ଟିକିଏ ଖଡ଼୍ କରି ଶବ୍ଦ କଲେ ସେ ଭୟରେ ଅସ୍ଥିର ହୋଇ ପଡ଼େ । ତାକୁ ଜମା ନିଦ ହୁଏ ନାହିଁ । ସେତେବେଳେ ତାର ଡର ଦେଖିଲେ ଲୋକ ନ ହସି ରହି ପାରିବ ନାହିଁ । ତେବେ ତା'ଠାରୁ ବଳି ଭୀରୁ ଆଉ କିଏ ଅଛି ?"

ଏହି ଉତ୍ତରରେ ଖୁସି ହୋଇ ବାଦସା ବୀରବଲଙ୍କୁ ପୁରସ୍କାର ଦେଲେ ।

## ଧୂର୍ତ୍ତ ଦରଜି

ଦିନେ ଆକବର ଓ ବୀରବଲ ବସି ଖୁସି ଗପ କରୁଥିଲେ । ବୀରବଲ କଥାପ୍ରସଙ୍ଗରେ କହିଲେ, "କାରିଗର ମାନେ ଠକ । ଏପରି କାରିଗର ଅଛନ୍ତି, ଯେତେ ସାବଧାନ ହେଲେ ମଧ୍ୟ ସେମାନେ ଜିନିଷ ଠକାଇ ନେଇଯିବେ ।"

ବାଦସା କହିଲେ, "ଠିକ୍ ଯେତିକି ଜିନିଷ ଦରକାର ମାପି କରି ସେତିକି ଦେଲେ ଓ ଭଲକରି ଜଗିଲେ ସେମାନେ ଠକାଇବେ କିପରି ?"

ବୀରବଲ କହିଲେ, "ଯେତେ ଯାହା କଲେ ମଧ୍ୟ ସେମାନଙ୍କୁ ପାରି ହେବ ନାହିଁ । ସେମାନେ ନାନା କୌଶଳ ଜାଣନ୍ତି ।"

ବାଦସା କହିଲେ, "ଆଚ୍ଛା ଥରେ ପରୀକ୍ଷା କରିବା । ମୋ ପାଖରେ ଖଣ୍ଡେ ରେଶମ କନା ଅଛି । ସେ କନା ବଡ଼ ଦୁର୍ଲ୍ଲଭ, ବଜାରରେ ମିଳିବ ନାହିଁ । ସେଥିରେ ବେଗମଙ୍କ ପାଇଁ କୌଣସି ପ୍ରକାରେ ବ୍ଲାଉଜ ଖଣ୍ଡେ ହୋଇପାରେ । ସେ କନା ଯଦି ଦରଜିକୁ ଦିଆଯାଏ ସେଥିରୁ ସେ କିପରି ଚୋରି କରିବ ?"

ବୀରବଲ କହିଲେ, "ଗୁଲାବ ନାମରେ ଜଣେ ଦରଜିକୁ ମୁଁ ଜାଣେ । ସେ ଭଲ କାରିଗର । କିନ୍ତୁ ସେ ବେଗମଙ୍କ ପାଇଁ ବ୍ଲାଉଜ୍ କରି ଦେଇ ମଧ୍ୟ ଟିକିଏ ହେଲେ କନା ନିଶ୍ଚୟ ବଞ୍ଚାଇ ଚୋରି କରିବ ।"

ବାଦସା କହିଲେ, "ତାକୁ ଡ଼କାଅ । ପରୀକ୍ଷା କରାଯାଉ ।"

ଦରଜି ଆସି କନା ଦେଖିଲା । ବେଗମଙ୍କ ପୁରୁଣା ବ୍ଲାଉଜ୍‌ରୁ ମାପ

ନେଲା, ତା'ପରେ କହିଲା "ଟଣାଟଣି କରି କୌଣସି ମତେ ବ୍ଲାଉଜ୍ ଖଣ୍ଡେ ହୋଇଯିବ ।"

ବାଦସା ଦରଜୀକୁ କହିଦେଲେ ଯେ ସେ ଗୁଆସରେ ରହି କାମ କରିବ ଓ କାମ ନ ସରିବା ଯାଏ ଘରକୁ ଯାଇ ପାରିବ ନାହିଁ ।

ଦରଜୀକୁ ଗୋଟିଏ କୋଠରୀ ଛାଡ଼ି ଦିଆଗଲା । ତାର ସରଞ୍ଜାମ ଆଣି ସେ କାମ ଆରମ୍ଭ କରିଦେଲା । ତାକୁ ଜଗିବାକୁ ଚାରିଜଣ ବନ୍ଧୁକଧାରୀ ଲୋକଙ୍କୁ ନିଯୁକ୍ତ କରାଗଲା । ଫାଟକ ପାଖରେ ମଧ୍ୟ ପ୍ରହରୀ ଜଗି ରହିଲେ ।

ଦରଜୀ ଚାରି ଦିନ କାମ କଲାପରେ ଚତୁର୍ଥ ଦିନ ତାର ପୁଅ ନାଥ ଆସି ସେଠାରେ ପହଞ୍ଚି କହିଲା, "ବାପା, ତୁମେ ଘରକୁ ନଯିବାରୁ ମା' ଭାରି ରାଗ ହେଉଛନ୍ତି । ତୁମେ ଆସ ।"

ଦରଜୀ କହିଲା, "ଚୁପ୍ ରହ ! ଏ ସବୁ ଗୁଆସ । ତୋର ଘର ହୋଇଛି କି ? ମୁଁ କାମ ସାରି ଆଜି ରାତିରେ ଯାଇ ପାରିବି ବୋଲି ମନେ ଭାବୁଛି ।"

ପୁଅ କହିଲା, "ଭାରି ତ କାମ, ଏଥିରେ ପୁଣି ଚାରିଦିନ ଲାଗି ଗଲାଣି ? ତୁମେ ଖାଲି ଠକାଇ ମିଛକୁ ଏଠାରେ ପଡ଼ି ରହିଛ ।"

ଦରଜୀ ରାଗି ଯାଇ କହିଲା, "ଆରେ ଗୁଲୁ, ତୁ ଶୀଘ୍ର ଏଠାରୁ ପଳା । ନ ହେଲେ ମାଡ଼ରେ ତୋ ପିଠି ଗୁଣ୍ଡା କରି ଦେବି ।"

ପୁଅ କହିଲା, "ଗୁଣ୍ଡା ନା ଭୁଣ୍ଡା ? ଘରକୁ ଚାଲ, ଆଗେ ମା ତମ ପିଠିକୁ କଣ କରିଦେବେ ଦେଖିବ ।"

ଏକଥା ଶୁଣି ଦରଜୀ ଆହୁରି ରାଗିଯାଇ ତାର ପଟେ ଯୋତା ପୁଅ ଉପରକୁ ଫିଙ୍ଗିଲା । ପୁଅ ଯୋତା ପଟକ ଧରି ସେଠାରୁ ପଳାଇଲା ।

ଦରଜୀ ଭାରି ପାଟିକରି ଉଠିଲା ଓ ତାକୁ ଗୋଡ଼ାଇ ଧରି ଆଣିବାକୁ ପହରୀ-ବାଲାଙ୍କୁ କହିଲା । ସେମାନେ ସବୁ ବସି କୌତୁକ ଦେଖୁଥିଲେ, ଦରଜୀ କଥା ଶୁଣିଲେ ନାହିଁ ।

ସେହିଦିନ ସନ୍ଧ୍ୟାରେ ଦରଜୀ ବ୍ଲାଉଜ୍ ଶେଷକରି ବାଦସାଙ୍କୁ ଦେଇଦେଲା । ବାଦସା ଓ ବେଗମ ବ୍ଲାଉଜ୍ ଦେଖି ଭାରି ଖୁସି ହୋଇଗଲେ । ପ୍ରକୃତରେ ସେ'ଟି ଏଡ଼େ ସୁନ୍ଦର ହୋଇଥିଲା ଯେ ତାର ତୁଳନା କେଉଁଠି ମିଳିବ ନାହିଁ ।

ଏହାର କିଛି ଦିନ ପରେ ବେଗମ ଗାଡ଼ିରେ ବସି ବୁଲିବାକୁ ଯାଇଥିଲେ । ଗୋଟିଏ ଗଳିରେ ସେ ଦେଖି ପାରିଲେ ଯେ ଜଣେ ସ୍ତ୍ରୀ ଲୋକ ଅବିକଳ ତାଙ୍କର

ବ୍ଲାଉଜ୍ ପିନ୍ଧି ଛୁଟା ହୋଇଛୁ । ସେ ତତ୍କ୍ଷଣାତ୍ ଫେରିଆସି ବାଦଶାଙ୍କୁ ଏ କଥା କହିଲେ । ବାଦଶା ଏକଥା ବିଶ୍ୱାସ କଲେ ନାହିଁ । କିନ୍ତୁ ପରେ ଲୋକଦ୍ୱାରା ଅନୁସନ୍ଧାନ କରି ବୁଝିଲେ ଯେ ପ୍ରକୃତରେ ଗୁଲାବ ଦରଜିର ସ୍ତ୍ରୀ ସେହିପରି ଗୋଟିଏ ବ୍ଲାଉଜ୍ ପିନ୍ଧିଥିଲା ।

ବାଦଶା ସାଙ୍ଗେ ସାଙ୍ଗେ ଗୁଲାବ୍ ଓ ତାର ସ୍ତ୍ରୀକୁ ଡକାଇ ଆଣି କହିଲେ, "ତୁମେ ମତେ ଠକାଇ ବ୍ଲାଉଜ୍ କନା ଚୋରି କରିଛ ।"

ଦରଜି କହିଲା, "ମହାରାଜ ! ମୁଁ ଚୋରି କରି ନାହିଁ । ଆପଣଙ୍କ ପ୍ରହରୀମାନେ ସବୁବେଳେ ଜଗିଥିଲେ, ମୁଁ କିପରି ଚୋରି କରନ୍ତି ?"

ବାଦଶା କହିଲେ, "ସତ କଥା କହ । ନହେଲେ ତୁମର ମୁଣ୍ଡ କଟା ହେବ । ସେହି କନାରେ ତୁମ ସ୍ତ୍ରୀଙ୍କର ଗୋଟିଏ ବ୍ଲାଉଜ୍ ଅଛି ।"

"ହଁ, ମୁଁ ମାନୁଛି, ସେ ବ୍ଲାଉଜ୍ ସେହି କନାର । ତେବେ ବି ମୁଁ କହୁଛି ସେ କନା ମୁଁ ଚୋରି କରି ନାହିଁ ।"

"ସେ କନା ତେବେ ତୁମେ ପାଇଲ କିପରି ?"

"ଆଜ୍ଞା, ମୁଁ ବୁଝାଇ ଦେଉଛି । ମୁଁ ଘରକୁ ନଯାଇ ସବୁଦିନ ଏଇଠାରେ ଥିଲି । ସେଥିପାଇଁ ମୋର ସ୍ତ୍ରୀ ମୋ କଥା ବୁଝିବାକୁ ପୁଅକୁ ଏଠାକୁ ପଠାଇ ଥିଲେ । ପୁଅଟା ଭାରି ଦୁଷ୍ଟ । ସେ ଆସି ମୋ ସଙ୍ଗେ ଏଠାରେ ଅଭଦ୍ର ଭାବରେ କଥାବାର୍ତ୍ତା କଲା । ମୁଁ ରାଗିଯାଇ ତା ଉପରକୁ ମୋର ଯୋତା ଫିଙ୍ଗିଲି । ସେ ଯୋତା ପଟକ ନେଇ ପଳାଇଲା । ତାକୁ ଧରି ଆଣିବାକୁ ମୁଁ ପହରାବାଲାଙ୍କୁ କହିଲି, କିନ୍ତୁ ସେମାନେ ମୋ କଥା ଶୁଣି ହସି ଉଡ଼ାଇ ଦେଲେ । ବ୍ଲାଉଜ୍ କାଟି ସାରି ମୁଁ ଭୁଲ୍‌ରେ ସେହି ଯୋତା ଭିତରେ ବଳକା କନା ଟିକିଏ ରଖି ଦେଇଥିଲି । ମୁଁ ଘରକୁ ଫେରିଯାଇ ସେ କନାଟିକ ଖୋଜିବାରୁ ଜାଣି ପାରିଲି ସେ ମୋର ସ୍ତ୍ରୀ ସେଥିରେ ଖଣ୍ଡେ ବ୍ଲାଉଜ୍ କରି ପିନ୍ଧିଛି । ମୁଁ ରାଗରେ ତାକୁ ଅନେକ ଗାଳି ଦେଲି ଓ ସେ ବ୍ଲାଉଜ୍‌ଟା ମାଗିଲି । କିନ୍ତୁ ସେ ବ୍ଲାଉଜ୍ ଦେବାକୁ ରାଜି ନ ହେବାରୁ ମୁଁ ତା'ଠାରୁ ଜୋର୍ କରି ନେଇ ଆସିବାକୁ ବସିଥିଲି । ଏହି ସମୟରେ ଆମମାନଙ୍କୁ ଏଠାକୁ ଡ଼କରା ହେଲା ।"

ବାଦଶା ଗୁଲାବ୍‌ର ସ୍ତ୍ରୀକୁ ପଚାରିବାରୁ ସେ କହିଲା, ଏକଥା ସତ ।

ବାଦଶା କହିଲେ, "ତେବେ ତୁମେ ସେ ବ୍ଲାଉଜ୍ ଦେଲ ନାହିଁ କାହିଁକି ? ଚୋର ଜିନିଷ ରଖିଲ କାହିଁକି ?"

"ସେଟା ସ୍ୱେଇ କନିଷ୍ଠ କି ନା ମୁଁ ଜାଣେ ନାହିଁ, କିନ୍ତୁ ତାଙ୍କୁ ବେଗମ ସାହେବାଙ୍କୁ ଫେରାଇ ଦେଇଥିଲେ ମୁଁ ଦୋଷୀ ହୋଇଥାନ୍ତି ।"

"କିପରି ?"

"ସେ କନାଖଣ୍ଡ ମୋ ସ୍ୱାମୀଙ୍କ ଯୋଡା ଭିତରେ ଥିଲା । ତାଙ୍କୁ ବେଗମ-ସାହେବା ବ୍ୟବହାର କରନ୍ତେ କିପରି ? କନା ଯୋଡା ଭିତରେ ଥିବାରୁ ମୁଁ ମନେ-କଲି ମୋ ପାଇଁ ଆସିଛି । ସେଥିପାଇଁ ମୁଁ ସେଥିରେ ବ୍ଲାଉଜ୍ କରି ପିନ୍ଧିଲି । ପରେ ମୋର ସ୍ୱାମୀ ତାଙ୍କୁ ଫେରାଇ ଦେବାକୁ କହିବାରୁ ମୁଁ ଦେଲି ନାହିଁ । ମୋର ପିନ୍ଧା କନିଷ୍ଠ ବେଗମ୍ ସାହେବା ବ୍ୟବହାର କରିବେ କିପରି ? ମୋର ସ୍ୱାମୀ ଏହି ସାମାନ୍ୟ କଥା ବୁଝି ପାରୁ ନାହାନ୍ତି ।"

ଜଣେ ସାମାନ୍ୟ ସ୍ତ୍ରୀ ଲୋକଠାରୁ ଏପରି ବୁଦ୍ଧିର କଥା ଶୁଣି ବାଦସା ଆଶ୍ଚର୍ଯ୍ୟ ହୋଇଗଲେ । ପରେ ସନ୍ଧାନ କରି ବୁଝିଲେ ଯେ ସେ ଦରଜି ବୀରବଲଙ୍କ ଗାଁର ଲୋକ । ଦରଜି ଓ ତାର ସ୍ତ୍ରୀର ବୁଦ୍ଧିର ପରିଚୟ ପାଇ ବାଦସା ସେମାନଙ୍କୁ କ୍ଷମା-ଦେଲେ ଓ କିଛି ପୁରସ୍କାର ମଧ୍ୟ ଦେଲେ ।

## ସତ୍ୟ ଓ ମିଥ୍ୟା

ଥରେ ବାଦସା ବୀରବଲଙ୍କୁ ପଚାରିଲେ, "ସତ୍ୟଠାରୁ ମିଥ୍ୟା କେତେଦୂର ?"
ବୀରବଲ ତତ୍‌କ୍ଷଣାତ୍ କହିଲେ "ଚାରିଇଞ୍ଚ ମାତ୍ର ।"
ବାଦସା କହିଲେ, "କିପରି ?"

ବୀରବଲ କହିଲେ, "ଆଖିରେ ଆମ୍ଭେମାନେ ଯାହା ଦେଖୁ ତାହା ସତ୍ୟ । ଯେଉଁ ବିଷୟରେ ମନର ସନ୍ଦେହ ହୁଏ ତାକୁ ନିଜ ଆଖିରେ ଦେଖିଲେ ଆମେ ଜାଣୁଁ ଯେ ସେଟା ସତ୍ୟ । କାନରେ ଆମ୍ଭେମାନେ ଯାହା ଶୁଣୁ ତାହା ଅନେକ ସମୟରେ ସତ୍ୟ ନୁହେଁ । ମିଛ ହୋଇପାରେ । ହୁଏ ମଧ୍ୟ । ଆଖି ହେଉଛି ଦେଖିବାର ଯନ୍ତ୍ର ଓ କାନ ହେଉଛି ଶୁଣିବାର ଯନ୍ତ୍ର । ଅର୍ଥାତ ଆଖି ହେଉଛି ସତ୍ୟର ସ୍ଥାନ ଓ କାନ ହେଉଛି ମିଛର ସ୍ଥାନ । ଆଖିଠାରୁ କାନର ଦୂରତା ଚାରିଇଞ୍ଚ । ତେଣୁ ସତ୍ୟଠାରୁ ମିଥ୍ୟାର ଦୂରତା ଚାରିଇଞ୍ଚ ।"

ଏପରି ବୁଦ୍ଧିର ଉତ୍ତର ପାଇ ବାଦସା ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ।

## ଅଳସୁଆ ବସ୍ତି

ଥରେ ଆକବର ଶୁଣିଲେ ଯେ ତାଙ୍କ ରାଜ୍ୟରେ ଅଳସୁଆ ଲୋକଗୁଡ଼ିକ ବଡ଼ କଷ୍ଟରେ ଅଛନ୍ତି । ସେମାନେ କିଛି କାର୍ଯ୍ୟ କରି ପାରନ୍ତି ନାହିଁ । ସେଥିପାଇଁ ସେମାନେ

କିଛି ରୋଜଗାର କରି ନପାରି ଖାଇବାକୁ ପାଆନ୍ତି ନାହିଁ । ସେମାନେ ଅନ୍ଧ, ଖୋଟା ବା ରୋଗୀ ନୁହନ୍ତି ଯେ ଦୟା କରି କେହି କିଛି ତାଙ୍କୁ ଦେବ । ବାଦସା ଗୁଣିଆରେ ପ୍ରଚାର କରାଇ ଦେଲେ ଯେ ଅଳସୁଆମାନଙ୍କୁ ସରକାରଙ୍କ ତରଫରୁ ଖାଇବା ପିନ୍ଧିବାକୁ ଦିଆଯିବ । ସେହି ଅନୁସାରେ ନଈକୂଳରେ ଦୁଇ ମାହାଲ ଖୁବ୍ ଲମ୍ବା ଚାଳଘର ତିଆରି ହେଲା । ରାଜ୍ୟ ମଧ୍ୟରେ ଯେଉଁଠାରେ ଯେତେ ଅଳସୁଆ ଥିଲେ ସମସ୍ତେ ଆସି ସେଠାରେ ରହିଲେ । ଅନେକ ଲୋକ କାମଦାମ ଛାଡ଼ି ଦେଇ ଆସି ସେଠାରେ ଆଶ୍ରୟ ନେଲେ । କ୍ରମେ ଅଳସୁଆଙ୍କ ସଂଖ୍ୟା ବଢ଼ିଲା । ମାଗଣା ଖାଇବାକୁ ପିନ୍ଧିବାକୁ ମିଳିଲେ କାମ କରିବାକୁ କିଏ ଚାହେଁ ?”

ଏହାଦ୍ୱାରା ଅନେକ ଲୋକ ବେକାର ହୋଇ ବସି ରହିଲେ । ସେମାନଙ୍କ ପିଛା ସରକାରଙ୍କର ଖର୍ଚ୍ଚ ବହୁତ ପରିମାଣରେ ବଢ଼ିଗଲା । ଲୋକେ କହିବାକୁ ଲାଗିଲେ ଯେ ବାଦସା ଅଳସୁଆମାନଙ୍କୁ ପ୍ରଶ୍ରୟ ଦେଉଛନ୍ତି । ବାଦସା ମଧ୍ୟ ଅଳ୍ପଦିନ ମଧ୍ୟରେ ନିଜର ଭୁଲ୍ ବୁଝି ପାରିଲେ । ଶେଷରେ କିଛି ଉପାୟ ନଦେଖି ସେ ବୀରବଲଙ୍କୁ କହିଲେ, “ତୁମ୍ଭେ ପ୍ରକୃତ ଅଳସୁଆଙ୍କୁ ବାଛି ବାହାର କର । ଯେଉଁମାନେ ମିଛରେ ବାହାନା କରି ଆସିଛନ୍ତି, ସେମାନଙ୍କୁ ତଡ଼ିଦେବାକୁ ହେବ ।”

ବୀରବଲ ଅଳସୁଆ ବସ୍ତିକୁ ଯାଇ ଦେଖିଲେ ଯେ ଅନେକ ଲୋକ କିଛି କାମ ନକରି ଖାଲି ବସି ରହିଛନ୍ତି । କିଏ ବାଜେ ଗପ କରୁଛି, କିଏ ହସୁଛି, କିଏ କଳି କରୁଛି, କିଏ ଶୋଇଛି, ସବୁଠାରେ ଏହିପରି ଚାଲିଛି । ସମସ୍ତେ ସୁସ୍ଥ ସବଳ; କିନ୍ତୁ କେହି କାମ କରିବାକୁ ରାଜି ନୁହନ୍ତି । ନିଜର ଖାଇବା, ଗାଧୋଇବା ଇତ୍ୟାଦି ନିତ୍ୟକର୍ମ ମଧ୍ୟ କରିବାକୁ ସେମାନଙ୍କୁ କଷ୍ଟ ବୋଧ ହେଉଛି । ଏହା ଦେଖି ବୀରବଲ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କର ଦୁଃଖ ମଧ୍ୟ ହେଲା ।

ବୀରବଲ ସେଠାରୁ ଫେରି ଆସି ଅଳସୁଆ ବସ୍ତିରେ ନିଆଁ ଲଗାଇ ଦେବାକୁ ହୁକୁମ ଦେଲେ । ନିଆଁ ଯେତେବେଳେ ଜଳି ଉଠିଲା, ଅଳସୁଆମାନେ ପ୍ରାଣ ବିକଳରେ ଯେ ଯୁଆଡ଼େ ପଳାଇଗଲେ । ଶେଷରେ ଦେଖାଗଲା କେବଳ ଦୁଇଟି ଅଳସୁଆ ବିଛଣାରୁ ନଉଠି କର୍ମ ଆଦରି ପଡ଼ି ରହିଛନ୍ତି । ଚାରିଆଡ଼େ ନିଆଁ ଦେଖି ମଧ୍ୟ ସେମାନେ ଉଠି କୁଆଡ଼େ ଯାଉ ନାହାନ୍ତି ।

ବୀରବଲ ବୁଝିପାରିଲେ ଯେ ସେ ଦୁଇଟି ଲୋକ ପ୍ରକୃତରେ ଜାତ-ଅଳସୁଆ । ସେ ଲୋକ ପଠାଇ ସେ ଦୁହିଁଙ୍କୁ ଘର ଭିତରୁ ଟାଣି ଆଣିଲେ ।

ବାଦସା ଖବର ପାଇ ଭାରି ଖୁସି ହେଲେ ଓ ବୀରବଲଙ୍କ ବୁଦ୍ଧିର ପ୍ରଶଂସା କଲେ ।

## ସବୁକଥା ମୁଁ କହିବ

ଦିନେ ଗାରେ ବୀରବଲ ଆକବରଙ୍କ ଅନ୍ଦର ମହଲକୁ ଯାଇ ଗୋଟାଏ ଜରୁରୀ କାମରେ ତାଙ୍କ ସଙ୍ଗେ ଦେଖା କରିବାକୁ ଚାହିଁଲେ । ଆକବରଙ୍କୁ ସେ କଥା ଭଲ ଲାଗିଲା ନାହିଁ । ସେ ବୀରବଲଙ୍କୁ ଦେଖି ରାଗିକରି କହିଲେ, "ଏତେ ରାତିରେ ତୁମେ ଏଠାକୁ କାହିଁକି ଆସିଛ ?"

ବୀରବଲ କହିଲେ, "ମୁଁ ଗୋଟିଏ ବିଶେଷ ଦରକାରୀ କଥା ଆପଣଙ୍କୁ ପଚାରିବାକୁ ଆସିଛି ।"

ବାଦସା କହିଲେ, "ବୀରବଲେ, ମୋର ବର୍ତ୍ତମାନ କଥା କହିବାକୁ ସମୟ ନାହିଁ । ତୁମେ କାଲି ଆସ ।"

ବୀରବଲ କହିଲେ, "ମହାରାଜ ! କିଛି ଚିନ୍ତା ନାହିଁ । ଆପଣଙ୍କୁ କିଛି କହିବାକୁ ହେବ ନାହିଁ । ସବୁକଥା ମୁଁ କହିବ । ଆପଣ କେବଳ ଟିକିଏ ଶୁଣିବେ ।"

ଏ ଜବାବ ପାଇ ବାଦସା ହସି ଦେଲେ ଓ ବୀରବଲଙ୍କର ସବୁକଥା ଶୁଣିଲେ ।

## ଯେଷାକୁ ତେଷା

ଆକବରଙ୍କର ସଭାରେ ବୀରବଲଙ୍କର ଯଶ ପ୍ରତିପତ୍ତି ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେ ସମସ୍ତଙ୍କ ଅପେକ୍ଷା ବାଦସାଙ୍କର ଅତି ପ୍ରିୟ ପାତ୍ର ହୋଇଉଠିଲେ । ଏଥିରେ ଅନ୍ୟାନ୍ୟ ସଭାସଦମାନଙ୍କ ମନରେ ବଡ଼ ହିଂସା ହେଲା । ସେମାନେ ବାଦସାଙ୍କ ପାଖରେ ବୀରବଲଙ୍କ ନାମରେ ଅନେକ କଥା ଲଗାଇ କରି କହିଲେ, କିନ୍ତୁ ସେଥିରେ କିଛି ଫଳ ହେଲା ନାହିଁ । ଶେଷରେ ସେମାନେ ବୀରବଲଙ୍କୁ ଯେ କୌଣସି ଉପାୟରେ ମାରି ଦେବାକୁ ବିଚାର କଲେ । ଥରେ ଜଣେ ସଭାସଦ ଗୋଟିଏ ଅଦ୍ଭୁତ କୌଶଳ ବାହାର କଲେ । ବାଦସାଙ୍କ ଭଣ୍ଡାରୀକୁ ଲାଞ୍ଚ ଦ୍ୱାରା ହାତ କରି ଏ କାମ କରିବାକୁ ସ୍ଥିର ହେଲା ।

ଦିନେ ସେ ଭଣ୍ଡାରୀ ବାଦସାଙ୍କ ବାଳ କାଟୁକାଟୁ କହିଲେ, "ହୁକୁମ ହେଲେ ମୁଁ ଗୋଟିଏ କଥା କହନ୍ତି ।" ବାଦସାଙ୍କ ଅନୁମତି ପାଇ ସେ କହିଲା, "ଆପଣଙ୍କ ବାପାଙ୍କ ପୁଣ୍ୟ ବଳରୁ ଆପଣ ଏତେବଡ଼ ଦୁନିଆର ମାଲିକ ହୋଇଛନ୍ତି । ସେ ସ୍ୱର୍ଗରେ

ଥାଇ ମଧ୍ୟ ଆପଣଙ୍କର ମଙ୍ଗଳ କାମନା କରୁଛନ୍ତି । କିନ୍ତୁ ଆପଣ ତ କେବେ ତାଙ୍କର କିଛି ଖବର ନେଉ ନାହାନ୍ତି ।''

ବାଦସା କହିଲେ, "ମର୍ତ୍ତ୍ୟରେ ରହି ସ୍ୱର୍ଗର ଖବର କିପରି ମିଳିବ ? ମୁଁ ଯେତେ ଇଚ୍ଛା କଲେ ମଧ୍ୟ ସେ କଥା କିପରି ହୋଇ ପାରିବ ?''

ଭଣ୍ଡାରି କହିଲା, ''ଏଇଟା କିଛି ବଡ଼ କଥା ନୁହେଁ । ଜଣେ ବଡ଼ ସାଧୁ ଅଛନ୍ତି, ସେ ସବୁ ଠିକ୍ କରିଦେବେ ।''

ବାଦସା କହିଲେ, ''ତେବେ ତାଙ୍କଠାରୁ ବୁଝି ସବୁ ଠିକ୍ କର ।''

କେତେଦିନ ପରେ ଭଣ୍ଡାରି ଆସି କହିଲା, 'ମୁଁ ସବୁ ଠିକ୍ କରି ଆସିଛି । ସ୍ୱର୍ଗକୁ ଜଣେ ଖୁବ୍ ବୁଦ୍ଧିମାନ ଲୋକ ପଠାଇବା ଦରକାର । କାର୍ଯ୍ୟଟି ବଡ଼ ଗୁରୁତର । ବୀରବଲଙ୍କ ଛଡ଼ା ସେପରି ଲୋକ ମୁଁ ଦେଖୁନାହିଁ । ତାଙ୍କୁ ପଠାଇଲେ ସେ ସବୁ ଖବର ଠିକ୍ କରି ବୁଝି ବୁଲିଆସିବେ ।''

ବାଦସା କହିଲେ, ''ସେ ଗଲେ ଏଠା କାମ ଚଳିବ କିପରି ? ତାଙ୍କର ଫେରିବାକୁ କେତେଦିନ ଲାଗିବ ? ଆଉ କଣ କଣ କରିବାକୁ ହେବ ?''

ଭଣ୍ଡାରି କହିଲା, ''ଅଳ୍ପଦିନ ମଧ୍ୟରେ ସେ ଫେରି ଆସିବେ । ବିଶେଷ କିଛି କରିବାର ନାହିଁ । ସେ ଶ୍ମଶାନକୁ ଯିବେ । ସେଠାରେ ଚନ୍ଦନ କାଠରେ ଚିତା କରାଯିବ । ସେ ଯାଇ ଚିତା ମଝିରେ ବସିବେ । ସାଧୁ ଆସି ତାଙ୍କର ମନ୍ତ୍ର ପଢ଼ି ପୂଜା କରସାରିଲା ପରେ ଚିତାରେ ନିଆଁ ଲଗାଯିବ । ଚିତା ଜଳିବା ସାଙ୍ଗେ ସାଙ୍ଗେ ବୀରବଲ ସ୍ୱର୍ଗକୁ ଉଠିଯିବେ । ସେଠାରେ ସେ ଆପଣଙ୍କ ବାପା ଓ ଅନ୍ୟାନ୍ୟ ପୂର୍ବପୁରୁଷଙ୍କ ସାଙ୍ଗେ କଥାବାର୍ତ୍ତା କରି ଶୀଘ୍ର ଫେରି ଆସିବେ । ଏଥିରେ ଭୟର କିଛି କଥା ନାହିଁ ।''

ବାଦସା ଭାବିଲେ, ''ସାଧୁମାନଙ୍କର ଅସାଧ୍ୟ କାମ କିଛି ନାହିଁ । ସେମାନେ ସବୁ କରି ପାରନ୍ତି । ତହୁଁ ସେ ବୀରବଲଙ୍କୁ ଡକାଇ ସବୁ କଥା କହିଲେ । ବୀରବଲ ବୁଝି ପାରିଲେ ଯେ ତାଙ୍କର ପ୍ରାଣ ନେବାକୁ ଏ ଗୋଟାଏ ଷଡ଼ଯନ୍ତ୍ର । ସେ ବାଦସାଙ୍କୁ କହିଲେ, ''ଯଦି ମୋର କିଛି ଆପଦ ବିପଦ ହୁଏ ମୋର ପିଲାମାନଙ୍କର ଅବସ୍ଥା କଣ ହେବ ?''

ବାଦସା କହିଲେ, ''ଏଥିରେ ଭୟର କିଛି କାରଣ ନାହିଁ । ତଥାପି ମୁଁ କହୁଛି, ମୁଁ ତୁମ ପରିବାରର ସବୁ ଭାର ବହନ କରିବି ।''

ବୀରବଲ କହିଲେ, "ତାହାହେଲେ ବର୍ତ୍ତମାନ ମୋର ପରିବାର ଚଳିବା ନିମନ୍ତେ ଓ ଯାତ୍ରାଖର୍ଚ୍ଚ ନିମନ୍ତେ ମତେ କୋଡ଼ିଏ ହଜାର ଟଙ୍କା ଦିଆଯାଉ।"

ଆକବର ଏଥିରେ ରାଜିହୋଇ ବୀରବଲଙ୍କୁ ଟଙ୍କା ଦେବାକୁ ହୁକୁମ ଦେଲେ । ବୀରବଲ ଯିବାର ଆୟୋଜନ କରିବା ନିମନ୍ତେ ମାସେ ଛୁଟି ମଧ୍ୟ ପାଇଲେ । ଏଥିମଧ୍ୟରେ ସେ ଗୋପନରେ ତାଙ୍କ ଘରଠାରୁ ଶ୍ମଶାନ ପର୍ଯ୍ୟନ୍ତ ଗୋଟିଏ ସୁଡ଼ଙ୍ଗ ଖୋଳାଇଲେ । ସୁଡ଼ଙ୍ଗ ପାଖରେ ଦୁଇଟି ଶ୍ଳେଟ ମୂର୍ତ୍ତି ରହିଲା । ଅନେକ ଟଙ୍କା ଖର୍ଚ୍ଚ କରି ଶୀଘ୍ରରେ କାମ ହେଲା ।

ମାସେ ପରେ ବୀରବଲ ସ୍ୱର୍ଗକୁ ଯିବାକୁ ପ୍ରସ୍ତୁତ ହୋଇ ବାଦଶାଙ୍କ ନିକଟରେ ପହଞ୍ଚିଲେ । ତାଙ୍କୁ ପଟୁଆର କରି ଶ୍ମଶାନକୁ ନିଆଗଲା । ସାଧୁ ତାଙ୍କୁ ବସାଇ ଦେଇ ତାଙ୍କ ଶରୀରପାଖରେ ଚିତା ପ୍ରସ୍ତୁତ କରିଦେଲେ । ବାଜା ବାଜିଲା ଓ ପୂଜାର ଆୟୋଜନ ଚାଲିଲା । ଶେଷରେ ମନ୍ତ୍ର ପଢ଼ି ସାଧୁ ଚିତାରେ ନିଆଁ ଦେଲେ । ବୀରବଲ ଗୋଟାଏ କଣ ଗୁଣ୍ଡ ସଂଗ୍ରହ କରି ସାଙ୍ଗରେ ନେଇଥିଲେ । ନିଆଁ ଜଳିଲା ମାତ୍ରେ ସେ ଗୋପନରେ ସେହି ଗୁଣ୍ଡକୁ ନିଆଁରେ ପକାଇଦେଲେ । ସାଙ୍ଗେ ସାଙ୍ଗେ ଭୀଷଣ ଭାବରେ ଧୂଆଁ ବାହାରିଲା । ଚାରିଆଡ଼େ ଧୂଆଁ ବ୍ୟାପିଗଲା । କେହି କାହାକୁ ଦେଖି ପାରିଲେ ନାହିଁ । ଏହି ଅବସରରେ ସେ ସୁଡ଼ଙ୍ଗ ଭିତରେ ପଶିଯାଇ ତାଙ୍କ ଘରକୁ ଚାଲିଗଲେ । କିଛି ସମୟ ପରେ ଗୋଟିଏ ସାଧୁ ବେଶ ଧରି ବୀରବଲ ଶ୍ମଶାନରେ ପହଞ୍ଚି କିଏ କଣ କଥାବାର୍ତ୍ତା ହେଉଛନ୍ତି ଶୁଣିଲେ । ସେଥିରୁ ଯେଉଁ ସଭାସଦ ଭଣ୍ଡାର ସଙ୍ଗେ ଷଡ଼ଯନ୍ତ୍ର କରି ଏପରି କରିଥିଲା ତାର ନାମ ଜାଣି ପାରିଲେ । ଚିତାର ନିଆଁ ଲିଭିଯିବାରୁ ସମସ୍ତେ ବୁଝିଲେ ଯେ ବୀରବଲ ପୋଡ଼ି ପାଉଁଶ ହୋଇ-ଗଲେ । ସଭାସଦମାନେ ଖୁସି ହୋଇ ଘରକୁ ଫେରିଲେ ।

ବୀରବଲ ନିଜ ଘରେ ଲୁଚି କରି ଅନେକ ଦିନ ରହିଲେ । ତାଙ୍କର ନିଶ ଦାଢ଼ି ବଢ଼ିଗଲା । ଶେଷରେ ସେ ଗୋଟିଏ ଅଦ୍ଭୁତ ପୋଷାକ ପିନ୍ଧି ବାଦଶା ପାଖରେ ପହଞ୍ଚିଲେ । ତାଙ୍କୁ କେହି ଚିହ୍ନି ପାରିଲେ ନାହିଁ । ବାଦଶା ଚିହ୍ନିପାରି ତାଙ୍କୁ ସବୁ କଥା ପଚାରିଲେ ।

ବୀରବଲ କହିଲେ, "ମୁଁ ଦିବ୍ୟପଦରେ ଫେରି ଆସିଛି । ଆପଣଙ୍କ ବାପା ଓ ପୂର୍ବ ପୁରୁଷମାନେ ଭଲ ଅଛନ୍ତି । ଆପଣଙ୍କର ଯଶ ଚାରିଆଡ଼େ ବ୍ୟାପୁଥିବାର ଦେଖି ସେମାନେ ଖୁସି । ସବୁବେଳେ ଆପଣଙ୍କୁ ଆଶୀର୍ବାଦ କରୁଛନ୍ତି । କିନ୍ତୁ ସେମାନଙ୍କର ଗୋଟିଏ ଅସୁବିଧା ହେଉଛି । ନହେଲେ, ଆଉ କିଛି ଅଭାବ ନାହିଁ ।"

ବାଦସା ବ୍ୟସ୍ତ ହୋଇ ପଚାରିଲେ, "କଣ, କଣ ? ଶୀଘ୍ର କହ ।"

ବୀରବଲ କହିଲେ, "ସ୍ୱର୍ଗରେ ଆଦୌ ଭଣ୍ଡାରୀ ନାହାନ୍ତି । ସେଥିପାଇଁ ସେମାନଙ୍କର ଦାଢ଼ି ଏତେ ବଢ଼ି ଯାଇଛି ଯେ ସେମାନେ ଭଲକରି ଚାଲି ପାରୁ ନାହାନ୍ତି । ମଝିରେ ମଝିରେ ପଡ଼ିଯାଉନ୍ତି । ଏଥିପାଇଁ ସେମାନେ ବଡ଼ କଷ୍ଟ ପାଉଛନ୍ତି ।

ବାଦସା କହିଲେ, "ତାହାହେଲେ ଶୀଘ୍ର ଜଣେ ଭଣ୍ଡାରୀ ପଠାଇବାକୁ ହେବ ।"

ବୀରବଲ କହିଲେ, "ସେମାନେ ଆପଣଙ୍କ ଖାସ୍ ଭଣ୍ଡାରୀ କଥା କହୁଥିଲେ । ତାକୁ ହିଁ ପଠାଇଲେ ଭଲ ହେବ । କିନ୍ତୁ ସାଙ୍ଗରେ ଜଣେ ହଜୁରଦ ଯିବା ଦରକାର । ନହେଲେ ଭଣ୍ଡାରୀକୁ ସ୍ୱର୍ଗର ଦରୁଆନ ବାଟ ଛାଡ଼ିଦେବ ନାହିଁ । ଏହା କହି ଯେଉଁ ସଭାସଦ ଏପରି ଷଡ଼ଯନ୍ତ୍ର କରିଥିଲେ ବୀରବଲ ତାଙ୍କର ନାମ ବାଦସାଙ୍କୁ କହିଦେଲେ ।

ଆକବର ସେହି ସଭାସଦ ଓ ଭଣ୍ଡାରୀ ଦୁହିଁଙ୍କୁ ଜଳାଇ ସ୍ୱର୍ଗକୁ ଶୀଘ୍ର ପଠାଇବାକୁ କହିଲେ । ସେମାନେ ବୀରବଲ ଫେରି ଆସିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ବାଦସାଙ୍କ ହୁକୁମ ପାଇ ଭୟରେ କାଠ ହୋଇଗଲେ । ଏଥିରୁ ରକ୍ଷା ପାଇବା ପାଇଁ ସେମାନେ ନାନା କୌଶଳ କରିଥିଲେ । କିନ୍ତୁ ସେଥିରେ କିଛି ଫଳ ହେଲା ନାହିଁ । ଯେଉଁ ଉପାୟରେ ସେମାନେ ବୀରବଲଙ୍କୁ ମାରିବାକୁ ବସି-ଥିଲେ ସେହି ଉପାୟରେ ସେମାନଙ୍କର ପ୍ରାଣ ଗଲା ।

## ପୁରୁଷ ବେଶୀ ନା ସ୍ତ୍ରୀ ବେଶୀ

ଥରେ ବୀରବଲ ବାଦସାଙ୍କ ପାଖରେ ବସି କଥାବାର୍ତ୍ତା ହେଉଥିଲେ । ବେଗମ୍ ମଧ୍ୟ ସେଠାରେ ଥିଲେ । ନାନା କଥା ପଡ଼ୁ ପଡ଼ୁ ବେଗମ୍ ପଚାରିଲେ, "ପୃଥିବୀରେ ପୁରୁଷଙ୍କ ସଂଖ୍ୟା ବେଶୀ ନା ସ୍ତ୍ରୀଙ୍କ ସଂଖ୍ୟା ବେଶୀ ?"

ବୀରବଲ ସାଙ୍ଗେ ସାଙ୍ଗେ କହିଲେ, "ପୁରୁଷଙ୍କ ସଂଖ୍ୟା ଓ ସ୍ତ୍ରୀଙ୍କ ସଂଖ୍ୟା ସମାନ; କିନ୍ତୁ ନପୁଂସକମାନଙ୍କ ଯୋଗୁଁ ଗୋଳମାଳ ହୁଏ । ଯେତେ-ବେଳେ ପୁରୁଷଙ୍କ ଗଣନା ହୁଏ ସେତେବେଳେ ସେମାନେ ପୁରୁଷ ବୋଲି ପରିଚୟ

ଦଅନ୍ତି । ପୁଣି ଯେତେବେଳେ ସ୍ତ୍ରୀ ମାନଙ୍କର ଗଣନା ହୁଏ ସେତେବେଳେ ସେମାନେ ନିଜ ନିଜକୁ ସ୍ତ୍ରୀ ବୋଲି ପରିଚୟ ଦଅନ୍ତି ।"

ଏ କଥା ଶୁଣି ବାଦସା ଓ ବେଗମ୍ ଖୁବ୍ ହସିବାକୁ ଲାଗିଲେ ।

## ମନ କଥା

ଥରେ ଆକବର ସଭାସଦମାନଙ୍କୁ ଗୋଟିଏ ଅଦ୍ଭୁତ ପ୍ରଶ୍ନ ପଚାରିଲେ । ସେ କହିଲେ ବର୍ତ୍ତମାନ କାହା ମନରେ କି ଚିନ୍ତା ହେଉଛି ତୁମମାନଙ୍କ ମଧ୍ୟରୁ କିଏ କହିପାରିବ ?"

କେହି କିଛି ଉତ୍ତର ଦେଲେ ନାହିଁ । ଏ ପ୍ରଶ୍ନରେ ସମସ୍ତେ ଟିକିଏ ବ୍ୟସ୍ତ ହୋଇ ଉଠିଲେ, କାଳେ କେହି ସେମାନଙ୍କ ମନକଥା କହି ଦେବ । ଶେଷରେ ବାଦସା ବୀରବଲଙ୍କୁ ପଚାରିଲେ । ସେ କହିଲେ, "ସମସ୍ତଙ୍କ ମନକଥା ଗୋଟି ଗୋଟି କରି କହିବି ନା ମୋଟାମୋଟି କହିଦେବି ?"

ବାଦସା କହିଲେ, "ମୋଟାମୋଟି କହିଦେଲେ ଚଳିବ ।"

ବୀରବଲ କହିଲେ, "ବର୍ତ୍ତମାନ ସମସ୍ତଙ୍କ ମନରେ କେବଳ ଗୋଟିଏ ଇଚ୍ଛା । ସମସ୍ତେ ଚାହୁଁଛନ୍ତି ଯେ ଆପଣଙ୍କର ରାଜ୍ୟ, ଆପଣଙ୍କ ସୁଖ ଓ ଆପଣଙ୍କର ଯଶ ଆକାଶରେ ସୂର୍ଯ୍ୟଚନ୍ଦ୍ର ଥିବାଯାଏ ରହିବ, ଟିକିଏ କମିବ ନାହିଁ, ବରଂ ବଢ଼ୁଥିବ ।"

ବାଦସା କହିଲେ, "ଏକଥା ଠିକ୍ କି ନା କିପରି ଜଣାଯିବ ?"

ବୀରବଲ କହିଲେ, "ଆପଣ ସମସ୍ତଙ୍କୁ ପଚାରନ୍ତୁ । ଠିକ୍ କି ନା ଜାଣି ପାରିବେ ।"

ବାଦସା ଓ ସଭାସଦମାନେ ଏ ଉତ୍ତରରେ ଖୁବ୍ ଖୁସି ହୋଇଗଲେ ।

## ଏକଜିଦିଆ ପିଲା

ଥରେ ବୀରବଲ ଆକବରଙ୍କ ସଭାକୁ ଯାଇପାରି ନଥିଲେ । ବାଦସା ତାଙ୍କୁ ଡାକିବାକୁ ଲୋକ ପଠାଇଲେ । ବୀରବଲ କହିଲେ, "ତୁମେ ଚାଲ, ମୁଁ ଅଳ୍ପ ସମୟ ମଧ୍ୟରେ ଯାଉଛି ।"

ବାଦସା କିଛି ସମୟ ଅପେକ୍ଷା କରି ବୀରବଲଙ୍କୁ ଡାକିବାକୁ ଆଉ ଜଣେ ଲୋକ ପଠାଇଲେ । ସେଥର ମଧ୍ୟ ବୀରବଲ ସେହିପରି ଉତ୍ତର ଦେଲେ । ବାଦସା

ଆହୁରି କିଛି ସମୟ ଅପେକ୍ଷା କଲେ ; କିନ୍ତୁ ବୀରବଲ ଆସିଲେ ନାହିଁ । ବାଦସା ବିରକ୍ତ ହୋଇ ଶେଷରେ ପୁଲିସ୍ ପଠାଇ ତାଙ୍କୁ ଜୋର୍ କରି ଧରି ଆଣିବାକୁ ହୁକୁମ ଦେଲେ ।

ବୀରବଲ ଏଥର ବୁଝିପାରିଲେ ଯେ ଆଉ ବିଳମ୍ବ କଲେ ଠିକ୍ ହେବ-ନାହିଁ—ଅନର୍ଥ ହେବ । ସେ ସାଙ୍ଗେ ସାଙ୍ଗେ ପୋଷାକ ପିନ୍ଧି ବାହାରି ପଡ଼ିଲେ ।

ବୀରବଲ ଆସି ବାଦସାଙ୍କୁ ଅତି ଭକ୍ତିରେ ଦଣ୍ଡବତ ହୋଇ ପାଖରେ ଠିଆ ହେଲେ । ବାଦସା ବୀରବଲଙ୍କ ଆଡ଼କୁ ନ ଅନାଇ ବିରକ୍ତ ହୋଇ ତାଙ୍କର ନ ଆସିବାର କାରଣ ପଚାରିଲେ । ବୀରବଲ କହିଲେ, "ମହାରାଜ, ମୋର ପୁଅଟା କାନ୍ଦୁଥିଲା, ଯେତେ ବୁଝାଇଲେ ବୁଝିଲା ନାହିଁ । ତାକୁ ଏଣ୍ଡା ନକରି ମୁଁ ଆସି ପାରିଲି ନାହିଁ । ଆପଣ ତ ଜାଣନ୍ତି, ପିଲାଗୁଡ଼ାକ କେଡ଼େ ଏକ ବାଗିଆ । ସେଥିପାଇଁ ମୋର ବିଳମ୍ବ ହେଲା ।

ଉତ୍ତର ଶୁଣି ବାଦସା ଆହୁରି ରାଗିଯାଇ କହିଲେ, "ତୁମେ କଣ ମତେ ପିଲା କରି ପାଇଛ ? ମୁଁ କଣ ଏଡ଼େ ବୋକା ଯେ ତୁମର ମିଛ ବାହାନା ବୁଝିପାରୁ ନାହିଁ ? ତୁମପରି ଜଣେ ବୁଦ୍ଧିମାନ ଲୋକକୁ ଗୋଟାଏ ପିଲାକୁ ବୁଝାଇବାକୁ କେତେ ସମୟ ଲାଗିବ ?"

ବୀରବଲ କହିଲେ, "ଆଜ୍ଞା, ମତେ କ୍ଷମା କରିବେ, ଆପଣ ପିଲାଙ୍କ କଥା ଜାଣିନ୍ତି ନାହିଁ । ଜିଦ୍ ଧରିଲେ ସେମାନଙ୍କୁ ବୁଝାଇବା କାଠିକର ପାଠ ।"

ବାଦସା କହିଲେ, "ଏକଥା ମୁଁ କଦାପି ବିଶ୍ୱାସ କରିବି ନାହିଁ । ମୁଁ ହୋଇଥିଲେ, ଯେତେ ଅବୁଝା ପିଲା ହେଲେ ମଧ୍ୟ ମୁଁ ତାକୁ ବୁଝାଇ ଦେଇ ପାରନ୍ତି ।"

ବୀରବଲ କହିଲେ, "ତେବେ ପରୀକ୍ଷା କରାଯାଉ । ଧରନ୍ତୁ ମୁଁ ଆପଣଙ୍କ ପୁଅ, ମତେ ଆପଣ ବୁଝାଇବାକୁ ଚେଷ୍ଟା କରନ୍ତୁ । ତାହାହେଲେ ବୁଝି ପାରିବେ ।"

ଏ ନୂଆ କଥା ଶୁଣି ଆକବରଙ୍କର କୌତୂହଳ ହେଲା । ସେ ବୀରବଲଙ୍କର ବାପା ହେବାକୁ ରାଜି ହେଲେ । ବୀରବଲ ଭୂଇଁରେ ବସି ପାଟିକରି କାନ୍ଦିବାକୁ ଲାଗିଲେ । ବାଦସା ସିଂହାସନରୁ ଉଠିଆସି ବୀରବଲଙ୍କ ଦେହ ଆଉଁସି ତାଙ୍କୁ ନାନା ଭାବରେ ବୁଝାଇବାକୁ ଚେଷ୍ଟା କଲେ । ବୀରବଲ ବେଶୀ ବେଶୀ କାନ୍ଦି ଭୂଇଁରେ

ଗଡ଼ିବାକୁ ଲାଗିଲେ । ବାଦସା କଅଁଳେଇ କରି ପଚାରିଲେ, "ତୁ କଣ ଚାହୁଁ, ମତେ କହ ।"

ବୀରବଲ କହିଲେ, "ମତେ ଖଣ୍ଡେ ଆଖୁ ଆଣି ଦିଅ ।"

ବାଦସାଙ୍କ ହୁକୁମରେ ହାଙ୍ଗେ ସାଙ୍ଗେ ଗୋଟାଏ ଆଖୁ ଆସି ପହଞ୍ଚିଲା ।

ବାଦସା ବୀରବଲଙ୍କୁ କହିଲେ, "ତୁ ଖଣ୍ଡେ ଆଖୁ ବାଛି କରି ନେ ।"

ବୀରବଲ କାନ୍ଦ ବନ୍ଦ ନକରି କହିଲେ, "ତୁମେ ବାଛି ଦିଅ ।"

ବାଦସା ଖଣ୍ଡିଏ ଭଲ ଆଖୁ ବାଛି କରି ଦେଲେ । ବୀରବଲ ତାକୁ ଫିଙ୍ଗି ଦେଲେ । ସେ ନିଜେ ଖଣ୍ଡେ ଆଖୁ ବାଛି କହିଲେ, "ଏହାକୁ ଚୋପା ଛଡ଼ାଇ କାଟିଦିଅ ।" ବାଦସା ସେହିପରି କରିଦେଲେ । ବୀରବଲ ତାକୁ ସବୁ ଗୋଟିଏ ଟୋପିରେ ରଖିବାକୁ କହିଲେ । ବାଦସା ଆଖୁତକ ଗୋଟିଏ ଟୋପିରେ ରଖି ବୀରବଲଙ୍କୁ ଦେଲେ । ବୀରବଲ ଟୋପିକୁ ଗୋଇଠା ମାରି ଫିଙ୍ଗି ଦେଲେ । ବାଦସା ଆଖୁ ସବୁ ଗୋଟାଇ ବୀରବଲଙ୍କୁ ବୁଝାଇ କରି କହିଲେ, "ଆରେ ପୁଅ, ତୁ ଯେପରି କହିଲୁ, ମୁଁ କଲି । ଆଉ କଣ କରିବି କହ ।"

ବୀରବଲ କିଛି ନକହି ଆହୁରି ବେଶି କାନ୍ଦିବାକୁ ଲାଗିଲେ । ବାଦସା ପୁଣି ବୁଝାଇଲେ । କାହିଁକି କାନ୍ଦୁଛୁ ବୋଲି ପଚାରିଲେ ।

ବୀରବଲ କହିଲେ, "ତୁମେ ଆଖୁ କାଟିଲ କାହିଁକି ? ତାକୁ ସବୁ ଯୋଡ଼ି ପୁଣି ଗୋଟାଏ କରିଦିଅ । ଯେପରି ଥିଲା ସେହିପରି କରିଦିଅ ।"

ବାଦସାଙ୍କୁ କିଛି ବୁଦ୍ଧି ଦେଖାଗଲା ନାହିଁ । ସେ ବୀରବଲଙ୍କୁ କହିଲେ, "କଟା ଆଖୁ ଯୋଡ଼ି ହେବ କିପରି ?"

ବାଦସାଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ । ସେ ବୀରବଲଙ୍କୁ ବୁଝାଇ ପାରିଲେ ନାହିଁ । ସେ ଶେଷରେ ବୁଝିପାରିଲେ ଯେ ପିଲା ଜିଦ୍ ଧରିଲେ ନିଜେ ଈଶ୍ୱର ମଧ୍ୟ ତାକୁ ବୁଝାଇ ପାରିବେ ନାହିଁ ।

ବାଦସା ବୀରବଲଙ୍କ ପାଖରେ ହାରିଗଲେ । ତାଙ୍କର ଆଉ ରାଗ ରହିଲା ନାହିଁ ।

## ଓଟର ବେକ ବଙ୍କା କାହିଁକି

ଥରେ ଆକବର ବୀରବଲଙ୍କର ଜଣେ ବନ୍ଧୁଙ୍କୁ ଗୋଟାଏ ଜାଗିର ଦେବାକୁ କହିଥିଲେ । କିନ୍ତୁ ଅନେକ କାଳ ବିତିଗଲା, ଆକବର ତାଙ୍କର ପ୍ରତିଜ୍ଞା ପୂରଣ କରି ପାରିଲେ ନାହିଁ । ବୀରବଲ କେତେଥର ବାଦସାଙ୍କୁ ଏକଥା ସ୍ମରଣ କରାଇ ଦେଇଥିଲେ । କିନ୍ତୁ ବାଦସା ସେକଥା ଶୁଣି କେବଳ ବେକ ମୋଡ଼ି ଦିଅନ୍ତି, ଆଉ କିଛି କହନ୍ତି ନାହିଁ । ବୀରବଲ ମଧ୍ୟ ଚୁପ୍ ହୋଇ ରହନ୍ତି ।

କିଛିଦିନ ପରେ ଦିନେ ବାଦସା ଓ ବୀରବଲ ବୁଲିବାକୁ ଯାଇ ଯାଉ ବାଟରେ ଗୋଟିଏ ଓଟ ଦେଖିଲେ । ବାଦସା କହିଲେ, "ବୀରବଲ, ଓଟର ବେକଟା ଏପରି ବଙ୍କା କାହିଁକି ?"

ବୀରବଲ କହିଲେ, "ସେ ବୋଧ ହୁଏ କାହାକୁ ଜାଗିରି ଦେବାକୁ କହିଥିଲା । କିନ୍ତୁ ବର୍ତ୍ତମାନ ତାର ଆଉ ଜାଗିରି ଦେବାକୁ ଇଚ୍ଛା ନଥିବାରୁ ବେକ ମୋଡ଼ି ଦେଉଛି । ଏହିପରି କରିବାରୁ ତାର ବେକଟି ବଙ୍କା ହୋଇ ଯାଇଛି ।"

ଏପରି ଜବାବ ଶୁଣି ବାଦସାଙ୍କର ବୀରବଲଙ୍କ ବନ୍ଧୁଙ୍କୁ ଜାଗିର ଦେବାକଥା ମନେ ପଡ଼ିଗଲା । ଏହାଦ୍ୱାରା ସେ ଅତ୍ୟନ୍ତ ଲଜ୍ଜିତ ହେଲେ ଓ ତହିଁ ଆରଦିନ ତାଙ୍କୁ ଡ଼ାକି ଗୋଟିଏ ବଡ ଜାଗିର ଦାନ କଲେ ।

## ଆପଣ ହେଉଛନ୍ତି ତାର ବାପ

ଦିନେ ଆକବରଙ୍କ ଦରବାରରେ ଜଣେ ବେଶ୍ୟା ପୁଅର ବିଚାର ହେଉଥିଲା । ବେଶ୍ୟାଟି ମଧ୍ୟ ସେଠାରେ ଉପସ୍ଥିତ ଥିଲା । ଆକବର ପିଲାଟିକୁ ତାର ବାପ ନାଁ ପଚାରିଲେ । ସେ କହି ପାରିଲା ନାହିଁ । ବେଶ୍ୟାକୁ ପଚାରିବାରୁ ସେ ଲଜ୍ଜାରେ ତଳକୁ ମୁହଁ ପୋତି ରହିଲା । ଏହା ଦେଖି ବୀରବଲଙ୍କର ବେଶ୍ୟା ପ୍ରତି ଦୟା ହେଲା । ସେ ବାଦସାଙ୍କୁ କହିଲେ, "ହଜୁର, ଆପଣ ଯଦି କିଛି ମନେ ନ କରନ୍ତି ମୁଁ ସତକଥା କହିବି । ଆପଣ ହେଉଛନ୍ତି ତାର ବାପ ।"

ବାଦସାଙ୍କୁ ଏଥିରେ ବଡ ଲଜ୍ଜା ହେଲା । ସେ ରାଗିଯାଇ ଏକଥା ପ୍ରମାଣ କରିବାକୁ ବୀରବଲଙ୍କୁ ହୁକୁମ ଦେଲେ ।

ବୀରବଲ କହିଲେ, "ମହାରାଜ, ଆପଣ ହେଉଛନ୍ତି ସମଗ୍ର ପୃଥିବୀର ବାପ । ସମସ୍ତେ ଆପଣଙ୍କର ସନ୍ତାନ । ଏଥିରୁ କଣ ପ୍ରମାଣ ହେଉ ନାହିଁ ଯେ ଆପଣ ଏ ପିଲାର ବାପ ।"

ଏ ଜବାବ ପାଇ ବାଦସା ଆଉ କିଛି କହିଲେ ନାହିଁ । ପିଲାକୁ ଆଉ ତାର ବାପ ନାମ ନ ପଚାରି ମକଦ୍ଦମା ବିଚାର କରିବାକୁ ଲାଗିଲେ ।

# ସୂଚୀପତ୍ର

# ଧୂପ୍ଛାୟା

## ପୋଷ୍ୟପୁତ୍ର

ନାନା ଯାଗଯଜ୍ଞ, ବାରବ୍ରତ କରି ଭଗୀରଥ ତର୍କାଳଙ୍କାର ମହାଶୟ ଯେତେବେଳେ ସନ୍ତାନଲାଭର କୌଣସି ସମ୍ଭାବନା ଦେଖି ନ ପାରିଲେ, ସେତେବେଳେ ସେ ନିରାଶାରେ ଏକାନ୍ତ କାତର ହୋଇ ପଡ଼ିଲେ । ଉତ୍ତରାଧିକାରୀ ଅଭାବରୁ ଏତେଗୁଡ଼ିଏ ସମ୍ପତ୍ତିର ଦୁର୍ଦ୍ଦଶା, 'ପୁତ୍' ନରକର କଳ୍ପିତ ବୀଭତ୍ସ ଦୃଶ୍ୟ, ପିତୃପୁରୁଷମାନଙ୍କର ଓ ନିଜର ପ୍ରେତାତ୍ମାମାନଙ୍କର ତର୍ପଣର ଅଭାବ, ଏହି ସମସ୍ତ ଦୁରୂହ ଚିନ୍ତାରେ ତାଙ୍କର ହୃଦୟ ମନ ବ୍ୟାକୁଳ ହୋଇ ଉଠିଲା । ଅତୀତର ସୁଖଦୁଃଖ-ବିଜଡ଼ିତ ଖଣ୍ଡିଏ ଅସ୍ପଷ୍ଟ ଚିତ୍ର ତାଙ୍କ ଆଖି ଆଗରେ ନାଚି ଉଠିଲା । ଦରିଦ୍ର ବ୍ରାହ୍ମଣ-ସନ୍ତାନ ଭଗୀରଥ କିପରି ଜଗନ୍ନାଥ ଦର୍ଶନ ନିମନ୍ତେ ପୁରୀ ଯାଇ ପଣ୍ଡିତ ପଞ୍ଚାନନ ନ୍ୟାୟରତ୍ନଙ୍କ କୃପାଦୃଷ୍ଟି ଆକର୍ଷଣ କଲେ, ତାଙ୍କ ଅନ୍ନରେ ପ୍ରତିପାଳିତ ହୋଇ ତାଙ୍କର ଚତୁଷ୍ପାଠୀରେ ଅଧ୍ୟୟନ କରି ଶେଷରେ କିପରି ଜଣେ ବିଖ୍ୟାତ ପଣ୍ଡିତ ହୋଇ ଅର୍ଥ ଓ ସମ୍ମାନ ଅର୍ଜ୍ଜନ କଲେ, ଏ ସମସ୍ତ କଥା ଗୋଟି ଗୋଟି ହୋଇ ତାଙ୍କ ଆଗରେ ଫୁଟି ଉଠିଲା । ସେ ଜୀବନରେ ସବୁ କାର୍ଯ୍ୟରେ ଜୟୀ ହୋଇଅଛନ୍ତି, ସବୁଠାରେ ଆଶାତୀତ ଫଳ ପାଇଅଛନ୍ତି, କିନ୍ତୁ ଦୈବର କଠୋର ନିୟମ ନିକଟରେ ତାଙ୍କୁ ପରାସ୍ତ ହେବାକୁ ପଡ଼ିଲା । କେବଳ ଗୋଟିଏ ସନ୍ତାନ ଅଭାବରୁ ତାଙ୍କର ସମସ୍ତ ଅର୍ଥ, ସମସ୍ତ ଯଶ ଅସାର ବୋଧ ହେଲା । ଶେଷରେ ସେ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ମନସ୍ଥ କଲେ ।

ହରିହର ରଥେ ତର୍କାଳଙ୍କାରଙ୍କର ଖୁଡ଼ୁତାପୁଅ ଭାଇ । ବିଷୟ ସମ୍ପତ୍ତି ଖୁବ୍ ଅଛି । ବୈଦ୍ୟବୃତ୍ତି କରି ମଧ୍ୟ ସେ ବେଶ୍ ଦୁଇ ପଇସା କରି ପାରିଅଛନ୍ତି । ତାଙ୍କର ତିନି ପୁଅ ମଧ୍ୟରୁ ମଝିଆଁଟିର ନାମ ଲୋକନାଥ । ତର୍କାଳଙ୍କାରଙ୍କର କାତର ପ୍ରାର୍ଥନାରେ ହରିହର ରଥେ ଲୋକନାଥକୁ ତାଙ୍କୁ ଦେବାକୁ ସମ୍ମତ ହେଲେ । ଯେଉଁ ଦିନ ଲୋକନାଥ ତର୍କାଳଙ୍କାରଙ୍କ ଘରକୁ ଅନୁକୂଳ କରିଗଲା, ସେ ଦିନ ରଥଙ୍କ ଆଖିରୁ ଦି'ଟୋପା ଲୁହ ଗଡ଼ି ପଡ଼ିଲା । ରକ୍ତର ବନ୍ଧନ କଣ କମ୍ ବନ୍ଧନ ! ହେଲେ କଣ ହେବ, ଭାଇଟା ପରା ଏତେ ବଡ଼ ଘରଟା ନାରଖାର ହୋଇଯିବ, ଏ କଥା ତାଙ୍କ ଦେହ ସହିଲା ନାହିଁ ।

ଏତେ ଦିନେ ତର୍କାଳଙ୍କାର ମହାଶୟ ଅକୂଳରେ କୂଳ ପାଇଲେ । ଯେଉଁ ଚିନ୍ତା ଏତେ ଦିନଯାଏ ଭୂତପରି ତାଙ୍କ ହୃଦୟକୁ ମାଡ଼ି ବସିଥିଲା, ସେ ଆଜି ତହିଁରୁ ଟିକିଏ ଅବ୍ୟାହତି ପାଇଲେ । ଏଣିକି ସେ ପିଲାଟି କିପରି ନୀରୋଗ ହୋଇ ଦୀର୍ଘଜୀବୀ ହେବ, ଭଲ ପଢ଼ାଶୁଣା କରି କୁଳ ଉଜ୍ଜ୍ୱଳ କରିବ, ଏହିସବୁ ଚିନ୍ତା କରି କରି ମନେ ମନେ ଲୋକନାଥର ଭବିଷ୍ୟତ୍ ଜୀବନର କାର୍ଯ୍ୟକ୍ରମ ତିଆରି କରି ଦେଲେ । ତର୍କାଳଙ୍କାରଙ୍କର ଯେଉଁ ବାତ୍ସଲ୍ୟ ଅନ୍ତଃସଲିଳା ଫଲ୍‌ଗୁସ୍ରୋତପରି ଅନ୍ତରର କେଉଁ ନିଭୃତ କନ୍ଦରରେ ନୀରବ କ୍ଷୀଣଧାରରେ ବହି ଯାଉଥିଲା, ସେ ବର୍ତ୍ତମାନ ଉଚ୍ଛ୍ୱସିତ ହୋଇ ଉଠିଲା । ଲୋକନାଥ ଏଣିକି ତର୍କାଳଙ୍କାରଙ୍କ ହୃଦୟରେ ଗୋଟିଏ ବିଶେଷ ସ୍ଥାନ ଅଧିକାର କରି ବସିଲା । ଯେଉଁ ତର୍କାଳଙ୍କାରଙ୍କର ରୁକ୍ଷ, କର୍କଶ ମୂର୍ତ୍ତି ଦେଖି ଲୋକନାଥ ତାଙ୍କର ତିସୀମା ମାଡ଼ୁ ନ ଥିଲା, ଯାହାଙ୍କଠାରୁ ଭର୍ତ୍ସନା ବିନା ସେ କେବେ ପଦେ ନରମ କଥା ଶୁଣି ନାହିଁ, ସେ ଆଜି ସବୁ ଆଦର ଯତ୍ନ ତାହାରି ଉପରେ ଢାଳି ଦେଉଛନ୍ତି କାହିଁକି ? ହଠାତ୍ ଏପରି ଘୋର ପରିବର୍ତ୍ତନ କିପରି ହେଲା ? ଏ ଜଟିଳ ପ୍ରଶ୍ନର ଉତ୍ତର ଦେବ କିଏ ?

× × × ×

ଏଥିମଧ୍ୟରେ ଦୁଇଟା ବର୍ଷ ବର୍ତ୍ତମାନର ସୀମା ଅତିକ୍ରମ କରି କାଳସମୁଦ୍ରରେ କେଉଁଆଡ଼େ ମିଶିଗଲାଣି । ତର୍କାଳଙ୍କାର ମହାଶୟ ନିଜର ଭାଗ୍ୟ ସଙ୍ଗେ ସନ୍ଧି ସ୍ଥାପନ କରି ବେଶ୍ ସୁଖ ଶାନ୍ତିରେ ଅଛନ୍ତି । ସେ ବର୍ଷ ସାଇଁଲେ ଗ୍ରାମରେ ଅକାଳରେ ଝାଡ଼ାବାନ୍ତିର ଆବିର୍ଭାବ ହେଲା । ସାଇଁଲେ କଟକ ଠାରୁ ପାଞ୍ଚ ପା, କି ଦେଢ଼ କୋଶ ହେବ । ଗାଁର କୁଲି ମଜୁରିଆ ଯାଇ ପ୍ରତିଦିନ କଟକରେ ମୂଲ ଲାଗନ୍ତି । ପ୍ରତିବର୍ଷ କଟକରେ ହଇଜା ହେବା ସଙ୍ଗେ ସଙ୍ଗେ ତାର ଢେଉଟା ପ୍ରାୟ ସାଇଁଲେ ଅଡ଼କୁ ଟିକିଏ ମାଡ଼ିଆସେ । କିନ୍ତୁ କେଜାଣି କାହିଁକି ଏଥର ଦେବୀଙ୍କର ସାଇଁଲେ ଉପରେ ବଡ଼ରାଗ, ଗାଁରୁ ପ୍ରାୟ ବାର ଚଉଦ ମୁଣ୍ଡ ଗଲେଣି; ଯାହାକୁ ଧରୁଛି, ଦୁଇ ତିନିଟା ଝାଡ଼ାରେ ଶେଷ ନିକାଶ । ଗାଁରେ ଗୋଟାଏ ତ୍ରାହିଆ ପଶିଗଲାଣି । ବେଳ ଥାଉ ଥାଉ ସମସ୍ତଙ୍କ ଘରେ ତାଟି କବାଟ ପଡ଼ୁଛି । ଗଳିଘରରୁ ହରିହର ରଥଙ୍କ ସାନ ପୁଅଟିକୁ ଦିନେ ଧରୁ ଶେଷ ହୋଇଗଲାଣି । ବର୍ତ୍ତମାନ ପୁଅ ଓ ସ୍ତ୍ରୀ ଆସି ଥଠା ଠିକ୍ ହେଲେଣି । ରଥେ ପ୍ରଥମରେ ଚିକିତ୍ସା କରୁଥିଲେ, ବର୍ତ୍ତମାନ କାଠପରି ରହିଗଲେଣି । ସମ୍ବଳିତ ପରି ଯାହା କିଛି କରି ଯାଉଅଛନ୍ତି । ବାକି ଥିଲା କେବଳ ବଡ଼ ପୁଅଟି, ସେ ମଧ୍ୟ ହାଲିଆ ହୋଇ ପଡ଼ିଗଲା । ବୃଦ୍ଧ କେବଳ ଦୀପଟିଏ ଜାଳି ଘର ଭିତରେ ସ୍ଥିର ହୋଇ ବର୍ଷ ବୁଢ଼ାଆଡ଼କୁ ଅନାଇ ଅଛନ୍ତି । ତାଙ୍କୁ ସବୁ ସ୍ୱପ୍ନହେଲିକା ପରି ବୋଧ ହେଉଅଛି । ରଥଙ୍କ ଜାଗରଣ-ମଳିନ ଚକ୍ଷୁରେ ସର୍ବ ଦୁଃଖିତ

ହୋଇଗଲା । କିନ୍ତୁ ସେତେବେଳକୁ ସମସ୍ତେ ଯାଇ ଯମରାଜଙ୍କ ମୃଗୟା-ଅଞ୍ଚଳରେ ନିରାପଦରେ ବନ୍ଦ ହୋଇ ସାରିଲେଣି । ବାକି ଅଛନ୍ତି କେବଳ ବୃଦ୍ଧ ରଥେ—ତୃଣଲତାଶୂନ୍ୟ କଙ୍କରମୟ ବିଜନ ମରୁରାଜ୍ୟରେ ଶୁଷ୍କ ନୀରସ ବୃଦ୍ଧ ବନସ୍ପତି ଯେପରି ପ୍ରକୃତିର ବିଭୀଷିକାମୟ ତାଣ୍ଡବ ନୃତ୍ୟ ମଧ୍ୟରେ ଅଜ୍ଞାତର ସ୍ନିଗ୍ଧ ସ୍ପର୍ଶ ଘେନି ଉଦାସପ୍ରାଣରେ ଆକାଶ ଆଡ଼କୁ ଅନାଇ ଥାଏ, ରଥେ ସେହିପରି ନୈରାଶ୍ୟର ଉତ୍କଟ ନର୍ତ୍ତନ ମଧ୍ୟରେ ପଲକଶୂନ୍ୟ ଦୃଷ୍ଟିରେ ଊର୍ଦ୍ଧ୍ୱକୁ ଚାହିଁ ରହିଲେ ।

ତେଣେ ରଥେ ତର୍କାଳଙ୍କାରଙ୍କୁ ଡାକି କହିଲେ, "ଜାଣିଲୁ ଭାଇନା, ମୋ ଦୁର୍ଦ୍ଦଶା ତ ଦେଖୁଛୁ, ମୁଁ ଆଉ ବେଶୀଦିନ ବଞ୍ଚିପାରିବି ନାହିଁ । ମୋର ଦେହଟା ଅବସନ୍ନ ହୋଇ ଆସିଲାଣି, ମନ ଭିତରେ ସର୍ବଦା ଗୋଟାଏ ଅବିଚ୍ଛିନ୍ନ ଦାଉଦାଉ ହୋଇ ଜଳୁଛି । ମୁଁ ଭଲକରି ବୁଝି ପାରିଲିଣି, ଅନ୍ତିମ କାଳ ଅତି ନିକଟ । କେତେ ଲୋକ କହୁଛନ୍ତି, ଗୋଟିଏ ପୋଷ୍ୟପୁତ୍ର କର, ନହେଲେ କୁଳରେ ପାଣି ଦେବ କିଏ ? ଏଥିରେ ମୋ ମନ ମାନୁ ନାହିଁ । ଲୋକନାଥ ଥାଉ ଥାଉ ମୁଁ କାହିଁକି ଏ ବିଷୟରେ ଆଉ ଗୋଡ଼ାଏ ଘାଣ୍ଟି ହେବି ? ତୋର ବିଚାର କଣ ?" ତର୍କାଳଙ୍କାର କହିଲେ, "ମୋ କଥା ଟିକିଏ ଶୁଣୁଛ ନା, ଭାଇନା ? ଯେତେବେଳେ ଲୋକନାଥ ଗ୍ରାମ ଘରେ ଥିଲା, କିନ୍ତୁ ଏଇ କେତେ ବର୍ଷ ହେଲା ସେ ମୋର ପ୍ରାଣର ଦୋସର ହୋଇ ଗଲାଣି । ସେ ମୋତେ ଯେଉଁ ବନ୍ଧନରେ ବାନ୍ଧିଛି, ତାକୁ ଛିଣ୍ଡାଇଦେଲେ ମୋର ଜୀବନବନ୍ଧନୀ ତା ସଙ୍ଗେ ସଙ୍ଗେ ଛିଣ୍ଡିଯିବ ।" "ନାହିଁରେ, ନାହିଁରେ ଭାଇନା," ରଥେ ଟିକିଏ ବିସ୍ମୟସ୍ୱର ସହିତ କହିଲେ, "ମୁଁ ସେ କଥା କହୁ ନାହିଁ । ମୁଁ କହୁଥିଲି ଯେ, ସେ ତ ଆମ ଦୁଇକୁଳର ଏକମାତ୍ର ଚନ୍ଦ୍ରମା, ସେ ଯେପରି ଏ କୁଳ ସେ କୁଳ ଦୁଇକୁଳ ରକ୍ଷା କରିବ । ମୋର ତ ଆଉ ଘରେ ବାଳେଇ ପିଲାଟିଏ ନାହିଁ, ସେ ବିଷୟ-ବାଡ଼ି ଆଉ କିଏ ଭୋଗ କରିବ ?"

ରଥଙ୍କୁ ଆଉ ବେଶୀଦିନ ଦୁର୍ବହ ଜୀବନ ଭାର ବହନ କରିବାକୁ ପଡ଼ିଲା ନାହିଁ । ମୃତ୍ୟୁ ଆସି ଶୀଘ୍ର ତାଙ୍କୁ ଛୁଟି ଦେଲା ।

(୨)

ମନୁଷ୍ୟ ଯାହା ଲୋଡ଼େ ସବୁବେଳେ ତାହା ପାଏ ନାହିଁ । ପୁଣି ଯାହା ପାଇବାର କଥା, ଯେତେବେଳେ ଇଚ୍ଛା କରେ ପାଏ ନାହିଁ, ମଧ୍ୟ ଯେତେବେଳେ ଲୋଡ଼ୁ ନଥାଏ ସେତେବେଳେ ପାଏ । ମନୁଷ୍ୟର ଇଚ୍ଛା ଉପରେ ଯେ ତାହାର ସୌଭାଗ୍ୟ ଦୁର୍ଭାଗ୍ୟ ନିର୍ଭର କରେ ନାହିଁ, ଏହା ଶିକ୍ଷା ଦେବାଲାଗି ହୁଏତ ଭଗବାନ

ମନୁଷ୍ୟର ଭାଗ୍ୟର କଣ୍ଟାକୁ ଟିକିଏ ଆଗକୁ ବା ପଛକୁ ଚଳାଇ ଦିଅନ୍ତି । ଅଥବା ମନୁଷ୍ୟର କେତେବେଳେ କଣ ଲୋଡ଼ା, ସେ ଠିକ୍ କରି ବୁଝି ପାରେ ନାହିଁ । ତର୍କାଲଙ୍କାର ସନ୍ତାନଟି ଲାଗି କେତେ ଉପାସ୍ୟ ଯତ୍ନ ନ କରିଛନ୍ତି, ପ୍ରଭୁଙ୍କ ଚରଣତଳେ କେତେ ଆକୁଳ ପ୍ରାର୍ଥନା ଢାଳି ନ ଦେଇଛନ୍ତି ? କିନ୍ତୁ ବର୍ତ୍ତମାନ ଯେତେବେଳେ ସେ ଭାବନାକୁ ଚିରକାଳ ପାଇଁ ମନରୁ ନିର୍ବାସିତ କରି ନିଜ ଭାଗ୍ୟରେ ସନ୍ତୁଷ୍ଟ ହୋଇ ରହିବାକୁ ଶିକ୍ଷା କରି ଅଛନ୍ତି, ସେତେବେଳେ ସେ ଅଯାଚିତ ଭାବରେ ଗୋଟିଏ ପୁତ୍ର ସନ୍ତାନ ଲାଭକଲେ । ଏପରି ଅପ୍ରତ୍ୟାଶିତ ସୌଭାଗ୍ୟ ଲାଗି ସେ ଆଦୌ ପ୍ରସ୍ତୁତ ନଥିଲେ । ସୁତରାଂ ଏ ଘଟଣା ତାଙ୍କ ମନରେ ଗୋଟାଏ ବିପ୍ଳବ ଜନ୍ମାଇ ଦେଲା । ଏକମାତ୍ର ପୁତ୍ରସ୍ନେହର ବନ୍ୟାରେ ଆଉ ସମସ୍ତ ଭାବ କୁଆଡ଼େ ଭାସିଗଲା । ନୈଷ୍ଠିକ ତର୍କାଲଙ୍କାରଙ୍କର ସନ୍ଧ୍ୟା ଆହ୍ନିକ, ଅଧ୍ୟୟନ ଅଧ୍ୟାପନ କେବଳ ବାହ୍ୟରକ୍ଷାରେ ପରିଣତ ହେଲା । ତର୍କାଲଙ୍କାରଙ୍କର ହୃଦୟର ସ୍ନେହ ଆଦର ଆଉ ସମସ୍ତ ମଧୁର କୋମଳଭାବ ପୁତ୍ରର ଚତୁଃପାର୍ଶ୍ୱରେ ଅନବରତ ବେଷ୍ଟନ କରି ରହିଲା । କେବଳ ଦୀନବନ୍ଧୁ ବର୍ତ୍ତମାନ ଅସପତ୍ନ ଭାବରେ ତର୍କାଲଙ୍କାରଙ୍କ ହୃଦୟରେ ରାଜତ୍ୱ କଲା । ଏ ଦିଗରେ ଅତ୍ୟଧିକ ଆକର୍ଷଣ ସଙ୍ଗେ ସଙ୍ଗେ ଅନ୍ୟ ଦିଗରେ ବିପରୀତ ଶକ୍ତିର କାର୍ଯ୍ୟ ଆରମ୍ଭ ହେଲା । ଏପରି ଟଣା ଓଟରାରେ ଲୋକନାଥର କ୍ଷୀଣ ବନ୍ଧନ ଛିଣ୍ଡିଯାଇ ସେ କୁଆଡ଼େ କକ୍ଷଚ୍ୟୁତ ହୋଇ ପଡ଼ିଗଲା । ତର୍କାଲଙ୍କାର ଦୁଗ୍ଧ ପାନର ଇଚ୍ଛା ଘୋଳରେ ପୂର୍ଣ୍ଣ କରିବେ ବୋଲି ବସିଥିଲେ । କିନ୍ତୁ ଦୁଗ୍ଧ ମିଳିବାରୁ ଘୋଳଟା ଖଟା ଲାଗିଲା ।

ଏତେଦିନଯାଏ କେଜାଣି କାହିଁକି ଲୋକନାଥର ପଢ଼ାଶୁଣା ଆଡ଼କୁ ତର୍କାଲଙ୍କାରଙ୍କର ବିଶେଷ ନଜର ପଡ଼ି ନଥିଲା । ଦିନେ ହଠାତ୍ ଦୈବକ୍ରମେ ସେ ବୁଝିପାରିଲେ ଯେ, ଲୋକନାଥଟା ବଡ଼ ମୋଟାବୁଦ୍ଧିଆ । ତାକୁ ପାଠ ପଢ଼ାଇବାର ଅର୍ଥ ଟଙ୍କାର ଶ୍ରାଦ୍ଧ ଛଡ଼ା ଆଉ କଡ଼ାକର ଲାଭ ନାହିଁ । ବିଶେଷତଃ ତାର ଦୁଷ୍ଟପଣିଆ କଥା କାନରେ ଶୁଣି ଶୁଣି ସେ ଅସ୍ଥିର ହୋଇ ସାରିଲେଣି । ନା, ଆଉ ତାକୁ ପଢ଼ାଇବେ ନାହିଁ, ବରଂ ଏ ସମୟରୁ ଅନ୍ୟ କିଛି ବାଟ ଧରିଲେ ଲାଭ ଅଛି । ଲୋକନାଥକୁ ଡାକି କହିଲେ, "ମୁଁ ଭଲ କରି ଜାଣି ସାରିଲିଣି, ତୋର ଆଉ ପାଠଶାଠ ହେବ ନାହିଁ । ତୁ ତ ଆଉ ପିଲା ନୋହୁ ଯେ, ମୁଁ ତୋତେ ମାରି ଶିଖାଇବି ? ତୋ କପାଳରେ ଯାହା ଥିଲା, ହୋଇଗଲା । ଏଣିକି ତୁ ହେଲେ ବିଷୟ ଧନ୍ଦା ବୁଝାଶୁଝା କର । ମୁଁ ତ ଆସି ରହିଗଲିଣି, ଆଉ ବିଲବାଡ଼ିକୁ ଯାଇପାରୁ ନାହିଁ । ଜଣେ ତ ପୁଣି କେହି ଦେଖାଶୁଣା କରିବ ।" ଲୋକନାଥ ମୋଟାବୁଦ୍ଧିଆ ଥିଲା କି ନାହିଁ, ଏକଥା ଠିକ କରି କୁହାଯାଇ ନ ପାରେ । ତେବେ ତାର ଯେ ବିଦ୍ୟାନୁରାଗ କେବେ ଥିଲା, ଏକଥା

କେହି ଦେଖି ନାହିଁ । ଯାହାହେଉ ଘଟଣାଟି ହେବାରେ କି ସୁଙ୍ଗ ଅଛି, ଏ କଥା ସେ ବୁଝି ନ ଥିଲେ ସୁଦ୍ଧା ବର୍ତ୍ତମାନ ଆପାତତଃ ସେ ପଢ଼ାପଢ଼ିର ଝମେଲା କବଳରୁ ରକ୍ଷା ମିଳିବ ଏ କଥାରେ ତାର ଖୁବ୍ ଆନନ୍ଦ ହେଲା । ସେହିଦିନଠାରୁ ଲୋକନାଥଙ୍କର ଅଧ୍ୟୟନ ପର୍ବ ସାଙ୍ଗ ହେଲା । ତର୍କାଳଙ୍କାରଙ୍କର ମଧ୍ୟ ଉଦ୍ଦେଶ୍ୟ ସିଦ୍ଧ ହେଲା ।

ଆଜିକାଲି ଲୋକନାଥ ସୁପ୍ତବାସ ବୁଝାଶୁଝା କରେ, ସନ୍ଧ୍ୟାହେଲେ ଭାଗବତଘରେ ଭାଗବତ ଚର୍ଚ୍ଚା, ସଙ୍କୀର୍ତ୍ତନ ପ୍ରଭୃତିରେ ଯୋଗ ଦିଏ ଏବଂ ବାକି ସମୟଟା ଗ୍ରାମ୍ୟ ସାଙ୍ଗ ପିଲେଙ୍କୁ ନେଇ ହସ ଖେଳରେ କଟାଇଦିଏ । ଖେଳଧୂଳିରୁ ଦିନେ କେହି ବିରସ ହେବାର ଦେଖି ନାହିଁ । ସେ ଗପସପ ହାସ୍ୟ ପରିହାସରେ ସମସ୍ତ ମନକୁ ସରସ ଓ ସଜୀବ ରଖିଥାଏ । ଗ୍ରାମର ପିଲାଠାରୁ ଆରମ୍ଭ କରି ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କର ସେ ବନ୍ଧୁ, ସମସ୍ତଙ୍କର ସେ ଆପଣାର, ତାହାର ଆଉ କିଛି ଥାଉ ନ ଥାଉ, ସମସ୍ତେ ତାହାର ସରଳତା ଓ ମଧୁର ବ୍ୟବହାରରେ ମୁଗ୍ଧ । କାହାରି କିଛି ବିପଦ ପଡ଼ିଲେ ଲୋକନାଥ ସେଠାରେ ଉପସ୍ଥିତ ହୋଇ ଅଯାଚିତ ଭାବରେ ନିଜର ସାହାଯ୍ୟ କରିଥାଏ । କିନ୍ତୁ କେହି ଯଦି ଏ କୌଣସି ପ୍ରକାରେ ତା' ଆଗରେ କୃତଜ୍ଞତା ପ୍ରକାଶ କଲେ ସେ କିଛି ଦିନ ତା' ଦୁଆର ମାଡ଼େ ନାହିଁ । ଏହିପରି କେତେ କାରଣରୁ ଲୋକେ ତାକୁ ଖାମ୍‌ଖିଆଲି ବୋଲି କହନ୍ତି । ଲୋକନାଥର ସ୍ୱାସ୍ଥ୍ୟ ଅନନ୍ୟ, ଦେହରେ ମଧ୍ୟ କାଠିଏ ବଳ । କୌଣସିଠାରେ କଳହ ଉପସ୍ଥିତ ହେଲେ ନିଜର କୌଣସି ସ୍ୱାର୍ଥ ପ୍ରତି ଭ୍ରୂକ୍ଷେପ ନ କରି ସେ ସ୍ୱୟଂ ରଣକ୍ଷେତ୍ରରେ ଉପସ୍ଥିତ ହୋଇ ଶାନ୍ତିସ୍ଥାପନ କାର୍ଯ୍ୟ କରିବାକୁ ମଧ୍ୟ ଛାଡ଼େ ନାହିଁ । ତାହା ବୋଲି ସେ ନିଜେ ଯେ କେବେ କଳହ କରେ ନାହିଁ, ଏପରି ନୁହେଁ । ନିଜର ମତ ସଙ୍ଗେ କାହାର ମତ ଅମେଳ ହେଲେ ସମୟ ସମୟରେ ସେ ଉତ୍ତମ ମଧ୍ୟମ ଗୋଟାକେତେ ଦେଇ ନିଜ ମତର ସତ୍ୟତା ଅନ୍ୟମାନଙ୍କୁ ଦାରୁଣ ଭାବରେ ଉପଲବ୍ଧି କରାଇ ଦିଏ ।

କିନ୍ତୁ ଲୋକନାଥ ଯଦି କାହାରି କିଛି ଅନିଷ୍ଟ କରେ, ସେ ନିଜର । ତାହାର ଅତୀତ ପାଇଁ ଅନୁଶୋଚନା ନାହିଁ, ଭବିଷ୍ୟତ ପାଇଁ ଚିନ୍ତା ନାହିଁ । ତାହାର ପୋଷାକ ପରିଚ୍ଛଦରେ ଆଡ଼ମ୍ବର ନାହିଁ, ଖଣ୍ଡେ ଛିଣ୍ଡା ଖଦା ହେଲେ କାମ ଚଳିଲା । ଭୋଜନାଦିରେ ମଧ୍ୟ ଆଗ୍ରହ ନାହିଁ — ଘରେ ମୋଟା ବରଡ଼ା ଯାହା ପାଇଲା, ସେ ସେଥିରେ ସନ୍ତୁଷ୍ଟ । ଲୋକନାଥ ଅସିଲା ଦିନଠାରୁ ତର୍କାଳଙ୍କାରଙ୍କର ଗୃହିଣୀ ଦିନେ ତାକୁ ସ୍ନେହଚକ୍ଷୁରେ ଦେଖି ନାହାନ୍ତି । ସେ ଏତେ ନିର୍ବୋଧ ନୁହନ୍ତି ଯେ, ପର ପୁଅକୁ ପୁଅ ବୋଲି ଡାକି ଗୌରବବୋଧ କରିବେ । ବରଂ ସେ ନିଜେ ଯେ,

ପୁତ୍ରହୀନା, ଲୋକନାଥଙ୍କୁ ଦେଖି ଏକଥା ସେ ଗଭୀର ଯନ୍ତ୍ରଣାର ସହିତ ସୁସ୍ପଷ୍ଟତର ରୂପେ ଅନୁଭବ କଲେ । ଏ ଭାବ ଏ ପର୍ଯ୍ୟନ୍ତ ତାଙ୍କ ମନ ମଧ୍ୟରେ ଘୁଙ୍ଗାଳି ହୋଇ ତାଙ୍କୁ ପୋଡ଼ି ଦେଉଥିଲା । କିନ୍ତୁ ଦୀନବନ୍ଧୁର ଜନ୍ମ ପରେ ପୁତ୍ରଗର୍ବିଣୀ ଆଉ ଅନ୍ତର-ବ୍ୟଥାକୁ ଚପାଇ ରଖିପାରିଲେ ନାହିଁ । ଭିତରେ ଅଗ୍ନି ଦ୍ୱିଗୁଣ ତେଜରେ ଜଳି ଉଠିଲା । ସେ ପ୍ରଥମେ ଅନ୍ୟ କାହାରି ସାହାଯ୍ୟ ଅପେକ୍ଷା ନ କରି ନୀରବରେ ଲୋକନାଥ ଉପରେ ଅତ୍ୟାଚାର କରିବା ଲାଗି ନାନା ଉପାୟ ଅବଲମ୍ବନ କଲେ । କିନ୍ତୁ ଲୋକନାଥର ସରଳ, ଅକପଟ ସ୍ୱଭାବ ନିକଟରେ ସବୁ ବ୍ୟର୍ଥ ହୋଇଗଲା । ଶେଷରେ ଏଥିରୁ ନିରସ୍ତ ହୋଇ ଗୃହିଣୀ ସ୍ୱାମୀଙ୍କର ଆଶ୍ରୟ ନେଲେ । ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଦାମ୍ପତ୍ୟ-ପ୍ରଣୟ କେତେଦୂର ପ୍ରଗାଢ଼ ଥିଲା, ତାହା ଠିକ୍ ବୋଲିଯାଇ ନ ପାରେ; ତେବେ ଦୀନବନ୍ଧୁର ଜନ୍ମଦିନଠାରୁ ସ୍ତ୍ରୀଙ୍କ ପ୍ରତିପତ୍ତି ସ୍ୱାମୀଙ୍କଠାରେ ଖୁବ୍ ବଢ଼ିଯାଇଛି । ଗୃହିଣୀ ଏହି ସୁଯୋଗ ପାଇ ଆକାର ଇଙ୍ଗିତ, କଥାବାର୍ତ୍ତା ନାନା ଉପାୟରେ କ୍ରମେ ତର୍କାଲଙ୍କାରଙ୍କୁ ଲୋକନାଥ ବିରୁଦ୍ଧରେ ଉତ୍ତେଜିତ କରି ଦେଲେ । ଯେଉଁ ସ୍ତ୍ରୀ ନିଜ ସ୍ୱାମୀକୁ ଆପଣାର ମୁଠାରେ ରଖି ନପାରିଲା, ତାହାର ନାରୀଜନ୍ମ ନେଇ ଫଳ କଣ ? କେତୋଟି ଦିନରେ ତର୍କାଲଙ୍କାର ବୁଝିଗଲେ ଯେ, ଲୋକନାଥଙ୍କୁ ଆଣି ସେ ଏକ ଚରମ ଭୁଲ କରିଅଛନ୍ତି । ତର୍କାଲଙ୍କାରଙ୍କ ମନରେ ଏକଥା ଯେ ଆଦୌ ଉଦୟ ହୋଇ ନ ଥିଲା, ତାହା ନୁହେଁ; ତେବେ ସ୍ତ୍ରୀ ଦିବ୍ୟଚକ୍ଷୁ ଦେଇ ତାଙ୍କୁ ଭବିଷ୍ୟତର କୁରୁକ୍ଷେତ୍ରର ଚିତ୍ର ଟିକିଏ ଭଲ କରି ଦେଖାଇ ଦେଲେ । ବୃଦ୍ଧ ମଧ୍ୟ ଏହି ଚିନ୍ତାରେ ଅସ୍ଥିର ହୋଇ ପଡ଼ିଲେ । ଯହିଁରେ ଦୀନଙ୍କର ଭବିଷ୍ୟତରେ ଘୋର ଅକଲ୍ୟାଣ ହେବ, ସେ କଣ୍ଟା ଦୂର ନ କରିବାଯାଏ ମନରେ ଆଉ ଶାନ୍ତି କାହିଁ ? ଗୃହିଣୀ ମଧ୍ୟ ବେଳକାଳ ଦେଖି ଟିକିଏ ଆହୁତି ପକାଇବାକୁ ଲାଗିଲେ ।

ଦିନେ ଦୀନବନ୍ଧୁ ପାଠଶାଳାରୁ ଫେରିବାବେଳେ ଅନ୍ୟ ଗୋଟିଏ ପିଲା ସହିତ ତାହାର କଳି ହେଲା । ବାଗ୍‌ଯୁଦ୍ଧରେ କିଛି ମୀମାଂସା ନ ହେବାରୁ ଉଭୟଙ୍କ ମଧ୍ୟରେ ହାତ ଚଳାଚଳି ଆରମ୍ଭ ହେଲା । ଅନ୍ୟାନ୍ୟ ଛାତ୍ରମାନେ କୌତୂହଳ ହେତୁ ଏ ଆନନ୍ଦ ଉପଭୋଗରୁ ବଞ୍ଚିତ ହେବାକୁ ଇଚ୍ଛୁକ ନ ଥିଲେ ସୁଦ୍ଧା କେତେ ଜଣ ମଧ୍ୟସ୍ଥତାର ଅଭିନୟ ଦେଖାଇ ଥିଲେ । କିନ୍ତୁ ଏଥିରେ କିଛି ଫଳ ହେଲା ନାହିଁ । ଶେଷରେ ବାହୁବଳ ଏ ଦ୍ୱନ୍ଦ୍ୱଯୁଦ୍ଧର ନିଷ୍ପତ୍ତି କରି ଦେଲା । ଦୀନବନ୍ଧୁ ସଙ୍ଗୀମାନଙ୍କ ହାସ୍ୟ କରତାଳି ମଧ୍ୟରେ ପରାଜିତ ପ୍ରତିଦ୍ୱନ୍ଦ୍ୱୀକୁ ଭୂତଳଶାୟୀ କରି ଦେଇ ଜୟଧ୍ୱଜା ପରିବର୍ତ୍ତରେ ଉକ୍ତ ବାଳକର ପୁସ୍ତକର ଛିନ୍ନପତ୍ରସବୁ ଉଡ଼ାଇ ଉଡ଼ାଇ ବିଜୟୋଲ୍ଲାସରେ ଗୃହାଭିମୁଖରେ ଅଗ୍ରସର ହେଲା । ଏପରି ସମୟରେ ଲୋକନାଥ

ବଳିଆଡ଼୍ ଫେଣ ଯେଉଁଠାରେ ଉପସ୍ଥିତ । ସେ ଭୂମିରେ ପଡ଼ିଯାଇଥିବା ବାଳକଟିକୁ ଉଠାଇ ତା ମୁଣ୍ଡରୁ ଯେଉଁ ରକ୍ତ ବୋହୁଥିଲା, ତାହା ପୋଛି ପକାଇଲା । ଗ୍ରାମର ପିଲାମାନଙ୍କ ମଧ୍ୟରେ ଲୋକନାଥର ଏକଚ୍ଛତ୍ର ସାମ୍ରାଜ୍ୟ । ସେ ସମସ୍ତଙ୍କୁ ଆନ୍ତରିକ ସ୍ନେହ କରୁଥିଲା ଏବଂ ସମସ୍ତେ ତାର ନିରପେକ୍ଷ ବିଚାରରେ ସନ୍ତୁଷ୍ଟ ଥିଲେ । ଉପସ୍ଥିତ କ୍ଷେତ୍ରରେ ସେ ଦୀନବନ୍ଧୁର ପୂର୍ବ ଦୋଷ ଦେଖିପାରି ସମସ୍ତଙ୍କ ସମକ୍ଷରେ ତାକୁ ଚଟକଣିଟାଏ ଦେଇ ଭବିଷ୍ୟତ୍ ପ୍ରତି ସତର୍କ କରାଇ ଦେଲା । ଧନେଇ ତର୍କାଳଙ୍କାରଙ୍କର ସେରନ୍ତା ପୁଅ, ଚିରକାଳ ଆଦର ସ୍ନେହରେ କୋଳରେ ଲାଳିତ; ତା ଦେହରେ କେହି ହାତ ଛୁଇଁବା ଦୂରେ ଥାଉ, ଦିନେ କେହି ତାକୁ ତୁ ବୋଲି କହି ଦେଇ ନାହିଁ । ସେ ଏ ଘୋର ଅପମାନ ସହି ନ ପାରି କୋହରେ କାନ୍ଦି କାନ୍ଦି ଘରକୁ ଚାଲିଗଲା । ଘରେ ଗୋଡ଼ ଦେଲାମାତ୍ରେ ତାହାର ମନର କୋହ ପ୍ରବଳତର ହୋଇ ଜଳି ଉଠିଲା ଏବଂ ଗଳାର ସ୍ୱର ସପ୍ତମକୁ ଚଢ଼ାଇ ଦେଇ ସେ ଚିତ୍କାର କରି ଉଠିଲା । ଧନାବୋଉ ହାଣ୍ଡିଶାଳରେ ଥିଲେ । ସେ ଧନେଇର କିଛି ଅକଲ୍ୟାଣ ଆଶଙ୍କା କରି ହଠାତ୍ ଦୌଡ଼ି ଆସୁ ଆସୁ ତାଙ୍କ ମୁଣ୍ଡ ଦୁଆରବନ୍ଧରେ ବାଜି ସେ ଲଥ୍‌କିନା ବସିଗଲେ । ପରେ ମନର ରାଗ ମନରେ ମାରି ଦେଇ ଯାଇ ଧନେଇ ପାଖରୁ ସବୁ ହାଲ ହକିକତ ଶୁଣିଲେ । ଶୁଣି ତାଙ୍କର ଧୈର୍ଯ୍ୟଚ୍ୟୁତ ହେବାର ସମ୍ଭାବନା ହେଲା । ପୁଣି ମନରେ ଆନନ୍ଦ ମଧ୍ୟ ଟିକିଏ ହେଲା ଯେ, ସେ ଏପର୍ଯ୍ୟନ୍ତ ଯେଉଁ ସୁବିଧା ଖୋଜୁଥିଲେ, ତାହା ଆସି ଆଜି ଉପସ୍ଥିତ । ଲୋକନାଥକୁ ଦେଖିପାରି ମନକୁ ଟିକିଏ ଦୃଢ଼ କଲେ । ପୁଅ ଉପରେ ରାଗିଯାଇ କହିଲେ, "ଛତରା ଟୋକା, ଯା — ରୁ ମୋ ଘରୁ ଯା । ହେଉଛି କଅଣ କି ? ଆହୁରି ହବ; ତତେ ପିଲାମାନ ଦେଖି ହାଡ଼ ପାଣି ତ ମାଡ଼ ମାରିବେ ।" ଏକଥା କହି ଦୀନବନ୍ଧୁକୁ ଦୁଇ ଚାପଡ଼ା ମାରି ଜୋରରେ ପେଲି ଦେଲେ । ଦୀନବନ୍ଧୁ ମୁହଁ ମାଡ଼ି ପଡ଼ିଗଲା ବେଳେ ତଳେ ଗଣ୍ଡେ ଖପରା ତା ମୁଣ୍ଡରେ ପଶିଯାଇ ଝରଝର ହୋଇ ରକ୍ତ ବୋହିଗଲା । ଧନାବୋଉ ଏହା ଦେଖି ସୁଦ୍ଧା ବିଚଳିତ ହେଲେ ନାହିଁ । ଲୋକନାଥକୁ ନିକଟରେ ଦେଖି ପୁଅ ଆଡ଼କୁ ଅନାଇଁ 'ମର' ବୋଲି କହି ରାଗରେ ଗରଗର ହୋଇ ଚାଲିଗଲେ । ଲୋକନାଥ କାରଣ ବୁଝିବାକୁ ଚେଷ୍ଟା ନକରି ହଠାତ୍ ଦୀନବନ୍ଧୁକୁ ଭୂଇଁରୁ ଉଠାଇ ପୋଡ଼ାକନା ଖଣ୍ଡେ କଟା ସ୍ଥାନରେ ମାଡ଼ି ଦେଇ ତା ଉପରେ ଗୋଟିଏ ପଟି ବାନ୍ଧି ଦେଲା ଏବଂ ମୋ ବାପା, ମୋ ଧନ, କହି ତାକୁ ତୁନି କରି ଦେଇ ଶୁଆଇ ପକାଇଲା ।

ତର୍କାଳଙ୍କାର ସେ ଦିନ ଧନେଇର ଉପନୟନ ଲଗ୍ନ କିଛି ଠାକୋର ଯୋଗାଡ଼ କରିବା ପାଇଁ ଗୋଟିଏ ପାଖ ଗାଁକୁ ଯାଇ ଥିଲେ, କିଛିକ୍ଷଣ ପରେ ଆସି ପହଞ୍ଚିଲେ । ରାସ୍ତାରେ ଦେହରୁ ଝାଳ ବୋହି ଯାଉଛି, ତଣ୍ଟିରେ ପ୍ରାଣ ସକାଳୁ ଖିଆପିଆ ନାହିଁ । ଆସି ଦେଖନ୍ତି ତ ଘରେ ସବୁ ଶୂନ-ଶାନ । "ଧନେଇ ରେ" "ଧନେଇ ହେ"

କେତେଥର ଡାକି କିଛି ଜବାବ ପାଇଲେ ନାହିଁ । ଭିତରକୁ ଯାଇ ଦେଖିଲେ, ପୀତେଇ ମୁଣ୍ଡରେ ଗୋଟିଏ ପଟି ବନ୍ଧା, ସେ ଘର ଭିତରେ ଶୋଇଛି, ଆଉ ଗୃହିଣୀ ପିଣ୍ଡା ଉପରେ ଭୂଇଁରେ ପଡ଼ିଛନ୍ତି । ସେ ପଚାରିଲେ କିଛି ବୁଝିପାରିଲେ ନାହିଁ । ପରେ ଗୃହିଣୀଙ୍କି ଡାକିବାରୁ ସେ ବହୁ କଷ୍ଟରେ ଉଠିଲେ । ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ, କେଶ ବିପର୍ଯ୍ୟସ୍ତ ଓ ମୁଖ ମେଘାଚ୍ଛନ୍ନ । ତର୍କାଳଙ୍କାର କିଛି ପଚାରିବା ଆଗରୁ ସେ କ୍ରନ୍ଦନ ସ୍ୱରରେ ଚିତ୍କାର କରି ଉଠିଲେ—"ମୋ ପୀତେଇ କାହିଁ, ମୋ ଦୁଃଖୀଧନ କାହିଁ ? ସେ ଅସୁର ତାକୁ କ'ଣ ଆଉ ଜୀବନରେ ରଖିଛି ?"

"କଣ, ହେଲା କଣ ? ପୀତେଇର କଣ ହୋଇଛି ?" "ମୁଁ ଆଉ ଏ ଗ୍ରାମର ଦ୍ୱାରରେ ଜଳେ ରହିବି ନାହିଁ ଲୋ ମା, ଆଉ କଣ ମୁଁ ସତେ ପୀତେଇଙ୍କୁ ଦେଖିପାରୁ ?" ଏହି କଥା କହି ଗୃହିଣୀ କ୍ରନ୍ଦନର ସ୍ୱର ଆଉ ଟିକିଏ ଚଢ଼ାଇ ଦେଲେ । ଶେଷରେ ସ୍ୱାମୀଙ୍କର ତୀବ୍ର ଉତ୍କଣ୍ଠା ଦେଖି ଆନୁପୂର୍ବିକ ସବୁ ସାଲଙ୍କାରରେ ବର୍ଣ୍ଣନା କରି ସାବ୍ୟସ୍ତ କରିଦେଲେ ଯେ, ପୀତେଇଙ୍କ ବିନାଦୋଷରେ ଲୋକନାଥ ମାଡ଼ ମାରି ତା ମୁଣ୍ଡ ଦୁଫାଳ କରି ଦେଇଛି, ବଞ୍ଚିବ କି ନାହିଁ ସନ୍ଦେହ, ସେ ନଥିଲେ ଏତେବେଳକୁ ପୀତେଇ ମଶାଣି ପଦାରେ ଗଡ଼ୁଥାନ୍ତା । ଗୃହିଣୀ ଅନେକ ଥର ଲୋକନାଥର ହିଂସ୍ରକ-ପ୍ରବୃତ୍ତିର ନମୁନା ପାଇଲେଣି, କିନ୍ତୁ ପର ପୁଅ ବୋଲି କଣ କହିବ, ଏଯାଏ କିଛି କହୁନ୍ତି ନାହିଁ । ପୀତେଇ ସମସ୍ତ ସମ୍ପତ୍ତି ଉପରେ ଲୋକନାଥର ଏକାଧିପତ୍ୟ ନଷ୍ଟ କରି ଦେଇଛି ବୋଲି, ସେଥିଲାଗି ତା ଉପରେ ଲୋକାର ଏତେ ରାଗ । "ମୃତ୍ୟୁ ମାଇଲେ ଯାଉ ମରି, ଦେବଙ୍କ ସଙ୍ଗେ କାମ୍ଯ କଲି ।" "ପୋଷା ପୁଅ, ଗୁଞ୍ଜା ବୁଅ; ସେ କି କେବେ ଆପଣାର ହୁଏ", ଇତ୍ୟାଦି ।

ଏବେ ତ ତର୍କାଳଙ୍କାର ଯେଉଁ କାର୍ଯ୍ୟଲାଗି ଗ୍ରାମାନ୍ତରକୁ ଯାଇଥିଲେ, ସେଥିରେ ନିରାଶ ହୋଇ ଫେରି ଆସିଛନ୍ତି; ଏଣେ କ୍ଷୁଧା, ତୃଷ୍ଣା ଓ ପଥକ୍ଳାନ୍ତିରେ ଶରୀର ମନ ଅବସନ୍ନ । ତା ଉପରେ ଲୋକନାଥର ଏପରି କାଣ୍ଡ ଶୁଣି ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ଜଳନ୍ତା ନିଆଁରେ ଶୁଖିଲା କୁଟା ପଡ଼ିଗଲା । ଲୋକନାଥ ଭାଗବତ ଘରେ ବସିଥିଲା, ବାବାଙ୍କ ଫେରିବା ଖବର ପାଇ ଘରକୁ ଆସିଲା । ତାକୁ ଦେଖି ତର୍କାଳଙ୍କାର ତା ମୁହଁକୁ ଅନାଇଁ ପ୍ରଥମେ ଗୁମ୍ ମାରି ଛିଡ଼ା ହୋଇଗଲେ । ନିଜକୁ ଟିକିଏ ସମ୍ଭାଳି ନେଇ ଗମ୍ଭୀର ସ୍ୱରରେ କହିଲେ, "ଦେଖ ଲୋକେଇ, ମୁଁ ଆଜଯାଏ ଘରେ କାଳସାପଟାଏ ପାଳିଛି ବୋଲି ଜାଣି ନ ଥିଲି । ଏତେ ଦିନେ

ମୋ ଆଖି ଫିଟିଲା । ହଉ, ମୁଁ ଆଜିଠାରୁ ସଫା କହି ଦଉଛି, ତୋର ମୋ ଘରେ ଆଉ ସ୍ଥାନ ନାହିଁ । ତୁ ଆଜିଠଉଁ ମୋ ଦୁଆର ମାଡ଼ିବୁ ନାହିଁ । ତୋ ସଙ୍ଗେ ମୋର ସମ୍ପର୍କ ଆଜିଠାରୁ ଛିଣ୍ଡିଲା ।" ଲୋକନାଥ ଏ କଥା ଶୁଣି ବିସ୍ମୟରେ ଅବାକ୍ ହୋଇଗଲା । ଏଇଟା ସ୍ୱପ୍ନ କି ଜାଗରଣ, ସେ ଠିକ୍ କରି ପାରିଲା ନାହିଁ । କିଛିକ୍ଷଣ ପରେ ଟିକିଏ ପ୍ରକୃତିସ୍ଥ ହୋଇ ସାହସ ଅବଲମ୍ବନ କରି କହିଲା, "ବାବା ! ମୁଁ କଣ ଦୋଷ କରିଛି କିଛି ବୁଝିପାରୁନାହିଁ ।" ଏ କଥା ଶୁଣି ତର୍କାଳଙ୍କାର ଗର୍ଜ୍ଜନ କରି କହିଲେ, "'ତୁ ମୋ ଆଗରୁ ଶୀଘ୍ର ଚାଲିଯା' । ତୋର ଆଜିର କାଣ୍ଡ ଶୁଣି ମୋର ଗୋଡ଼ଠଉଁ ମୁଣ୍ଡ ପର୍ଯ୍ୟନ୍ତ ଜଳୁଛି, ତୁ ଆଉ ବେଶି ମୋତେ ଜଳାନା । ଏହିକ୍ଷଣି ମୋ ମନ କିଛି ଠିକ୍ ନାହିଁ ।" ଏକଥା କହି ତର୍କାଳଙ୍କାର ସେଠାରୁ ଚାଲିଗଲେ । ଲୋକନାଥ ମଧ୍ୟ ଘର ଆଡ଼କୁ ଗୋଟିଏ କରୁଣ ଦୃଷ୍ଟି ପକାଇ ସେଠାରୁ ଚାଲିଆସିଲା ।

ସେ କେଉଁଆଡ଼େ ଯିବ, କିଛି ସ୍ଥିର କରି ପାରିଲା ନାହିଁ । ତାହାର ପ୍ରତି ପଦକ୍ଷେପରେ ପୃଥିବୀ ଘୂରିଁର ଖାଇବାକୁ ଲାଗିଲା; ତା ଉପରେ ଆକାଶ ଯେପରି ଭାଙ୍ଗି ପଡ଼ିଲା । ସେ ଦିନର ଘଟଣା ଗୋଟି ଗୋଟି ହୋଇ ତା ମନରେ ଉଦୟ ହେଲା । ଅତୀତର ଅନେକ ତୁଚ୍ଛ ସାମାନ୍ୟ ଘଟଣା ନିଜ ନିଜର ଗୂଢ଼ ଅର୍ଥସମ୍ଭାର ଦେଇ ତା ନିକଟରେ ଉପସ୍ଥିତ ହେଲେ । ପ୍ରତ୍ୟେକ ପରସ୍ପରଠାରୁ ବିଚ୍ଛିନ୍ନ ହେଲେ ସୁଦ୍ଧା ସମସ୍ତେ ତାହା ପାଖରେ ଏକ ନିଦାରୁଣ ସତ୍ୟ ପ୍ରକଟ କରି ଦେଇଗଲେ — "ତୁ ତ ପୋଷ୍ୟପୁତ୍ର !"

( ୩ )

ଲୋକନାଥ ବର୍ତ୍ତମାନ ସଂସାରରେ ନିତାନ୍ତ ଅସହାୟ, ନିତାନ୍ତ ଅନାଥ । ସେ ଏ ପର୍ଯ୍ୟନ୍ତ ହରିଣଶିଶୁ ପରି ଖେଳ ଚାରିଆଡ଼େ ସ୍ୱଚ୍ଛନ୍ଦ ମନରେ ନାଚି ବୁଲୁଥିଲା । ଧୂଳିଖେଳ ପରି ମନେ କରୁଥିଲା, ତାର ଜୀବନର ଖେଳ ମଧ୍ୟ ସୁଖରେ ସୁଖରେ ଶେଷ ହୋଇଯିବ । କିନ୍ତୁ ସେ ସ୍ୱପ୍ନରୁ ଉଠି ଦେଖିଲା, ବାଲିଘରରେ ସଂସାର ଚଳେ ନାହିଁ, ତାକୁ ସତରେ କାଠ ଇଟା ମାଟି ପଥର ଲଗାଇ ଖଣ୍ଡିଏ ଘର ତିଆରି କରିବାକୁ ହେବ । ଦେଖିଲା, ଜୀବନଟା କେବଳ ହସ ଖେଳରେ, ଆମୋଦ ଆହ୍ଲାଦରେ ଗଢ଼ା ନୁହେଁ; ତହିଁରେ ନୟନର ଅଶ୍ରୁ—ଅନ୍ତରର ଦୀର୍ଘଶ୍ୱାସର ହଂସା ମଧ୍ୟ ଅଛି । ସେ କେବଳ ସଂସାରର ଖଣ୍ଡିଏ ମାନଚିତ୍ର ଆଜନ୍ମ ଦେଖି ଆସୁଥିଲା, କିନ୍ତୁ ଭାଗ୍ୟର ପରିବର୍ତ୍ତନ ସଙ୍ଗେ ବୁଝି ପାରିଲା, ସେ ପ୍ରକୃତ ବସ୍ତୁର ଗୋଟିଏ ଅଂଶମାତ୍ର ଦେଖିଅଛି ।

ଏକା ହୋଇଥିଲେ ସେ ସଂସାରକୁ ଏତେ ଖାତର କରନ୍ତା ନାହିଁ । ନିଜର କ୍ଷୁଦ୍ର ତରଣୀ ଖଣ୍ଡିକ ଅକାତରରେ ସଂସାରସ୍ରୋତରେ ଛାଡ଼ିଦେଇ ସେ ନିଶ୍ଚିନ୍ତ ରହନ୍ତା—ଚାଲୁ, ଯେଉଁଯାଏ ଚାଲିବ; ବୁଡ଼ୁ, ଯେଉଁଠାରେ ବୁଡ଼ିବ; ଭାଙ୍ଗୁ, ଯେଉଁଠାରେ ଭାଙ୍ଗିବ; କିନ୍ତୁ ତା ପଛରେ ଯେ ଖଣ୍ଡିଏ ଶ୍ରେଷ୍ଠ ପଦାର୍ଥ ବନ୍ଧା, ସେ ଟିକି ଡଙ୍ଗା ଖଣ୍ଡି ଯେ ସାମାନ୍ୟ ଟିକିଏ ଝଞ୍ଜା ପବନ ଲାଗିଲେ ବୁଡ଼ିଯିବ । ଲୋକନାଥର ସ୍ତ୍ରୀ ପାର୍ବତୀ ବିବାହ ପରେ ବରାବର ବାପ ଘରେ ଥିଲା । ପାର୍ବତୀର ପିତା ବଡ଼ ଗରିବ, ତାହାଙ୍କର ପୁଣି କୁଟୁମ୍ବ ଅନେକ । ସେ ଆଉ ବେଶି ଦିନ ବଢ଼ିଲା କନ୍ୟାକୁ ଘରେ ରଖି ନ ପାରି ଶାଶୁ ଘରକୁ ପଠାଇବାର ବନ୍ଦୋବସ୍ତ କଲେ । ଏହି ସମ୍ବାଦ ଶୁଣି ଲୋକନାଥଙ୍କର କିପରି ବନ୍ଦୋବସ୍ତ କଲେ, ତାହା ସହଜରେ ଅନୁମେୟ । ଖୋଦ ଲୋକନାଥର ଅବସ୍ଥା ଯେତେବେଳେ ଏପରି ତାହାର ପିଲା କବିଲାଙ୍କ କଥା ପଚାରୁଛି କିଏ ? ଶେଷରେ ଲୋକନାଥ ନିଜ ବୋଝ ନିଜେ ମୁଣ୍ଡେଇ ବାଟ ଚାଲିବାକୁ ଅଗ୍ରସର ହେଲା । ସେ ଶଶୁରଙ୍କଠାରୁ କିଛି ଧନର ମହଲତ ମାଗି ଖଣ୍ଡିଏ କୁଡ଼ିଆ ଘର ସଜଳ କରିବାକୁ ବାଉଳା ହୋଇ ପଡ଼ିଲା । ନାନା ଚେଷ୍ଟାରେ ବିଫଳ-ମନୋରଥ ହୋଇ କଣ କରିବ କିଛି ଠିକ୍ କରି ପାରିଲା ନାହିଁ । ଶେଷରେ ଗୋଟିଏ ବିଧବା ବ୍ରାହ୍ମଣୀ ତା ଦୁଃଖରେ କାତର ହୋଇ ତାକୁ ଆଶ୍ରୟ ଦେବାକୁ ପ୍ରସ୍ତୁତ ହେଲା । ବିଧବାର ଗାଁ ମୁଣ୍ଡରେ ବଖୁରିଟିଏ ଶ୍ରେଷ୍ଠ କୁଡ଼ିଆ ଘର—ଘରକୁ ଲାଗି ଖଣ୍ଡିଏ ଗୁହାଳ ବାହାରିଛି । ଜୀବନ ନିର୍ବାହର ଏକମାତ୍ର ଉପାୟ ତାହାର ଗାଈଟି ମରିଗଲା ଦିନଠାରୁ ଗୁହାଳ ଖଣ୍ଡିକ ଖାଲି ପଡ଼ିଛି । ସେ ଲୋକନାଥକୁ ଡାକି କହିଲା, "ବାପା, ତୁ ତ ଏତେ ଆଡ଼େ ଧନ୍ଦ ହେଲୁଣି, କିଛି ହେଲା ନାହିଁ । ଏହିକ୍ଷଣି କେତେଟା ଦିନ ମୋ ଗୁହାଳଘର ଖଣ୍ଡିକରେ ବୋହୂକୁ ଆଣି ଟିକିଏ ମୁଣ୍ଡ ଗୁଞ୍ଜି ରହିଯା' । ପଛେ ଘର ମିଳିଲେ ସେଠାକୁ ଉଠିଯିବୁ ।" ନିଃସହାୟା ବିଧବା-ଠାରୁ ଏପରି ଅଯାଚିତ ଅନୁଗ୍ରହ ପାଇ ଲୋକନାଥର ଚକ୍ଷୁ ଛଳ ଛଳ ହୋଇ ଆସିଲା ।

ଲୋକନାଥ ଆଉ ପାର୍ବତୀ ଆସି ଗୁହାଳଘର ଖଣ୍ଡିକରେ ଆଶ୍ରୟ ନେଲେ । ପାର୍ବତୀର ମନରେ ଟିକିଏ ସାନ୍ତ୍ୱନା ହେଲା—ଯାହା ହେଉ ସ୍ୱାମୀଙ୍କ ଦୁଃଖରେ ମୁଁ ଦୁଃଖିନୀ ହୋଇ ପାରିବି । ଲୋକନାଥ ମନରେ ଚିନ୍ତା ହେଲା—ଶୋକ ଦୁଃଖରେ ଅନଭ୍ୟସ୍ତା ଯୁବତୀ ସ୍ତ୍ରୀକୁ ମୁଁ କିପରି ସନ୍ତୁଷ୍ଟ କରିବି ।

ଲୋକନାଥ ନିଜ ଗ୍ରାମରୁ କାହାରି କାହାରିଠାରୁ ସାହାଯ୍ୟ ସ୍ୱରୂପ କିଛି କିଛି ପାଏ । ମଝିରେ କେବେ କେବେ ପାଖ ଗାଁକୁ, କେବେ କଟକକୁ ଚାଲିଯାଇ ଭିକ୍ଷାଦ୍ୱାରା କିଛି ରୋଜଗାର କରି ଆଣେ । କିନ୍ତୁ 'ମାଗିଆଣିଲା ଧଉଣ ଷଡ଼କେ' । ଏ

କେଉଁଦିନ ଚଳିବ, କେଉଁଦିନ କିଛି ନାହିଁ, ଏହିପରି କଷ୍ଟେ ମଷ୍ଟେ ଦୁଇ ପ୍ରାଣୀ ଚଳୁଥାଆନ୍ତି ।

ଗ୍ରାମର ଅନେକ ଲୋକ ଅନେକ ଥର ଲୋକନାଥଙ୍କୁ କହିଲେଣି—ଥରେ ଯାଇଁ ତର୍କାଲଙ୍କାରଙ୍କୁ କହ, ଯାହା ହେଲା ତ ହେଲା, ଏବେ ମୋର ଜମିଟାକ ମୋତେ ଦିଅ, ମୁଁ ଆଉ କେତେଦିନ ଏପରି କଷ୍ଟରେ ଚଳିବି ? ଲୋକନାଥ ଶୁଣି ନ ଶୁଣିଲା ପରି ହୁଏ । କେବେ ଅବା କହେ, "ମିଛରେ ଗୁଣ୍ଡ ହରେଇବି କାହିଁକି ?" ଦିନେ ଗ୍ରାମର ମୁଖିଆ ମୁଖିଆ କେତେ ଜଣ ଲୋକ ମେଳ ହୋଇ ତର୍କାଲଙ୍କାରଙ୍କ ପାଖରେ ଲୋକନାଥ କଥା ପକାଇଲେ । ତର୍କାଲଙ୍କାରେ କହିଲେ, "ଲୋକନାଥର କି ସମ୍ପତ୍ତି ଗୁଡ଼ାଏ ଅଛି ଯେ ମୁଁ ତାକୁ ଦେବି ? ସମସ୍ତ ବିଷୟ ତ ହରିଶ୍ଚନ୍ଦ୍ର ବନ୍ଧକ କରି ଖାଇଥିଲେ, ମୁଁ ସେଥିରୁ କେତେକ ଖଣ୍ଡ କିଣିଅଛି, ଆଉ କେତେକ ବନ୍ଧକି ଦାମରେ ମୁକୁଳାଇ ଅଛି । ମୋ ଟଙ୍କାଗୁଡ଼ାକ କଣ ତେବେ ବାଁଏ ବାଁଏ ଉଡ଼ିଯିବ ?"

ସଦାଶିବ ନନ୍ଦ କହିଲେ, "ହଉ, ସେକଥା ନ ହେଲା, ତୁମେ ତ ତାକୁ ପୋଷ୍ୟପୁତ୍ର କରିଥିଲ । ସେ ତୁମ ସମ୍ପତ୍ତିରୁ ତ ଗୋଟାଏ ଭାଗ ପାଇଥାନ୍ତା ?"

ତର୍କାଲଙ୍କାର—"ମୁଁ ତାକୁ ଦିନାକେତେ ଘରେ ରଖିଥିଲି, ଏଣିକି ଆଉ ନ ରଖିଲି । ମୁଁ ତ ଆଉ ପୋଷ୍ୟପୁତ୍ର ବୋଲି ତାକୁ ରେଜେଷ୍ଟରୀ କରିଦେଇ ନାହିଁ ଯେ, ସେ ମୋ ସଙ୍ଗରେ ଭାଗ ବସେଇବ ?"

ଏକଥା ଶୁଣି ଗୋବିନ୍ଦ ମିଶ୍ରେ କହିଲେ, "ଗ୍ଲଡ ହୋ ! ଏତେ ଯୁକ୍ତିରେ ଆଉ କାମ କଣ ? ତୁମେ ତ ଆଗରେ ଦେଖୁଛ, ସେଇଟା କି କଳବଳ ହେଉଛି । ସଂସାରରୁ କଏ କଣ ନେଇଯିବ ? ଦିଅ, ତାକୁ ଚଳିବା ମାଫିକ କିଛି ଦେଇ ଦୁଇଟା ପ୍ରାଣୀଙ୍କୁ ବଞ୍ଚାଇ ନିଅ । ଆମେ ସମସ୍ତେ ତାହାଲାଗି ଚିନ୍ତିତ କହୁଛୁଁ, ଆଉ ମନରେ କିମ୍ବା କର ନାହିଁ । ତୁମେ ତ ବୁଝିବା ଲୋକ, ତୁମକୁ ଆଉ କଣ ବୁଝେଇବୁଁ ?"

ତର୍କାଲଙ୍କାର—"ଆପଣମାନେ ମୋତେ କ୍ଷମା କର । ମୋତେ ଆଉ କାହିଁକି ବିରକ୍ତ କରୁଛ ? ମୋ କଥା ତ ମୋତେ ବଳେଇଲଣି । ଦିନେଇର ମଙ୍ଗଳକୃତ୍ୟ ବାବଦ ଖରଚଟା ଏପର୍ଯ୍ୟନ୍ତ ମୋ ଉପରେ ପଡ଼ି ରହିଛି । କଣ କରିବି, ମୁଁ କିଛି ଠିକଣା କରିପାରୁ ନାହିଁ ।"

ଏହା କହି ତର୍କାଳଙ୍କାର ସେଠାରୁ ଚାଲିଗଲେ ଏବଂ ଅନ୍ୟାନ୍ୟମାନେ ମଧ୍ୟ ପରସ୍ପର ଆଡକୁ ଅନାଅନି ହୋଇ ଗୋଟି ଗୋଟି ହୋଇ ଖସିଲେ । ସ୍ନେହଲତା ଉତ୍ତପ୍ତ ନିଃଶ୍ୱାସଟାଏ ପକାଇ କହିଲେ, "ଏ ଅନ୍ୟାୟ ଧର୍ମ ସହିବଟିକି ?"

× × ×

ଏବର୍ଷ ନଅଙ୍କ—ସେହି ନଅଙ୍କ, ଯାହାର ଭୀଷଣ ସ୍ମୃତି ଏପର୍ଯ୍ୟନ୍ତ ଉତ୍କଳ-ବାସୀର ହୃଦୟରେ ରକ୍ତାକ୍ଷରରେ ଲେଖା ରହିଅଛି । ଚାରିଆଡ଼େ ଅନାହାରରେ ଆର୍ତ୍ତନାଦ, ମଡ଼କର ହାହାକାର । ଚାରିଆଡ଼େ ଦରିଦ୍ରର ସନ୍ତପ୍ତ ନୟନରେ ଅନ୍ତିମ ପରୀକ୍ଷା, ଧନୀର ଆତଙ୍କରେ ରାତି-ଜାଗରଣ । ମଫସଲର କଥା ଦୂରରେ ଥାଉ, ସେ ବର୍ଷ କଟକ, ପୁରୀ ପ୍ରଭୃତି ସହରରେ ଧାନ ଚାଉଳ ଦୁଷ୍ପ୍ରାପ୍ୟ । ଯାହାର କିଛି ନାହିଁ, ତାହାର ତ ସହଜେ ଉପବାସ; ଯାହାର ଖାଲି ଟଙ୍କା ଟୋକେଇ ଅଛି, ତାହାର ମଧ୍ୟ ଉପବାସ । ଲୋକନାଥର ଏଥିମଧ୍ୟରେ ଟିକିଏ ପରିବାର ବୃଦ୍ଧି ହୋଇଅଛି । ସାତଗୋଟି ଛଡ଼ା ଆହୁରି ତିନୋଟି—ଦୁଇଟି ପୁତ୍ର, ଗୋଟିଏ କନ୍ୟା । ଲୋକନାଥର ଭିକ୍ଷା ପ୍ରଧାନ ଆଶ୍ରୟ । ବର୍ତ୍ତମାନ ଯେପରି କାଳ ପଡ଼ିଛି, ସେଥିରେ ଭିକ୍ଷା ମିଳିବା ତ ଦୂରର କଥା, ମୂଲିଆକୁ ମୂଲ ମିଳିବା କାଠିକର ପାଠ ।

ଲୋକନାଥ କିଛି ଦିନ ମାଣ୍ଡିଆ ଓ ଚାଉଁଶ ଧାନରେ କୌଣସି ମତେ ଅନଶନ ଅର୍ଦ୍ଧାଶନରେ ପରିବାରକୁ ଚଳାଇ ଆଣିଲା । ଏଣିକି ତାକୁ ଚାରିଆଡ଼ ଶୂନ୍ୟ ଦେଖିଲାଣି । ସେ କି ସ୍ୱପନରେ କି ଜାଗରଣରେ ଚାରିଦିଗରେ ନୈରାଶ୍ୟର ତାମସୀ ଛାୟା ଦେଖି ପାରୁଛି । ନିଜେ ଅନାହାରରେ ମରିବ, ଏଥିପାଇଁ ତାହାର ଆଦୌ ଭ୍ରୂକ୍ଷେପ ନାହିଁ. କିନ୍ତୁ ତାହାର ଆଖି ଆଗରେ ତାହାର ସ୍ତ୍ରୀ ପୁତ୍ର ଜୀଅନ୍ତାମଢ଼ା ହେବେ, ଏହି କଥା ଭାବିଲା ବେଳକୁ ତାହାର ହୃତ୍ପିଣ୍ଡ ଛିନ୍ନ ହୋଇ ଯାଉଛି । ସେମାନଙ୍କର କାତର ଦୃଷ୍ଟି ଦେଖି ତାହାର ପ୍ରତି ନିଃଶ୍ୱାସରେ ଦେହରୁ ଅର୍ଦ୍ଧେକ ରକ୍ତ ଶୁଖି ଯାଉଛି । ପ୍ରଭୁ କଣ ଏହି ଅନାଥଗୁଡ଼ିକଙ୍କ ଆଡ଼କୁ ଟିକିଏ ଫେରି ଚାହିଁବେ ନାହିଁ ?

ସେ ବର୍ଷ ଗଭର୍ଣ୍ଣମେଣ୍ଟ ଦୁର୍ଭିକ୍ଷପୀଡ଼ିତ ଲୋକମାନଙ୍କୁ କାର୍ଯ୍ୟ ଯୋଗାଇବା ଲାଗି ଯୋବରାରେ ଆନିକଟ କାମ ଆରମ୍ଭ କଲେ । ସେଠାରେ କୁଲି ମୂଲିଆ ଶ୍ରେଣୀର ଲୋକମାନେ ମୂଲ ଲାଗି ଦୁର୍ଭିକ୍ଷର ତୋଡ଼ଟା କେତେକ ପରିମାଣରେ ସମ୍ଭାଳି ଗଲେ । ଲୋକନାଥ ପୁତ୍ରକନ୍ୟାମାନଙ୍କର କରୁଣ ଚିତ୍କାର ଶୁଣି ଆଉ ଥୟ ହୋଇ ପାରିଲା ନାହିଁ । ଭାବିଲା, ଯେ ଯାହା କହିଲେ କହୁ, ମୁଁ ଆଉ

ସେମାନଙ୍କର ଦାରୁଣ ଯନ୍ତ୍ରଣା ସହ୍ୟ କରି ପାରିବ ନାହିଁ । ମରିବା ଆଗରୁ ଥରେ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଦେଖେଁ, ସେମାନଙ୍କୁ କିଛି ଦିନ ସମ୍ଭାଳି ନେଇପାରିବି କି ନା । ଭଗବାନ ଏ ଅଧମ ଉପରେ ଏପରି ଗୁରୁଭାର କାହିଁକି ଦେଲେ ? ଦେଲେ ତ, ମୁଠାଏ ଅନ୍ନର ବ୍ୟବସ୍ଥା କଲେ ନାହିଁ କାହିଁକି ? ବଞ୍ଚିବାକୁ ସୁଦ୍ଧା ଆମ୍ଭମାନଙ୍କର ଅଧିକାର ନାହିଁ ? ହେଉ ତୁମ ଇଚ୍ଛା ! ଲୋକନାଥ ଜାତିର ଅଭିମାନ, ସମାଜର ତାଡ଼ନା ସବୁ ତୁଚ୍ଛ କରି ଦେଇ ଶେଷରେ ଯୋବରେ ଯାଇଁ ମୂଲିଆ କାମ ଆରମ୍ଭ କଲା । ଉଚ୍ଚ ଜାତିର ଚିହ୍ନ, ମହତ୍ତ୍ୱର ଧ୍ୱଜା ସେହି ପଇତାଟିକୁ ଅଣ୍ଟାତଳେ ଗୁଡ଼ାଇ ଦେଇ ପରମ ଉତ୍ସାହରେ କାର୍ଯ୍ୟରେ ତାହାର ମନ ପ୍ରାଣ ଢାଳି ଦେଲା । ଲୋକନାଥର ଦେହରେ ବଳ ଯଥେଷ୍ଟ । ସେ ଠିକା କାମରେ କଠିନ ପରିଶ୍ରମ କରି କେଉଁ ଦିନ ଛଅଅଣା, କେଉଁଦିନ ଚାରି ଅଣା ରୋଜଗାର କରି ଦୁର୍ଭିକ୍ଷର ପ୍ରବଳ ଚୋଟକୁ କୌଣସି ପ୍ରକାରେ ସମ୍ଭାଳି ଗଲା । ସେ ପଥର ଭୁହା କାମ କରେ । ପ୍ରଥମରେ ସ୍ଲେଟ ପଥର ସେ ଏକା ବୋହୁଥିଲା । ପରେ ବଡ଼ ପଥର ବୋହିବାକୁ ପଡ଼ିବାରୁ ଜଣକ ଦ୍ୱାରା ସେହିଟା ଅସମ୍ଭବ ହୋଇ ପଡ଼ିଲା । ଶେଷରେ ସେ ଗତ୍ୟନ୍ତର ନ ଦେଖି ନିଜ ଗାଁର ପଣ୍ଡୁଆ ବାହୁଣକୁ ସଙ୍ଗୀ କରି ଉଭୟ ମିଳି ସାଙ୍ଗରେ ପଥର ବୋହିବାକୁ ଲାଗିଲେ । ପ୍ରଥମେ ପଣ୍ଡୁଆ ବ୍ରାହ୍ମଣ ସାଙ୍ଗେ ପଥର ବୋହିବାକୁ ଡରରେ ମଙ୍ଗୁ ନଥିଲା, କିନ୍ତୁ ଲୋକନାଥର ବିଶେଷ ଅନୁରୋଧରେ ଶେଷରେ ସେ ରାଜି ହେଲା ।

କାନ୍ଟ୍ରାକ୍ଟର (କଣ୍ଟ୍ରାକ୍ଟର) ବାବୁ ଲୋକନାଥର ଆସ୍ତର ବ୍ୟବହାର, କଥାବାର୍ତ୍ତା, ଯାତ ମଧ୍ୟରେ ଟିକିଏ ବିଶେଷତ୍ୱ ଦେଖି ଦିନେ ତାର ପରିଚୟ ପଚାରିଲେ । ସେ କହିଲା, "ମୂଲିଆ ତ ମୂଲିଆ, ତାର ଆଉ ଅଧିକ ପରିଚୟ କଣ ଲୋଡ଼ା ?" ବେଶି ବଳାବଳି କରିବାରୁ ଶେଷରେ ସେ ତାହାର ଜୀବନର କରୁଣ-କାହାଣୀ ତାଙ୍କ ଆଗରେ କହିଗଲା । ତା କଥା ଶୁଣି ବାବୁ ଲୁଗାକାନିରେ ଆଖି ପୋଛି ଦେଇ କହିଲେ, "ବଡ଼ କୁଳରେ ଜନ୍ମ ହୋଇ ତୁମେ ବହୁତ କଷ୍ଟ ପାଇଲଣି । ହେଉ ଧର୍ମ ତୁମ ଆଡ଼େ । ଭଗବାନ ନିଶ୍ଚୟ ଦିନେ ତୁମ୍ଭର ଦୁଃଖ ମୋଚନ କରିବେ ।" ଅନ୍ୟାନ୍ୟ କଥାବାର୍ତ୍ତାପରେ କଣ୍ଟ୍ରାକ୍ଟର ବାବୁ ତାଙ୍କୁ କହିଲେ, "ମୁଁ କେତେ ଦିନ ହେଲା ଗୋଟିଏ ପୂଜାହାରୀ ଖୋଜି ବୁଲୁଛି, ମିଳୁ ନାହିଁ । ତୁମେ ଆଉ ଏ କାମ କାହିଁକି କରିବ ? ଚାଲ ଆମ ବସାରେ ରହି ମୋତେ ମୁଠାଏ ରୋଷେଇ କରି ଦେବ ।" ଲୋକନାଥ ଟିକିଏ ତୁନି ହୋଇ ପରେ କମ୍ପିତ ସ୍ୱରରେ କହିଲା, "ଆପଣ ମୋ ପ୍ରତି ଯେଉଁ ଦୟା ଦେଖାଉଛନ୍ତି, ମୁଁ କପରି ତାହା ଶୁଝିବି ? କିନ୍ତୁ ମୁଁ ତ କେବେ ରୋଷେଇବାସ କରି ନାହିଁ ?" ବାବୁ କହିଲେ, "ସେଥିଲାଗି

ଚନ୍ତା ନାହିଁ, ଏଇଟା ତ ଖୁବ କଷ୍ଟ କାମ ନୁହେଁ, ବନାବେକବେ କଣଗଲେ ହୋଇଥିବ ଯେ ।"

ଲୋକନାଥ ଉପରେ ଈଶ୍ୱରଙ୍କ ଶୁଭଦୃଷ୍ଟି ପଡ଼ିଲା । ସେ କଣ୍ଟ୍ରାକ୍ଟର ବାବୁଙ୍କ ବସାରେ ଥାଏ ଓ ସେଠେଇଁ ଖାଏ । ବାବୁଙ୍କଠାରୁ ଟଙ୍କା ପଇସା, ଜିନିଷ ପତ୍ର ଯାହା କିଛି ପାଏ, ସବୁ ଘରକୁ ପଠାଇ ଦିଏ । ପାଞ୍ଚଣ୍ଡି ପିଲାଙ୍କୁ ଝୋଇ ପେଇ କମେ ଦ'ପଇସା ମଧ୍ୟ ସଞ୍ଚୟ କରି ପାରିଲା । ଲୋକନାଥର ସାଧୁତା ଓ ଉଦାର ସ୍ୱଭାବରେ ମୁଗ୍ଧ ହୋଇ କଣ୍ଟ୍ରାକ୍ଟର ବାବୁ ତାକୁ ପରପୁଅ ବୋଲି ଜ୍ଞାନ କରନ୍ତି ନାହିଁ । ବାବୁ ଖରଚପତ୍ର, ଡିହବିଲ ଇତ୍ୟାଦି ସବୁ ତା ହାତରେ ସମର୍ପି ଦେଇ ନିଶ୍ଚିନ୍ତ ଥାନ୍ତି ।

ଉଦାରପ୍ରାଣ କଣ୍ଟ୍ରାକ୍ଟର ବାବୁ ଚତୁର ଲୋକନାଥର ବିଚକ୍ଷଣ ବୁଦ୍ଧିର ସଦ୍-ବ୍ୟବହାର କରିବା ଲାଗି ତାକୁ ଦଶଟଙ୍କା ବେତନରେ ମୂଲିଆଙ୍କ କାମ ତଦାରଖିବାକୁ 'ଉଆର୍କ-ସର୍କାର' କାମରେ ନିଯୁକ୍ତ କଲେ । ତାହା ଛଡ଼ା ତାଙ୍କ ମୁନାଫାରୁ ମଧ୍ୟ ତାକୁ କିଛି ଭାଗ ଦିଅନ୍ତି । କିଛିଦିନ ପରେ କଣ୍ଟ୍ରାକ୍ଟର ବାବୁ ଲୋକନାଥର ଦରମା ଟଙ୍କା ଓ ନିଜ ହାତରୁ କିଛି ଦେଇ ସାଇଁଲୋରେ ତା ପାଇଁ ଖଣ୍ଡେ ଭଲ ଘର ତିଆର କରାଇଦେଲେ । ଲୋକନାଥର ବଡ଼ ପୁଅଟି ମଧ୍ୟ ଆସି କଟକ ବସାରେ ରହି ଇଂରାଜୀ ପଢ଼ା ଆରମ୍ଭ କଲା । ପରେ ଲୋକନାଥର ଅଭୁତ କାର୍ଯ୍ୟକୁଶଳତାରେ ସନ୍ତୁଷ୍ଟ ହୋଇ ବାବୁ ତାକୁ ପେଟୀକାଣ୍ଟ୍ରାକ୍ଟର କରାଇ ଦେଲେ । ଲୋକନାଥ କମେ ଏପରି ଅନୁଗ୍ରହର ଋଣଭାରରେ ନଇଁ ପଡ଼ିଲା । ସେ ସଦାବେଳେ ସୁଯୋଗ ଖୋଜୁଥାଏ, କିପରି ମୁଁ ବାବୁଙ୍କୁ ଦେଖାଇ ଦେବି ଯେ, ପ୍ରାଣଟା ନିତାନ୍ତ ଜଡ଼ ନୁହେ । ପ୍ରାଣଦେଇ ସୁଦ୍ଧା ଦିନେ କଣ ଏପରି ମୁନିବର କିଛି ହେଲେ ଉପକାର କରି ପାରିବ ନାହିଁ ?

(୪)

ବୃଦ୍ଧ ତର୍କାଳଙ୍କାରେ ଶେଷ ଜୀବନରେ ପୁତ୍ରର ନିଷ୍ଠୁର ବ୍ୟବହାରରେ ମର୍ମାହତ ହୋଇ ଅନେକ ଦିନୁଁ କାଳଗ୍ରାସରେ ପଡ଼ି ସାରିଲେଣି । ଦୀନବନ୍ଧୁ ବର୍ତ୍ତମାନ ଯୌବନ ଓ ବାର୍ଦ୍ଧକ୍ୟର ସନ୍ଧିସ୍ଥଳରେ । ପୁତ୍ରାଦି କିଛି ନ ହେବାରୁ ସେ ଦ୍ୱିତୀୟ ଦାରପରିଗ୍ରହ କରିଥିଲା, କିନ୍ତୁ ସେଥିରେ ମଧ୍ୟ କିଛି ଫଳ ହେଲା ନାହିଁ । ଶେଷରେ ଉପାୟାନ୍ତର ନ ଦେଖି ଗୋଟିଏ ପୋଷ୍ୟପୁତ୍ରର ଅନୁସନ୍ଧାନରେ ରହିଲା । ଅନେକ ଚେଷ୍ଟା କଲା, କେତେ ଲୋକଙ୍କୁ କେତେ ଅନୁରୋଧ କଲା, କିନ୍ତୁ କେହି ତା

କଥାରେ କର୍ଣ୍ଣପାତ କଲେ ନାହିଁ । ସମସ୍ତଙ୍କ ମନରେ ସେହି ଏକ ଭାବ—"ଆହା
ହା ! ଯା ବଂଶର ଯେଉଁ ଉଜ୍ଜ୍ୱଳ କୀର୍ତ୍ତିଟା ଅଛି ନା ! ଯାଙ୍କ ବାପେ ଗୋଟାଏ ଏଡ଼େ
ବଡ଼ ଘରୁଆ ପିଲାକୁ ଦାଣ୍ଡର ଭିକାରି କରି ଦେଇଥିଲେ ଠିକ ! ସେହି ବାପର ପୁଅ
ନା, ଆଉ କୁଆଡ଼୍ ଆସିବ ? ଜାଣିଶୁଣି କିଏ ନିଜର ପୁଅକୁ ଅକୂଳରେ ଭସାଇ-
ଦେବ ?" ଦୀନବନ୍ଧୁ ସବୁଠାରୁ ନିରାଶାର ବାଣୀ ଶୁଣି ଚତୁର୍ଦ୍ଦିଗ ଅନ୍ଧକାର ଦେଖିଲା ।
ସଂସାର କଣ ଏପରି ଭାବରେ ପ୍ରତିଶୋଧ ନିଏ ? ସେ କଣ ଲୋକର ଦୁଃଖ ଦୁର୍ଦ୍ଦଶା
ପ୍ରତି ଟିକିଏ ଅନ୍ତର୍ଦୃଷ୍ଟିରେ ସୁଦ୍ଧା ଚାହେଁ ନାହିଁ ?

ବାହାରର ଅନ୍ଧକାର ଘନତର ହେବା ସଙ୍ଗେ ସଙ୍ଗେ ଭିତରର ମୋହ
ଆବରଣ ପରସ୍ତ ପରସ୍ତ ହୋଇ ଫିଟିବାକୁ ଆରମ୍ଭ କଲା । ଅନ୍ତରର ସେହି
ଆଲୋକରେ ଦୀନବନ୍ଧୁ ସବୁକଥା ଟିକିଏ ସ୍ପଷ୍ଟ କରି ଦେଖି ପାରିଲା । ସେ ଭାବିଲା,
ଏତେ ଦିନେ ଲୋକନାଥର ଦୀର୍ଘ ନିଃଶ୍ୱାସ ଫଣୀ ବିସ୍ତାର କରି ତାକୁ ଗ୍ରାସ କରିବାକୁ
ଉଦ୍ୟତ । ଲୋକନାଥ ପ୍ରତି ତର୍କାଳଙ୍କାର କି ଅତ୍ୟାଚାର ନ କରିଛନ୍ତି ? କିନ୍ତୁ
ପିତା ଯାହାର ବୀଜ ବପନ କରିଥିଲେ, ପୁତ୍ର ବହୁଯତ୍ନରେ ତାକୁ ସଞ୍ଜୀବିତ ରଖିଛନ୍ତି ।
ତର୍କାଳଙ୍କାରେ ପଛରେ ଅନୁତାପ କରି କେତେଥର ଲୋକନାଥକୁ ଫେରାଇ
ଆଣିବାକୁ ବସିଥିଲେ, ତାର ପୈତୃକ ସମ୍ପତ୍ତି ତାକୁ ପ୍ରତ୍ୟର୍ପଣ କରିବାକୁ ଉଦ୍ୟତ
ହୋଇଥିଲେ, କିନ୍ତୁ ଦୀନବନ୍ଧୁର ତୀବ୍ର ପ୍ରତିବାଦରେ ସବୁ ବ୍ୟର୍ଥ ହୋଇଯାଇଛି ।
ଲୋକନାଥର ଦୁଃଖ ସମ୍ବନ୍ଧରେ ସେ କେତେଥର ତାକୁ ତୁଚ୍ଛ ତାଚ୍ଛଲ୍ୟ ନକରିଛି ? ଏ
ସମସ୍ତ କଥା ଗୋଟି ଗୋଟି ହୋଇ ବର୍ତ୍ତମାନ ଦୀନବନ୍ଧୁ ମନରେ ଚେଇଁ ଉଠିଲା ।
ଲୋକନାଥ ଜଣେ ପ୍ରଧାନ କଣ୍ଟ୍ରାକ୍ଟର ହୋଇ ପ୍ରଚୁର ସମ୍ପତ୍ତିର ଅଧିକାରୀ ହୋଇଅଛି;
ତାର ଜ୍ୟେଷ୍ଠପୁତ୍ର ନୀଳମଣି ପଢାଶୁଣା କରି ଗୋଟିଏ ବଡ଼ ସରକାରୀ ଚାକିରି ପାଇଛି;
ସାନପୁଅ କୁଳମଣି ମଧ୍ୟ ସ୍କୁଲରେ ପଢ଼ା କରୁଅଛି; ବର୍ତ୍ତମାନ ଲୋକନାଥ ଠାରୁ ବଳି
ଆଉ ଭାଗ୍ୟବାନ୍ କିଏ ? ସେ କଣ ସତେ ତାର ଦୋଷ କ୍ଷମା କରିବ ? ଲୋକନାଥ
କଣ ସତେ ଅପୁତ୍ରକର ଅନ୍ତର୍ଦାହ ବୁଝି ପାରିବ ?

ଦୀନବନ୍ଧୁ ଆଉ ନିଶ୍ଚିନ୍ତ ହୋଇ ରହିପାରିଲା ନାହିଁ । ନାନା ଭାବନା
ଚିନ୍ତା ପରେ ଦିନେ ଲୋକନାଥ ନିକଟକୁ ଯାଇ ତାର ପାଦ ଧରି "ମୋର ସବୁ ଦୋଷ
କ୍ଷମା କର" କହି କାନ୍ଦି ପକାଇଲା । ଭାବପ୍ରବଣ ଲୋକନାଥ ଦୀନବନ୍ଧୁକୁ ବକ୍ଷକୁ
ଟାଣିଆଣି ଗାଢ଼ ଆଲିଙ୍ଗନରେ ଆବଦ୍ଧ କରିପକାଇଲା । ଦୀନବନ୍ଧୁ କେତେ କଥା
କହିବ ବୋଲି ଭାବିଥିଲା, କିଛି କହି ପାରିଲା ନାହିଁ । ଭାବର ପ୍ଳାବନରେ ତାହାର
କଣ୍ଠରୋଧ ହୋଇ ଆସିଲା । କ୍ରନ୍ଦନର ବେଗ ସମ୍ଭାଳି ନ ପାରି ସେ ଭୋ ଭୋ ରଡ଼ି

ଗୁଣ୍ଠିଲ । ଲୋକନାଥର ଚକ୍ଷୁ ଅନ ଅନ ହୋଇ ଉଠିଲା । ସେ ଆତ୍ମସମ୍ବରଣ କରି କହିଲା, "ଘିନେଇ ! ଭାଇଟି ମୋର ! ଆଉ କାନ୍ଦନା, ଯାହା ହେବାର ହୋଇ ଯାଇଛି, ଆଉ ସେ କଥା ଭାବି କଣ ହେବ ? ବିଧିର ବିଡ଼ମ୍ବନା ହେତୁ ଏତେ ଦିନ-ଯାଏ ଦିହେଁ ଅଲଗା ଅଲଗା ହୋଇ ରହିଥିଲେଁ । ପ୍ରଭୁଙ୍କ ଇଚ୍ଛାରୁ ଆଜି ସବୁ ଦୁଃଖ ଯାତନା ଦୂର ହୋଇଅଛି । ଭାଇ ! ଆଜି କି ସୁଖର ଦିନ ! ଏ ଦୀର୍ଘ ବିଚ୍ଛେଦ ନ ହୋଇଥିଲେ ବୋଧହୁଏ ଆଜି ମିଳନର ଏପରି ଅପୂର୍ବ ସୁଖ ମିଳି ନ ଥାନ୍ତା । ମନରେ କଳ୍ପନା ରଖି ମୁଁ ତୋତେ ଏପରି ଆଲିଙ୍ଗନ କରି ପାରି ନଥାନ୍ତି । ମନୁଷ୍ୟ ଆଖିରେ ବେଳେ ବେଳେ ଲେନ୍ଦରା ଲାଗି ତାକୁ ଟିକିଏ ବାଝବିଣା ଓ ଜଲକା କରିଦିଏ, କିନ୍ତୁ ସେ ଟିକିକ ପୋଛି ହୋଇଗଲେ ଯେଉଁତାକୁ ସେଇତା । ରତ୍ନ କାଦୁଅରେ ପଡ଼ିଗଲେ ତାହାର ରତ୍ନତ୍ୱ କଣ କୁଆଡ଼େ ଚାଲିଯାଏ ? କେବଳ ମଳିରେ ଟିକିଏ ଲାଞ୍ଛନା ଭୋଗ ମାତ୍ର । ଛାଡ଼ ସେ କଥା, ଆଜିଠାରୁ କୁଳମଣି ତୋର । ମୋର ଆଉ ତା' ଉପରେ କିଛି ଦାବୀ ନାହିଁ ।"

ଲୋକନାଥର କନିଷ୍ଠ ପୁତ୍ର କୁଳମଣି ତର୍କାଳଙ୍କାରଙ୍କ କୁଳମଣ୍ଡନ ହେଲା । ଉଭୟ ପରିବାରର ବହୁ ଦିନର ବ୍ୟବଧାନ ଉପରେ ଗୋଟିଏ ସେତୁ ନିର୍ମିତ ହୋଇଗଲା ।

———

## ଲକ୍ଷ୍ମଣ ଜି

"ଖାଇ ପିଇ ଦିନରେ ଥରେ କଚେରୀକୁ ଗଲେ ତମର କାମ ସରିଚି । ମୁଁ ପଛେ ଏଣେ ହଟହଟା ହୋଇ ମରୁଥାଏଁ । ତମର ବା ଏତେ ଭାବନା ଚିନ୍ତା କାହିଁ ? ଉପରେ ପଡ଼ିଲେ ସିନା ଜାଣନ୍ତା ?"

ବଳରାମ ବାବୁ ସ୍ତ୍ରୀଙ୍କ କଥା ଶୁଣି ମୁହଁରୁ ଗୁଡ଼ାଖୁ ନଳଟା ଟିକିଏ କାଢ଼ିଦେଇ କହିଲେ, "କଣ, କଥା କଣ ?"

"ନାହିଁ, କିଛି ନାହିଁ ! ତେମେ କି ଦିନ କି ରାତି ବହି ଖଣ୍ଡେ ଧରି ଆରାମ ଚୌକିରେ ପଡ଼ି ଭଡ଼ ଭଡ଼ କରି ଗୁଡ଼ାଖୁ ଟାଣୁଥାଅ, ଏସବୁ ଘରକଥାରେ ତମର ଲେଖା କଅଣ ଥାଏ ? ଘରେ କଣ ହେଲା, କଣ ନ ହେଲା, ଏଥିରେ ତମର ଯାଏ ଆସେ କେତେ ?"

ବଳରାମ ବାବୁ ଈଷତ୍ ହାସ୍ୟ କରି କହିଲେ, "ଗୋଟାଏ ଲମ୍ବା ମୁଖବନ୍ଧ ନ ଦେଇ କଥାଟାଏ କହିବାକୁ ସ୍ତ୍ରୀଜାତିକୁ ଶାସ୍ତ୍ରରେ ମନା ଅଛି ନା କଣ ? ଏଇଟା କେଉଁ ଋଷିଙ୍କ ଅଭିଶାପ ?"

"ହଁ, ଯେତେ ଦୋଷ ସବୁ ତ ସେଇ ମାଇପି ଜାତିର । ପୁରୁଷଙ୍କୁ ଗଢ଼ିସାରି ଯେତେକ ମନ୍ଦଗୁଣ ବଳିଲା ତାକୁ ନେଇ ତ ବିଧାତା ଗୋଟିଏ ସ୍ତ୍ରୀ ଗଢ଼ିଦେଲା ଯେ, ସେ ଚିରକାଳ ପୁରୁଷର ଦାସୀ ହୋଇ ରହିବ । ଆଉ ଜୀବନର ଯେତେ ଦୁଃଖ କଷ୍ଟ, ଗାଳି ଅପମାନ, ନିନ୍ଦା ଅପନିନ୍ଦା ସବୁ ନିଜର ଭାଗ୍ୟ ବୋଲି ମୁଣ୍ଡ ପତେଇ ନେବ । ଆଖି ପାଣି ଗୋଡ଼ରେ ମାରି ସେ ଦଶମାସ କାଳ ପିଲାକୁ ପେଟରେ ଧରିବ, ପୁଣି ପିଲାର ଭଲ ମନ୍ଦରେ ପଦେ ପାଟି ଫିଟେଇଲେ ତାର ଆଉ ରକ୍ଷା ନାହିଁ । କିଏ, ତେମେ ବାହାଘର କଲେ କର, ନ କଲେ ନାହିଁ, ମୋର ସେଥିରେ କଣ ଅଛି ? ଘରେ ଯୁବା ଝିଅକୁ ରଖି ବୁଢ଼ୀ କଲା ବୋଲି ମତେ ତ ଆଉ କେହି ନିନ୍ଦା କରିବେ ନାହିଁ । ତେବେ ମା ମନ ସହି ପାରେ ନାହିଁ ବୋଲି ପଦେ କହିଦେଉଁ । ଏଣିକି—"

"କାହାର ? ମାଳତୀର ବାହାଘର କଥା କହୁଛ ?"

"ନ ହେଲେ ଆଉ କ'ଣ ତମର ଦୁନିଆସାରା କଥା ?"

"କାହିଁକି ? ହେଲେ ବା ମନ୍ଦ କଣ ହୁଅନ୍ତା ? ମୁଁ ତ ଆଉ ସେପରି ପାଳୁଆ ବୁଢ଼ା ହୋଇ ଯାଇ ନାହିଁ ? ତେମେ କଣ କହୁଚ ? ଆଉ ମଧ୍ୟ ବୟସ ସଙ୍ଗେ ମନର ସମ୍ପର୍କ କଣ ?"

ବଳରାମ ବାବୁଙ୍କ ସ୍ତ୍ରୀ ସେତକ ରସିକତା ଉପଭୋଗ ବା ଉପହାସ କରିବାର ମିଜାଜରେ ନ ଥିଲେ, ଏଣୁ ସେ "ଯା ମ ! ତମ ଇଚ୍ଛା ଯାହା କର, ମୁଁ ଆଉ ଏଥିରେ ପାଟି ଫିଟାଇବି ନାହିଁ" କହି ମୁହଁ ବୁଲାଇ ଗରଗର ହୋଇ ସେଠାରୁ ଚାଲିଗଲେ ।

ବଳରାମ ବାବୁ ବାହାରେ ଏପରି ଔଦାସୀନ୍ୟ ଦେଖାଇଲେ ସୁଦ୍ଧା ସେତକ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ପୁଅ ଝିଅଙ୍କର କୁହେଁ ଯେ ଦ'ବର୍ଷ ଗ୍ରାଡ଼ ଗ୍ରାରିବର୍ଷ ଡେରି ହେଲେ କିଛି କ୍ଷତି ନାହିଁ । ମାଳୀ ଏବେ ଚୌଦ ପାର ହୋଇ ପନ୍ଦର ବର୍ଷରେ ଗୋଡ଼ ଦେଲଣି । ଆଉ ବଡ଼ ଜୋର ବର୍ଷଟାଏ । ତା ଛଡ଼ା ସେ ନିଜେ ଘର ପାଖରେ ଥିଲେ ଯୋଗାଡ଼ ଯନ୍ତ୍ର କରି ଶୀଘ୍ର ଗୋଟାଏ କିଛି କିନାରା କରି ଦିଅନ୍ତେ । ଏତେ ଦୂରରେ, ସମସ୍ତ ବନ୍ଧୁ ବାନ୍ଧବଙ୍କ ଠାରୁ ବିଚ୍ଛିନ୍ନ ଥାଇ ସେ କିପରି ଏ ଗୂଢ଼ ସମସ୍ୟାର ମୀମାଂସା କରିବେ, କିଛି ବୁଝି ପାରିଲେ ନାହିଁ । ବିଶେଷତଃ ମାଳୀ ତାଙ୍କର ଦୁଇ ପୁଅରେ ଏକମାତ୍ର କୋଡ଼ପୋଛା ଗେଲବସର ଝିଅ; ତାକୁ ବା ସେ କିପରି ଘର ବର ସବୁ ଭଲ କରି ନ ଦେଖି ନ ଶୁଣି ନିର୍ମମଭାବରେ ଦରିଆକୁ ପେଲିଦେବେ ? ଏହିପରି ନାନା ଭାବନାରେ ବାହାରର ଗୁଡ଼ାଖୁ ଧୂଆଁରେ ସେ ଯେପରି ଘର ମଧ୍ୟରେ ଅଦୃଶ୍ୟ ହୋଇଗଲେ, ଭିତରର ଚମ୍ପାଜାଲରେ ମଧ୍ୟ ସେହିପରି ନିଜର ମନକୁ କେଉଁଠାରେ ହଜାଇ ବସିଲେ । କିଛିକ୍ଷଣ ପରେ ହଠାତ୍ ଉଠି ସେ ସେହିଲାଗେ ନିଜର ବନ୍ଧୁ ଓ ଆତ୍ମୀୟମାନଙ୍କ ନିକଟକୁ ଏ ସମ୍ବନ୍ଧରେ କେତେ ଖଣ୍ଡ ପତ୍ର ଲେଖି ପଠାଇଲେ ।

ଏହାର ସପ୍ତାହକ ପରେ ବଳରାମ ବାବୁ କୌଣସି ସରକାରୀ କାର୍ଯ୍ୟ ଉପଲକ୍ଷରେ ବାଙ୍କିପୁର ଯାତ୍ରା କଲେ ।

ସନ୍ଧ୍ୟାର ସ୍ନିଗ୍ଧ କିରଣରେ ନଦୀତୀରସ୍ଥ ବୃକ୍ଷଗୁଡ଼ିକ ଝିଟିଉଛି ଏବଂ ଗଙ୍ଗା ଖରତର ଉଚ୍ଛ୍ୱଳ ସଲିଳ-ବିଭବରେ ଉନ୍ମତ୍ତ ହୋଇ କଳକଳ ଚଳଚଳ ହୋଇ ବହି ଯାଉଅଛି; ବାଙ୍କିପୁରରେ ବଳରାମବାବୁ ପ୍ରକୃତିର ଏ ରମଣୀୟ ଦୃଶ୍ୟ ଦେଖି ଦେଖି ଏକାଗ୍ର ମନରେ ନଦୀକୂଳରେ ପରିଭ୍ରମଣ କରୁଅଛନ୍ତି; ଏପରି ଅପରିଚିତ ସ୍ଥଳରେ ହଠାତ୍ ପଦେ ଓଡ଼ିଆ କଥା ଶୁଣି ସେ ଚକିତଭାବରେ ଛିଡ଼ା ହୋଇ ରହିଲେ । ଆହା ! କି ମଧୁର ସେ ସ୍ୱର ! କି ପ୍ରାଣସ୍ପର୍ଶୀ ସେ ଭାଷା ! ସେ ମନେ କଲେ, କାହିଁ ? ଆଜିଯାକେ ତ ମୋର ମାତୃଭାଷା ସଙ୍ଗେ ଏପରି ନିଗୂଢ଼ ପରିଚୟ ହୋଇ ନ ଥିଲା ! ସେ ଯେ ମୋର ହୃଦୟର ପ୍ରତ୍ୟେକ ତାର ସହିତ ଏପରି ଘନିଷ୍ଠ ଭାବରେ ବନ୍ଧା, ମୁଁ ତ କାହିଁ ଜାଣି ନ ଥିଲି ! ଧନ୍ୟରେ ବିଦେଶ ! ତୁ ପୁଣି ଆପଣା ଜିନିଷକୁ ଏତେ

ଆପଣାର କରିଦେଉ ? ପଦେ କଥାରେ ଏତେ ଶକ୍ତି ! କେଉଁ କବିତାରେ ଏତେ ମାଧୁର୍ଯ୍ୟ ଅଛି ? କେଉଁ ସଙ୍ଗୀତରେ ଏତେ ମୋହ ଅଛି ? କେଉଁ ଭାଷାରେ ଏତେ ମାଦକତା ଅଛି ?

ବଳରାମ ବାବୁ ପଛକୁ ବୁଲି ଦେଖିଲେ ମଧ୍ୟବିତ୍ତ ଶ୍ରେଣୀର ଗୋଟିଏ ଲୋକ ଜଣେ ଭଦ୍ରଲୋକଙ୍କ ସଙ୍ଗେ କଥାଭାଷା ହେଉଛି । ଭଦ୍ରଲୋକଟି ମଧ୍ୟ ତା ସଙ୍ଗେ ଓଡ଼ିଆରେ କଥାବାର୍ତ୍ତା କରୁଅଛନ୍ତି । ବେଶଭୂଷା ଚାଲିଚଳନ ଦେଖି ତ ଏ ଭଦ୍ର-ଲୋକଟିକୁ ଓଡ଼ିଶାର ଲୋକ ବୋଲି ବୋଧ ହେଉନାହିଁ, ଅଥଚ ଏପରି ଶୁଦ୍ଧ ଓଡ଼ିଆ କହୁଅଛି କିପରି ? ଦେଖାଯାଉ, ଥରେ ପଚାରି ବୁଝିଲେ କ୍ଷତି କଣ ?

"ଆପଣଙ୍କ ନିବାସ କଣ ଓଡ଼ିଶାରେ ?"

ଭଦ୍ରଲୋକ—"ଆଜ୍ଞା ! ଆପଣଙ୍କ ଅନୁମାନ ଠିକ୍ । ମୋ ଘର ଓଡ଼ିଶାରେ, ଆପଣଙ୍କ ନିବାସ ?"

ବ—"ସେହି ଓଡ଼ିଶାରେ, ଆପଣ ଏଠାରେ କିଛି କାର୍ଯ୍ୟ କରନ୍ତି ?"

ଭ—"ଆଜ୍ଞା, ମୁଁ ଏଠାରେ ସବ୍‌ଡେପୁଟି କାର୍ଯ୍ୟ କରେ ।"

ବ—"ଆପଣ ଏଠାରେ କେତେ ବର୍ଷ ହେଲା କାର୍ଯ୍ୟ କଲେଣି ?"

ଭ—"ନା, ମୁଁ ଏହିବର୍ଷ ସେ କାର୍ଯ୍ୟରେ ନିଯୁକ୍ତ ହୋଇ ଏଠାରେ ପ୍ରୋବେଶନର ରୂପେ କାର୍ଯ୍ୟ କରୁଅଛି । ତେବେ, ପାଟଣାରେ ଆସି ରହିବାର ଅନେକ ବର୍ଷ ହୋଇଗଲାଣି ।"

ବ—"ତାହାହେଲେ ଏଥି ପୂର୍ବରୁ ଆପଣ ଏଠାରେ କଣ କରୁଥିଲେ ?"

ଭ—"ମୋର ପିତା ଏଠାରେ ଚାକିରି କରୁଥିବା ସମୟରେ ମୁଁ ତାଙ୍କ ପାଖରେ ରହି ପଢ଼ାଶୁଣା କରୁଥିଲି । ତାଙ୍କର କାଳ ହେବା ପରେ ମଧ୍ୟ ମାତା ପ୍ରଭୃତିଙ୍କୁ ଘରେ ଛାଡ଼ିଦେଇ ଆସି ପିତାଙ୍କର ଛାଡ଼ନ୍ତ କେତେକ ସମ୍ପତ୍ତି ବାଡ଼ି ବଗିଚା ବୁଝାସୁଝା କରିବା ଲାଗି ମୋତେ ଏଠାରେ ରହିବାକୁ ପଡ଼େ । ସେହି ଦିନଠାରୁ ମୁଁ ଏଠାରେ ରହି ଏହିଠା କଲେଜରୁ ବି. ଏ. ପାସ କଲି ଏବଂ ତା'ପରେ ଏ ଚାକିରି-ଖଣ୍ଡ ହେବାରୁ ଏ ପର୍ଯ୍ୟନ୍ତ ରହିବାକୁ ପଡ଼ୁଅଛି ।"

ବ—"ଆପଣଙ୍କ ପିତାଙ୍କ ନାମ କ'ଣ ?"

ଭ—"ଗୋପୀନାଥ ଦାସ ।"

ବ—"ଏଁ, ଆପଣଙ୍କ ଘର ଓଡ଼ିଶାର କେଉଁ ସ୍ଥାନରେ କହିଲେ ?"

ଭ—"ଆମ ଘର କଟକଜିଲ୍ଲା କଲ୍ୟାଣପୁର ।"

ବଳରାମ ବାବୁ ସନ୍ଦିଗ୍ଧ ସ୍ୱରେ କହିଲେ, "ତମ ନାମ ଲକ୍ଷ୍ମୀଧର ନା ?"

ଲ—"ଆପଣ କିପରି ମୋ ନାମ ଜାଣିଲେ ?"

ବଳରାମ ବାବୁ ଆନନ୍ଦରେ ଗଦ୍‌ଗଦ ହୋଇ କହିଲେ, "ମୁଁ କିପରି ଜାଣିଲି ? ଗୋପୀ ମୋର ଅନ୍ତରଙ୍ଗ ବନ୍ଧୁ ଥିଲା । ମାଇନରଠାରୁ ଆରମ୍ଭ କରି କଲେଜ ପର୍ଯ୍ୟନ୍ତ ଏକସଙ୍ଗେ ପଢ଼ିବା, ଏକସଙ୍ଗେ ଖେଳିବା ସବୁ କରି ଆସିଅଛୁଁ । ସେ ଘଟନା ଆସିବା ଦିନଠାରୁ ଆମର ଆଉ ସେତେ ଚିଠିପତ୍ରର ଆଦାନ ପ୍ରଦାନ ନ ଥିଲା । ତମର କଣ ମନେ ନାହିଁ ? ନାଁ, ସେତେବେଳକୁ ନିତାନ୍ତ ପିଲା, କୁଆଡ଼ୁ ମନେ ଥିବ ? ମୁଁ ତମକୁ କେତେ ଥର କାଖକରି ଗେଲ୍ କରିଛି, କେତେଥର ଆମ ଘରେ ଆଉ ତମେ ସାଙ୍ଗ ହୋଇ ଖେଳିଛ ।"

ଲକ୍ଷ୍ମୀଧର କିଛିଏ ଇତସ୍ତତଃ ହୋଇ କହିଲେ, "ଆଜ୍ଞା ! ମୁଁ ଏପର୍ଯ୍ୟନ୍ତ ସୁଦ୍ଧା ଭଲ କରି ଚିହ୍ନି ପାରିଲି ନାହିଁ ।"

ବ—"କଲ୍ୟାଣପୁର ନିକଟରେ ଖିତପଡ଼ା ଗ୍ରାମର ନାମ ଶୁଣିଛ ? ଆମ ଘର ସେହିଠାରେ । ମୋ ନାମ ବଳରାମ ମହାନ୍ତି । ମୁଁ ବର୍ତ୍ତମାନ ଗୟାରେ ଥାଏଁ । ଏଠା କୋର୍ଟରେ କିଛିଏ କାର୍ଯ୍ୟ ଥିବାରୁ ଆସିଥିଲି ।"

ଲ—"ପିତାଙ୍କ ମୁଖରୁ ଅନେକ ଥର ଆପଣଙ୍କର ନାମ ଶୁଣିଛି । ଖିତପଡ଼ାଟା ଆପଣଙ୍କ ଜମିଦାରି ନାଁ ?"

ବ—"ହଁ ।"

ଲ—"ଆପଣ ଗୟାରେ କଣ କରନ୍ତି ?"

ବ—"ମୁଁ ସେଠିକାର ଫାଷ୍ଟ ମୁନସଫ୍ । ଆଚ୍ଛା, ତେମେ ତ ଏଠାରେ ଅଛ, ସେଠାରେ ତମର ଜମିଜମା ବାଡ଼ି କିଏ ବୁଝାଶୁଝା କରେ ?"

ଲ—"ଆମ ମାମୁ ସବୁ ବୁଝାବୁଝି କରନ୍ତି । ତାଙ୍କ ଘର ଆମର ଗ୍ରାମରେ । ପିତାଙ୍କ କାଳ ହେବା ପରେ ସେ ଆମ ଘରର ମୁରବି । ସେ ନଥିଲେ

ବୋଧହୁଏ ମୋତେ ଅନେକ ଦିନ୍ନ ପଢ଼ାପଢ଼ି ବନ୍ଦ କରିବାକୁ ହୋଇଥାନ୍ତା ଏବଂ ମୁଁ ଏଠାରେ ମଧ୍ୟ ରହିପାରି ନଥାନ୍ତି ।"

ବ—"ତମ ମାମୁ କିଏ ?"

ଲ—"ତାଙ୍କ ନାମ ମାସ୍ତାଧର ଦାସ । ସେ କଲେକ୍ଟରଙ୍କର ହେଡ଼ କ୍ଲର୍କ ।"

ବ—"ଓଃ, ମାସ୍ତାଧର ବାବୁ ତମ ମାମୁ, ସେ ତ ଅତି ଭଲ ଲୋକ, ସେ ତାଙ୍କୁ କ କରନ୍ତି ? ହୁଁ ।" କିଛିକ୍ଷଣ ନୀରବ ରହି ପୁନର୍ବାର କହିଲେ, "ତମ ଶଶୁରଘର ଆଉ ହୋଇଗଲାଣି ତ ?"

ଲକ୍ଷ୍ମୀଧର ତଳକୁ ମୁହଁ ପୋତି ଟିକିଏ ସଙ୍କୁଚିତ ଭାବରେ କହିଲେ, "ନାଁ ।"

ବ—"କାହିଁକି, ଏପର୍ଯ୍ୟନ୍ତ ହୋଇନାହିଁ ଯେ ?"

ଲ—"ମୋର ସେଥିରେ କଣ ଅଛି, ମାମୁ ଯାହା କରିବେ ।"

ଉଭୟେ କିଛିକ୍ଷଣ ନିସ୍ତବ୍ଧ ରହିଲା ପରେ ଲକ୍ଷ୍ମୀଧର କହିଲେ, "ଆପଣ ଏଠାରେ କେଉଁଠି ଅଛନ୍ତି ?"

ବ—"ମୁଁ ସୁରେନ୍ଦ୍ର ବାବୁଙ୍କ ବସାରେ ଅଛି ।"

ଲକ୍ଷ୍ମୀଧର ଟିକିଏ ବିନୀତ ଭାବରେ କହିଲେ, "କାଲି ଆମ ବସାରେ ଆପଣଙ୍କର ଗଣ୍ଡାଏ ପ୍ରସାଦସେବା ହୁଅନ୍ତା । ମୁଁ କାଲି ସକାଳେ ଯାଇ..."

ବ—ମୁଁ ତ ଆଜି ୯ଟା ଗାଡ଼ିରେ ଚାଲିଯିବି । ହଉ, ସେଥିରେ କଣ ଅଛି ? ତୁମେ ତ ଆମର ଆପଣାର ଲୋକ । ଏଣିକି ଆସିଲେ ମୁଁ ପଛକେ ତମ ବସାରେ ରହିକରି ଯିବି । ଯାହାହେଉ, ତମ ସଙ୍ଗେ କଥାବାର୍ତ୍ତା କରି ମୁଁ ଅତ୍ୟନ୍ତ ସୁଖୀ ହେଲି । ଭଗବାନ ତମର ମଙ୍ଗଳ କରନ୍ତୁ । ହଉ, ତେବେ ତେବେ ଯାଅ, ମୋତେ ଶୀଘ୍ର ଷ୍ଟେସନକୁ ଯିବାକୁ ହେବ ।

ବଳରାମ ବାବୁ ଲକ୍ଷ୍ମୀଧରଠାରୁ ବିଦାୟ ନେଇ ବସାକୁ ଫେରିଲେ ଏବଂ ମନେ ମନେ ଭାବିଲେ, ପିଲାଟି ଦେଖିବାକୁ ଯେପରି ଉଜ୍ଜ୍ୱଳ, ସ୍ୱଭାବଟି ମଧ୍ୟ ସେହିପରି ଶାନ୍ତଶିଷ୍ଟ । ଆମ ମାଳୀ ପାଇଁ ସ୍ଥିର କଲେ ତ ବେଶ ହୁଅନ୍ତା । ଅଦୃଷ୍ଟରେ ଥିଲେ ହୋଇପାରେ, କିଏ କହିବ ? ଦେଖାଯାଉ ଭଗବାନଙ୍କର କି ଇଚ୍ଛା !

ବଳରାମ ବାବୁ ସେହି ଦିନ ରାତି ଗାଡ଼ିରେ ଗଯାକୁ ଫେରି ଆସିଲେ ।

(୨)

ବଳରାମ ବାବୁଙ୍କ ପତ୍ର ପାଇ ମାସ୍ଟାଧର ବାବୁ ଭାବିଲେ, ହେଲେ ବା ମନ୍ଦ କଣ ? ଲକ୍ଷ୍ମୀଧରର ତ ଆସି ବିବାହର ବୟସ ହୋଇଗଲା, ଆଉ ଏଣିକି ବିଳମ୍ବ କରିବା ଅନୁଚିତ । ଏହାଠାରୁ ତ ଆଉ ଗୋଟାଏ ଭଲ ଘର ମିଳିବ ନାହିଁ । ତାଙ୍କର ଅନେକ ଦିନର ଗୋଟାଏ ଖାନ୍‌ଦାନ୍ ଘର । ବିଷୟ ଆଶୟର ତ କଥା ନାହିଁ, ତା ଛଡ଼ା ବଳରାମ ବାବୁ ନିଜେ ଜଣେ ଓଡ଼ିଶାର ଗଣ୍ୟମାନ୍ୟ ବ୍ୟକ୍ତି । କନ୍ୟାଟି ମଧ୍ୟ ଖୁବ୍ ରୂପବତୀ ଏ ତ ମୋର ନିଜର ଦେଖିବା କଥା; ପୁଣି ଶୁଣିଲି ଲେଖାପଢ଼ା ବେଶ ଶିଖିଛି ଓ ଆଉ ସବୁ ବିଷୟରେ ମଧ୍ୟ ଯୋଗ୍ୟ, ବିଶେଷତଃ ଭଲ ଜାତି ବୋଲି ସେମାନଙ୍କର ଅନେକ ଦିନରୁ ଗୋଟାଏ ଅଭିମାନ ଥିଲା, ଆମ୍ଭମାନଙ୍କ ସଙ୍ଗେ ବନ୍ଧୁ କରିବାକୁ ସେମାନେ ସେପରି ଗୋଟାଏ ମର୍ଯ୍ୟାଦାହାନି ବୋଲି ମନେ କରୁଥିଲେ । ନା, ଏ ସୁଯୋଗ ଛାଡ଼ିବାର ନୁହେଁ । ବାକି ଲକ୍ଷ୍ମୀଧର କଥା, ସେ ଯେପରି ଶାନ୍ତ ସୁଶୀଳ, ସେ ଯେ ମୋ କଥାରୁ ବାହାର ହେବ ଏପରି ତ ବୋଧ ହେଉ ନାହିଁ । ତେବେ ଆଜି କାଲିକାର ଶିକ୍ଷିତ ବର, ତାର ମତ ଅନୁସାରୀ କାର୍ଯ୍ୟ କରିବା ଭଲ । ଏହିପରି ନାନାକଥା ଭାବି ମାସ୍ଟାଧର ବାବୁ ଲକ୍ଷ୍ମୀଧର ନିକଟକୁ ସେହି ଦିନ ଏ ବିଷୟରେ ଖଣ୍ଡେ ପତ୍ର ଲେଖିଲେ ଏବଂ ସେଠାରେ ସମ୍ବନ୍ଧ କରିବା ଯେ ସର୍ବତୋଭାବରେ କର୍ତ୍ତବ୍ୟ ଓ ବାଞ୍ଛନୀୟ ଏକଥା ମଧ୍ୟ ଉଲ୍ଲେଖ କଲେ ।

ବଳରାମ ବାବୁଙ୍କୁ କଣ ଲେଖିବେ, କିଛି ସ୍ଥିର କରି ନପାରି ପରିଶେଷରେ ମନେ କଲେ, ଆମର ତ ବରପକ୍ଷ, ଏତେ ଭୟ ଉଦ୍‌ବେଗର କାରଣ କଣ ? ଏହା କହି ତାଙ୍କ ନିକଟକୁ ଖଣ୍ଡେ ପତ୍ରେ ଲେଖିଲେ । ପତ୍ରର ସାର ମର୍ମ ଏହି—ମୋର ଏ ପ୍ରସ୍ତାବରେ ଆଦୌ ଅମତ ନଥିଲେ ସୁଦ୍ଧା ଲକ୍ଷ୍ମୀଧରର ମତାମତ ନ ବୁଝି ମୁଁ ବର୍ତ୍ତମାନ କିଛି ସ୍ଥିର କରି ପାରୁନାହିଁ । ଯଥା ସମୟରେ ସମସ୍ତ ବିଷୟ ବୁଝି ପାରିବେ ।

ମାସ୍ଟାଧର ବାବୁଙ୍କ ପତ୍ର ପାଇ ଲକ୍ଷ୍ମୀଧର ବିଶେଷ ଆଗ୍ରହ ପ୍ରକାଶ କରିବାର ବୋଧ ହେଲା ନାହିଁ । ତଥାପି ମାମୁଙ୍କ ମନରକ୍ଷା କରିବା ଲାଗି ସେ ତାଙ୍କ ନିକଟକୁ ଏହିପରି ଖଣ୍ଡେ ପତ୍ର ଲେଖିଦେଇ ନିଶ୍ଚିନ୍ତ ହୋଇ ରହିଲା ।
ଶ୍ରୀଚରଣକମଳେଷୁ—

ଆପଣଙ୍କ ପତ୍ର ପାଇ ସମସ୍ତ ବିଷୟ ଅବଗତ ହେଲି । ଏସବୁ ବିଷୟରେ ମୋର ମତ ବୁଝିବା ଅନାବଶ୍ୟକ, ଆପଣଙ୍କ କଥା ମୋର ସର୍ବଦା ଶିରୋଧାର୍ଯ୍ୟ ।

ଆପଣ ଚିରକାଳ ଆମ୍ଭମାନଙ୍କର ଶୁଭକାଙ୍କ୍ଷୀ ଏବଂ ଆମ୍ଭମାନଙ୍କ ମଙ୍ଗଳ ନିମନ୍ତେ ଆପଣ ଯେ ସମସ୍ତ ବିଷୟ ଭଲ କରି ବିବେଚନା କରି କାର୍ଯ୍ୟ କରିବେ, ଏଥିରେ ମୋର ଲେଶମାତ୍ର ସନ୍ଦେହ ନାହିଁ ।

ବର୍ତ୍ତମାନ ଟିକିଏ ବ୍ୟସ୍ତ ଥିବାରୁ ବେଶି କିଛି ଲେଖି ପାରିଲି ନାହିଁ, ପରେ ସବିଶେଷ ଲେଖିବି । ।ଇତି।

ନିବେଦକ ସେବକ
ଲକ୍ଷ୍ମୀଧର

ଲକ୍ଷ୍ମୀଧରର ପତ୍ର ପାଇ ମାସ୍ଥାଧର ବାବୁ ଏକ ପ୍ରକାର ନିଶ୍ଚିନ୍ତ ହୋଇ-ଗଲେ ଏବଂ ସେହିଦିନ ଏ ବିଷୟରେ ବଳରାମ ବାବୁଙ୍କ ନିକଟକୁ ପତ୍ର ଲେଖିଲେ ।

ବିବାହର ଦିନ ଇତ୍ୟାଦି ସ୍ଥିର ହୋଇଯିବା ପରେ ମାସ୍ଥାଧର ବାବୁ ଲକ୍ଷ୍ମୀଧରକୁ ଲେଖିଲେ—

ଆଗାମୀ ମାଘମାସ ଶୁକ୍ଳପକ୍ଷ ସପ୍ତମୀ ଅର୍ଥାତ୍ ଜାନୁୟାରି ମାସ ୨୩ ତାରିଖରେ ବିଭାଘର ଦିନ ଧାର୍ଯ୍ୟ ହୋଇଅଛି । ଅନ୍ତତଃ ୧୫ ଦିନ ପୂର୍ବରୁ ଯେପରି ତୁମ୍ଭେ ଏଠାକୁ ଆସ, ସେ ବିଷୟରେ ଚେଷ୍ଟା କରିବ । ଏ ବିବାହ କଥା ଶୁଣି ସମସ୍ତେ ସୁଖୀ ଅଛନ୍ତି ଇତ୍ୟାଦି ।

ଏତେ ଶୀଘ୍ର ଏ କଥାର ନିଷ୍ପତ୍ତି ହୋଇଯିବ ବୋଲି ଲକ୍ଷ୍ମୀଧର ସ୍ୱପ୍ନେ ସୁଦ୍ଧା ଭାବି ନଥିଲେ । ସେ ମନେ କରିଥିଲେ, ମୁଁ ପ୍ରକାଶ୍ୟ ଭାବରେ କୌଣସି ପ୍ରତିବାଦ ନକଲେ ସୁଦ୍ଧା ପତ୍ରରେ ଯେଉଁ କ୍ଷୀଣ ଇଙ୍ଗିତ ହୋଇଅଛି ସେଥିରେ ମୋର ଅନ୍ୟ କିଛି ପତ୍ରାଦି ନ ପାଇବା ପର୍ଯ୍ୟନ୍ତ ମାମୁ କିଛି କରିବେ ନାହିଁ, ଅନ୍ତତଃ ଶେଷ ଜବାବ ଦେବା ପୂର୍ବରୁ ସେ ନିଶ୍ଚୟ ମୋତେ ସମ୍ବାଦ ଦେବେ । କିନ୍ତୁ ହଠାତ୍ ଏପରି ପତ୍ର ପାଇ ଲକ୍ଷ୍ମୀଧର ବଡ଼ ବିଷମ ସମସ୍ୟାରେ ପଡ଼ିଲେ । କି ଉତ୍ତର ଦେବେ, କିଛି ଠିକ୍ କରିପାରିଲେ ନାହିଁ । ଶେଷରେ ନାନା ଚିନ୍ତା ପରେ ସେ ତାଙ୍କର ବାଲ୍ୟସଖା ବିନୋଦ ନିକଟକୁ ନିଜର ମନୋଭାବ ବ୍ୟକ୍ତ କରି ନିମ୍ନୋକ୍ତ ପ୍ରକାରେ ଖଣ୍ଡେ ପତ୍ର ଲେଖିଲେ :

ଭାଇ ବିନୋଦ,

ତେବେ ବୋଧହୁଏ ବଳରାମ ବାବୁଙ୍କ କନ୍ୟା ସହିତ ମୋର ବିବାହ ହେଉଥିବା କଥା ଶୁଣିଥିବ । ମୁଁ କାଲି ମାମୁଙ୍କ ପତ୍ରରୁ ଏ ଖବର ପାଇ ଆନନ୍ଦିତ ହେବି କି

ଦୂଷିତ ହେବ, କିଛି ଭାବି ପାରୁ ନାହିଁ । ବଳରାମ ବାବୁ ଅବଶ୍ୟ ଆମ ଦେଶର ଜଣେ ବିଶିଷ୍ଟ ଲୋକ ଏବଂ ତାଙ୍କ ସହିତ ସମ୍ପର୍କ କରିବା ଗୋଟାଏ ଗୌରବର ବିଷୟ ହୋଇପାରେ, କିନ୍ତୁ ଯାହା ଭାଗ୍ୟ ସହିତ ମୋ ଭାଗ୍ୟ ଚିରଦିନ ଅଚ୍ଛେଦ୍ୟ ବନ୍ଧନରେ ବନ୍ଧା ହେବ, ତାକୁ ଥରେ ଆଖିରେ ଦେଖିବା କଥା ଦୂରେ ଥାଉ, ତାର ସ୍ୱଭାବ ଚରିତ୍ର ଦୋଷ ଗୁଣ ସମ୍ବନ୍ଧରେ ମୁଁ ବିନ୍ଦୁ ବିସର୍ଗ ଜାଣେ ନାହିଁ ବା ଜାଣିବାର ସୁବିଧା ସୁଦ୍ଧା ନାହିଁ । ଏପରି ପରିସ୍ଥିତିରେ କନ୍ୟା ଦେଖି ବିବାହ କରିବା କେତେଦୂର ସମୀଚୀନ, ତାହା ତେମେ ବୁଝି ପାରୁଥିବ । ମୁଁ ଅବଶ୍ୟ ସାହେବମାନଙ୍କ ପରି କୋର୍ଟସିପ୍ କରି ବିବାହ କରିବାକୁ କହୁନାହିଁ, ତେବେ ଏପରି ଗୋଟାଏ ପବିତ୍ର ସମ୍ପର୍କକୁ ବ୍ୟବସାୟ ବାଣିଜ୍ୟ ପରି କେବଳ ଚୁକ୍ତି ଜବାବରେ ସ୍ଥିର କରିବାର ମୁଁ ପକ୍ଷପାତୀ ନୁହେ । କେଜାଣି ଅବା, ସେ ରୂପ ଗୁଣରେ ଅସାମାନ୍ୟା, କିନ୍ତୁ ସେଇଟା ମୋର ସୌଭାଗ୍ୟ ଉପରେ ନିର୍ଭର କରେ; ପୁଣି ଅନ୍ୟ ଦିଗରେ ସମ୍ଭାବନା ତ କମ୍ ନୁହେ । ତେବେ ଏପରି ଗୋଟାଏ ଗୁରୁତର ବିଷୟକୁ କେବଳ ସୁର୍ତ୍ତି ଖେଳର ହାରଜିତ ଉପରେ ଛାଡ଼ିଦେବା ଉଚିତ କି ?

ଯାହା ହେଉ ତମକୁ ମୋର ବିଶେଷ ଅନୁରୋଧ ଯେ, ତେମେ କନ୍ୟା ସମ୍ବନ୍ଧରେ ଯାବତୀୟ ବିଷୟ ଭଲ କରି ବୁଝି ସରଳ ଭାବରେ ମୋ ନିକଟକୁ ଲେଖିବ । ମୁଁ ତମର ପ୍ରତି କଥାରେ କେତେଦୂର ଆସ୍ଥା ସ୍ଥାପନ କରେଁ, ତାହା ତେମେ ଜାଣ । ଏ ବିଷୟରେ ମୋର ଭବିଷ୍ୟତର ସୁଖ ଦୁଃଖ ତମ ହାତରେ । ମୁଁ ମଧ୍ୟ ଏସବୁ ବିଷୟ ଘରେ କାହା ନିକଟକୁ ଲେଖି ପାରୁନାହିଁ । ଅଭିଭାବକମାନେ ଯେ ଆମ୍ଭର ମଙ୍ଗଳ ବା ସୁଖ ନ ଖୋଜନ୍ତି, ତାହା ମୁଁ କହୁ ନାହିଁ, ତେବେ ସେମାନେ ଯଦି ଯୁବକର ହୃଦୟ ପେନ ବିଚାର କରୁଥାନ୍ତେ, ତାହାହେଲେ ଅନେକ ଅକଲ୍ୟାଣର ହାତରୁ ରକ୍ଷା ମିଳୁଥାନ୍ତା ।

ମୁଁ ଏତକ ଲେଖିଦେଇ ନିଶ୍ଚିନ୍ତ ନୁହେଁ । ଯଦି ସୁବିଧା ହୁଏ, ମୁଁ ଘରକୁ ଯାଇ ତମ ସହିତ ପରାମର୍ଶ କରିବି ଓ ଅନ୍ୟାନ୍ୟ ବିଷୟ ବିଶଦ ଭାବରେ ବୁଝିବାକୁ ଚେଷ୍ଟା କରିବି । ବର୍ତ୍ତମାନ ପ୍ରାୟ ଦୁଇ ମାସରୁ ଅଧିକ ସମୟ ଅଛି, ଆବଶ୍ୟକ ହେଲେ ଏଥିମଧ୍ୟରେ ଭଙ୍ଗା ଗଢ଼ା ଅକ୍ଳେଶରେ ହୋଇପାରେ ।

ଏ ବିଷୟ ଅନ୍ୟ କାହାରି ଆଗରେ ଯେପରି ପ୍ରକାଶ ନହୁଏ । ଆଶା କରେଁ, ତମମାନଙ୍କର ସମସ୍ତ ମଙ୍ଗଳ । । ଇତି ।

ତମର ସ୍ନେହର
ଲକ୍ଷ୍ମୀଧର

ପତ୍ରଟଣ୍ଡି ଡ଼ାକରେ ପକାଇ ଦେଇ ଲକ୍ଷ୍ମୀଧର କିଛିଟା ଆଶ୍ୱସ୍ତ ହେଲେ, କିନ୍ତୁ ମନରେ ଆଉ ଶାନ୍ତି ରହିଲା ନାହିଁ ।

( ୩ )

ବଡ଼ଘରର ଟଙ୍କା ପ୍ରାୟ ମାସକରୁ ଊର୍ଦ୍ଧ୍ୱ ଅଛି । ଏଣେ ପୂର୍ବରୁ ତ ଆଉ ବଳରାମ ବାବୁଙ୍କ ଛୁଟି ମିଳିବ ନାହିଁ । ଏଣୁ ସେ ତାଙ୍କର ଜ୍ୟେଷ୍ଠ ପୁତ୍ର ହରିଙ୍କୁ କହିଲେ, "ତୁ ତେବେ ପିଲାମାନଙ୍କୁ ନେଇ ଆଗରୁ ଚାଲି ଯା, ମୁଁ ପଛେ ୧୦।୧୫ ଦିନ ପୂର୍ବରୁ ଛୁଟି ନେଇ ଏକା ଚାଲିଯିବି । ଆଉ ବିଳମ୍ବ କଲେ ତ ହେବ ନାହିଁ । ପୂର୍ବରୁ ଯାଇ ସବୁ ଆୟୋଜନ କରିବାକୁ ହେବ । ତା ଛଡ଼ା ସ୍ତ୍ରୀଙ୍କର ସମ୍ପ୍ରତି ଯିବା ଆସିବା ସମସ୍ତ ନିକଟ ହୋଇଗଲା । ତମେମାନେ ନଗଲେ ଗୋଟିଏ ଏକା କଣ କରିବ ?"

ଏ ପ୍ରସ୍ତାବରେ ସମସ୍ତେ ସମ୍ମତ ହେଲେ ଏବଂ ରବିବାର ଦିନ ଯାତ୍ରା କରିବାର ସ୍ଥିର ହେଲା । ବଳରାମ ବାବୁଙ୍କ ସ୍ତ୍ରୀଙ୍କର ପୂର୍ବରୁ ଉଦରାମୟ ପୀଡ଼ା ଥିଲା । ବାହାରିବାର ସବୁ ଠିକ୍ ହୋଇଅଛି, ଏପରି ସମୟରେ ତାଙ୍କର ଭୟଙ୍କର ବେଦନା ଆରମ୍ଭ ହେଲା । ଏପରି ଅବସ୍ଥାରେ ଏତେ ଦୂରଦୀର୍ଘ ପଥ ରେଳରେ ଯିବାକୁ କେହି ପରାମର୍ଶ ଦେଲେ ନାହିଁ । ଏଣୁ ବାଧ୍ୟ ହୋଇ ତାଙ୍କର ଯିବା ସ୍ଥଗିତ ରହିଲା । ବଳରାମ ବାବୁ କହିଲେ, "ତେମେମାନେ ତେବେ ଯାଅ । ମୁଁ ପରେ ତାଙ୍କୁ ନେଇକରି ଯିବି । ଅନ୍ୟାନ୍ୟମାନଙ୍କ କଥା ଅଲଗା, ମାଳୀ ତ ଆଉ ବେଶି ଦିନ ରହି ପାରିବ ନାହିଁ । ତାର କିଛିଟା ଆଗରୁ ଯିବା ନିତାନ୍ତ ଆବଶ୍ୟକ । ତାର ମା ଯାଇଥିଲେ ଅବଶ୍ୟ କିଛିଟା ସୁବିଧା ହୋଇଥାନ୍ତା । କିନ୍ତୁ କଣ କରିଯିବ ? ଦୈବୀ ଘଟଣା ଉପରେ କାହାର ହାତ ଅଛି ?"

ସେହି ଦିନ ସନ୍ଧ୍ୟା ବେଳେ ହରି ମାଳୀ ଓ ନିଜ ସ୍ତ୍ରୀ ହେମକୁ ନେଇ ଷ୍ଟେସନ ଅଭିମୁଖେ ଯାତ୍ରା କଲେ ।

କୁଲିଦ୍ୱାରା ଜିନିଷପତ୍ର ସବୁ ଗାଡ଼ିକୁ ପଠାଇ ଦେଇ ହରି ସ୍ତ୍ରୀଲୋକମାନଙ୍କ ସହିତ ଯାଇ ଗୋଟିଏ ଦ୍ୱିତୀୟ ଶ୍ରେଣୀ କୋଠରୀରେ ପ୍ରବେଶ କଲେ । କୋଠରୀ ମଧ୍ୟରେ ଖୁବ୍ ସମ୍ଭବ ଜଣେ ହିନ୍ଦୁସ୍ଥାନୀ ଯୁବକ ଛଡ଼ା ଅନ୍ୟ କେହି ନଥିଲେ । ହରି ଜିନିଷପତ୍ର ସବୁ ଯଥାସ୍ଥାନରେ ରଖିବାର ବନ୍ଦୋବସ୍ତ କରି ଦେଇ ଓ ସମସ୍ତଙ୍କର ବସିବାର ସ୍ଥାନ ଠିକ୍ କରି ଦେଇ ଗୋଟାଏ ସିଗାରେଟ୍ ଲଗାଇ ଯୁବକଟି ସହିତ ହିନ୍ଦୀରେ କଥାବାର୍ତ୍ତା ଆରମ୍ଭ କରି ଦେଲେ ।

କଥାବାର୍ତ୍ତା କରୁ କରୁ ସେ ହଠାତ୍ ଚାହିଁ ଦେଖିଲେ ଯେ ବ୍ୟାଗ୍ ଖଣ୍ଡି କାହିଁ ଦେଖାଯାଉ ନାହିଁ । ଜିନିଷପତ୍ର ସବୁ ଓଲଟପାଲଟ କରି ଦେଖିଲେ ଯେ ଗାଡ଼ିରେ ବ୍ୟାଗ୍ ନାହିଁ । ନିଶ୍ଚୟ ୱେଟିଙ୍ଗ୍ ରୁମରେ ଛାଡ଼ି ଆସିଛୁ ମନେ କରି ସେ ତରତର ହୋଇ ଗାଡ଼ିରୁ ଓହ୍ଲାଇ ଷ୍ଟେସନ ଘର ଆଡ଼କୁ ଦୌଡ଼ିଲେ । ସେତେବେଳକୁ ପ୍ରଥମ ବେଲ୍ (ଘଣ୍ଟା) ବାଜି ଗଲାଣି । ବାକୀ ପ୍ରାୟ ୨।୩ ମିନିଟରୁ ବେଶି ସମୟ ନାହିଁ ।

ଝୁଁ ଝୁଁ ଦ୍ୱିତୀୟ ବେଲ୍ ବାଜିଗଲା, ପ୍ଲାଟଫର୍ମ ଉପରେ ଛୁଟାଛୁଟି ଦୌଡ଼ା ଦୌଡ଼ି ଲାଗିଅଛି । ଲୋକ କୋଳାହଳରେ ପଦେକଥା ଶୁଣିବାର ଜୋ’ ନାହିଁ । ମାଳତୀ ଓ ହେମ ଝରକାବାଟେ ମୁହଁ ବାହାର କରି ଯେତେଦୂରକୁ ଦୃଷ୍ଟି ଯାଏ ଉତ୍କଣ୍ଠାର ସହିତ ଅନାଇ ରହିଛନ୍ତି, କିନ୍ତୁ ଲୋକଗହଳି ତ କ୍ରମେ କମି ଆସିଲାଣି କାହିଁ ହରି ତ କେଉଁଠାରେ ଦେଖା ଯାଉନାହାନ୍ତି ! କାଳର ଗତିପରି ରେଲଗାଡ଼ି କାହାକୁ ଅପେକ୍ଷା କରେ ନାହିଁ । ଫେଁ କରି ଗୋଟାଏ ବିକଟ ସିଟି ମାରି ଗାଡ଼ି ଛାଡ଼ିଦେଲା ଏବଂ ତାହା ସଙ୍ଗେ ସଙ୍ଗେ ଦୁଇଟି ରମଣୀ କଣ୍ଠର କ୍ଷୀଣ କ୍ରନ୍ଦନଧ୍ୱନି କେଉଁଆଡ଼େ ମିଶିଗଲା, ତାହା ସେମାନଙ୍କ ଛଡ଼ା ଅନ୍ୟ କେହି ଜାଣି ପାରିଲେ ନାହିଁ ।

ମାଳତୀ ଓ ହେମ କ୍ରମେ ବେଶି ଅଧୀର ହୋଇ ଉଠିଲେ । କଣ କରିବେ କିଛି ଠିକ୍ କରି ପାରିଲେ ନାହିଁ । ଯେତିକି ନିଜର ଅବସ୍ଥା ଭାବିବାକୁ ଲାଗିଲେ, ସେତିକି ମନରେ କ୍ରୋଧ ଦ୍ୱିଗୁଣ ହୋଇ ଉଠିଲା । ଏକେ ଅବଳା ସ୍ତ୍ରୀ ଜାତି, ସଂସାରର ଗତିବିଧି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞା, ତହିଁରେ ପୁଣି ବନ୍ଧ ଗୃହରେ ବର୍ଦ୍ଧିତା କୁଣ୍ଡର ସୁକୁମାର ଫୁଲଗଛ ପରି ସେମାନେ ଗୃହର ଚତୁଃସୀମା ଛଡ଼ା ଦିନେ ହେଲେ ବାହାରର ଦାରୁଣ ଘାତ ପ୍ରତିଘାତ ଦେଖି ନାହାନ୍ତି । ଏକେ ତ ପାଖରେ ଟଙ୍କା ଅଧେଲିଟିଏ ସୁଦ୍ଧା ନାହିଁ, ତହିଁରେ ଯେଉଁ ଲୋକଟି କୋଠରୀ ମଧ୍ୟରେ ଅଛି, ତାହାର ନଥିବା ଅପେକ୍ଷା ଥିବାକୁ ସେମାନେ ଆହୁରି ଭୟାବହ ମନେ କରୁଅଛନ୍ତି । ନିଜର ଅବସ୍ଥା ଭଲକରି ଟିକିଏ ଭାବିବାକୁ ବା ସ୍ୱାଧୀନ ଭାବରେ କଥାବାର୍ତ୍ତା ହେବାକୁ ସୁଦ୍ଧା ସେମାନଙ୍କର କ୍ଷମତା ନାହିଁ । ସେମାନେ ଚତୁର୍ଦ୍ଦିଗରେ କେବଳ ଅନ୍ଧକାର—ସୂଚିଭେଦ୍ୟ ଅନ୍ଧକାର ଦେଖୁଅଛନ୍ତି । ସେମାନଙ୍କର ମନେ ହେଉଅଛି, ଯେପରି ଗୋଟାଏ ଭୀମକାୟ ଦୁର୍ବୃତ୍ତ ଦୈତ୍ୟ ସେମାନଙ୍କୁ ଗୋଟାଏ ରଥରେ ବସାଇ ଆକାଶ ମାର୍ଗରେ ଅସୁର ରାଜ୍ୟ ଆଡ଼କୁ ନେଇ ଯାଉଅଛି ।

ଏମାନଙ୍କର ଏପରି ଅବସ୍ଥା ଦେଖି ଯୁବକଟି ଆଉ ବେଶୀକ୍ଷଣ ନିଶ୍ଚିନ୍ତ ରହି

ପାରିଲ ନାହିଁ । ସେ ସେମାନଙ୍କୁ ନାନା ଉପାୟରେ ପ୍ରବୋଧ ଦେବାକୁ ଚେଷ୍ଟା କଲା, କିନ୍ତୁ ଫଳ ମଧ୍ୟରେ ଏତିକି ହେଲା ଯେ, ସେମାନେ ତା କଥାରେ କର୍ଣ୍ଣପାତ ନକରି କ୍ରମେ ଆହୁରି ଅଧୀର ହୋଇ ଉଠିଲେ । ଯୁବକଟି ମଧ୍ୟ ନିରସ୍ତ ହୋଇ ନିଜ ସ୍ଥାନରେ ଯାଇ ବସିଲା ।

ହରି ସଙ୍ଗେ କଥାବାର୍ତ୍ତା କରିବା ସମୟରେ ଯୁବକ ସେମାନଙ୍କର ସମ୍ବନ୍ଧରେ କିଛି ଆଭାସ ପାଇଥିଲା । କିଛିକ୍ଷଣ ପରେ ସେମାନଙ୍କୁ ଟିକିଏ ଆଶ୍ୱସ୍ତ ହେବାର ଦେଖି ସେମାନଙ୍କ ଘର, କେଉଁଠାରେ ଥିଲେ, କେଉଁଠାକୁ ଯାଉଛନ୍ତି ଇତ୍ୟାଦି ବିଷୟରେ ଅଧା ବଙ୍ଗଳା ଅଧା ହିନ୍ଦି ଭାଷାରେ ନାନାପ୍ରକାର ପ୍ରଶ୍ନ କଲା ଏବଂ ସେମାନେ ମଧ୍ୟ ସନ୍ଦିଗ୍ଧଚିତ୍ତ ପରି କେତେଗୁଡ଼ିଏ ପ୍ରଶ୍ନର ଉତ୍ତର ଦେଇଗଲେ, କିନ୍ତୁ ମନେ ମନେ ଯୁବକ ସମ୍ବନ୍ଧରେ ସେମାନଙ୍କର ସନ୍ଦେହ ଆହୁରି ଦୃଢ଼ୀଭୂତ ହେବାକୁ ଲାଗିଲା । ସେମାନେ ମନେ କଲେ କୌଣସି ଦୁରଭିସନ୍ଧି ନଥିଲେ ଏ ଏତେ ପଚାରନ୍ତା କାହିଁକି ? ରେଳଗାଡ଼ିରେ ଯେ ନାନା ରକମର ଅତ୍ୟାଚାର ହୁଏ, ଶୁଣାଶୁଣିରେ ସେମାନେ କିଛି ଜାଣିଥିଲେ । ବିଶେଷତଃ ରୁକ୍ଷ ହିନ୍ଦୁସ୍ଥାନୀ ପୋଷାକର ଅନ୍ତରାଳରେ ଯେ କେବେ ମାୟା ମମତାର ସ୍ନିଗ୍ଧ ଧାରା ବହିପାରେ, ଏଇଟା ସେମାନଙ୍କ ଧାରଣାର ଗୋଚର ନ ଥିଲା । ଫଳତଃ ମନର ସନ୍ଦେହଟିକୁ ସେମାନେ ବହୁଯତ୍ନରେ ବଢ଼ାଇବାକୁ ଲାଗିଲେ । ଯେଉଁସବୁ ଘଟଣା ବା ପ୍ରମାଣ ଏହାର ପୋଷକତା କଲା, ସେମାନେ ତାକୁ ଆଦର ସହିତ ଅଭ୍ୟର୍ଥନା କରିନେଲେ ଏବଂ ବାକି ଯେସବୁ ଏହାର ବିରୁଦ୍ଧାଚରଣ କଲା, ସେମାନେ ତାକୁ ମିଥ୍ୟାସାକ୍ଷ୍ୟ ବୋଲି ଇଜଲାସରୁ ବିଦାୟ ଦେଲେ ।

ଟିକିଏ ପ୍ରକୃତିସ୍ଥ ହେଲା ପରେ, ପରିଣାମ କଣ ହେବ, ସେ ବିଷୟରେ ଚିନ୍ତା ନ କରି ସେମାନେ ବର୍ତ୍ତମାନ କଣ କର୍ତ୍ତବ୍ୟ, ତାହା ସ୍ଥିର କରିବାକୁ ଲାଗିଲେ । ପ୍ରଥମେ ସେମାନେ ନିଜ ନିଜର ଗହଣାପାତ କ୍ରମେ କ୍ରମେ ଦେହରୁ କାଢ଼ି କାନିରେ ବାନ୍ଧିଲେ—ଏତେ ଅଳଙ୍କାର ଦେଖିଲେ କାଳେ ସେ ଲୋଭ ସମ୍ଭାଳି ନ ପାରିବ । ଯୁବକଟି ଏସବୁ ଲକ୍ଷ୍ୟ କରି କାହାରିକୁ କିଛି ନ କହି ମନେ ମନେ ଟିକିଏ ନହସି ରହିପାରିଲା ନାହିଁ ।

ବଡ଼ ବଡ଼ ଷ୍ଟେସନ ନିକଟରେ ଯୁବକଟି ଯାଇ ସେମାନଙ୍କୁ କଣ ଦରକାର, କଣ ଆଣିବାକୁ ହେବ ଇତ୍ୟାଦି ପ୍ରଶ୍ନ କରେ, କିନ୍ତୁ ସେମାନେ ସବୁ କଥାରେ ନିରୁତ୍ତର । ମନେ ମନେ ଭାବନ୍ତି, ଶାଠ୍ୟର ମୁଖ ସବୁବେଳେ ମଧୁର ।

ସେମାନଙ୍କର ଆଖିକି ନିଦ ଆସିବା ଦୂରେ ଥାଉ, ଜଣେକଠାରୁ ଅନ୍ୟ ଜଣେ ମୁହୂର୍ତ୍ତିକ ପକାଶେ ସୁଦ୍ଧା ଅନ୍ତର ହେବାକୁ ସାହସ କଲେ ନାହିଁ, କେଜାଣି ଯଦି ଏଥିମଧ୍ୟରେ କିଛି ବିପଦ ଘଟିଥାଏ । ସେମାନଙ୍କର ଏପରି ଦୁରବସ୍ଥା ଦେଖି ଯୁବକ ଟିକିଏ ଶୋଇବାର ଛଳନା କଲା, କିନ୍ତୁ ଏମାନଙ୍କ ଲାଗି ତା ଆଖିରେ ନିଦ କାହିଁ ?

ଆସନ୍‌ସୋଲ୍ ଜଙ୍କସନରେ ଗାଡ଼ି ପହଞ୍ଚିଲା । ଏଇଠାରୁ ଏ ଗାଡ଼ି ବଦଳାଇ ଅନ୍ୟ ଗାଡ଼ିରେ ଚଢ଼ିବାକୁ ହେବ । ଯୁବକ ସେମାନଙ୍କୁ ଅନ୍ୟ ଗାଡ଼ିକୁ ନିବାକୁ ଯେତେ ପ୍ରବର୍ତ୍ତାଇଲା, ସେମାନେ ମାନିଲେ ନାହିଁ, କେଜାଣି ଯଦି ଏହା ମଧ୍ୟରେ କିଛି ବଞ୍ଚକତା ଥାଏ । ଶେଷରେ ଅନ୍ୟାନ୍ୟ ଆରୋହୀମାନେ ଓହ୍ଲାଇବାର ଦେଖି ସେମାନେ ଯୁବକର ନିର୍ଦ୍ଦେଶ ଅନୁଯାୟୀ ଅନ୍ୟ ଗାଡ଼ିରେ ଯାଇ ବସିଲେ, ଯୁବକ ମଧ୍ୟ କେତେକ କୁଲିଦ୍ୱାରା ଓ କେତେକ ନିଜେ ସେମାନଙ୍କର ସବୁ ଜିନିଷ ଅନ୍ୟ ଗାଡ଼ିକୁ ବୁହାଇ ନେଇଗଲା ।

ପ୍ରଭାତ ହେବାରୁ ସେମାନଙ୍କ ମନରେ ଟିକିଏ ସାହସ ହେଲା ଏବଂ ଯୁବକ ପ୍ରତି ଅବିଶ୍ୱାସ ମଧ୍ୟ ଟିକିଏ କମିଲା । ଯୁବକ ସେମାନଙ୍କ ସୁବିଧା ପକାଶେ ପାଣି ଆଣି ଦେବାକୁ ଆରମ୍ଭ କରି ଜଳଖିଆ ଇତ୍ୟାଦିର ବନ୍ଦୋବସ୍ତ କରିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ଅଯାଚିତ ଭାବରେ କରୁଥାଏ—ଯେପରି କି ଏମାନେ ତାର କୌଣସି ଘନିଷ୍ଠ ଆତ୍ମୀୟ । ବୋଧହୁଏ ନିଜେ ହରି ଥିଲେ ସେମାନଙ୍କ ଲାଗି ଏତେ ଯତ୍ନ କରିଥାଆନ୍ତା କି ନାହିଁ ସନ୍ଦେହ । ଅଥଚ ପ୍ରତି କାର୍ଯ୍ୟ ଭଦ୍ରତା ଓ ଲୌକିକତାର ସୀମା ମଧ୍ୟରେ ରହି ଏପରି ଧୀର ବିନୀତ ଭାବରେ କରି ଯାଉଥାଏ ଯେପରି କି ଏମାନଙ୍କ ପାଇଁ ସେ ଗୋଟାଏ ବିଶେଷ କିଛି କାର୍ଯ୍ୟ କରୁ ନାହିଁ—ଏସବୁ ତାର କର୍ତ୍ତବ୍ୟର ସୀମା ଭିତରେ ।

ଏତେ ଅକାଟ୍ୟ ପ୍ରମାଣ ସମ୍ମୁଖରେ ସେମାନଙ୍କର ମନର ସଂସ୍କାର ଆଉ ବେଶି କ୍ଷଣ ତିଷ୍ଠି ପାରିଲା ନାହିଁ । କଠିନ ବରଫ ଯେପରି ଧୀରେ ଦ୍ରବ ହେବାକୁ ଆରମ୍ଭ କଲେ ଜଳ ପରି ତରଳ ନହେବା ପର୍ଯ୍ୟନ୍ତ କ୍ଷାନ୍ତ ହୁଏ ନାହିଁ, ସେମାନେ ସେହିପରି ତା ଉପରେ ଧୀରେ ବିଶ୍ୱାସ ସ୍ଥାପନ କରି ହୃଦୟରୁ ତା ଆଡ଼କୁ କ୍ରମଶଃ ଆକୃଷ୍ଟ ନ ହୋଇ ରହି ପାରିଲେ ନାହିଁ । ସେମାନେ ଏଣିକି ତାର ପ୍ରତି କାର୍ଯ୍ୟ ଓ କଥାରେ ମହତ୍ତ୍ୱର ସୂଚନା ଦେଖି ପାରିଲେ । ଆହା, ଏପରି ପରୋପକାରୀ ଲୋକ ପୃଥିବୀ ସଂସାରରେ ଅଛନ୍ତି ? ଚିହ୍ନା ପରିଚୟ କିଛି ନାହିଁ, ଆମର ବିପତ୍ତି ଦେଖି ଏମିତି ତରଳିଗଲା ଯେ, ନିଜର ସୁଖ ସୁବିଧା ସବୁ ଛାଡ଼ିଦେଇ ଆମମାନଙ୍କ ପିଚ୍ଛା ବରାବର

ଲାଗିଛ । ପ୍ରଭୁ ଏପରି ଲୋକଟାଏ ନ ଯୁଟାଇଥିଲେ ଆମର ଦଶା କଣ ହୋଇ-ଥାନ୍ତା ? ଛି, ଛି, ଏପରି ଲୋକକୁ ପୁଣି ଆମେ ଅବିଶ୍ୱାସ କରିଥିଲୁଁ ? ଏଥିରେ ନିଶ୍ଚୟ ଆମର ପାପ ହୋଇଛି ।

ମାଳୀ କହିଲା, "ତେମେ ଯାହା କହ, ତାଙ୍କୁ ଦେଖି ମୋ ମନରେ କାହିଁକି ପ୍ରଥମରୁ ସନ୍ଦେହ ଲୁହିଁ ନଥିଲା । ଏତେ ସୁନ୍ଦର ଗଢ଼ଣ, ଏତେ ଅବିଶ୍ୱାସୀ ହୁଅନ୍ତା ନା ?"

ହେମ ହସି ହସି କହିଲା, "ତେମେ ତ କଣ ତା ରୂପରେ ଏକାବେଳକେ ମଜ୍ଜିଗଲଣି ! ତେଣେ ତ ସବୁ ଠିକ୍‌ଠାକ୍ ସରିଲଣି, ନ ହେଲେ ଅବା ଦେଖା ଯାଇଥାନ୍ତା । ଆଉ ନହେଲେ କଣ ! ଦେଖାନାହିଁ କି ଶୁଣାନାହିଁ, କୁଆଡ଼ୁ ଗୋଟାଏ ବର ଧରିଆଣିବେ ଯେ ସେ କାଳଅନ୍ଧୁଆ ହେଉଛି, ନା କଣ ହେଉଛି କେଜାଣି ?"

ମାଳୀ "ଯା ମଁ" କହିଦେଇ ମୁହଁ ବୁଲାଇ ବସିଲା ।

ହେମ କହିଲା, "ମନକଥାଟା ଖୋଲି ଦେଲି କି ନା, ସେଥିଲାଗି ହେଲା ମୋର ଦୋଷ । ଆଉ ସେ ଲୋକଟିର ଆମ ସକାଶେ ଏତେ ଧାଁଇଁ ଧପଡ଼ା ଲାଗିଛି କାହିଁକି ଜାଣିଛ ?"

ମାଳୀ ଟିକିଏ ବିରକ୍ତି ପ୍ରକାଶ କରି କହିଲା, "ଯା ମଁ, ମୁଁ କିଛି ଜାଣେ ନାହିଁ, ମୋ ସାଙ୍ଗରେ ସିମିତି ଲଗାଅନା ।"

ହେମ କହିଲା, "ମୁଁ କହି ଦେବି ? କେବଳ ତମରି ଏହି ଚାନ୍ଦମୁହଁ ଖଣ୍ଡିକ ଲାଗି । ସୁନ୍ଦର ମୁହଁର ସବୁଠାରେ ଜୟ । ଉଦ୍ଧୈଇଙ୍କ ଖଣ୍ଡା ତ ହାତରୁ ଖସି-ପଡ଼ିବ, ଏ ଅବା କେଉଁ ଗୁର ? ନ ହେଲେ କଣ ତାର ଗରଜ ସରୁ ନଥିଲା ଯେ, ସେ ଆମପାଇଁ ଏତେ ମିହନତ କରନ୍ତା ? ମହିରେ ଥାଇ ଲାଭଟା ଏଥିରେ ମୋର ଏକା ସବୁଠାରୁ ବେଶି । 'କୁସୁମ ପରଶେ ପଟ ନସ୍ତରେ' ।"

ମାଳୀ ଆଉ ସମ୍ଭାଳି ନପାରି କହିଲା, "ତମର କଣ ଖ୍ରୀତ ହଜମ ହେଉନାହିଁ କି ?" ହେମ କହିଲା, "ହେଲଣି ନଁ।, ଏହିକ୍ଷଣି କାଳିଦିନ ପର୍ଯ୍ୟନ୍ତ ହବ ? ମନରେ ବେଗ ଥିଲେ, ପେଟ କଥା ପସ୍ତୁରୁଛି କିଏ ?"

ଖଡ୍ଗପୁରଠାରେ ଯୁବକ ହେମାନଙ୍କ ମତ ଅନୁଯାୟୀ ଗୋବିନ୍ଦ ବାବୁଙ୍କ ଠିକଣାରେ ସଂକ୍ଷେପରେ ବାଟର ଦୁର୍ଘଟଣା ଲେଖି ଖଣ୍ଡେ ଟେଲିଗ୍ରାମ କରିଦେଲା ଏବଂ ସେମାନେ ରାତି ୪ଟା ସମୟରେ କଟକ ଷ୍ଟେସନରେ ପହଞ୍ଚିବାର ସମ୍ବାଦ ମଧ୍ୟ ଦେଇଗଲା ।

ହେମ ଓ ମାଳୀ ମନେ ମନେ ଭାବିଲେ, ଆଉ କିଛି ସମୟ ପରେ ତ ଆମେ ଗାଡ଼ିରୁ ଓହ୍ଲାଇଯିବା । ଏ ଲୋକଟି ଆମ ସକାଶେ ଏତେ କଷ୍ଟ ସ୍ୱୀକାର କଲା, ଅଥଚ ଆମେ ଏପର୍ଯ୍ୟନ୍ତ ତା ସମ୍ବନ୍ଧରେ କିଛି ଜାଣି ପାରିଲେଁ ନାହିଁ । ଆମେ ଭଦ୍ର ଲୋକ ଯେ ଆମର ଏତେ ଉପକାର କଲା, ତାକୁ କଥାରେ ହେଲେ ଟିକିଏ କୃତଜ୍ଞତା ଜଣାଇବାକୁ କଣ ଆମର ଅଧିକାର ନାହିଁ ? ସେ ଯଦି କଟକରେ ଓହ୍ଲାଉଥାନ୍ତା, ତାହା ହେଲେ ଅବା ଅନ୍ୟ କାହାଦ୍ୱାରା ସବୁ ବୁଝି ଯାହା କିଛି କରନ୍ତେଁ, କିନ୍ତୁ ସେ କୁଆଡ଼େ ଯାଉଛି, କେଉଁଠାରେ ଓହ୍ଲାଇବ, କିଏ ଜାଣେ ? ଆଉ ମଧ୍ୟ ସେ ତ ଅଜଣା, ଅଚିହ୍ନା ଲୋକ, ତା ଆଗରେ ବା ଏତେ ଲାଜ କାହିଁକି ? ଏହିପରି ସାତପାଞ୍ଚ ଭାବି ହେମ ପ୍ରଥମରେ ସ୍ତ୍ରୀସୁଲଭ ସଙ୍କୋଚ ସହିତ, ସେପରି ଅବସ୍ଥାରେ ଯେତେଦୂର ସମ୍ଭବ ଟିକିଏ କୃତଜ୍ଞତା ଜଣାଇ ପରୋକ୍ଷରେ ତାକୁ ଶୁଣାଇ ଯୁବକର ପରିଚୟ ଆଦି ପଚାରିଲା ।

ଯୁବକ ସଂକ୍ଷେପରେ ତାର ଏତିକି ପରିଚୟ ଦେଲା ଯେ, ତାର ଘର ପଶ୍ଚିମରେ, ତାର ଭାଇ କଟକରେ କୌଣସି ସ୍ଥାନରେ କାର୍ଯ୍ୟ କରୁଥିବାରୁ ସେ ତାହା ନିକଟକୁ ଯାଉଅଛି । ଉଦ୍ଦେଶ୍ୟ, ଯଦି ଚାକିରି ବାକିରି ଖଣ୍ଡେ ମିଳିଯାଏ, ସୁବିଧା ଦେଖି ଥାଇ ଯିବ ।

ଯୁବକର କଥା ଶୁଣି ହେମ ଓ ମାଳୀ ସ୍ଥିର କଲେ, ଏ ଯେତେବେଳେ ଚାକିରି ଅନୁସନ୍ଧାନରେ ଆସିଛି, ଆମେମାନେ ଘରେ ସମସ୍ତଙ୍କୁ କହି ଯେ ଯେପରି କୌଣସି ଠାରେ ଖଣ୍ଡିଏ ଭଲ କାର୍ଯ୍ୟ ପାଏ, ତାର ଚେଷ୍ଟା କରିବା । ସେ ଆମର ଯେଉଁ ଉପକାର କରିଛି, ଆମେ ଜୀବନରେ ତ କଦାପି ସେ ଋଣ ଶୁଝି ପାରିବା ନାହିଁ । ତେବେ ଆମଦ୍ୱାରା ଯଦି ତାର କିଛି ହେଲେ ଉପକାର ହୁଏ, ତେବେ ଆମ ମନ ଟିକିଏ ଆଶ୍ୱାସ ହେବ ।

ଏହିପରି ମନେ ମନେ ବିଚାରି ସେମାନେ ଅତି ସାବଧାନରେ ତାର ନାମ, ଠିକଣା ଆଦି କଥା ଉଠାଇଲେ, ଯେପରି କି ସେମାନଙ୍କ ମନୋଭାବ ସେ କିଛି

ଜାଣି ନ ପାରେ । ଉତ୍ତରରେ ଯୁବକ କହିଲା, "ମୁଁ ତ ବର୍ତ୍ତମାନ କେଉଁଠାରେ ରହିବି, କଣ କରିବି କିଛି ଠିକ୍ ନାହିଁ । ଘରର ଠିକଣା ସୁଦ୍ଧା ମୁଁ ଜାଣେ ନାହିଁ । ଯଦି କୌଣସି ସ୍ଥାନରେ ମୁଁ ନିଜକୁ ସ୍ଥାୟୀଭାବରେ ରହେଁ, ତେବେ ପତ୍ରଦ୍ୱାରା ଜଣାଇ ପାରେଁ । ମୋ ଠିକଣା ଜାଣି ଅବା ଆପଣମାନଙ୍କର କଣ ହେବ ? କେବଳ ମୋର ନାମଟା ଜାଣି ରଖନ୍ତୁ ଯେ 'ଲକ୍ଷ୍ମଣ ଜୀ' ।"

ଗାଡ଼ି ଆସି କଟକ ଷ୍ଟେସନରେ ପହଞ୍ଚିଗଲା । ଯୁବକଟି ତାହାର ଅନୁସନ୍ଧାନରେ ସେପରି ସାଙ୍ଗେ ସାଙ୍ଗେ ଗାଡ଼ିରୁ ଓହ୍ଲାଇ ପଡ଼ିଲା । ଗୋବିନ୍ଦ ବାବୁ ପୂର୍ବରୁ ସବାରୀ ଇତ୍ୟାଦି ଯେଉଁ ବଡ ଉତ୍କଣ୍ଠିତ ଭାବରେ ସେଠାରେ ଅପେକ୍ଷା କରିଥିଲେ । ବ୍ୟସ୍ତ ଭାବରେ ଅନେକ କୋଠରୀ ଖୋଜାଖୋଜି କଲାପରେ ଯେତେବେଳେ ମାଳୀ ପ୍ରଭୃତଙ୍କୁ ଦେଖି ପାଇଲେ, ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ ଦେଇ ସେ ନିଜକୁ ଆଶ୍ୱସ୍ତ ହେଲେ ।

ଗୋବିନ୍ଦ ବାବୁଙ୍କ ପୁତ୍ର ରାମ ମଧ୍ୟ ତାଙ୍କ ସହିତ ଷ୍ଟେସନକୁ ଆସିଥିଲା । ଗାଡ଼ିରୁ ସମସ୍ତେ ଓହ୍ଲାଇ ସାରିଲା ପରେ ହେମ ରାମଦ୍ୱାରା ଗୋବିନ୍ଦ ବାବୁଙ୍କୁ ଖବର ପଠାଇଲା ଯେ ସେମାନଙ୍କ ସଙ୍ଗେ ଯେଉଁ ପଶ୍ଚିମା ଯୁବକଟି ଥିଲା, ସେ ବାଟରେ ସେମାନଙ୍କର ଅନେକ ଉପକାର କରିଅଛି, ଏପରି କି ସେ ପାଖରେ ନଥିଲେ ସେମାନଙ୍କୁ ଆଉ କେହି ଦେଖିଥାନ୍ତେ କି ନାହିଁ ସନ୍ଦେହ ।

ଏ କଥା ଶୁଣି ଗୋବିନ୍ଦ ବାବୁ ନିଜେ ଓ ଅନ୍ୟାନ୍ୟମାନଙ୍କ ଦ୍ୱାରା ଯୁବକର ଅନେକ ଅନୁସନ୍ଧାନ କଲେ, କିନ୍ତୁ କୌଣସିଠାରେ ତାକୁ ନ ପାଇ ନିରସ୍ତ ହୋଇ ରହିଲେ ।

ହେମ ଓ ମାଳୀ କିନ୍ତୁ ଏଥିରେ ବଡ଼ ଦୁଃଖିତ ହେଲେ । ସେମାନେ ଆଉ ଥରେ ଗୋପନରେ ଭୋଳା ଗୁଙ୍କର ଦ୍ୱାରା ନାନା ସ୍ଥାନରେ ଅନେକ ଖୋଜାଖୋଜି କଲେ ଓ ଶେଷରେ ହତାଶ ହୋଇ କ୍ଷୁଣ୍ଣ ମନରେ ଯାଇ ସବାରୀରେ ବସିଲେ ।

( ୪ )

ଆଜି ମାଳୀର ବାହାଘର । ବଳରାମ ବାବୁଙ୍କ ଘର ନିକଟରେ ଲୋକାରଣ୍ୟ । ବାଦ୍ୟ କୋଳାହଳ ଓ ଜନତାର କଳରବରେ କାନ ଅତଡ଼ା ପଡ଼ି ଯାଉଛି । ମଝିରେ ମଝିରେ ରମଣୀ-କଣ୍ଠ-ନିଃସୃତ ହୁଳହୁଳିର ତେଜ ସ୍ୱାମପାରି ଉଚ୍ଛୁଳି ପଡ଼ୁଛି ।

ସନ୍ତୋଷର ମାଳାର ବ୍ୟାକୁଳ କନ୍ଦନ ଧ୍ୱନି ଘରର ଚାରିଆଡ଼େ ବୁଲି ବୁଲି ସମସ୍ତଙ୍କ ଚରଣ ତଳେ ଲୋଟି ଯେପରି କୃପାଭିକ୍ଷା କରୁଅଛି ଏବଂ ତା' ସଙ୍ଗେ ମନ୍ଦ୍ରସ୍ୱର କରୁଣ ମଧୁର ରାଗିଣୀ ମିଶି ମନକୁ ପଦେ ପଦେ ବିଚଳିତ କରି ଦେଉଅଛି । ଆଜି ସମସ୍ତଙ୍କ ଚକ୍ଷୁ ଆର୍ଦ୍ର ଓ ସମସ୍ତଙ୍କ ମୁଖରେ ଗୋଟାଏ ବିଷାଦର ଛାୟା ପଡ଼ି ଯାଇଅଛି । ବଳରାମ ବାବୁଙ୍କ ସ୍ତ୍ରୀ ତ ଗୋଟାଏ ଘରେ ପଡ଼ି ଅଛନ୍ତି ଯେ ତାଙ୍କର ଉଠିବାର ଶକ୍ତି ନାହିଁ । ବଳରାମ ବାବୁ ଏଡ଼େ ଧୀର ଗମ୍ଭୀର ଲୋକ, କିନ୍ତୁ ତାଙ୍କର ଚକ୍ଷୁଦ୍ୱୟ ଆଜି ରକ୍ତବର୍ଣ୍ଣ । ସେ ଗୁହାକୁ ଗୁହା ଲୁଗା କାନରେ ଆଖି ପୋଛୁଅଛନ୍ତି । ଏତେବଡ ଗୋଟାଏ କାର୍ଯ୍ୟ, କଣ ହେଲା, କଣ ନହେଲା ସେ ଆଡ଼କୁ ତାଙ୍କର ଦୃଷ୍ଟି ନାହିଁ । କେହି କିଛି ପଚାରିଲେ, କେତେବେଳେ ପଦେ କଣ କହି ଦେଉ ଅଛନ୍ତି, ନ ହେଲେ କେବଳ ମୂକପରି ବସି ଅଛନ୍ତି ।

କ୍ରମେ ବେଦିର ସମସ୍ତ କାର୍ଯ୍ୟ ଶେଷ ହୋଇଗଲା । ଜୁଆ ଖେଳିବା ପାଇଁ ବର କନ୍ୟାଙ୍କୁ ଘର ଭିତରକୁ ନେଇଗଲେ । ବରକୁ ଦେଖିବା ଲାଗି ସ୍ତ୍ରୀଲୋକ-ମାନେ ଆସି ଯୁଝ୍ ବାନ୍ଧ ଛଡା ହୋଇଗଲେ । ହେମ ବରକୁ ଦେଖି ପ୍ରଥମେ ଅବାକଯା ହୋଇ ଛିଡ଼ା ହୋଇଗଲା । କିଛିକ୍ଷଣ ପରେ ସେ ସମ୍ଭାଳି ହୋଇ ନପାରି ପାଟି କରି ଉଠିଲା, "ହଇହେ ! ଏ ତ ଆମର ସେହି ଲଛମନ ଜି ।" ହେମ କଥା ଶୁଣି ମାଳୀ ଓଢଣା ଭିତରୁ ଚମକି ଉଠିଲା । ସମସ୍ତେ ପରସ୍ପର ଆଡକୁ କେବଳ ଅନାଅନି ହେଲେ । ହେମ ମଧ୍ୟ କିଛିକ୍ଷଣ ଅବାକ୍ ହୋଇ ରହିଗଲା । ବର ଟିକିଏ ମୁଚୁକେଇ ମୁଚୁକେଇ ହସି ମୁହଁକୁ ତଳକୁ ପୋତି ଦେବାରୁ ହେମ ମନରେ ଆଉ ସନ୍ଦେହ ରହିଲା ନାହିଁ । ଯାହା ସହିତ ସେମାନେ ପ୍ରାୟ ଦେଢ଼ଦିନ କାଳ ଏକ ରେଳ କାମରାରେ କଟାଇ ଆସି ଅଛନ୍ତି, ତା' ବିଷୟରେ କଣ ଏତେ ଭ୍ରମ ହୋଇପାରେ !

ପ୍ରଥମ ବିସ୍ମୟଟା କଟିଗଲା ପରେ ହେମ ମନରେ ଟିକିଏ ଆନନ୍ଦ ହେଲା । ସେ ଏ ସୁଯୋଗ ଛାଡ଼ି ନପାରି କହିଲା, "ଏ ତ ଅଚ୍ଛା ଭଲ ଲୋକ । ଗୁପ୍ତ-ବେଶରେ ଭଦ୍ରଲୋକ ଘରର ବୋହୂ ଝିଅଙ୍କ ସଙ୍ଗେ କଥାବାର୍ତ୍ତା କରି, ଶେଷରେ କଣ ନା ଆସି ଅବରଣୀୟା ରଜା ପରି ବେଦିରେ ବସିଗଲେ । ମୁଁ ସବୁ ସମସ୍ତଙ୍କୁ କହୁଛି, ଏ ବାହାଘର ଠିକ୍ ହେଲା ନାହିଁ । ଏହା ଭିତରେ ଏତେ କୁଟ କପଟ ଥିଲା ବୋଲି କିଏ ଜାଣିଥିଲା ? ନ ହେଲେ ଜାଣି ଶୁଣି କିଏ ଗୋଟାଏ ପଶ୍ଚିମା ଚପରାଶି ସଙ୍ଗେ ଆମର ଏପରି ଝିଅକୁ ବିଭା ଦେଇଥାନ୍ତା ? ଯେଉଁ ଲୋକ ଘଡ଼ି ଘଡ଼ି ବହୁରୂପୀ ପରି ବେଶ ବଦଳାଇ ଲୋକଙ୍କୁ ଠକାଏ ତାଠାରେ ବା ବିଶ୍ୱାସ କଣ ? ପଶ୍ଚିମରୁ ଏତେ ବାଟ ଏହି ଚାକିରି ପାଇବାଲାଗି ଆସିଥିଲେ ସବୁ ? ହଉ ତେବେ

ଆମେ ସମସ୍ତେ ଆଶୀର୍ବାଦ କରୁଛୁ, ତେମେ ଚିରକାଳ ଆମ ମାଳୀଙ୍କର କଣ୍ଠାଭୂଷଣ ହୋଇଥାଅ ।"

ବର ଟିକିଏ ହସି ହସି କହିଲା, "କାହିଁ ? ଏ ପର୍ଯ୍ୟନ୍ତ ଖାଇଦାଣୀଙ୍କଠାରୁ ତ ପରୁଆନା ଖଣ୍ଡି ମିଳିଲା ନାହିଁ । ନହେଲେ ପୁଣି ଅନ୍ୟ ସ୍ଥାନରେ ଚେଷ୍ଟା କରିବାକୁ ହେବ ତ ।"

ବର ମୁହଁରୁ କଥା ଶେଷ ନ ହେଉଣୁ କିଏ ଗୋଟିଏ ଆସି "ହେଇଟି ନିଅ ପରୁଆନା" କହି ବରର ପୃଷ୍ଠଦେଶରେ ଗୋଟିଏ ସୁମିଷ୍ଟ ବିଡ଼ଶପଲଥା ବିଧା ବସାଇ ଦେଲା ଏବଂ ସାଙ୍ଗେ ସାଙ୍ଗେ ହାସ୍ୟର କଲ୍ଲୋଳରେ ଘରଟି ଉଚ୍ଛୁଳି ଉଠିଲା ।

ବିବାହ କାର୍ଯ୍ୟ ଶେଷ ହୋଇଯିବା ପରେ ହେମ ମାଳୀକୁ କହିଲା, "କଳି-କାଳଥା ଝିଅଙ୍କୁ ଆଉ ବିଶ୍ୱାସ ନାହିଁ ପରା । ମୁଁ ସେଦିନୁ ଜାଣେ ଯେ ସ୍ୱା ଭିତରେ ଗୋଟାଏ କିଛି ଗୁଣ ଅଛି । ଆଖିରେ ଆଖିରେ ତମର ଏତେ କଥାବାର୍ତ୍ତା ହୋଇଗଲା, ମୋତେ ଟିକିଏ ଜଣେଇଥିଲେ ମୁଁ କଣ ତମ ବରକୁ କୁଆଡ଼େ ନେଇ ପଳାଉଥିଲି ? ଦମୟନ୍ତୀ ପରି ତେମେ କପରି ତମର ଛଦ୍ମବେଶୀ ନଳକୁ ବରଣ କରି ନେଲ, ମୋତେ ପରା ସେଇଟା ଆଚମ୍ବିତ ଲାଗୁଛି !"

× × ×

କଥାଟା ଗୁଡ଼ାଆଡ଼େ ଗସ୍ତ ହୋଇଯିବା ପରେ ବିନୋଦ ଆସି ଲକ୍ଷ୍ମୀଧରକୁ କହିଲା, "କି ହେ ଲଛମନ ଜି ! ଏଡ଼ିଥିଲାଗି ପକ୍ଷରେ ଏତେ ସ୍ୱାଧୀନତାର ଢେଉ ଖେଳି ଯାଉଥିଲା ନା ? କାହାରିକୁ ପରା ଧରି ଛୁଆଁ ଦେଉ ନଥିଲ; ଶେଷରେ କଣ ନାଁ ନକେ ଯାଇ ରୁଜ ତାନ ହୋଇ ଫାଶରେ ବେକଟି ଗଳାଇ ଦେଲ ? ମୁଁ ଜାଣେ, ଯେ ସ୍ରୋତରେ ଦମ୍ଭ ଅଭିମାନ ତୃଣ ପରି କୁଆଡ଼େ ଭାସିଯିବ । ଭାଗୀରଥୀ ତରଙ୍ଗରେ କେତେ ଐରାବତ ଭାସି ଯାଇଛନ୍ତି, ଦର୍ଶନ ବିଜ୍ଞାନର ବାଲିବନ୍ଧ କି ସେଠାରେ ସମ୍ଭାଳା ପଡ଼େ ?"

ଲକ୍ଷ୍ମୀଧର କହିଲା, "ଭାଇ, ମୋର ଏଥିରେ କଣ ଅଛି ? ବିଧିର ନିର୍ବନ୍ଧ ନିକଟରେ ମନୁଷ୍ୟ କ ଛାର !"

—— —— ——

# ବିଡ଼ମ୍ବନା

ସେତେବେଳେ ମୋର ବୟସ ୨୧ ବର୍ଷ । ଏଫ୍. ଏ. ପାଶ କରି ନୂତନ ଥାର୍ଡ ଇୟରରେ ଯୋଗ ଦେଇଅଛି । ମାୟାଧର ମଧ୍ୟ ସେ ବର୍ଷ କଠିନ ରୋଗାକ୍ରାନ୍ତ ହୋଇ ପରୀକ୍ଷା ଦେଇପାରି ନ ଥିବାରୁ ଆମ୍ଭେମାନେ ଏକ ଶ୍ରେଣୀରେ ଅଧ୍ୟୟନ କରୁଅଛୁ । ଆମ୍ଭ ଗ୍ରାମର ସମସ୍ତ ନରନାରୀଙ୍କର ଅଧିବାସୀଙ୍କ ମଧ୍ୟରେ ଗୋବରଗଦାରେ ପଦ୍ମ ଫୁଟିଲା ପରି କେବଳ ମୁଁ ଓ ମାୟାଧର । କଲେଜରେ ପ୍ରବେଶ ଲଭ କଲା ଦିନଠାରୁ ଆମ୍ଭେମାନେ ନାନାବିଧ ଦେଶହିତକର ଓ ଲୋକହିତକର କାର୍ଯ୍ୟରେ ଯୋଗଦାନ କରୁଅଛୁ । ସ୍ତ୍ରୀ ଶିକ୍ଷା, ବିଧବା ବିବାହ, ବାଲ୍ୟବିବାହ, ପୌତ୍ତଳିକତା ପ୍ରଭୃତି ବିଷୟରେ ନାନା ପ୍ରକାର ଗର୍ଜନ ତର୍ଜନ, ଆନ୍ଦୋଳନ-ଅସ୍ଫାଳନ ହୋଇ ଯାଇଅଛି । ସମାଜ ଓ ଦେଶର ଯାବତୀୟ ଅଭାବ, ଅସୁବିଧା ଦୂର କରିବା ଲାଗି ଆମ୍ଭେମାନେ ନିଜକୁ ସମ୍ପୂର୍ଣ୍ଣ ଦାୟୀ ମନେ କରିଅଛୁଁ ଏବଂ ସେଥିଲାଗି ଦୃଢ଼-ପ୍ରତିଜ୍ଞ ହୋଇଅଛୁଁ । ଦେଶର ସର୍ବପ୍ରକାର କୁସଂସ୍କାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାରେ ମୁଁ ଓ ମାୟାଧର ଧୂରନ୍ଧର । ଆମ୍ଭମାନଙ୍କ ଆବିର୍ଭାବରେ ଖୋର୍ଧା ଅଞ୍ଚଳରେ ଗୋଟାଏ ଚହଳ ପଡ଼ି ଯାଇଅଛି । ଆମ୍ଭମାନଙ୍କର ଶିରବ୍ୟ କେତେ ଜଣଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟମାନେ ବିସ୍ମୟବିସ୍ଫାରିତ ନେତ୍ରରେ ଆମ୍ଭମାନଙ୍କ କାର୍ଯ୍ୟାବଳୀ ଦେଖୁ ଅଛନ୍ତି ଏବଂ ତାହାର ଆଲୋଚନା କରୁଅଛନ୍ତି ।

ଏପରି ସମୟରେ ମୋର ହଠାତ୍ ଏକ ଦାରୁଣ ଆତ୍ମ-ପରୀକ୍ଷା ଆସି ଉପସ୍ଥିତ । ଆମ ମେସ୍‌ରେ ପ୍ରତିଦିନ ସନ୍ଧ୍ୟାବେଳେ ଗୋଟିଏ ଗ୍ରେଟ ମଜଲିସ୍ ବୈଠକ ହୁଏ । ଆମ ଦଳର ପ୍ରାୟ ସମସ୍ତେ ସେଠାକୁ ଆସନ୍ତି ଏବଂ ସେଠାରେ ଚୁରୁଟ୍ ଧୂଆଁ ସହିତ ରାଜନୀତି, ସମାଜନୀତିଠାରୁ ଆରମ୍ଭ କରି ଗ୍ରେଟ ବଡ କୌଣସି ଆଲୋଚନା ବାଦ୍ ପଡ଼େ ନାହିଁ । ସେଦିନ ଆମର ଏହି ପ୍ରାତ୍ୟହିକ ସଭାଟିର ଅଧିବେଶନ ବେଶ୍ ଉତ୍ସାହ ଓ ଆଡମ୍ବରରେ ଚାଲିଛି । ସନ୍ଧ୍ୟା ପରେ ମେଘାଡମ୍ବର ହୋଇ ବୃଷ୍ଟି ହେବାରୁ ବାହାରର 'ପଲ୍'ମାନେ କେହି ବସାକୁ ଫେରିଯାଇ ପାରି ନାହାନ୍ତି । ତେଣୁ ଅନ୍ୟାନ୍ୟ ଦିନ ଅପେକ୍ଷା ଆଜି ଟିକିଏ କାର୍ଯ୍ୟର ଘଟାଟା ବେଶି । ପିଆଲକୁ ପିଆଲ ଚା ପରିବେଷଣ କରାହେଉଅଛି ଏବଂ ସିଗାରେଟ୍ ଧୂଆଁରେ ଘରଟି କୁହେଳିକାଚ୍ଛନ୍ନ ହୋଇ ଯାଇଅଛି । ପ୍ରଥମେ କିଛି ସମୟ ସଙ୍ଗୀତ ଚର୍ଚ୍ଚା ହେଲା ପରେ ବର୍ତ୍ତମାନ ନାନାବିଧ ଯୁକ୍ତିତର୍କରେ ବୈଠକଟି ବେଶ୍ ସରଗରମ ହୋଇ ଉଠିଛି । ସମସ୍ତଙ୍କ ହୃଦୟ ଉତ୍ତେଜନାପୂର୍ଣ୍ଣ ଏବଂ ବଦନମଣ୍ଡଳ ଦୀପ୍ତିବ୍ୟଞ୍ଜକ । ନାନା କଥା ପରେ ମାୟାଧର କହିଲା, "ଆମ୍ଭେମାନେ କେବଳ ବଡ଼ ବଡ କଥା ନେଇ ମାତିଲେଣି ଏବଂ ସେଥିରେ

ମଧ୍ୟ କଳ୍ପନା ଜଳ୍ପନା ମାତ୍ର ସାର ହେଉଅଛି । କିନ୍ତୁ କେତେଗୁଡ଼ିଏ କ୍ଷୁଦ୍ର ଅଥଚ ଅତ୍ୟାବଶ୍ୟକ ବିଷୟ ଯେ ଆମ୍ଭମାନଙ୍କ ଚକ୍ଷୁର ଅନ୍ତରାଳରେ ରହି ଯାଉଅଛି ସେ ଆଡ଼କୁ କାହାର ଦୃଷ୍ଟି ନାହିଁ ।" ଆମ୍ଭମାନଙ୍କ ମଧ୍ୟରୁ ଜଣେ କହିଲା, "କେଉଁ ବିଷୟ କଥା କହୁଛ ?"

ମାଷ୍ଟ୍ରା—ଏପରି କେତେ ବିଷୟ ଅଛି, ଯାହା ଅନ୍ୟ କାହାରି ଅପେକ୍ଷା ଆମ୍ଭମାନଙ୍କ ଦ୍ୱାରା ସୁଚାରୁରୂପେ ସମ୍ପନ୍ନ ହୋଇ ପାରିବ ଏବଂ ସେଉଁ ବିଷୟରେ ଆମ୍ଭେମାନେ ଯତ୍ନବାନ୍ ନ ହେଲେ ତାହା ସମ୍ପନ୍ନ ହେବା ଏକପ୍ରକାର ଅସମ୍ଭବ ।

ଗୋପାଳ କହିଲା—କଥାଟା କଣ ଖୋଲି କହୁ ନାହଁ କାହିଁକି ?

ମାଷ୍ଟ୍ରା—ଏଇ ଯେ ବଙ୍ଗଦେଶ ପରି ଆମ ଦେଶରେ ବରଶୁଳ୍କ ପ୍ରଥା କ୍ରମେ କ୍ରମେ ବିସ୍ତାର ଲାଭ କରୁଛି, ଏହାର ଉପାୟ କଣ କରୁଛ ? ଏହାଦ୍ୱାରା ଯେ କି ଅକଲ୍ୟାଣ ସାଧିତ ହେଉଛି, ଟିକିଏ ସୂକ୍ଷ୍ମ ଦୃଷ୍ଟିରେ ନ ଦେଖିଲେ ସହଜରେ ବୁଝାଯିବ ନାହିଁ । ଆଜି କାଲି ଯେ ପାଞ୍ଚ ଅକ୍ଷର ପଢ଼ିଲା, ସେ ବିବାହ ସମୟରେ ନିଜର ବିଦ୍ୟା ଅନୁପାତରେ ଟଙ୍କା ଓ ଯୌତୁକର ଅଯଥା ଦାବି କରି ବସିଲା । ବରଂ ଯେଉଁମାନେ ଯେତିକି ଉଚ୍ଚଶିକ୍ଷିତ, ସେମାନଙ୍କ ମଧ୍ୟରେ ଏ ବ୍ୟାଧି ସେହି ପରିମାଣରେ ପ୍ରବଳତର । କନ୍ୟାକର୍ତ୍ତାଙ୍କ ପକ୍ଷରେ ଏହା ଯେ କି ଗମ୍ଭୀର ଚିନ୍ତାର ବିଷୟ, ତାହା ଭୁକ୍ତଭୋଗୀ ନ ହେଲେ ବୁଝିବା କଠିନ । ଯାହାର ଘରେ ପାଞ୍ଚୋଟି କନ୍ୟା ଅବିବାହିତା ତାହାର ତ ଦୁର୍ଗତିର ସୀମା ନାହିଁ । ଧନୀ ଲୋକଙ୍କର ତ ଏଥିରେ ସର୍ବସ୍ୱାନ୍ତ ହୋଇଯିବାର କଥା; ଦରିଦ୍ର ଲୋକର କଥା ବା କଣ କହିବା ! ଏଥିରେ ପିତା ଯେ ଗୋଟିଏ ଗୋଟିଏ କନ୍ୟାକୁ ଗୋଟିଏ ଗୋଟିଏ ଦାରୁଣ ଅଭିସମ୍ପାତର ଫଳ ବୋଲି ମନେ କରିବେ, ସେଥିରେ ବୈଚିତ୍ର୍ୟ କଣ ? ଏଥିଲାଗି ଶିକ୍ଷିତ ଯୁବକ ସମ୍ପ୍ରଦାୟ ସମ୍ପୂର୍ଣ୍ଣ ଦାୟୀ ଏବଂ ଯଦି ସେମାନଙ୍କର ସମାଜପ୍ରତି କିଛି କର୍ତ୍ତବ୍ୟ ଥାଏ, ତେବେ ଏ ବିଷ-ବୃକ୍ଷକୁ ସମୂଳେ ଉତ୍ପାଟନ କରିବା ଅପେକ୍ଷା ବୋଧହୁଏ ଆଉ କିଛି ପବିତ୍ରତର କର୍ତ୍ତବ୍ୟ ନାହିଁ ।

ମୁଁ କହିଲି ବାସ୍ତବିକ ଏ କୁପ୍ରଥା ଯେ କିପରି ଏତେ ଶୀଘ୍ର ଆମ ଦେଶରେ ବ୍ୟାପ୍ତ ହୋଇ ପଡ଼ିଲା, ବଡ଼ ଆଶ୍ଚର୍ଯ୍ୟର କଥା ! ଏତେବେଳେ ସୁଦ୍ଧା ବେଳ ଅଛି, ଦୃଢ଼ ଭାବରେ କାର୍ଯ୍ୟ ଆରମ୍ଭ କଲେ ଯଥେଷ୍ଟ ଫଳ ହେବାର ଆଶା ।

ମାଷ୍ଟ୍ରା—ଆରମ୍ଭ କରିବ କିଏ ? ସମସ୍ତେ ନିଜ ନିଜ ସ୍ୱାର୍ଥ ସେନ ବ୍ୟସ୍ତ !

"ଅଖଣ୍ଡମଣ୍ଡଳାକାର"କୁ ଏପରି କରତଳ-ଆମଳକ-ବତ୍ ଲାଭ କଲେ କେତେ ଜଣ ପ୍ରତ୍ୟାଖ୍ୟାନ କରି ପାରନ୍ତି ?

ମୁଁ ଟିକିଏ ଉତ୍ତେଜିତ ସ୍ୱରରେ କହିଲି—ସ୍ୱାର୍ଥ କଣ ଏତେଦୂର ମନୁଷ୍ୟର ବିବେକ ଲୋପ କରି ଦେଇ ପାରେ ! ଏହି ସାମାନ୍ୟ ପ୍ରଲୋଭନ ଯଦି ଆମ୍ଭେମାନେ ଦମନ କରି ନ ପାରିବା, ତେବେ ବୃଥା ଦେଶର ଦୋହି ଦେଇ ସ୍ୱାର୍ଥତ୍ୟାଗର ଦୁନ୍ଦୁଭି ବଜାଇବାର ଆବଶ୍ୟକତା କଣ ? ମୋ କଥା ମୁଁ କହୁଛି, ମୁଁ କେବେହେଁ ଏ ନୀଚ କଳଙ୍କରେ ନିଜକୁ କଳଙ୍କିତ କରିବି ନାହିଁ, ଏ ମୋର ଦୃଢ଼ ପ୍ରତିଜ୍ଞା; ବରଂ କୌଣସି ଦରିଦ୍ର କନ୍ୟାକର୍ତ୍ତାଙ୍କର ଦୁଃଖାପନୋଦନ କରି ପାରିଲେ ନିଜକୁ କୃତାର୍ଥ ମନେ କରିବି ।

ଗୋପାଳ—ପ୍ରକୃତରେ ପ୍ରତ୍ୟେକ ଶିକ୍ଷିତ ଯୁବକ ଏହିପରି ସଂକଳ୍ପ କରି ଏହାର ମୂଳ ନ ମାରିଲେ ଶେଷରେ ଏହାକୁ ଦମନ କରିବା ଦୁଃସାଧ୍ୟ ହୋଇ ଉଠିବ ଏବଂ ଘରେ ଘରେ ଏହାର ବିଷମୟ ଫଳ ଦେଖାଦେବ ।

ମାଷ୍ଟ୍ରା—ଦେଖା ଦେଲଣି ନା ଦେବ ? ଏଇ ତ, ଗୋପୀନାଥପୁରର ଜଣେ କରଣ ଭଦ୍ରଲୋକଙ୍କର ଗୋଟିଏ ସପ୍ତଦଶ-ବର୍ଷୀୟା କନ୍ୟା କେବଳ ଏହି କାରଣରୁ ଅନୂଢ଼ା ରହିଅଛି । ଦୁଇବର୍ଷ କାଳ ନାନା ସ୍ଥାନରେ ଅନୁସନ୍ଧାନ କରି କରି ଏପର୍ଯ୍ୟନ୍ତ ସୁଦ୍ଧା ବରଟିଏ ଯୋଗାଡ଼ ହୋଇପାରିଲା ନାହିଁ । ସେମାନେ ବେଶ୍ କୁଳୀନ ଏବଂ ଘରଟା ମଧ୍ୟ ବଡ଼ ଖାନ୍‌ଦାନ୍ ଥିଲା । କନ୍ୟାର ପିତାଙ୍କ ମୃତ୍ୟୁ ପରେ ଯାହା କିଛି ପୈତୃକ ସମ୍ପତ୍ତି ଥିଲା, ତାହା ମଧ୍ୟ ଉପଯୁକ୍ତ ତତ୍ତ୍ୱାବଧାନ ଅଭାବରୁ ଅସ୍ତବ୍ୟସ୍ତ ହୋଇ ପଡ଼ିଛି । ମାତାଙ୍କର ଏକାନ୍ତ ଇଚ୍ଛା ଯେ, କନ୍ୟାଟି ଯେପରି ଗୋଟିଏ ଶିକ୍ଷିତ ପାତ୍ର ହାତରେ ପଡ଼େ । ଏକମାତ୍ର ସନ୍ତାନ ଥିବାରୁ ସେ ପିତା-ମାତାଙ୍କର ବହୁ ସ୍ନେହଯତ୍ନରେ ପାଳିତା ହୋଇଥିଲା । ତାହା ଛଡ଼ା, ପିଲାଟି ଯେପରି ଶିକ୍ଷିତା ସେଥିରେ କେଉଁ ପାଷାଣ ହୃଦୟ ତାକୁ ଗୋଟାଏ କାଣ୍ଡଜ୍ଞାନଶୂନ୍ୟ ମୂର୍ଖ ହାତରେ ଅର୍ପଣ କରି ନିଶ୍ଚିନ୍ତ ରହିବ ? କିନ୍ତୁ ଉପାୟ କଣ ? ଯାହା ପାଖକୁ ଗଲେ ସେହି ଏକ କଥା—"ଦେବା ନେବା କଥାଟା ଛିଡ଼ାଅ ।" କିନ୍ତୁ ବର୍ତ୍ତମାନ ତାଙ୍କ ଘରର ଯେପରି ଅବସ୍ଥା, ସେଥିରେ କୌଣସିମତେ କାର୍ଯ୍ୟଟି ଉଠାଇବା ଦୁଷ୍କର । ପିଲାଟିର ଦୋଷ ମଧ୍ୟରେ ଟିକିଏ ଶ୍ୟାମଳବର୍ଣ୍ଣ, ନ ହେଲେ ଏପରି ଗୁଣବତୀ ପତ୍ନୀଲାଭ ଖୁବ୍ କମ ଲୋକଙ୍କ ଭାଗ୍ୟରେ ଘଟିଥାଏ । କିନ୍ତୁ ସମାଜ ଦୋଷରୁ ତାକୁ ଏପରି ନିର୍ଯ୍ୟାତନ ଭୋଗ କରିବାକୁ ପଡ଼ୁଛି । ସେ ଦିନ

ତାଙ୍କ ମାତା ଗୋଟିଏ ପାତ୍ର ଅନୁସନ୍ଧାନ କରିବାକୁ ମୋତେ ଯେପରି ଅଶ୍ରୁପୂର୍ଣ୍ଣ ଲୋଚନରେ ଆକୁଳ ଭାବରେ କହିଲେ, ସେଥିରେ ମୋର କଠୋର ହୃଦୟ ମୁଦ୍ଧା ଦ୍ରବୀଭୂତ ହୋଇଗଲା । ମୋର ବିବାହ ହୋଇ ନ ଥିଲେ, ସେହି ମୁହୂର୍ତ୍ତରେ ସମସ୍ତ ବିଷୟ ସ୍ଥିର ହୋଇ ଯାଇଥାନ୍ତା ।

ମାଧ୍ୟାଧରର କରୁଣ କାହାଣୀ ଶୁଣି ମୋର ନେତ୍ର ବାଷ୍ପାକୁଳ ହୋଇ ଆସିଲା । ସେ ପର୍ଯ୍ୟନ୍ତ 'ହୋହା'ର ଧୂଆଁ ମୋ ମସ୍ତିଷ୍କରେ ପୂର୍ଣ୍ଣମାତ୍ରାରେ ବର୍ତ୍ତମାନ । ବିଶେଷତଃ ନାନା ଯୁକ୍ତିତର୍କରେ ହୃଦୟ ମନ ତୀବ୍ର ଉତ୍ତେଜନାରେ ପୂର୍ଣ୍ଣ । ସୁତରାଂ ମୁଁ ଏ ପ୍ରଲୋଭନ ସମ୍ବରଣ କରି ନ ପାରି କହିଲି, "ସେମାନଙ୍କର ଯଦି କିଛି ଆପତ୍ତି ନ ଥାଏ, ତେବେ ମୁଁ ଏ ବିବାହ ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ ।" ମୋର ହୃଦୟ ଆବେଗରେ ପୂର୍ଣ୍ଣ ହୋଇ ଆସିଲା । ମୁଁ ଆଉ କିଛି କହି ନ ପାରି ନୀରବ ରହିଲି । ମୋ କଥା ଶୁଣି କ୍ଷଣକାଳ ସମସ୍ତେ ନୀରବ ହୋଇଗଲେ । ଶେଷରେ ନୀରବତା ଭଙ୍ଗ କରି ମାଧ୍ୟାଧର କମ୍ପିତ କଣ୍ଠରେ କହିଲା, "ଭାଇ ବସନ୍ତ, ଏ ପୌରୁଷପୂର୍ଣ୍ଣ ବାକ୍ୟ ତୁମ୍ଭର ସମ୍ପୂର୍ଣ୍ଣ ଉପଯୁକ୍ତ । କିନ୍ତୁ କଥାର ଗୁରୁତ୍ୱ ତୁମ୍ଭେ ଭଲ କରି ଉପଲବ୍‌ଧି କରି ପାରି ନାହଁ । ନ ହେଲେ ଏପରି ଗୁରୁତ୍ୱ କାର୍ଯ୍ୟର ମୀମାଂସା ଏତେ ଶୀଘ୍ର କରି ନ ଥାନ୍ତ । ତୁମ୍ଭେ ଜଣେ ଦେଶମାନ୍ୟ ଜମିଦାରଙ୍କର ଏକମାତ୍ର ଉତ୍ତରାଧିକାରୀ । ପୁଣି ଜଣେ ରେଭେନ୍‌ସା କଲେଜର ଗୋଟିଏ ଉଜ୍ଜ୍ୱଳ ରତ୍ନ । କେତେ ଓ଼ଜଲ ଜମିଦାର ତୁମ୍ଭକୁ ଜାମାତାରୂପେ ଲାଭ କରିବାକୁ ଲାଳାୟିତ । ବିଶେଷତଃ ତୁମ୍ଭ ପିତାଙ୍କର ମତାମତ ତୁମ୍ଭେ ଭଲ କରି ଜାଣ । ଏପରି ସ୍ଥଳରେ ଏପରି ଅସମ୍ଭବ କାର୍ଯ୍ୟରେ ହସ୍ତକ୍ଷେପ କରିବା ତୁମ୍ଭର ଅନୁଚିତ । ତାହା ଛଡ଼ା ଏପରି ସାମୟିକ ଉତ୍ତେଜନାର ମଧ୍ୟ ବିଭ୍ରମ ଅଛି । କିଛିକ୍ଷଣ ପରେ ତୁମ୍ଭେ ନିଜେ ଏ ପ୍ରସ୍ତାବର ଅସାରତା ଭଲ କରି ବୁଝିପାରିବ ।"

ଗୋପାଳ—ଠିକ୍ କଥା କହୁଛ, ଆମ୍ଭମାନଙ୍କ କଥା ଟିକିଏ ଅଲଗା, କିନ୍ତୁ ବସନ୍ତ ପକ୍ଷରେ ଏ କାର୍ଯ୍ୟ ଏକ ପ୍ରକାର ଅସମ୍ଭବ କହିଲେ ଚଳେ ।

"ଥାଉ ସେ କଥା, ଯାହା ହେବାର ପରେ ହେବ, ଏହି କଥା କହି ମୁଁ ସେ ଘରୁ ବାହାରି ଆସିଲି ।

ସେହିଦିନ ସକାଳେ ସଭା-ଭଙ୍ଗ ହେଲା ।

ମୋର ଏ "ସମ୍ବନ୍ଧ" କଥା କ୍ରମେ ପିତାଙ୍କ କାନକୁ ଗଲା । ସେ ଏ କଥା ଶୁଣି ହସି ଉଡ଼ାଇ ଦେଲେ ଏବଂ ଆଜିକାଲିକା ଇଂରାଜୀ ପାଠୁଆ ପିଲାଙ୍କ ଅଦ୍ଭୁତ ଖିଆଲ ବିଷୟରେ ପଦେଅଧେ ସମାଲୋଚନା କରିବାକୁ ମଧ୍ୟ ଚାହିଁଲେ ନାହିଁ । ଯାହା ହେତୁ ଏ କଥାକୁ ସେ ଆଦୌ ବିବେଚନାର ଯୋଗ୍ୟ ବୋଲି ମନେ କଲେ ନାହିଁ । ମୁଁ ଏହା ଶୁଣି ବଡ଼ ମର୍ମାହତ ହେଲି, କିନ୍ତୁ ହତାଶ ହେଲି ନାହିଁ । ଯେତିକି ବାଧା-ବିଘ୍ନ ସମ୍ମୁଖରେ ଉପସ୍ଥିତ ହେଉଥାଏ, ସେତିକି ମୋର ସଙ୍କଳ୍ପ କ୍ରମେ ଦୃଢ଼ତର ହେଉଥାଏ । କାର୍ଯ୍ୟସିଦ୍ଧିର ନାନା କୌଶଳ ଉଦ୍ଭାବନ କରିବାକୁ ଲାଗିଲି, କିନ୍ତୁ କୌଣସିଟି ତେତେ ଫଳପ୍ରଦ ବୋଲି ବୋଧ ହେଲା ନାହିଁ । ଏହି କଥାହିଁ ମୋର ପ୍ରଧାନ ଚିନ୍ତାର ବିଷୟ ହୋଇ ଉଠିଲା । କ୍ରମେ ପଢ଼ାଶୁଣା ପ୍ରତି ବିରାଗ ଜନ୍ମିବାକୁ ଆରମ୍ଭ ହେଲା । ଏହିପରି ନାନା ଚିନ୍ତା କଳ୍ପନାରେ କିଛି ଦିନ ଚାଲିଗଲା । ଦିନେ ହଠାତ୍ ପିତାଙ୍କର କଠିନ ପୀଡ଼ାର ସମ୍ବାଦ ପାଇ ମୁଁ ଘରକୁ ଚାଲିଗଲି । ଅନେକ ଡାକ୍ତର କବିରାଜ ଲାଗି ଚିକିତ୍ସା କଲେ, କିନ୍ତୁ ନିୟତିର ଆଦେଶ କେହି ବଦଳାଇ ପାରିଲେ ନାହିଁ । ମୋର ପହଞ୍ଚିବାର ତିନିଦିନ ପରେ ପିତା ଆମ୍ଭମାନଙ୍କ ହୃଦୟରେ ନିଦାରୁଣ ଆଘାତ ଦେଇ ସଂସାରବନ୍ଧନ କାଟି ଚାଲିଗଲେ ।

× × × ×

ଏହାପରେ ଅନେକ ଦିନ ଚାଲିଗଲା । ସମୟର ପ୍ରଭାବରେ ଆମ୍ଭମାନଙ୍କର ଶୋକର ବେଗ ଅନେକ ପରିମାଣରେ ମନ୍ଦୀଭୂତ ହୋଇଯାଇଛି । ଦିନେ ମାତା ସାଶ୍ରୁନୟନରେ ମୋର ବିବାହ କଥା ଉତ୍ଥାପନ କଲେ ଏବଂ ମୁଁ ମଧ୍ୟ ସୁଯୋଗ ଦେଖି ମୋର ନିର୍ବାଚିତା ପାତ୍ରୀଙ୍କ କଥା ତାଙ୍କ ଆଗରେ କହିଲି । ବୋଲିବା ବାହୁଲ୍ୟ ଯେ, ସେ ତାଙ୍କର ନୟନର ମଣି, ସଂସାରର ଏକମାତ୍ର ବନ୍ଧନ ମୋତେ ଏପରି ଗରିବ ଘରେ ବିବାହ ଦେବାକୁ ସମ୍ପୂର୍ଣ୍ଣ ଅସମ୍ମତା ହେଲେ । ଏଥିରେ ମୋର ଏକାନ୍ତ ଜିଦ୍ ଦେଖି ସେ ତାଙ୍କର ପ୍ରାଣୋପମ ପୁତ୍ର ମନରେ ଯହିଁରେ କଷ୍ଟ ହେବ, ସେଥିରେ ଆଉ ବେଶି ଜିଗର କଲେ ନାହିଁ । ଶେଷରେ କହିଲେ, "ତେବେ ମୁଁ ଝିଅକୁ ଆଖିରେ ନ ଦେଖିଲେ କେବେଁ ବାହାଘର କରିବ ନାହିଁ ।" ଏ ଅଭିଳାଷ ମଧ୍ୟ ତାଙ୍କର ପୂର୍ଣ୍ଣ ହୋଇ ପାରିଲା ନାହିଁ । ମୁଁ କହିଲି, "ଯେତେବେଳେ ନିଶ୍ଚେ ସେଠାରେଇ କରିବାକୁ ହେବ, ତେବେ ଦେଖିଲେ କଣ ବା ନ ଦେଖିଲେ କଣ ?" ଶେଷରେ ଅବାଧରେ ମୋହର ପ୍ରସ୍ତାବ ଗୃହୀତ ହେଲା ଏବଂ ବିବାହର ଦିବସ ମଧ୍ୟ ସ୍ଥିର ହୋଇଗଲା ।

ମୋର ବହୁକାଳ-ପୋଷିତ ବାଞ୍ଛା ପୂର୍ଣ୍ଣ ହେବାର ଆଶାରେ ହୃଦୟ ଆନନ୍ଦରେ ନାଚ ଉଠିଲା । ଏହି ଥର ଜଗତକୁ ତ୍ୟାଗର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖାଇ ଦେବ । ଦେଶ ପ୍ରତି ମୋହର ଦୃଢ଼ କର୍ତ୍ତବ୍ୟନିଷ୍ଠାରେ ଦେଶବାସୀଙ୍କୁ ସ୍ତମ୍ଭିତ କରିଦେବ । ଏ ନୂତନ ଆଦର୍ଶ ଶିକ୍ଷିତ ସମାଜରେ ଏକ ଗମ୍ଭୀର ଆନ୍ଦୋଳନର ସୂତ୍ରପାତ କରି-ଦେବ । ପ୍ରତ୍ୟେକ କନ୍ୟାକର୍ତ୍ତା ମୋତେ ଶୁଳ୍କ-ଦାନବ-ସଂହାରରୂପୀ ଅବତାର ବୋଲି ଜ୍ଞାନ କରିବେ । ପ୍ରତ୍ୟେକ ସମ୍ବାଦପତ୍ରରେ ମୋର ନାମ ଉଚ୍ଚସ୍ୱରରେ ଘୋଷିତ ହେବ ଏବଂ ଦେଶବାସୀଙ୍କର ଏ ଅଭିନବ-ବିଜୟମାଲ୍ୟ କଣ୍ଠରେ ଧାରଣ କରି ଜୀବନ ସାର୍ଥକ କରିବ । ଏହିପରି ନାନା ସୁଖକଳ୍ପନାରେ ମୋର ହୃଦୟ ପୂର୍ଣ୍ଣ ହୋଇ ଆସିଲା । କ୍ଷଣକାଳ ପାଇଁ ମୁଁ ଜଗତର ଅସ୍ତିତ୍ୱ ବିସ୍ମୃତ ହୋଇଗଲି ।

( ୩ )

ଶୁଭଲଗ୍ନ ଶୁଭକ୍ଷଣରେ ମୋର ବିବାହ ହୋଇଗଲା । ଯେତେବେଳେ ପ୍ରଥମେ ମୋର କନ୍ୟା ଦର୍ଶନର ସୁଯୋଗ ଘଟିଲା, ସେତେବେଳେ ସେ ଭୂମିରେ ଶାୟିତା । କନ୍ୟାର ଆପାଦ ମସ୍ତକ ବସ୍ତ୍ରରେ ଆବୃତ, କେବଳ ଗୋଟିଏ ହସ୍ତ ବାହାରକୁ ଦେଖା ଯାଉଅଛି । ହା ଭଗବାନ ! ମୋ ଅଦୃଷ୍ଟରେ କଣ ଏଇଆ ଲେଖିଥିଲ ? ପାଠକ, କିପରି ବର୍ଣ୍ଣନା କରିବି, ଯେ ବର୍ଣ୍ଣଟା କିପରି ? ଭାଷାର ସେ ଶକ୍ତି ନାହିଁ । ତୁମ୍ଭମାନଙ୍କ ମଧ୍ୟରୁ କେହି ଅବଲୁପ୍ତ କାଠର ମଞ୍ଜି ଦେଖିଛ କି ? ବର୍ଣ୍ଣଟି ଠିକ୍ ସେହିପରି । ଯେପରି ଅମାବାସ୍ୟାର ସମସ୍ତ ଅନ୍ଧକାର ସେଠାରେ ପୁଞ୍ଜୀଭୂତ ହୋଇ-ଅଛି । ମୁଁ ଆଉ ବେଶି କ୍ଷଣ ସେ ଆଡ଼କୁ ଅନାଇ ପାରିଲି ନାହିଁ । ମୋର ମସ୍ତକ ଘୂର୍ଣ୍ଣିତ ହୋଇ ଆସିଲା । ଚନ୍ଦ୍ରାଲୋକ ସ୍ତମ୍ଭିତ ହୋଇଗଲା । କଣ କରିବି, କିଛି ବୁଝି ପାରିଲି ନାହିଁ । ଶେଷରେ କଣ ଭାବି କେଜାଣି ପ୍ରବଳ ବେଗରେ ସେ ଘରୁ ନିଷ୍କ୍ରାନ୍ତ ହୋଇ ପଡ଼ିଲି । ସେତେବେଳେ ରାତ୍ରି ଦ୍ୱିପ୍ରହରରୁ କିଛି ବଳି ଯାଇଅଛି । ନୈଶ ପ୍ରକୃତି ଚନ୍ଦ୍ରାର୍ପିତବତ୍ ସ୍ତବ୍ଧ, ଗମ୍ଭୀର । ଉପରେ ଚନ୍ଦ୍ରଦେବ ନକ୍ଷତ୍ର ମଣ୍ଡଳୀ ମଧ୍ୟରେ ଏକ ବିରାଟ ସଭାର ଆୟୋଜନ କରି ବସିଅଛନ୍ତି । ମୋତେ ଦେଖି ସମସ୍ତେ ଯେପରି ବିଦ୍ରୂପରେ ହସି ହସି ପରସ୍ପର ଉପରକୁ ଢଳି ପଡ଼ିଲେ । ଯେଉଁ ଜ୍ୟୋତ୍ସ୍ନାମୟୀ ରଜନୀର ଅପରୂପ ସୌନ୍ଦର୍ଯ୍ୟ-ବିଳାସରେ ମୁଗ୍ଧହୋଇ ମୁଁ ଆତ୍ମବିସ୍ମୃତ ହୋଇ ପଡ଼ିଥିଲି, ସେ ଆଜି ମୋ ପକ୍ଷରେ ଭବିତବ୍ୟ ପରି ଦୁର୍ବୋଧ, ଗୂଢ଼ ରହସ୍ୟମୟ । ଏପରି ସମୟରେ ଗୋଟାଏ ନିଶାଚର ପକ୍ଷୀ ଯେପରି ମୋତେ ଉପହାସ କରି ମୋ ମୁଣ୍ଡ ଉପର ଦେଇ କେଁ କେଁ ଶବ୍ଦ କରି ଉଡ଼ିଗଲା । ମୁଁ ଆଉ ବେଶି କ୍ଷଣ ସେଠାରେ ରହି ପାରିଲି ନାହିଁ । ମୋର ପଢ଼ିବା ଘର ବାରଣ୍ଡାରେ

ଯାଉଁ ଶୋଇ ପଡ଼ିଲି । ସ୍ୱପ୍ନ କଳ୍ପନା ପୂର୍ବରେ ଯାହାଲାଗି ମୁଁ ପ୍ରାଣ ପର୍ଯ୍ୟନ୍ତ ପଣ କରିଥିଲି, ସେ ଆଜି ମୋ ଜୀବନକୁ ବିଷରେ ଜର୍ଜରିତ କରିଦେଲା । କଳ୍ପନା-ପଟରେ ସଶୋଲପ୍ରାର ତୂଳିକା ଦେଇ ଭବିଷ୍ୟତର କେତେ ସୁଖଚିତ୍ର ଅଙ୍କିଥିଲି; କିନ୍ତୁ ସବୁ କୁଆଡ଼େ ସ୍ୱପ୍ନରାଜ୍ୟ ପରି ଉଭେଇଗଲା । ସାଗରବକ୍ଷରେ ଯେତେବେଳେ ଜୁଆର ଉଠେ, ସେତେବେଳେ ବୋଧହୁଏ ସେ ମନେକରେ, ମୋର ଅସାଧ୍ୟ କିଛି ନାହିଁ, ମୁଁ ମୋର ପ୍ରବଳ ବନ୍ୟାରେ ସମଗ୍ର ଜଗତକୁ ଭସାଇ ଦେବି, ସେତେ-ବେଳେ କୌଣସି ବାଧାବିଘ୍ନ କଥା ମନରେ ଉଦୟ ମୁଦ୍ଧା ହୁଏନାହିଁ । କିନ୍ତୁ କିଛିକ୍ଷଣ ପରେ ଭଟ୍ଟା ଉପସ୍ଥିତ ହେଲା ମାତ୍ରେ ସମସ୍ତ ଦର୍ପ ଚୂର୍ଣ୍ଣ ହୋଇଯାଏ । ସାଗର ନିଜର ଅକ୍ଷମତା ବୁଝିପାରି ଧୀରେ ଧୀରେ ଊର୍ମିରୂପ ହସ୍ତକୁ ଏ ଦୁରୂହ କାର୍ଯ୍ୟରୁ ସଙ୍କୁଚିତ କରି ଆଣେ । ମନୁଷ୍ୟ ହୃଦୟରେ ମଧ୍ୟ ସମୟ ସମୟରେ ଏହିପରି ଜୁଆର ଉଠେ । ସେତେବେଳେ ଆବେଗ ଉତ୍ତେଜନାରେ ହୃଦୟ ପୂର୍ଣ୍ଣ ହୋଇଯାଏ । ସେ ମନେକରେ, ମୋର ଅସାଧ୍ୟ କାର୍ଯ୍ୟ ଜଗତରେ କିଛି ନାହିଁ, ମୁଁ ଯେ କୌଣସି ତ୍ୟାଗ ସ୍ୱୀକାର କରିବାକୁ ସମର୍ଥ, ହୃଦୟର ବଳଦ୍ୱାରା ବାହ୍ୟ ପ୍ରକୃତିକୁ ଦମନ କରିବାକୁ ସକ୍ଷମ । ମନୁଷ୍ୟ ସେତେବେଳେ ସ୍ୱୀୟର ଉଚ୍ଛ୍ୱାସରେ ଚତୁର୍ଦ୍ଦିଗ ପ୍ଳାବିତ କରି ଦେବାକୁ ଇଚ୍ଛା କରେ । ହୃଦୟରୁ ସମସ୍ତ ଦୈନ୍ୟ, ଜଡ଼ତା ଦୂର ହୋଇଯାଏ । କିନ୍ତୁ ଭଟ୍ଟାର ଉପକ୍ରମ ସଙ୍ଗେ ସଙ୍ଗେ ସେ ଉତ୍ତେଜନା ଶୀତଳ ହୋଇ ଆସେ ଏବଂ ମନୁଷ୍ୟ ନିଜର କ୍ଷୀଣ ଶକ୍ତିର ପରିଚୟ ପାଇ ଲଜ୍ଜାରେ ମ୍ରିୟମାଣ ହୋଇ ଭାଙ୍ଗିପଡ଼େ । ମୋର ଅବସ୍ଥା ଠିକ୍ ସେହିପରି ହୋଇ-ଅଛି । ମୁଁ ଏପର୍ଯ୍ୟନ୍ତ ନିଜକୁ ଚିହ୍ନିପାରି ନ ଥିଲି; ଅନ୍ତର୍ନିହିତ ଦୁର୍ବଳତାର ପରିଚୟ ପାଇପାରି ନ ଥିଲି । ଏହିପରି ନାନା ଭାବନା ମନରେ ଉଦିତ ହେବାକୁ ଲାଗିଲା । ତନ୍ଦ୍ରାର ଜଟିଳ ପାଶ କ୍ରମେ ଯେପରି ମୋର ଶ୍ୱାସରୋଧ କରି ଆଣିଲା । ଅନନ୍ତର ବୃଶ୍ଚିକ ଦଂଶନ ଭୁଲିଯିବା ଲାଗି ନିଦ୍ରାଦେବୀଙ୍କର ଶାନ୍ତିମୟ କୋଡ଼ରେ କେତେ ଥର ଆଶ୍ରୟ ଖୋଜିଲି, କିନ୍ତୁ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ପ୍ରଭାତର କିଛି ପୂର୍ବରୁ ଟିକିଏ ନିଦ୍ରା ଆସିଲା । ସେ ପୁଣି ନାନା ଦୁଃସ୍ୱପ୍ନପୂର୍ଣ୍ଣ । ମୁଁ ଯେତେ-ବେଳେ ଶଯ୍ୟା ତ୍ୟାଗ କଲି, ସେତେବେଳେ ପୂର୍ବଦିଗ ଏକ ଗୋଲାପୀ ଆଭାରେ ରଞ୍ଜିତ ହୋଇ ଯାଇଅଛି, ତରୁ ଶାଖାରୁ ପକ୍ଷୀମାନଙ୍କ କଳକଣ୍ଠରେ ଚତୁର୍ଦ୍ଦିଗ ମୁଖରିତ ହୋଇ ଉଠିଅଛି, ପ୍ରଭାତର ଶୀତଳ ସମୀରଣ ଘରେ ଘରେ ପରିମଳ ବିତରଣ କରୁଅଛି ଏବଂ କର୍ମମୟ ଜଗତରେ ଏକ ଅଭିନବ ଆନନ୍ଦ ଓ ଆଶୀର୍ବାଦର ଧାରା ଝରି ପଡ଼ୁଅଛି । କିନ୍ତୁ କାହାରି ସହିତ ମୋର ହୃଦୟର ମେଳ ନାହିଁ । ଏକ ବେସୁରା ରାଗିଣୀରେ ମୋର ଅନ୍ତର ସଙ୍କୁଚିତ ହୋଇ ଉଠୁଅଛି । ଗ୍ରାମର ପଶୁ-ପକ୍ଷୀ, ବୃକ୍ଷ-ଲତା, କାହାରି ମୋ ପ୍ରତି ସହାନୁଭୂତି ନାହିଁ । ସମସ୍ତେ ଯେପରି

ଅପରିଚିତ ପରି ମୋ ଆଡ଼କୁ ଚାହିଁ ଅଛନ୍ତି । ସେଠାରେ ରହିବା ମୋ ପକ୍ଷରେ ଅସହ୍ୟ ହୋଇ ଉଠିଲା । ସେହିଦିନ ୯/୧୫ ଗାଡ଼ିରେ କୌଣସି ଅତ୍ୟାବଶ୍ୟକ କାର୍ଯ୍ୟର ଛଳନା କରି ମୁଁ କଟକ ଯାତ୍ରା କଲି ।

( ୪ )

ଯାହା ମନରେ ଚଳ୍ପାଞ୍ଚଳ ପ୍ରବେଶ କରିଅଛି, ବାହାରର କୌଣସି ବସ୍ତୁ ତାକୁ ଶାନ୍ତି ଦେଇ ନ ପାରେ । ମନେ କରିଥିଲି, ସହରର କର୍ମସ୍ରୋତରେ ରହିଲେ ଅଧ୍ୟୟନ ଓ ବନ୍ଧୁମାନଙ୍କ ସହିତ ଆମୋଦ-ଆଳାପ ଦ୍ୱାରା ଏ ଯନ୍ତ୍ରଣାର ଅବସାନ ହେବ, କିନ୍ତୁ ହୃଦୟର ବହ୍ନିଜ୍ୱାଳାରେ ସମସ୍ତ ବିଷମୟ ହୋଇ ଉଠିଲା । କେତେ ଥର ସଂକଳ୍ପ କଲି, ମାସ୍ୱାଧର ପ୍ରକୃତ କେତେଜଣ ଅନ୍ତରଙ୍ଗ ବନ୍ଧୁଙ୍କ ଆଗରେ ମୋର ଦୁଃଖକାହାଣୀ କହି ହୃଦୟର ଭାର କିଛିଏ ଲଘୁ କରିବି । କିନ୍ତୁ ଦୁର୍ବଳ ମନ ଏଥିରେ ବିରୁଦ୍ଧାଚରଣ କଲା । ମିଥ୍ୟା ଅଭିମାନର ବଶବର୍ତ୍ତୀ ହୋଇ ଏ ହୀନତା ସ୍ୱୀକାର କରିବାକୁ ଆହୁରି କଷ୍ଟକର ମନେ କଲି । ଯେଉଁମାନେ ମୋର ମନର ଦମ୍ଭ ଓ ସାହସ ଦେଖି ବିସ୍ମିତ ହେଉଥିଲେ, ସେମାନେ ମୋର ଏ ଦୁର୍ବଳତା ଦେଖି କଣ ମନେ କରିବେ ? ଯେଉଁମାନେ ମୋହର ବିବାହ କଥା ଶୁଣି ମୋତେ ଜଣେ ତ୍ୟାଗୀ ବୀର ବୋଲି ଭାବୁଥିଲେ, ସେମାନେ ବର୍ତ୍ତମାନ ଭୀରୁ କାପୁରୁଷ ବୋଲି ଘୃଣା କରିବେ, ଏକଥା ମୋର ସହ୍ୟ ହେଲା ନାହିଁ ।

ଏତେବେଳେ ମଧ୍ୟ ଅନେକ ଲୋକ ମୋର ପ୍ରଶଂସା କରନ୍ତି, ମୋର 'ସ୍ୱାର୍ଥତ୍ୟାଗ'ର ସୁଖ୍ୟାତି କରନ୍ତି । ଧିକ୍ ମୋତେ ! ଧିକ୍ ମୋର 'ସ୍ୱାର୍ଥତ୍ୟାଗ'କୁ ! ସେ ପ୍ରଶଂସା ଶୁଣି ମୋର ହୃଦୟରେ ଶେଲବିଦ୍ଧ ହୋଇଯାଏ । ଭିତରର ଏ ଅନ୍ତର୍ଦାହ କଥା ବୁଝିବ କିଏ ? ମୋର ନିଜ ହାତଗଢ଼ା ଦୁର୍ଭାଗ୍ୟର କଥା କାହାକୁ କହିବ ? କଥାରେ ଅଛି, "ଆପ୍ କଥାକୁ ଇଲତ୍ କଥା !"

ମାତାଙ୍କଠାରୁ ପ୍ରାପ୍ତ ପ୍ରତି ୫।୭ ଦିନରେ ପତ୍ର ପାଏଁ । ପ୍ରତି ପତ୍ରର ମର୍ମ ପ୍ରାୟ ଏହିପରି—"କେବେ ଆସିବୁ ? କେବେ ଛୁଟି ହେବ ? ମୋତେ ଏ ବୟସରେ ଆଉ କାହିଁ କଲବଲ, ଛଟପଟ କରି ଘାଣ୍ଟୁଛୁ ? ବିଗୁରିଥିଲି, ତୋ ବାହାଘର ପରେ ତୋ ବୋହୂବାଢ଼ୁ ତୋତେ ସମର୍ପିଦେଇ ମୁଁ କିଛିଏ ନିଶ୍ଚିନ୍ତ ମନରେ ଈଶ୍ୱରଙ୍କ ନାମ ନେବି । କିନ୍ତୁ ତୋ ଢଙ୍ଗ ରଙ୍ଗ ଦେଖି ମୋ ଆଖିରୁ ଲୁହ ଶୁଖିଲା ନାହିଁ । ପରଘରୁ ଝିଅଟା ଆସି ଦିନେ ହେଲେ ସୁଖ ପାଇଲା ନାହିଁ । ସ୍ୱାମୀ ସ୍ତ୍ରୀଲୋକର ସବୁ ।

ସେ ସୁଖ ଯାହା କପାଳେ ନାହିଁ, ମୁଁ ତାକୁ କି ପ୍ରବୋଧ ଦେବ ? ଆଉ ପାଠ ନ ପଢ଼ିଲେ କଣ ହେବ ନାହିଁ ? ତମମାନଙ୍କ ସୁଖରେ ଚଳିବା ଲାଗି ତୋ ବାପା ଯଥେଷ୍ଟ ସମ୍ପତ୍ତି ଯାଇଅଛନ୍ତି । ତାକୁ ଧୋଇ ଶୁଖେଇ ଖାଇଲେ ସରିବ ନାହିଁ । ତାକୁ ଜଗାରଖା ନ କଲେ ବାର ଭୂତ ଖାଇଯିବେ । ମୁଁ ତ ଅଛି ଅଛୁ, କାଲି ନାହିଁ । ମୁଁ ଆଉ ଏ ଜଞ୍ଜାଳରେ କେତେ ଦିନ ଛନ୍ଦି ହୋଇ ଦଗଧନ ହେଉଥିବି ? ମୋ ପାଇଁକି ତୋ ମନରେ କଅଣ ଟିକିଏ ଦୟା ଉପୁଜୁ ନାହିଁ ? ଇତ୍ୟାଦି, ଇତ୍ୟାଦି ।"

ମୁଁ ପ୍ରତି ପତ୍ର ମନୋଯୋଗ କରି ପଢ଼େ । ପ୍ରତି ପତ୍ରରୁ ମାତାଙ୍କର ଅଶାନ୍ତି ଓ ଅସନ୍ତୋଷର ଲକ୍ଷଣ ବୁଝିପାରେଁ, କଳ୍ପନା-କର୍ଣ୍ଣରେ ଗୋଟିଏ ଅନାଥ ବାଳିକାର ନୀରବ ଦୀର୍ଘ ଶ୍ୱାସ ଶୁଣିପାରେଁ, ନିଜକୁ ଏ ସମସ୍ତ ଅନର୍ଥର ମୂଳ ବୋଲି ଶତ ଧିକ୍କାର ଦିଏଁ । କିନ୍ତୁ ଯେତେବେଳେ ସେ ନିର୍ଜନ କକ୍ଷର ସେ କିସ୍ମନଦମୟ ଦୃଶ୍ୟ, ତା ଦଲାକଳ୍ପଲବୋଲା ହସ୍ତ ମନେ ପଡ଼େ, ଯେତେବେଳେ ଭାବେଁ, ସେହି ନବଘନ-ଶ୍ୟାମରୂପିଣୀକୁ ବକ୍ଷରେ ଧାରଣ କରି ସାରା ଜୀବନଟା କଟାଇବାକୁ ହେବ, ସେତେ-ବେଳେ ହୃଦୟ କମ୍ପିତ ହୁଏ, ସମସ୍ତ ବିବେକ ଲୁପ୍ତ ହୋଇଯାଏ । ମାତାଙ୍କ ପତ୍ରର କରୁଣ ଭାଷା ଓ ମାତାଙ୍କ କଦର୍ଥନା ମୁଁ ଭୁଲିଯାଏଁ ।

ସମୟ କାହାକୁ ଅପେକ୍ଷା କରେ ନାହିଁ । ଦୁଃଖରେ ହେଉ ସୁଖରେ ହେଉ, ସମସ୍ତଙ୍କ ସମୟ ଗୁଜୁରି ଯାଏ । ମୋର ଏ ଦୁଃଖମୟ ଜୀବନର ୨।୩ ମାସ ଏହିପରି କଟିଗଲା । ପୂଜାଛୁଟି ଆଉ ଅଳ୍ପ ଦିନ ଅଛି । ଗୃହର ସୁଚ୍ଛବି ମନରେ ଅଙ୍କନ କରି ମୋର ସଙ୍ଗୀମାନଙ୍କ ହୃଦୟ ଆନନ୍ଦରେ ନାଚି ଉଠୁଅଛି । ବିଦେଶର ଶୁଷ୍କ, ନୀରସ ଜୀବନକୁ ଆତ୍ମୀୟ ସ୍ୱଜନମାନଙ୍କ ଆଦର ସ୍ନେହରେ କିଛି ଦିନ ସୁଧାସିକ୍ତ କରି ଆସିବା ଲାଗି ସମସ୍ତେ ବ୍ୟାକୁଳ ହୋଇ ଉଠୁଅଛନ୍ତି । କିନ୍ତୁ ଦୁର୍ଭାଗ୍ୟ ମୁଁ— ମୋର ଆଶ୍ରୟ କେଉଁଠାରେ ? ଛୁଟିରେ ଶୀଘ୍ର ଘରକୁ ଯିବାଲାଗି ମାତାଙ୍କଠାରୁ କେତେଖଣ୍ଡ ପତ୍ର ପାଇଲିଣି । ସେମାନେ ସ୍ତିମିତ ପରି ସତୃଷ୍ଣ ଭାବରେ ମୋତେ ଅନାଇ ବସିଥିବେ । ଦୀର୍ଘ ବିରହ-ଯନ୍ତ୍ରଣା ଏକ ମୁହୂର୍ତ୍ତରେ ଭୁଲିଯିବା ଆଶାରେ ମନକୁ ସାନ୍ତ୍ୱନା ଦେଉଥିବେ । କିନ୍ତୁ ମୁଁ କଣ କରିବି ? ଜାଣିଶୁଣି କିପରି ଅଗ୍ନି-କୁଣ୍ଡରେ ଝାସ ଦେବି ? ଯେଉଁ କଷ୍ଟ ବିଦେଶରେ ଟିକିଏ ସହ୍ୟ ହୋଇ ଆସୁଅଛି, ଘରକୁ ଗଲେ ପୁନର୍ବାର ସେ ସୁପ୍ତସିଂହ ତ ଜାଗ୍ରତ ହୋଇ ଉଠିବ ! ନାଁ, ନାଁ, ବୃଥା କାହିଁକି ନିଜ ପ୍ରକୃତି ବିରୁଦ୍ଧରେ ସଂଗ୍ରାମ କରିବି ?

ପରୀକ୍ଷା ଆଉ ଅଳ୍ପଦିନ ରହିଲା, ଘରକୁ ଗଲେ ଆଦୌ ପଢ଼ାପଢ଼ି ହୋଇ

ପାରବ ନାହିଁ, ଜାଣିଶୁଣି ଗୋଟାଏ ବର୍ଷ ନଷ୍ଟ କରିବାକୁ ହେବ । ଏହାପରେ ନାନା ଛଳନା ଦେଖାଇ ଘରକୁ ଖଣ୍ଡେ ଚିଠି ପକାଇ ଦେଇ ମୁଁ କିଛିକ୍ଷଣ ନିଶ୍ଚିନ୍ତ ରହିଲି ।

କଲେଜ ବନ୍ଦ ହୋଇଗଲା । ନାନା ସୁଖକଳ୍ପନା କରି ଉତ୍‌ଫୁଲ୍ଲ ହୃଦୟରେ ହସି ହସି କିଏ ଷ୍ଟେସନ ପାଖକୁ, କିଏ ଷ୍ଟିମର ପାଖକୁ, କିଏ ନଦୀକୂଳକୁ ଧାବମାନ ହେଲେ । କିନ୍ତୁ ମୁଁ—ନିଷ୍ଠୁର ମୁଁ—ହୃଦୟହୀନ ମୁଁ—ଶୂନ୍ୟ ଦୃଷ୍ଟିରେ ଏ ସମସ୍ତ ଦୃଶ୍ୟ ଦେଖି ଅଟଳ ଅଚଳ ରହିଲି ।

( ୫ )

ଛୁଟିର ପ୍ରାୟ ୧୦।୧୨ ଦିନ ଅତୀତ ହୋଇଗଲାଣି । ଦିନେ ସକାଳେ ଖଣ୍ଡେ ବହି ଧରି ବସି ମୁଁ ଗଭୀର ଚିନ୍ତାମଗ୍ନ । ପୁସ୍ତକର ଚର୍ଚ୍ଚିଣୀୟ ବିଷୟ ଆଡ଼କୁ ମୋର ମନ ନାହିଁ । କେବଳ ବହିକୁ ଏକ ଦୃଷ୍ଟିରେ ଚାହିଁ ମୁଁ ନାନା ବିଷୟ ଭାବୁଛି । ଏପରି ସମୟରେ ଟେଲିଗ୍ରାଫ୍ ପିଅନ ଆସି ହାତରେ ଖଣ୍ଡିଏ ଟେଲିଗ୍ରାମ୍ ଦେଲା । ମୋର ବକ୍ଷସ୍ଥଳ ଧଡ଼ଧଡ଼ ହେବାକୁ ଲାଗିଲା । ମୁଁ କମ୍ପିତ ହସ୍ତରେ ଲଫାଫାଟିଏ ଖୋଲିଲି । ଟେଲିଗ୍ରାମର ମର୍ମ ଏହି—"ସୁଶୀଳା ଶକ୍ତ ବେମାର, ଅବସ୍ଥା ଆଶଙ୍କାପ୍ରଦ, ଶୀଘ୍ର ଆସ ।" କାଗଜଖଣ୍ଡି ଧରି ଅନେକକ୍ଷଣ ଶୂନ୍ୟପ୍ରାଣରେ ଉପରକୁ ଅନାଇ ରହିଲି । ସମସ୍ତ ଚିନ୍ତାସ୍ରୋତ ଯେପରି ହଠାତ୍ ବାଧା ପାଇ ସ୍ଥଗିତ ହୋଇଗଲା । ଅବେ ଭାବିଲି, ମୋଠାରୁ ବଳି ସଂସାରରେ ନିର୍ଦ୍ଦୟ ନିର୍ମମ କିଏ ଅଛି ? ଯାହାକୁ ଏତେ ଶ୍ରଦ୍ଧା ଏତେ ଆଦରରେ କଣ୍ଠରେ ଧାରଣ କରିବ ବୋଲି ତୋଳି ଆଣିଥିଲି, ତାକୁ ଏପରି ନିଷ୍ଠୁର ଭାବରେ ପଦଦଳିତ କରିଦେଲି ! କଳିକାଟି ଭଲ କରି ବିକଶିତ ନ ହେଉଣୁ ଅବେ ରବିକରଣର କୋମଳ ସ୍ପର୍ଶ ଉପଭୋଗ ନ କରୁଣୁ, ଦୁଃଖ-ଝଞ୍ଜାବାତରେ ଅକାଳରେ ଝଡ଼ି ପଡ଼ିଲା ! ଦୁଃଖିନୀ ଶ୍ୱଶ୍ରୂଠାକୁରାଣୀଙ୍କର ବିଦାୟ-କାଳୀନ କରୁଣ ପ୍ରାର୍ଥନା ମନେ ପଡ଼ିଲା—"ବାବା, ମୋର ଦୁଃଖୀଧନକୁ ତମ ହାତରେ ସମର୍ପଣ କରିଦେଲି, ତାର ଯେପରି କିଛି ଅଯତ୍ନ ନ ହୁଏ ।" ଆଉ ବେଶିକ୍ଷଣ ଭାବିପାରିଲି ନାହିଁ ।

ସେହି ଦିନ ୨ଟା ସମୟରେ ଗୃହାଭିମୁଖରେ ଯାତ୍ରା କଲି । ଘରକୁ ଆସି ଦେଖିଲି, ବୈଠକଖାନାରେ ଅନେକ ଲୋକ ଜୁଟିଛନ୍ତି, ସମସ୍ତଙ୍କ ମୁହଁରେ ଗୋଟାଏ ବିଷାଦକାଳିମା ପଡ଼ି ଯାଇଅଛି । ମୁଁ କାହାରିକୁ କିଛି ନ କହି ଏକାବେଳକେ ଖଣ୍ଡା ଭିତରକୁ ପଶିଯାଇ ଦେଖିଲି, ମାତା ରୋଗିଣୀ ପାର୍ଶ୍ୱରେ ବସି ଆକୁଳ ଦୃଷ୍ଟିରେ ଚାହିଁ ରହିଅଛନ୍ତି, ଦାସୀ ପଙ୍ଖା କରୁଅଛି । ମୋତେ ଦେଖି ମାତାଙ୍କର ଶୋକ-ସମୁଦ୍ର ଉଛୁଳି ଉଠିଲା, ସେ ରୋଦନ କରିବାକୁ ଲାଗିଲେ । ମୁଁ ରୋଗିଣୀର ଅବସ୍ଥା

ଦେଖିବା ଲାଗି ଧୀରେ ଧୀରେ ଶଯ୍ୟା ନିକଟକୁ ଗଲି । ସମୀପସ୍ଥ ଦୀପାଲୋକର ଉଜ୍ଜ୍ୱଳ ରଶ୍ମି ରେଖା ରୋଗିଣୀର ମୁଖମଣ୍ଡଳରେ ପଡ଼ୁଅଛି । କିନ୍ତୁ ଏ କିଏ ? ରୋଗିଣୀ ଆଡ଼କୁ ଦୃଷ୍ଟିପାତ କଲାମାତ୍ରେ ମୁଁ ଚମକି ଉଠିଲି । କି ଏକ ଅମୃତଧାରା ସିଞ୍ଚନରେ ମୋର ହୃଦୟର ସମସ୍ତ ଜ୍ୱାଳାଯନ୍ତ୍ରଣା ପ୍ରଶମିତ ହୋଇଗଲା । କୃଷ୍ଣକାନ୍ତରେ ଏପରି ରୂପ ମୁଁ କୌଣସିଠାରେ ଦେଖି ନାହିଁ । ପୀଡ଼ା ହେତୁ ମୁଖ ବିବର୍ଣ୍ଣ ହୋଇ ଯାଇଅଛି ସତ୍ୟ କିନ୍ତୁ କି ସୁଲଳିତ ଦେହ ! କି କମନୀୟତା ! ସୁଣଆଡ଼େ ଯେପରି ଗୋଟିଏ ଲାବଣ୍ୟ ଓ କୋମଳତାର ତରଙ୍ଗ ବହିଯାଉଅଛି । ବିଶେଷତଃ ଚଞ୍ଚଳ ଆକର୍ଣ୍ଣ-ବିସ୍ତୃତ ନୟନଯୁଗଳର ଏପରି ଅପୂର୍ବଶ୍ରୀ ଦେଖିବା ମୋ ପକ୍ଷରେ ଏହାହିଁ ପ୍ରଥମ ।

ମୁଁ ଦାସୀ ହାତରୁ ପଙ୍ଖା ନେଇ ନିଜେ ବ୍ୟଜନ କରିବାକୁ ଲାଗିଲି, ସୁଶୀଳାର ଆରୋଗ୍ୟ ନିମନ୍ତେ ଭଗବାନଙ୍କୁ ଅନ୍ତରର ସହିତ ପ୍ରାର୍ଥନା କଲି । ମୋର ଅନୁତାପବହ୍ନିଧୌତ ହୃଦୟର ଐକାନ୍ତିକ ବ୍ୟାକୁଳ ପ୍ରାର୍ଥନା ବୋଧହୁଏ କୃପାମୟଙ୍କ ଚରଣ ତଳେ ପହଞ୍ଚିଗଲା । ସୁଣଦିନପରେ କ୍ରମେ ସୁଶୀଳାର ଚୈତନ୍ୟ ସଞ୍ଚାର ହେଲା । ସେ ପଦେ ଅଧେ କଥା କହିବାକୁ ସମର୍ଥ ହେଲା । ମାତା ସୁଶୀଳାର ହସ୍ତ ଧାରଣ କରି ସାଶ୍ରୁ ନୟନରେ କହିଲେ, "ମା, ତମକୁ କଥା କହିବାର ଦେଖିବି, ମୋର ଏ ଭରସା ନ ଥିଲା ।" ବର୍ତ୍ତମାନ ସୁଶୀଳାର ସୁନ୍ଦରଶ୍ରୀ କ୍ରମେ ଫେରି ଆସୁଅଛି । ସେ କହିଲା, "ମୋର ଅସାର ଜୀବନରେ କିଛି ଲକ୍ଷ୍ୟ ନାହିଁ । ମୋର ମରଣ ହିଁ ମଙ୍ଗଳ ।" ମାତା ବାଧା ଦେଇ କହିଲେ, "ମା, ସେ କଥା ଆଉ ମୁହଁରେ ଧର ନା ! ଭଗବାନ୍ ଆମ ପ୍ରତି ସଦୟ ହୋଇଅଛନ୍ତି । ଦେଖନ୍ତୁ ପାଞ୍ଚ ଦିନ ହେଲା ବା ଶେଯପାଖରେ ବସି ଦିନରାତି ସେବା କରୁଛି ।" ମୋତେ ସେଠାରେ ଉପସ୍ଥିତ ଦେଖି ମାତା ଏହି କଥା କହି ସଙ୍ଗେ କାର୍ଯ୍ୟାନ୍ତରର ଛଳନା କରି ବାହାରି ଗଲେ । ସୁଶୀଳାର କଥା ଶୁଣି ମୋର ହୃଦୟ ଉଛୁଳି ପଡ଼ିଲା । ମୁଁ ଆଉ ସହ୍ୟ କରି ପାରିଲି ନାହିଁ । ସୁଶୀଳାର ଶଯ୍ୟା ନିକଟକୁ ଯାଇ ତାହାର ହସ୍ତ ଧାରଣ କରି କହିଲି, "ସୁଶୀଳା ! ସୁଶୀଳା ! ମୋ ଦୋଷ କ୍ଷମା କର । ମୁଁ କ୍ଷମାର ଅଯୋଗ୍ୟ, ତଥାପି ତମ ପରି ଗୁଣବତୀ ରମଣୀ ପକ୍ଷରେ ସବୁ ସମ୍ଭବ ।" ମୋ କଥା ଶୁଣି ସୁଶୀଳାର କପୋଳ ଲଜ୍ଜାରେ ରକ୍ତିମାଭ ହୋଇଗଲା, ନେତ୍ର ନିମିଳିତ ହୋଇ ଆସିଲା । ମୁଁ ତାର ବିବର୍ଣ୍ଣ ଓଷ୍ଠାଧରରେ ମୋର ଓଷ୍ଠାଧର ମୁଦ୍ରିତ କରି-ଦେଲି । ସୁଶୀଳାର ଶୀର୍ଣ୍ଣ ବାହୁଲତା ମୋର କଣ୍ଠରେ ବେଷ୍ଟିତ ହୋଇଗଲା ।



# ମୋହର ଗ୍ରେଣ

ରାଧାଶ୍ୟାମ ବାବୁଙ୍କ ଆର୍ଥିକ ଅବସ୍ଥା ଏତେ ଶୋଚନୀୟ ବୋଲି ତାଙ୍କ ମୃତ୍ୟୁ ପୂର୍ବରୁ କାହାର ଧାରଣା ନ ଥିଲା । ଜଣେ ସାଧୁ ସତ୍ ପୁରୁଷ ବୋଲି ତାଙ୍କର ସୁଖ୍ୟାତି ଥିଲେ ସୁଦ୍ଧା କୋଡ଼ିଏ ବର୍ଷ କାଳ ଜଜ୍ କୋର୍ଟର ସିରସ୍ତାଦାର୍ କାମ କରି ସେ ଯେ ବେଶ୍ ଦି' ପଇସା ରଖିପାରି ନାହାନ୍ତି ଏ ସନ୍ଦେହ କାହା ମନରେ କେବେ ସ୍ଥାନ ପାଇ ନାହିଁ । କିନ୍ତୁ ରାଧାଶ୍ୟାମ ବାବୁଙ୍କ ଅନ୍ତ୍ୟେଷ୍ଟି କ୍ରିୟା ପରେ ଯେତେ-ବେଳେ ମହାଜନମାନେ ପିପିଲିକା ପଲପରି ତାଙ୍କ ଘରକୁ ଧାହୁଡ଼ି ଦେବାକୁ ଲାଗିଲେ, ପ୍ରକୃତ ଅବସ୍ଥା ବୁଝିବାକୁ କାହାର ବାକି ରହିଲା ନାହିଁ । ଏଥିରେ ଅନେକେ ଶାନ୍ତିରେ ଟିକିଏ ନିଃଶ୍ୱାସ ମାରି ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ସାନ୍ତ୍ୱନା ଦେବା ଲାଗି ଦଳ ଦଳ ହୋଇ ରାଧାଶ୍ୟାମ ବାବୁଙ୍କ ଦୁଆରେ ଉପସ୍ଥିତ ହେଲେ । ଏ ଦୁଃଖ ସମୟରେ ସୁଦ୍ଧା ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ଆଗନ୍ତୁକ ଭଦ୍ରଲୋକଙ୍କ ଅଭ୍ୟର୍ଥନାରେ କୌଣସି ତ୍ରୁଟି କଲେ ନାହିଁ । ଭଦ୍ରଲୋକମାନେ ମଧ୍ୟ ବୈଠକ ଖାନାରେ ବସି ପାନ ଓ ଗୁଡ଼ାଖୁ ସଂଯୋଗରେ ରାଧାଶ୍ୟାମ ବାବୁଙ୍କ ପୁତ୍ରଦ୍ୱୟଙ୍କର ଭବିଷ୍ୟତ୍ ସମ୍ବନ୍ଧରେ ନାନା ଆଶ୍ୱାସବାଣୀ ପ୍ରଦାନ କରିବାକୁ ଲାଗିଲେ ଓ ଆବଶ୍ୟକ ହେଲେ ପ୍ରତ୍ୟେକ ସେମାନଙ୍କ ପାଇଁ ଅସମ୍ଭବ ରକମର ତ୍ୟାଗ ସ୍ୱୀକାର କରିବାକୁ ପ୍ରତିଶ୍ରୁତ ହେଲେ ।

ସ୍ୱଭାବ ଦୋଷରୁ ହେଉ ବା ଅନୁଭବ ଗୁଣରୁ ହେଉ, ରାଧାଶ୍ୟାମ ବାବୁଙ୍କ ଶ୍ରୀକର ବଳିଆ ଏ ଲମ୍ବା ଚଉଡ଼ା କଥା ଗୁଡ଼ାକ ସହଜରେ ପରିପାକ କରିପାରିଲା ନାହିଁ । ସେ ମନେ ମନେ ଭାବିଲା, "ଆଉ କିଛି ଟାଣିବାର ଏ ଗୋଟିଏ ନୂଆ ଫନ୍ଦି । ସବୁ କଥା ଗାଧୋଇଗଲା, ତୁମ୍ଭେମାନେ ବସି ପ୍ରତିଦିନ ଯେତେ ଗୁଡ଼ାଖୁ ପାନ ଉଡ଼ାଉଛ, ସେତକ ଯଦି କୌଣସି ବାଟେ ଉଠାପରି ଦିଅନ୍ତ, ତେବେ ଜାଣନ୍ତି ଯେ ମୋ ଖାମିଦର କିଛି ଲୋକସାନ ହେଲନାହିଁ ।"

ଏଣେ ମହାଜନମାନେ ଯେତେବେଳେ ତାଗିଦ୍ ଉପରେ ତାଗିଦ୍, ପିଆଦା ଉପରେ ପିଆଦା ପଠାଇଲେ, ପରଦୁଃଖକାତର ଭଦ୍ରଲୋକଗୁଡ଼ିକ କ୍ରମେ ଦୁର୍ଲ୍ଲଭ ହୋଇପଡ଼ିଲେ । ପରିବାରଟିକୁ ରକ୍ଷା କରିବା ଲାଗି ସେମାନେ ଯେଉଁ ଅଭୟ ବାଣୀ ଉଚ୍ଚାରଣ କରିଥିଲେ ସେସବୁ ଅନେକ ଦିନରୁ ତାମ୍ରକୂଟଧୂମ ସହିତ ଅନନ୍ତ ଆକାଶରେ ମିଳାଇ ଯାଇଥିଲା । ତାର ପରୀକ୍ଷାଟା ଯେ ଏତେ ଶୀଘ୍ର ଉପସ୍ଥିତ ହେବ, ସେମାନେ ଏହା ସ୍ୱପ୍ନରେ ଭାବି ନ ଥିଲେ । ଯାହାହେଉ, ଅବସ୍ଥାବିପର୍ଯ୍ୟୟ ଦେଖି ସେମାନେ

ବୃଦ୍ଧିର ବାର୍ଯ୍ୟ କରି ପରୀକ୍ଷା କ୍ଷେତ୍ରରୁ ଅପସୃତ ହୋଇ ପଡ଼ିଲେ । ବଳିଆ କହିଲା, "ଯାହାହେଉ, ଗୋଟାଏ ଜଞ୍ଜାଳରୁ ଖଲାସ ମିଳିଲା । ଏମାନଙ୍କ ଦୟା ଅପେକ୍ଷା ମହାଜନମାନଙ୍କ ନିଷ୍ଠୁରତା ସହସ୍ର ଗୁଣେ ଭଲ ।"

ଏ ଋଣଜାଲରୁ କିପରି ମୁକ୍ତ ହେବେ, ଏହା ଭାବି ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ତାପ୍ରତିକ ବଡ଼ ବିଚଳିତ ହୋଇ ପଡ଼ିଲେ । କଣ କରିବେ, କିଛି ସ୍ଥିର କରିପାରିଲେ ନାହିଁ । ବଡ଼ପୁଅ ନୀଳମଣି ତ ଜଣେ ବେ-ପରୁଆ ଲୋକ । କୌଣସି ଚିନ୍ତା ତା ମନରେ ବେଶି କ୍ଷଣ ସ୍ଥାନ ପାଏ ନାହିଁ । ଯେତେ ବଡ଼ ବିପଦ ହେଉ ପଛକେ, ତାକୁ ସହଜରେ ଅଭିଭୂତ କରିପାରେ ନାହିଁ । କୌଣସି ବିଷୟ ଯେ ମନ ଉପରେ ଗୋଟିଏ ଆଧିପତ୍ୟ ବିସ୍ତାର କରିବ, ଏକଥା ତାକୁ ଅସହ୍ୟ ବୋଧହୁଏ । ଏଥିଲାଗି କୌଣସି କାର୍ଯ୍ୟରେ ସେ ଧରିଛୁଆଁ ଦିଏ ନାହିଁ । ସର୍ବଦା ଗୋଟାଏ କିଛି ଖିଆଲ ଯେପରି ଉଡ଼ି ଉଡ଼ି ବୁଲୁଥାଏ । ନୀଳମଣି ପରି ମେଧାବୀ ଓ ବୁଦ୍ଧିମାନ ଯୁବକ ସାଧାରଣତଃ ଦେଖାଯାନ୍ତି ନାହିଁ । ସେ ଇଚ୍ଛା କରିଥିଲେ ଦେଶରେ ଗୋଟିଏ ବିଶିଷ୍ଟ ଆସନ ଲାଭ କରି ପାରିଥାନ୍ତା, କିନ୍ତୁ ସେ ଉଚ୍ଚ ଆକାଙ୍‌କ୍ଷା ତା ମନକୁ କଦାପି ଆଲୋଡ଼ିତ କରି ନାହିଁ । ସୁତରାଂ ପଢ଼ାପଢ଼ି ପ୍ରତି ମମତାଟା ମଧ୍ୟ ସେହି ଅନୁପାତରେ— କେବଳ କଲେଜରେ ନାମଟା ଥାଏ ମାତ୍ର । ନୀଳମଣିର ଶକ୍ତି ଉପରେ ସମସ୍ତଙ୍କର ଆସ୍ଥା ଥିଲେ ସୁଦ୍ଧା ସମସ୍ତେ ତାକୁ ବଡ ଦୟାର ପାତ୍ର ବୋଲି ମନେ କରନ୍ତି । ଏଥିଲାଗି ନୀଳମଣିକୁ ଘରର ବର୍ତ୍ତମାନ ଦୁର୍ଦ୍ଦଶା କଥା ଜଣାଇବା କେହି ଆବଶ୍ୟକ ବୋଧ କଲେ ନାହିଁ, କାରଣ ତାକୁ କହିବା ନ କହିବା ସମାନ ।

ଭୁଲମଣି ବୟସରେ ସାନ ହେଲେ ସୁଦ୍ଧା ବୈଷୟିକ ଜ୍ଞାନରେ ନୀଳମଣି-ଠାରୁ ଅନେକ ବଡ । କିନ୍ତୁ ତାହାଦ୍ୱାରା ବା କଣ ହୋଇ ପାରେ ?

ବଳିଆହିଁ ବର୍ତ୍ତମାନ ପରିବାରରେ ଏକମାତ୍ର ଭରସାର ସ୍ଥଳ । ସେ ଅନେକ ଦିନର ବିଶ୍ୱାସୀ ଚାକର, ଚାଲାଖ ଚତୁର ମଧ୍ୟ ଖୁବ୍ । ଦିନେ ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ତାଙ୍କର ଅଳଙ୍କାର ବାକ୍‌ସଟି ବଳିଆ ଆଗରେ ରଖି ଦେଇ କହିଲେ, "ଦେଖ ବଳିଆ ! ସମ୍ବଳ ମଧ୍ୟରେ ବର୍ତ୍ତମାନ ମୋର ଏହି ଅଳଙ୍କାରତକ । ଦେଖୁଛୁ, ଏହାକୁ ଆଉ ରଖି ହେବନାହିଁ । ମହାଜନମାନଙ୍କ ଜୁଲମ ଦିନକୁଦିନ ବଳି ପଡ଼ିଲା । ସେମାନଙ୍କର ବା ଦୋଷ କଣ ? ଆଉ କେତେ ଦିନ ସେମାନେ ସମ୍ଭାଳିବେ ? କି ପଡ଼ିଥାରି ଦେଖି ସେମାନେ ଆମକୁ ଆଉ ବିଶ୍ୱାସ କରିବେ ? ଘର ବା ଏଣିକି ଚଳିବ କିପରି ? ମୋ ପିଲାମାନେ ଯେବେ କଷ୍ଟ ପାଇଲେ, ଏ ଅଳଙ୍କାର ଥାଇ ମୋର କଣ

ହେବ ? ଭୂ ଏ ବାକ୍‌ସପଣେ ହଶହର ମହାପାତ୍ର ଦୋକାନକୁ ନେଇଯା, ଓଜନ କର ତାଙ୍କୁ ଦେଇ ଆସିବୁ । ସେ ତାଙ୍କୁ କହିବୁ, ନଜେ ରଖି ବା ବକ୍ରି କରିଦେଉ, ୧୦।୧୨ ଦନ ମଧ୍ୟରେ ଯେପର ଟଙ୍କାଟା ମୋ ହାତପଇଠ ହୁଏ । ମୁଁ ବୁଝୁଛି ଏ ଅଳଙ୍କାରତକ ଖାଲ ଓଜନ ଦରରେ ବକ୍ରି ହେଲେ ହଜାରେ ଟଙ୍କାରୁ ଊଣା ହେବ ନାହିଁ । ଋଣ ଶୁଝିବାରେ ପାଞ୍ଚଶ ଟଙ୍କା ପର୍ଯ୍ୟନ୍ତ ଗଲେ ବାକି ଟଙ୍କାରେ ଏବର୍ଷଟା କୌଣସି ପ୍ରକାରେ ଚଳାଚଳ ହୋଇଯିବ । ତେଣିକି କରମରେ ଯାହା ଥିବ ଦେଖାଯିବ ।"

ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ଏକଥାଗୁଡ଼ାକ ଏକା ନଃଶ୍ୱାସକେ କହି ପକାଇଲେ । କନ୍ତୁ ସେ ଯେତେ ମନୋଭାବ ଗୋପନ କରିବାକୁ ଚେଷ୍ଟା କଲେ ସୁଦ୍ଧା ତାଙ୍କ ଚକ୍ଷୁ କୋଣରୁ ଗୋଟିଏ ଅଶ୍ରୁବନ୍ଦୁ ବଳିଆର ଦୃଷ୍ଟି ଅତକ୍ରମ କରିପାରିଲା ନାହିଁ । ବଳିଆ କ ଉତ୍ତର ଦେବ, କଛି ଭାବ ସ୍ଥିର କରିପାରିଲା ନାହିଁ—କେବଳ ତଳକୁ ମୁହଁ ପୋତ ଛିଡ଼ା ହୋଇ ରହିଲା ।

ଏହି ସମୟରେ ନୀଳମଣି ପାଖ ଘରେ ବସି ଗୋଟିଏ ବେହେଲାର ତାର ବଦଳାଉଥିଲା । ବୋଲିବା ବାହୁଲ୍ୟ, କଛିଦନ ହେଲା ବେହେଲା ବଜାଇବାକୁ ତାର ବଡ଼ ଝୁଙ୍କ ଉଠିଛି । ମା'ଙ୍କ କଥାଗୁଡ଼ିକ ସବୁ ତା' କାନରେ ପଡ଼ିଲା । ବାପା ଯେ ଅନେକଗୁଡ଼ିଏ ଦେଣା ରଖି ଯାଇଅଛନ୍ତି ଓ ତାହା ପରିଶୋଧ କରିବାର ଯେପର କଛି ଉପାୟ ନ ଥିବାରୁ ଘରେ ଯେ ଗୋଟିଏ ଅଶାନ୍ତିର ଗ୍ରୁସ୍ଥା ଆସି ପଡ଼ି-ଅଛି, ଏହା ନୀଳମଣି ଅନେକ ଦନରୁ ଲକ୍ଷ୍ୟ କରିଥିଲା, କନ୍ତୁ କଥାଟା ଯେ ଏପର ଗୁରୁତର ଆଉ ସେଥିଲାଗି ଯେ ତାଙ୍କୁ ଭାଳେଣି କରିବାକୁ ପଡ଼ିବ, ଏହା ସେ ଭାବ ନ ଥିଲା । ସେ ମନେ କରିଥିଲା, ସଂସାର ଜୀବମାନଙ୍କର ଏ ଗୋଟାଏ ସ୍ୱାଭାବକ ଅବସ୍ଥା ଓ ସେ ଅବସ୍ଥାଟା କଛି ଚରକାଳ ଆସନ ଦଖଲ କର ରହିବ ନାହିଁ । କନ୍ତୁ କେଜାଣି କାହିଁକ, ଆଜ ମା'ଙ୍କ କଥାଗୁଡ଼ାକ ତା ଅନ୍ତରରେ ଟିକଏ ଆଘାତ କଲା, ଏପରି କ, ସେ କଥା ମଧ୍ୟରେ ଯେ ଗୋଟାଏ ବେଦନାର ସ୍ୱର ଅଛି, ତାହା ତାର ବୁଝିବାକୁ ବାକି ରହିଲା ନାହିଁ ।

ନୀଳମଣି କଣ ଭାବ ପ୍ରାୟ ଦୁଇ ମିନଟି ପର୍ଯ୍ୟନ୍ତ ଘରର କଡ଼ିକୁ ଚାହିଁ ରହିଲା ଓ ହଠାତ୍ ଘରୁ ବାହାର ପଡ଼ି ହସି ହସି ଯାଇ ମା'ଙ୍କୁ କହିଲା, "ମା, ଅଳଙ୍କାର-ଗୁଡ଼ାକ କଣ ବକ୍ରି କରିବାକୁ ଦଉଛ ?"

ମା କହିଲେ, "ହଁରେ ବାପ ! ଆଉ ଉପାୟ କଣ ? କେତେ ଦିନ ଆଉ ତୁମେମାନେ ପରର ଧାରଚାଂନ୍ଧା ହୋଇ ରହିବ ?"

ନୀଳମଣି କହିଲା, "ହଁ, ମୋତେ ମଧ୍ୟ ସେକଥା କେତେ ଜଣ କହିଲେଣି । ଏ ମହାଜନଗୁଡ଼ାଙ୍କର କଣ ଟିକଏ ଅକଲ ନାହିଁ ? ବାଟଘାଟ ଯେଉଁଠେଇଁ ଦେଖିଲେ ତୁଚ୍ଛା ସେହି କଥା । କୌଣସି ପ୍ରକାରେ ସେମାନଙ୍କର ପାଉଣା ଶୁଝି-ଦେଲେ ମଣିଷ ତାଙ୍କ ଦାଉରୁ ଖଲାସ ପାଇବ ।"

ମା କିଛି କଥା ନ କହି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ତଳକୁ ମୁହଁ ପୋତି ରହିଲେ ।

ନୀଳମଣି ପୁନର୍ବାର କହିଲା, "ବଳିଆ ସୁନା ରୂପା କଥା କଣ ଜାଣେ ଯେ, ତାହା ହାତରେ ଏସବୁ ଦେଉଛୁ ? ଏ ତ ଆଉ ଶାଗ ମାଛ ମୂଲ ନୁହେଁ । ଆଚ୍ଛା, ମୁଁ ନିଜେ ଯାଇ ଏସବୁ ବିକ୍ରି କରିବାର ବନ୍ଦୋବସ୍ତ କରିବି । ହଁ, ଜଣେ ଲୋକ କେତେ-ଗୁଡ଼ିଏ ଛାଞ୍ଚର ଗହଣା କିଣିବାକୁ ଖୋଜୁଥିଲା । ଦେଖେଁ, ସେ ଯଦି ନିଏ, ତେବେ ଗଢା ମୂଲଟା ଆଉ ଲୋକସାନ ଯିବ ନାହିଁ । ତୁ ତେବେ ଏସବୁ ରଖିଥା, ମୁଁ ୨।୩ ଦିନ ମଧ୍ୟରେ ହେଲା ନ ହେଲା ବୁଝି କରି କହିବି ।"

ଏହା କହି ଦେଇ ନୀଳମଣି କାମିଜ୍ ଖଣ୍ଡେ ଗଳାଇ ଘରୁ ବାହାରି ପଡ଼ିଲା । ମା ନୀଳମଣି କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ ନ କଲେ ସୁଦ୍ଧା ବହୁଦିନର ପ୍ରିୟ ଅଳଂକାରଗୁଡ଼ିକ ଯେ ଆଉ କେତେଟା ଦିନ ଅନ୍ତତଃ ଘରେ ରହିବ, ଏଥିରେ ଟିକଏ ଆଶ୍ୱସ୍ତ ହୋଇ ବାକସଟି ନେଇ ଘର ଭିତରେ ରଖିଦେଲେ ।

ଏହାର ୫।୬ ଦିନ ପରେ ଦିନେ ସନ୍ଧ୍ୟାବେଳେ ନୀଳମଣି ଆସି ମା'ଙ୍କୁ କହିଲା, "ମା, ମୋର ଖଣ୍ଡିଏ ଚାକିରି ହୋଇଛି ।"

ମା ଅତି ଆଶ୍ଚର୍ଯ୍ୟ ହୋଇ କହିଲେ, "ତୋର କି ଚାକିରି ହେଲାରେ ?"

ନୀଳମଣି—ଅନେକ ଦିନ ହେଲା ମୋର ପଢ଼ାପଢ଼ିରେ କାହିଁକି ଆଉ ମନ ଲାଗୁ ନାହିଁ । ବୃଥା ସମୟ କଟାଇବା ଅପେକ୍ଷା ବରଂ ଦି'ପଇସା ରୋଜଗାର କରିବାର ବାଟ ଦେଖିବା ଭଲ ବୋଲି ବିଚାରି ମୁଁ କିଛିଦିନ ତଳେ ଖଣ୍ଡିଏ ଚାକିରି ପାଇଁ ଦରଖାସ୍ତ ପକାଇ ଦେଇଥିଲି । ଆଜି ଖବର ପାଇଲି ଯେ କାମଖଣ୍ଡ ମୋର ହୋଇଛି । ବର୍ତ୍ତମାନ ୨୫ ଟଙ୍କା ଦରମା ମିଳିବ ଓ ଭବିଷ୍ୟତରେ ଉନ୍ନତିର ଆଶା ମଧ୍ୟ ଅଛି ।

ମା—ତେବେ ସତେ କଣ ରୁ ପଢ଼ା ଛାଡ଼ିଲୁ ?

ନୀଳ—ଅଜ ଯାଉ ଚାକରି କରିବି ବୋଲି ସ୍ଥିର ଜବାବ ଦେଇ ଆସିଲି ପରା ! ପଢ଼ା ନ ଛାଡ଼ି ଆଉ କରିବି କଣ ?

ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀଙ୍କର କପରି ଗୋଟାଏ ଧାରଣା ଥିଲା ଯେ, ନୀଳମଣି ଦିନେ ନିଶ୍ଚୟ କଣେ ବଡଲୋକ ହୋଇ ବଂଶର ମୁଖ ଉଜ୍ଜ୍ୱଳ କରିବ, ଏପରି କି ତାର ଦୁର୍ବଳତା ଗୁଡ଼ାକ ମଧ୍ୟ ସେ ଭବିଷ୍ୟତ ବଡ଼ଲୋକର ଅପରିହାର୍ଯ୍ୟ ଲକ୍ଷଣ ବୋଲି ଧରିନେଇ ବରଂ ତାର ପ୍ରଶଂସା ଦେଉଥିଲେ । କିନ୍ତୁ ହଠାତ୍ ତାଙ୍କର ଆଶାଟା ଏତେ କ୍ଷୁଦ୍ର ପଚାଶ ଟଙ୍କାର ସୀମା ମଧ୍ୟରେ ଆବଦ୍ଧ ହୋଇ ଯିବାର ଦେଖି ସେ ଟିକିଏ ହତାଶ ହୋଇ ପଡ଼ିଲେ । ଯାହାହେଉ, ଘରର ବର୍ତ୍ତମାନ ଅବସ୍ଥା ଦୃଷ୍ଟିରୁ ସେ ଏଇଟାକୁ ନିତାନ୍ତ ଦୁଃସମ୍ବାଦ ବୋଲି ମନେକଲେ ନାହିଁ ।

ଏ ଖବରଟି ଦେଇ ନୀଳମଣି ଚାଲିଯିବାକୁ ବାହାରିବାରୁ ମା ପଚାରିଲେ, "ହଇରେ ନୀଳୁ, ଅଳଙ୍କାର ବନ୍ଧକି କଥା କଣ ହେଲା ? କିଏ ପରା ନବାକୁ କହୁଥିଲା ?"

ନୀଳ—ହଁ, ସେ ନବାକୁ କହୁଛି, କିନ୍ତୁ ତାର ଟଙ୍କାର ସୁବିଧା ହୋଇ ନ ଥିବାରୁ ନବାକୁ ଟିକିଏ ବିଳମ୍ବ ହେବ । ହଉ, ଏତେ ତରବର କାହିଁକି ?

ମା—ମହାଜନମାନେ କ'ଣ ସମ୍ଭାଳୁଛନ୍ତି ? ଶେଷରେ ମାମଲା ମକଦ୍ଦମା ହେଲେ କଣ ଭଲ ହେବ ?

ନୀଳ—ଏତେ ଦିନ ତ ଗଲା, ଆଉ କେଇଟା ଦିନରେ କଣ ଅଛି ? ଆଉ ଥରେ ସେମାନେ ଟଙ୍କା ପାଇଁ ଆସନ୍ତୁ, ଦେଖାଯିବ ।

ଏହା କହି ନୀଳମଣି ସେଠାରୁ ଚାଲିଗଲା ।

ଏହି ପାଞ୍ଚ ଦିନରେ କେତେ ଜଣଙ୍କୁ ଟଙ୍କା ଦେବାପାଇଁ କଣ୍ଟ କରା ହୋଇଥିଲା । ସେ ଦିନ ନ ଦେଲେ ସେମାନେ ନାଲିସ ଦାଏର କରିବେ । କିନ୍ତୁ ପାଞ୍ଚ ଦିନ ଗଲା, ମାସେ ଗଲା, କୌଣସି ମହାଜନ ଆଉ ଟଙ୍କା ମାଗିବାକୁ ଆସିଲେ ନାହିଁ । କଥା କଣ ? ନୀଳମଣିଙ୍କ ମା ପ୍ରଥମେ କିଛି ବୁଝିପାରିଲେ ନାହିଁ । ଶେଷରେ ଭାବିଲେ, ବାଣ୍ଡକୁ କେହି ଜଣେ ନ ଥିବାରୁ ହିନା ସମସ୍ତେ ଆମକୁ ସମ୍ମାନ ଦେଖାଉଥିଲେ ।

କିଛି ନ ହେଉ ନାଳୁର ଏହାହିଁ ଖଣ୍ଡେ ଚାକିରି ହେଲଣି । ବୋଧହୁଏ ସେଇଥି-ଲାଗି କେହି ସାହସ କରି ମାଗୁ ନାହାନ୍ତି ।

କିନ୍ତୁ ମହାଜନମାନେ ବିନା କାରଣରେ ହଠାତ୍ ଯେ ଏପରି ନରମ ପଡ଼ି-ଗଲେ ଏପରି ଭାବିବା ବୃଥା । ପ୍ରକୃତ କଥା ହେଉଛି ଏହି—ମା'ଙ୍କଠାରୁ ଅଲଙ୍କାର ବନ୍ଧା କଥା ଶୁଣି ସେ ଦିନ ନୀଳମଣିର କୋମଳ ପ୍ରାଣରେ ବଡ଼ ଆଘାତ ଲାଗିଥିଲା । କି ଉପାୟରେ ଏହି ଆପନ୍ନ ବିପଦରୁ ରକ୍ଷା ମିଳିବ, ଏହା ଭାବି ସେ ଦିନ ସେ ଯାଇ ଅଫିସରେ ବୁଝିଲା ଯେ ଖଣ୍ଡିଏ କିରାନି କାମ ଖାଲିଅଛି ଓ ଆଗପଛ କିଛି ନ ଭାବି ସେ କାର୍ଯ୍ୟଖଣ୍ଡି ଗ୍ରହଣ କରିବାକୁ କୃତସଙ୍କଳ୍ପ ହେଲା । ବୋଲିବା ବାହୁଲ୍ୟ, ରାଧାଶ୍ୟାମ ବାବୁଙ୍କ ପୁଅ ପକ୍ଷରେ ଏ କାର୍ଯ୍ୟଖଣ୍ଡି ପାଇବାକୁ ବେଶି କଷ୍ଟକର ହେଲା ନାହିଁ । ଚାକିରି ଖଣ୍ଡି ପାଇ ନୀଳମଣି ମହାଜନମାନଙ୍କୁ କହି ନିଜ ନାମରେ ନୂତନ ତମସୁକ ଲେଖିଦେଲା ଓ ସେମାନଙ୍କ ସଙ୍ଗେ ଗୋଟିଏ ଚୁକ୍ତି କଲା ଯେ ସେ ପ୍ରତି ମାସରେ ସେମାନଙ୍କ ସୁଧତକ ନିକାଶ କରି ଦେଉଥିବ, କିନ୍ତୁ ତା ଛଡ଼ା ଅନ୍ୟ କାହାରିକୁ କେହି ଯେପରି ଟଙ୍କା ସମ୍ବନ୍ଧରେ କିଛି ନ କହେ । ମହାଜନମାନଙ୍କର ଏଥିରେ ଲାଭ ଛଡ଼ା କ୍ଷତି ନାହିଁ, ସୁତରାଂ ସେମାନେ ବିନା ଆପତ୍ତିରେ ସମ୍ମତ ହେଲେ ।

( ୨ )

ନୀଳମଣି ପଢ଼ା ଛାଡ଼ିବା ପରେ ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ କୁଳମଣିଠାରେ ଆଶା ରଖି ଅନେକ ପରିମାଣରେ ଆଶ୍ୱସ୍ତ ହୋଇଥିଲେ । ନୀଳମଣି ପରି ବିଚକ୍ଷଣ ନ ହେଲେ ସୁଦ୍ଧା ତାର ପଢ଼ାପଢ଼ିରେ ଯେପରି ମନ, ସେ ଯେ ଯୋଗ୍ୟ ହୋଇ ଘରର ନାମ ରଖିପାରିବ, ସେ ବିଷୟରେ ତାଙ୍କର ସନ୍ଦେହ ନ ଥିଲା । କିନ୍ତୁ ଯେତେବେଳେ ଶୁଣିଲେ ଯେ, ସେ ବର୍ଷ ଏଣ୍ଟ୍ରାନ୍ସ ପରୀକ୍ଷାରେ କୁଳମଣି ଫେଲ ହୋଇଅଛି, ସେ ବଡ଼ ହତୋତ୍ସାହ ହୋଇ ପଡ଼ିଲେ । ବାପାଙ୍କ ମୃତ୍ୟୁ ଯୋଗୁଁ ସେ ବର୍ଷ ତାର ପଢ଼ା ଶୁଣାରେ ଅନେକ ବ୍ୟାଘାତ ଘଟିଥିଲା ଜାଣି ସୁଦ୍ଧା ତାଙ୍କ ମନ ବୁଝିଲା ନାହିଁ ।

କୁଳମଣି କିନ୍ତୁ ଏ ଖବର ପାଇ ବେଶି ଦୁଃଖିତ ହେଲା ନାହିଁ । ବିଶ୍ୱ-ବିଦ୍ୟାଳୟର ସାର୍ଟିଫିକେଟ୍ ପ୍ରତି ତାର କାହିଁକି ପିଲାଦିନୁ ସେପରି ଗୋଟାଏ ମୋହ ନ ଥିଲା ଓ ସରକାରୀ କର୍ମଚାରୀମାନଙ୍କ ଦୁର୍ଦ୍ଦଶା ଆଖିରେ ଦେଖି ଚାକିରି ପ୍ରତି ତାର ଗୋଟାଏ ବିତୃଷ୍ଣା ଜନ୍ମି ଯାଇଥିଲା । କୌଣସି ଗୋଟିଏ ସ୍ୱାଧୀନ ବ୍ୟବସାୟ ଅବଲମ୍ବନ

କରିବାକୁ ତାର ଆନ୍ତରିକ ଇଚ୍ଛା; କିନ୍ତୁ ସେତିକି କେତେ ଜଣଙ୍କ ଭାଗ୍ୟରେ ଜୁଟେ ?

ଫେଲ୍ ହୋଇ ବିଶେଷ ଦୁଃଖିତ ନ ହେଲେ ସୁଦ୍ଧା ବର୍ତ୍ତମାନ କଣ କରିବ, ଏ ଭାବନା ତାକୁ ବିବ୍ରତ କରି ପକାଇଲା । ପୁଣି ସେ ନାମ ଲେଖାଇ ଯାଇ ସ୍କୁଲରେ ପଢ଼ିବ, ଏଥିଲାଗି ତାର ଆଦୌ ମନ ସୋରେଇଲା ନାହିଁ ।

ଦିନେ ଲୁଗା କିଣିବାକୁ ଯାଇ କିଶନ୍‌ଲାଲ୍ ମାରୁଆଡ଼ିଙ୍କ ସଙ୍ଗେ କୁଳମଣିର ଦେଖା ହେଲା । ରାଧାଶ୍ୟାମ ବାବୁଙ୍କ ସଙ୍ଗେ କିଶନ୍‌ଲାଲଙ୍କର ବଡ଼ ଘନିଷ୍ଠତା ଥିଲା, ଏପରି କି ବିବାହ ଜମିଦାରୀରେ ଘର ବେହାର ପର୍ଯ୍ୟନ୍ତ ଚାଲୁଥିଲା । ରାଧାଶ୍ୟାମ ବାବୁଙ୍କଠାରୁ ଅନେକ ଉପକାର ପାଇଥିବାର କିଶନ୍ ଲାଲ୍ ଆଜିକାଲି ସୁଦ୍ଧା ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ।

କିଶନ୍‌ଲାଲ୍ କୁଳମଣିକୁ ତାଙ୍କ ଘରକଥା ପଚାରିବାରୁ ସେ ନିଃସଂକୋଚରେ ସବୁକଥା କହିଗଲା । କିଶନ୍‌ଲାଲ୍ ଅନେକ ଦୁଃଖ ପ୍ରକାଶ କରି ଶେଷରେ କହିଲେ, "ହେଇ ଚାକିରିକୁ ଚାହିଁ ଚାହିଁ ତୁମ ବାପର ଏ ଅବସ୍ଥା । ଏତେ ଲାଞ୍ଛନା ଅପମାନ ପାଇ ସୁଦ୍ଧା ଚାକିରି କାହିଁକି ଯେ ତୁମ୍ଭମାନଙ୍କୁ ଚୁମ୍ବକ ପରି ଟାଣି ନେଉଛି ମୁଁ ବୁଝିପାରୁ ନାହିଁ ।"

"ସମସ୍ତଙ୍କର ତ ଆଉ ସ୍ୱାଧୀନ ବ୍ୟବସାୟ କରିବାର ସୁବିଧା ନାହିଁ ?"

"ସୁବିଧା ନାହିଁ କାହିଁକି ? ଇଚ୍ଛା, ମନ ନାହିଁ, ସାହସ ନାହିଁ । ମୁଁ ଯେତେବେଳେ ପ୍ରଥମେ ଆମ ଦେଶରୁ ଏଠାକୁ ଆସେଁ; ମୋ ହାତରେ ପଇସାଟିଏ ସୁଦ୍ଧା ପାଣ୍ଠି ନ ଥିଲା । ଏଠାକୁ ଆସି ଜଣେ ମହାଜନ ଦୋକାନରେ କେତେ ବର୍ଷ ଚାକିରି କରି କେତୋଟି ଟଙ୍କା ହାତରେ ଜମେଇଲି ଓ ସେହି ଟଙ୍କାକୁ ପାଣ୍ଠି କରି ଖଣ୍ଡିଏ ଲୁଗା ଦୋକାନ ଆରମ୍ଭ କଲି । ସେହି ସାମାନ୍ୟ ପାଣ୍ଠି ବଢ଼ି ବଢ଼ି ମୋର ବର୍ତ୍ତମାନ ଲକ୍ଷାଧିକ ଟଙ୍କାର କାରବାର ଚାଲୁଛି । ମୁଁ ତୁମ ବି. ଏ. ଏମ୍. ଏ. ପାସ୍ କରି ନ ଥିଲି କି ଓକିଲ ବାରିଷ୍ଟର ହୋଇ ନ ଥିଲି । କେତେ ଜଣ ଚାକିରି କରି ଏତେ ପଇସା କମେଇଛନ୍ତି ? ତୁମେ ତ ଚାକିରି କରିବା ପାଇଁ ପାଠ ପଢ଼ୁଛ; କେତେ ଟଙ୍କା ରୋଜଗାର କରିବାର ଆଶା କରି ଭଲ ?"

"ମୋର ମଧ୍ୟ ଗୋଟାଏ କିଛି ବାଣିଜ୍ୟ ବ୍ୟବସାୟ କରିବାକୁ ଭାରି ଇଚ୍ଛା, କିନ୍ତୁ ମୂଳଧନ କାହିଁ ?"

"ମୂଳଧନ ପାଇଁ କିଛି ଅଟକି ଯାଏ ନାହିଁ । ମୂଳଧନ ବନିନେବାକୁ ହୁଏ । ତୁମର ଯଦି ଏପରି ଇଚ୍ଛା, ମୋ ଦୋକାନରେ ଆସି କାମଦାମ ଶିଖ, ମୁଁ ମଧ୍ୟ ହିସାବ ପତ୍ର ରଖିବା ଲାଗି ଜଣେ ମୋହରିର ଖୋଜୁଥିଲି । କାରବାରଟା ଅନେକ ବଢ଼ି ଗଲାଣି । ଏବର୍ଷ ପୁଣି ଚକ୍ରାଚର କାଠ ଓ ଲାକ୍ଷ ବ୍ୟବସାୟ ହାତକୁ ନେଇଛି । ଦେଖୁଛି, ଆଉ ଜଣେ ଲୋକ ନ ରଖିଲେ ଚଳିବ ନାହିଁ । ତୁମେ ଏଥିରେ ଦିନାକେତେ ରହି ଯଦି ଭଲ କାମ ଦେଖାଅ, ତାହାହେଲେ କେତୋଟି କାରବାରର ଭାର ତୁମ ଉପରେ ଦେଇ-ପାରେଁ ଓ ଦରମା ଛଡା ଲାଭର କିଛି ଅଂଶ ମଧ୍ୟ ତୁମେ ପାଇପାର । ଏଥିରେ ରହିଲେ ତୁମେ ବେପାର ଶିଖିବାର ଅନେକ ସୁବିଧା ପାଇବ । ତୁମେ ଯେପରି ପଢ଼ାଶୁଣା କରିଛ, ମୋର ବିଶ୍ୱାସ, ଏ କାମ ତୁମ ହାତରେ ଭଲ ଚଳି ପାରିବ ।"

"ଆପଣ ମୋ ପ୍ରତି ଖୁବ୍ ଅନୁଗ୍ରହ ଦେଖେଇଲେ । କହିଲେ କାଲିଠାରୁ ଆସି କାର୍ଯ୍ୟରେ ଯୋଗ ଦେବି ।"

କୁଳମଣି ରହିବାର ସ୍ଥିର ହେବାରୁ କସନ୍‌ଲାଲ ସାଧୁତା ବିଷୟରେ ଗୋଟିଏ ସୁଦୀର୍ଘ ବକ୍ତୃତା ଦେଇ ତାକୁ ବିଦାୟ ଦେଲେ । କୁଳମଣି ନିଜ ରୁଚି ଓ ଅଭିଳାଷର ଅନୁକୂଳ ସୁବିଧା ପାଇ ଅତ୍ୟନ୍ତ ଆନନ୍ଦିତ ହୋଇ ଘରକୁ ଫେରିଲା ।

ନୀଳମଣି ଓ ତାଙ୍କ ମାଆ ଏ କଥା ଶୁଣି ନାନା ଆପତ୍ତି ଦେଖାଇ କୁଳମଣିକୁ ଏ ହୀନ କାର୍ଯ୍ୟରୁ ନିବୃତ୍ତ କରିବା ପାଇଁ ଅନେକ ଚେଷ୍ଟା କଲେ । କିନ୍ତୁ ତାର ଦୃଢ଼ ସଙ୍କଳ୍ପ କେହି ଟଳାଇ ପାରିଲେ ନାହିଁ ।

( ୩ )

କେତେଟା ମାସ ମଧ୍ୟରେ କସନ୍‌ଲାଲ ବୁଝି ପାରିଲେ ଯେ, କୁଳମଣିକୁ ରଖିବା ଦ୍ୱାରା ସେ ଯେ କେବଳ ତା ପ୍ରତି ଗୋଟାଏ ଅନୁଗ୍ରହ ଦେଖାଇ ଅଛନ୍ତି ତାହା ନୁହେଁ, ନିଜେ ମଧ୍ୟ ଜଣେ ବିଶ୍ୱାସୀ ଓ କାର୍ଯ୍ୟଦକ୍ଷ କର୍ମଚାରୀ ପାଇଅଛନ୍ତି ।

ପ୍ରଥମେ ପ୍ରଥମେ କିସନ୍‌ଲାଲ ଭୁଲମଣିର ଗତିବିଧି ଉପରେ ଗୋପନ ଭାବରେ ଦୃଷ୍ଟି ରଖିଥିଲେ । କିନ୍ତୁ ଯେତେବେଳେ ଦେଖିଲେ ଯେ, ସେ ସଂଶୟ ଅବିଶ୍ୱାସର ବହୁ ଊର୍ଦ୍ଧ୍ୱରେ, ସେ କ୍ରମେ ତା ଉପରେ କେତେ ଗୁଡ଼ିଏ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟର ଭାର ନ୍ୟସ୍ତ କଲେ । ଭୁଲମଣି ମଧ୍ୟ ସବୁ କାର୍ଯ୍ୟ ପ୍ରଫୁଲ୍ଲ ଚିତ୍ତରେ ସୁନ୍ଦର ଭାବରେ କରିବାକୁ ଲାଗିଲା ଏବଂ ତାର ପ୍ରଭୁ ଯେ ଏତେ ଶୀଘ୍ର ତାର କର୍ମକୁଶଳତାର ପରିଚୟ ପାଇ ଅନେକ ପୁରାତନ କର୍ମଚାରୀଙ୍କ ଉପରେ ତାକୁ ସ୍ଥାନ ଦେଇଅଛନ୍ତି, ଏକଥା ବୁଝି ପାରି ମନେ ମନେ ଟିକିଏ ଗର୍ବ ଅନୁଭବ କଲା ।

ଭୁଲମଣି ଜାଣେ, ତାର ବର୍ତ୍ତମାନ କାର୍ଯ୍ୟତତ୍ପରତା ଉପରେ ତାର ଚିର-ପୋଷିତ ବାଞ୍ଛାର ସଫଳତା ସମ୍ପୂର୍ଣ୍ଣ ନିର୍ଭର କରୁଅଛି । ଏଥିଲାଗି ନିଜର କାର୍ଯ୍ୟ ମନେ କରି ସେ ପରମ ଉତ୍ସାହରେ ସବୁ କାର୍ଯ୍ୟ ସମ୍ପନ୍ନ କରେ । ଦିନେ କେହି ତାଠାରେ କ୍ଳାନ୍ତି ବା ବିରକ୍ତିର ଲକ୍ଷଣ ଦେଖି ନାହିଁ । କାର୍ଯ୍ୟରେ ତାର ଶାନ୍ତି, କାର୍ଯ୍ୟରେ ତାର ଆନନ୍ଦ ।

ଭୁଲମଣିର ବିଚକ୍ଷଣ ବ୍ୟବସାୟ-ବୁଦ୍ଧି ଓ ବିନୟ-ନମ୍ର ବ୍ୟବହାର ଦେଖି କିସନ୍‌ଲାଲ କ୍ରମେ ତା ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ସେ ଅନ୍ୟାନ୍ୟ କର୍ମଚାରୀଙ୍କ-ଠାରୁ ତାକୁ ଭିନ୍ନ ଚକ୍ଷୁରେ ଦେଖନ୍ତି—ସେ ଯେପରି ତାଙ୍କ ଘରର ଲୋକ ।

ଦିନେ କିସନ୍‌ଲାଲ ଭୁଲମଣି ହାତରେ ଦିଗୋଟି ସୁନାଭିଷେକା ମୋହର ଦେଇ କହିଲେ, "ଏଥିରେ ମଙ୍ଗୁ (କିସନ୍‌ଲାଲଙ୍କ ନାତି) ପାଇଁ ଗୋଟିଏ ହାର ତିଆରି କରାଯିବ । ମୁଁ ଆନନ୍ଦ ସୁନ୍ଦରିକୁ କହିଛି, ସେ କାଲି ଆଡ଼କୁ ଆସି ଏହାକୁ ନେଇଯିବ । ତୁମେ ବର୍ତ୍ତମାନ ଏତକ ନିଜ ପାଖରେ ରଖିଥାଅ ।" ଏହା କହି ଦେଇ କିସନ୍‌ଲାଲ ଘର ଭିତରକୁ ଚାଲିଗଲେ ।

ଭୁଲମଣି ମୋହରଗୁଡ଼ିକ ନେଇ ନିଜ ହାତ ବାକ୍‌ସର ଉପର ତାଲାରେ ରଖିଦେଲା ଓ ସେହିଠାରେ ବସି କାର୍ଯ୍ୟ କରିବାକୁ ଲାଗିଲା ।

କିଛି ସମୟ ପରେ ନୀଳମଣି କଲେଜରୁ ଫେରି ସେଠାରେ ଉପସ୍ଥିତ ହେଲା ଓ ଭୁଲମଣିକୁ ଦେଖି କହିଲା, "କିରେ ଭୁଲ ! ତୋର କଣ ଏତେବେଳଯାଏ କାମ ସରି ନାହିଁ ? ଆଉ କେତେ ଡେରି ହେବ ?" ଏହା କହି ନୀଳମଣି ସେଠାରେ ବସିଗଲା ।

କୁଳମଣି କହିଲା, "କାମ ଆସି ସରିଲାଣି । ଟିକିଏ ବସ; ସାଙ୍ଗ ହୋଇ ଘରକୁ ଯିବା ।"

କୁଳମଣି ନିଜର ବାକ୍ସ ଖୋଲି କଣ ହିସାବପତ୍ର ମିଳାଉଥିଲା । ଖୋଲା ବାକ୍ସ ଉପରେ ନୀଳମଣିର ଆଖି ପଡ଼ିବାରୁ ସେ ହସି ହସି କହିଲା, "ଆରେ ! ତୋ ବାକ୍ସରେ ତ ଆଜି ଗଦା ଗଦା ମହୁଡ଼ ? ଖାଲି ଚନ୍ଦବୁହା ବଳଦ ପରି ଭାର ବୋହୁଛୁ, ନା କିଛି ମିଠା ପାଇଲୁଣି ?" ଏହା କହି ନୀଳମଣି ୨।୩ଟି ମୋହର ନେଇ ଏପାଖ ସେପାଖ ପରୀକ୍ଷା କରିବାକୁ ଲାଗିଲା ଓ କୁଳମଣିକୁ ମୋହର ସମ୍ବନ୍ଧରେ ନାନା ପ୍ରଶ୍ନ କରି ବିବ୍ରତ କରି ପକାଇଲା ।

କୁଳମଣି ତଥାପି କାଗଜ ଧରି ବସିଥିବାର ଦେଖି ନୀଳମଣି କହିଲା, "ଆରେ ? ସେତିକି ହୋଇଥାଉ । ଯାହା ରହିଲା, କାଲି କଲେ ହେବ ନାହିଁ ? ଯେଉଁ ଦରମା ତ, ତହିଁକି ପୁଣି ଦିନରାତି ଗଧ ପରି ମିହନ୍ତ !"

କୁଳମଣି ଦେଖିଲା, ଆଉ କିଛି କାର୍ଯ୍ୟ ହୋଇପାରିବ ନାହିଁ । ନୀଳମଣି କୌଣସି ଠାରେ ଏକ ମୁହୂର୍ତ୍ତ ସ୍ଥିର ହୋଇ ବସିପାରେ ନାହିଁ । ସେ ଯେତେ-ବେଳେ ସେଠାକୁ ଆସେ ସବୁ ନଅଛଅ କରି ଦେଇ କୁଳମଣିର ନିୟମ ଶୃଙ୍ଖଳା ଆଦି ଆଲୁବୁ ବାଲୁବୁ କରିଦିଏ ।

କୁଳମଣି ଶେଷରେ କହିଲା, "ଆଚ୍ଛା ତେବେ ଥାଉ । ତୁମେ ତେବେ ଟିକିଏ ବସ, କଲିକତାରୁ କେତେଟା ମାଲ ଆସିଛୁ, ମୁଁ ତାକୁ ଗୋଦାମରେ ସାଇତି ଦେଇ ଆସେଁ । ପନ୍ଦର ମିନିଟରୁ ବେଶି ବିଳମ୍ବ ହେବ ନାହିଁ ଯେ ।"

"ତେବେ ଶୀଘ୍ର ଆ" ଏହା କହିଦେଇ ନୀଳମଣି 'ଦୀପିକା' ଖଣ୍ଡ ଧରି ପଢିବାକୁ ବସିଲା । କୁଳମଣି ବାକ୍ସ ବନ୍ଦ କରି ତରତର ହୋଇ ସଡ଼କ ଆରପାଖ ଗୋଦାମ ଘରକୁ ଚାଲିଗଲା ।

ନୀଳମଣି କାଗଜ ଖଣ୍ଡ ଧରି ନିବିଷ୍ଟ ଚିତ୍ତରେ ପଢ଼ୁଛି, ଏହି ସମୟରେ କିଏ ଡ଼ାକିଲା, "କି ହେ ନୀଳୁବାବୁ ?" ନୀଳମଣି ମୁହଁ ଟେକି ସଡ଼କ ଆଡ଼କୁ ଟିକିଏ ଅନାଇ ଦେଲା ଓ ହଠାତ୍ କାଗଜ ଖଣ୍ଡ ପକାଇ ଦେଇ "ଗୋବିନ୍ଦ ବାବୁ ? ଏଣେ କୁଆଡ଼େ" କହି ଯାଇ ତାହାର ପୁରାତନ ବନ୍ଧୁଙ୍କୁ ଆଲିଙ୍ଗନ ପାଶରେ ବଦ୍ଧ କରି ଦେଲା । କିଛି ସମୟ କଥାବାର୍ତ୍ତା ହେଲାପରେ ଉଭୟ ବନ୍ଧୁ ପରସ୍ପରଠାରୁ

ବଢ଼ାଇ ନେଲେ । ନୀଳମଣି ଆସି ପୁନର୍ବାର ଦୋକାନରେ ବସିଛି, ଏପରି ସମୟରେ କୁଳମଣି ଫେରି ଆସିଲା । କୁଳମଣି ତହୁଁ ବାକ୍ସଟି ବନ୍ଦ କରି ଘର ଭିତରେ ରଖିଦେଇ ଘରେ କୋଲପ ପକାଇ ଦେଲା ଓ ଦୁଇଭାଇ ଘାକ ସାଙ୍ଗ ହୋଇ ଘରକୁ ଆସିଲେ ।

ତହିଁ ଆରଦିନ କସନ୍‌ଲାଲ ଯେତେବେଳେ ମୋହର ମଗାଇଲେ, କୁଳମଣି ଆଉ କିଛି ନ ଦେଖି ଥୋକପଣେ ଉଠାଇ ନେଇ ମୋହରଗୁଡ଼ିକ କସନ୍‌ଲାଲଙ୍କ ହାତକୁ ବଢ଼ାଇ ଦେଲା । କସନ୍‌ଲାଲ ଗଣିକରି ଦେଖିଲେ ଜମାରୁ ଛଅଟି ମୋହର ଅଛି । କୁଳମଣିକୁ ଏହାର କାରଣ ପଚାରିବାରୁ ସେ ବଡ଼ ଅପ୍ରତିଭ ହୋଇଗଲା ।

ସେ ଆଉ କିଛି କଥା ନ କହି ବାକ୍ସ ନିକଟକୁ ଦୌଡ଼ି ଆସିଲା । ସେ ମନେ କଲା, ଭାଇ କାଲି ମୋହର ଦେଖୁଥିଲେ, ସେ ଯେପରି ଅସାବଧାନ ଲୋକ, ବୋଧ ହୁଏ ବାକ୍ସ ମଧ୍ୟରେ କେଉଁଠାରେ ପକାଇ ଦେଇଅଛନ୍ତି । କିନ୍ତୁ ବାକ୍ସ ତମାମ ତନ୍ନ ତନ୍ନ କରି ଖୋଜି କେଉଁଠାରେ ମୋହର ନ ପାଇବାରୁ କୁଳମଣିର ମଥା ଘାଉଁରିଗଲା । ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । କଣ କରିବ ତାକୁ କିଛି ବୁଦ୍ଧି ବାଟ ଦିଶିଲା ନାହିଁ ।

ଏଣେ କସନ୍ ଲାଲ ଅନେକ ବିଳମ୍ବ ହେବାର ଦେଖି କୁଆଡ଼େ ଗଲା ବୋଲି କୁଳମଣିକୁ ଡ଼କାଇ ପଠାଇଲେ । ସେତେବେଳକୁ କୁଳମଣିର ଦେହ କଳାକାଠ ପଡ଼ିଗଲାଣି । ଓଠ ଶୁଖିଯାଇ ମୁହଁରୁ ବଚନ ବାହାରୁ ନାହିଁ । କସନ୍‌ଲାଲ ପୁନର୍ବାର ମୋହର କଥା ପଚାରିବାରୁ ସେ ବହୁ କଷ୍ଟରେ ଉତ୍ତର ଦେଲା, "ମୁଁ କାଲି ସବୁ ମୋହରଗୁଡ଼ିକ ମା ବାକ୍ସରେ ରଖି ଦେଇଥିଲି, ଚାବି ବରାବର୍ ମୋ ପାଖରେ ଅଛି । ଆଉ ଛଅଟି ମୋହର କୁଆଡ଼େ ଗଲା ମୁଁ ତ କିଛି ବୁଝି ପାରୁ ନାହିଁ ।"

କସନ୍‌ଲାଲ କିଛିକ୍ଷଣ ଅବାକ୍ ହୋଇ କୁଳମଣି ମୁହଁକୁ ଅନାଇ ରହିଲେ ଓ ପରେ ସେ କିପରି ଭାବରେ କେଉଁଠାରେ ମୋହର ରଖିଥିଲା, ବାକ୍ସର ଚାବି ବନ୍ଦ କରିଥିଲା କି ନା, ଇତ୍ୟାଦି ନାନା ପ୍ରଶ୍ନ କରିବାକୁ ଲାଗିଲେ । ଶେଷରେ କସନ୍ ଲାଲ କହିଲେ, "ବାକ୍ସ ବନ୍ଦ କରି ଚାବି ତ ବରାବର୍ ତୁମ ପାଖରେ ରଖିଛ, ଯେଉଁ ଘରେ ବାକ୍ସ ଥିଲା ତାହାର ଚାବି ମଧ୍ୟ ତୁମ ହାତରେ, ଆଜି ବାକ୍ସ ଖୋଲିଲାବେଳେ ସେହିପରି ବନ୍ଦ ଥିଲା ବୋଲି ତ କହୁଛ, ତେବେ

ଜଣାପଡ଼ୁଛି ଘର ଭିତରେ ବାକ୍ସ ଥିବା ମଧ୍ୟରେ କେହି ମୋହର ନେଇ ନାହିଁ । ଯଦି ନେଇଥାଏ ତାହା ପୂର୍ବରୁ । ଆଚ୍ଛା, ମୁଁ ତୁମକୁ ମୋହର ଦେବାର କେତେ ସମୟ ପରେ ତୁମେ ବାକ୍ସ ବନ୍ଦ କରି ଘରକୁ ଗଲ ?"

"ପ୍ରାୟ ଅଧଘଣ୍ଟା ପରେ ।"

"ତେବେ ଏହି ଅଧଘଣ୍ଟାକ ମଧ୍ୟରେ କେହି ମୋହର ନେଇଛି । ଆଚ୍ଛା, ଏହି ସମୟ ମଧ୍ୟରେ କାଲି ତୁମ ନିକଟକୁ କିଏ କିଏ ଆସିଥିଲେ କହି-ପାରିବ କି ?"

ଏ ପ୍ରଶ୍ନ ଶୁଣି ବିଦ୍ୟୁତ୍ର ଝଲକ ପରି ହଠାତ୍ କୁଳମଣି ମନରେ ଗୋଟାଏ ସନ୍ଦେହ ଜାଗ୍ରତ ହେଲା । ସେ ଭାବିଲା, ଆଉ ତ କେହି ସେଠାରେ ନ ଥିଲେ, କେବଳ ଭାଇ ବସି ମୋହରଗୁଡ଼ାକ ଦେଖୁଥିଲେ । ତେବେ କଣ ଆଉ···? ଏ କଥା ଭାବିଲାମାତ୍ରେ କୁଳମଣିର ମନେ ହେଲା ତ ବକ୍ଷସ୍ଥଳରେ ଯେପରି କିଏ ଗୋଟାଏ ଲୌହଶଲାକା ବିଦ୍ଧ କରି ଦେଲା । ତାହାର ମୁଖ ଅତ୍ୟନ୍ତ ମଳିନ ପଡ଼ିଗଲା । କି ଉତ୍ତର ଦେବ ସେ କିଛି ଯୁଝି ପାରିଲା ନାହିଁ । କସନ୍‌ଲାଲ ତାର ଉତ୍ତରର ପ୍ରତୀକ୍ଷା କରି ଅଛନ୍ତି ଦେଖି ଶେଷରେ ସେ କହିଲା, "ସେ ସମୟରେ ମୋ ପାଖକୁ କେହି ଆସିଥିବାର ତ ମୋର ହେଜ ହେଉ ନାହିଁ ।"

କୁଳମଣି ଯେ ଟିକିଏ ହତବୁଦ୍ଧି ହୋଇ ପଡ଼ିଛି, କସନ୍‌ଲାଲ ଏହା ବୁଝି ପାରିଲେ । ସେ କହିଲେ, "ଆଚ୍ଛା ତୁମେ ଭଲ କରି ହେଜ ମୋତେ ଦିନେ ଦୁଇଦିନ ମଧ୍ୟରେ କହ । ମୁଁ ମଧ୍ୟ ଭଲରକମ ଏହାର ସନ୍ଧାନ ନେଉଛି । ଗୋଟିଏ କନାର ନ କରି ମୁଁ ଛାଡ଼ିବି ନାହିଁ । ବାକ୍ସ ଭିତରୁ ଉଡ଼ିବାଲି ଚୋରି— ସହଜ କଥା ନୁହେଁ ।"

କୁଳମଣି ସେ ଦିନ ଆସି ନୀଳମଣି ଆଗରେ ଚୋରି କଥା ଆନୁପୂର୍ବିକ ବର୍ଣ୍ଣନା କରିଗଲା । ଦେଖିଲା, ନୀଳମଣିର କୌଣସି ଭାବାନ୍ତର ଲକ୍ଷିତ ହେଲା ନାହିଁ । ସେ ପଚାରିଲା, "ଆଚ୍ଛା, ମୁଁ ଗୋଦାମକୁ ଯିବା ଭିତରେ ଆଉ କେହି ସେଠାକୁ ଆସିଥିଲେ ?"

"ନା, ମୁଁ ତ ବରାବର ଥିଲି, ଆଉ କେହି ଆସିବାର ଦେଖି ନାହିଁ ।" କୁଳମଣି ଗୋଟିଏ କରୁଣାର ଦୀର୍ଘ ନିଃଶ୍ୱାସ ପକାଇ ଚୁପ ହୋଇ ବସି ରହିଲା । ନୀଳମଣି କହିଲା, "ଯାହାର ତ ମାଲ ଗଲା, ଗଲା । ତୁ ଏଥିଲାଗି ଅକାରଣେ ଏତେ ବ୍ୟସ୍ତ ହଉଛୁ କାହିଁକି ?"

କୁଳମଣି କହିଲା, "ଘଟଣା ଯେମିତି ହୋଇଛି, ମୋ ଉପରେ ପୂରା ସନ୍ଦେହ ହେବାର କଥା । ଅନ୍ୟ କାହାରିକୁ ସନ୍ଦେହ କରିବାର ତ କିଛି କାରଣ ଦେଖାଯାଉ ନାହିଁ ।" ନୀଳମଣି ହସି ହସି କହିଲା, "ତୁ ଗୋଟାଏ ପାଗଳ ନା କଣ ? ତୋତେ ସନ୍ଦେହ କରିବ ଏତେ ଗୁର୍ଦ୍ଦା କାହାର ?"

ନୀଳମଣିର ବେଖାତିର କଥା ଶୁଣି କୁଳମଣି ମନେ ମନେ ଟିକିଏ ଆଶ୍ୱସ୍ତ ହୋଇ ସେଠାରୁ ଉଠି ଚାଲିଗଲା ।

ଏହାର ଦୁଇଦିନ ପରେ ଦୈବାତ୍ ମାଧବ କୃଷ୍ଣ ସଙ୍ଗେ କୁଳମଣିର ଦେଖା ହେଲା । ମାଧବ କୃଷ୍ଣ ରାଧାଶ୍ୟାମ ବାବୁଙ୍କର ଜଣେ ବଡ ମହାଜନ । କୁଳମଣି ଜାଣେ, ବାପାଙ୍କ କାଳ ହେବା ପରେ ତାର ଅନେକ ଗୁଡାଏ ପାଉଣା ବାକି ଥିଲା । କିନ୍ତୁ ବର୍ତ୍ତମାନ ଶୁଣିଲା ଯେ ନୀଳମଣି ସବୁ ପରିଶୋଧ କରିଅଛନ୍ତି । ବାକି ଟଙ୍କା ପନ୍ଦରଟା ଥିଲା ଯେ, ତାହା ମଧ୍ୟ କାଲି ଛୁଣ୍ଡାଇ ଦେଲେ । ଏ କଥା ଶୁଣି କୁଳମଣି ଭାବିଲା ବର୍ତ୍ତମାନ ତ ପହିଲା ସମସ୍ତ ନୁହେଁ, ଭାଇ ଟଙ୍କା ପାଇଲେ କେଉଁଠାରୁ ? ତେବେ କଣ କଥାଟା ସତ୍ୟ ? କୁଳମଣି ସେଠାରେ ଆଉ ରହି ପାରିଲା ନାହିଁ । ଭାଇଙ୍କୁ ସନ୍ଦେହ କରିବାକୁ ପ୍ରଥମେ ତାର ଇଚ୍ଛା ବା ସାହସ ହେଉ ନ ଥିଲା । କିନ୍ତୁ ଉପାୟ କଣ ? ଘଟଣାଗୁଡାକ ତ ଆଉ ମିଥ୍ୟା ସାକ୍ଷ୍ୟ ଦେବେ ନାହିଁ ।

ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ କୁଳମଣିଠାରୁ ସବୁ କଥା ଶୁଣିଲେ । କୁଳମଣି ତା'ର ମନର ସନ୍ଦେହଟା ମଧ୍ୟ ତାଙ୍କ ନିକଟରେ ଗୋପନ କରି ପାରିଲା ନାହିଁ । ଶୁଣି ଦୁଃଖ, ଲଜ୍ଜା ଓ ଘୃଣାରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ହାୟ ! ଯାହା-ଠାରେ ସେ ଏତେ ଆଶା ଭରସା ବାନ୍ଧିଥିଲେ ତାର ଦଶା ଶେଷରେ ଏଇତା ହେଲା । ସେ ଆଉ ସମ୍ଭାଳି ନ ପାରି ରୋଦନ କରିବାକୁ ଲାଗିଲେ ।

କୁଳମଣି କହିଲା, "ମା, ତୁ ବୃଥା ଏତେ ବ୍ୟାକୁଳ ହେଉଛୁ କାହିଁକି ? ଆମ୍ଭମାନଙ୍କ ସନ୍ଦେହ ଅମୂଳକ ହୋଇପାରେ । ହୁଏତ ଭାଇ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଏହିକ୍ଷଣି ତ କିଛି ଜଣା ଯାଇ ନାହିଁ, ଖାଲି ଗୋଟାଏ ଅନୁମାନ କରିବା କଥା ।

ମା କହିଲେ, "ତୁ ମୋତେ ବୁଝେଇବୁ କଣ ? ମୋ ମନ ତ ମୋତେ କହୁଛି, ନିଳୁ ଏଥିରେ ଅଛି । ଅନେକ ଦିନ ହେଲା ତାର ଢଙ୍ଗଢାଙ୍ଗ ମୋତେ

କାହିଁକି ଭଲ ଲାଗୁ ନାହିଁ । ଆଜିକାଲି ତାକୁ ଦଣ୍ଡେ ଘରେ ଦେଖିବାକୁ ସପନ । ନିତି ରାତିରେ ଘରକୁ ଫେରୁ ଫେରୁ ଦଶଟା କି ଏଗାରଟା । ଗଣ୍ଡାଏ କଣ ଖାଇ ଦେଇ ଅଧରାତି ପର୍ଯ୍ୟନ୍ତ ଆଲୁଅ ଜାଳି କଣ ଯେ କରୁଥାଏ, ସେ ଜାଣେ । ରୂପ ଭେକ ତ ସବୁ ଗଲାଣି— ଦିନକୁ ଦିନ ଖାଲି ଖିନ୍ନ ହୋଇ ଯାଉଛି । ହଁ, କାଲି ସେମିତି ବଳିଆ କହୁଥିଲି, ତା କୁରୁତା ପାକେଟରୁ ଗୋଟିଏ ଗିନି ଓ କେତେ ପଇସା ତଳେ ଖସି ପଡ଼ିଲା । ଟଙ୍କା କେଇଟା ତ ଯାହା ପାଏ ମୋ ହାତରେ । ସେ ଏତେ ପଇସା ପାଉଛି କେଉଁଠୁ ? ଆଉ କଣ କରୁଛି କେଜାଣି ? ମୋତେ ମରଣ ହେଲା ନାହିଁ ଯାହା ।” ଏହା କହି ସେ ପୁନର୍ବାର କ୍ରନ୍ଦନ କରିବାକୁ ଲାଗିଲେ ।

କୁଳମଣି ଆଉ କିଛି ଉତ୍ତର ଦେଇ ପାରିଲା ନାହିଁ । ତା ମନରେ ଆଉ ଅଣୁମାତ୍ର ସନ୍ଦେହ ରହିଲା ନାହିଁ । ସେ ଭାବିଲା, ବୋଧହୁଏ ଦେଣାଦାରମାନଙ୍କର କଟୂକଥା ସହି ନପାରି ସେ ଏପରି କରି ପକାଇ ଅଛନ୍ତି । କପାଳରେ ଯାହା ଥାଉ ସବୁ ମୋତେ ମୁଣ୍ଡାଇବାକୁ ହେବ । ଏହିପରି ମନକୁ ଟିକିଏ ଦୃଢ଼ କରି-ନେଇ କୁଳମଣି କିସନ୍ ଲାଲଙ୍କ ଘରଠାକୁ ବାହାରିଲା ।

କିସନ୍ ଲାଲ କୁଳମଣିକୁ ଦେଖି ପୁଣି ଶ୍ରୀଶ ସମ୍ବନ୍ଧରେ ନାନା ପ୍ରଶ୍ନ କରି ଶେଷରେ କହିଲେ, “ସେ ସମୟରେ ତୁମ ନିକଟକୁ କିଏ ଆସିଥିଲା, ତୁମର କିଛି ସ୍ମରଣ ହେଉଛି ?”

କୁଳମଣି କହିଲା, “ନାଁ, ସେ ସମୟରେ ମୋ ନିକଟକୁ କେହି ଆସି ନାହାନ୍ତି । ମୁଁ ଏକା ବସି କାମ କରୁଥିଲି ।”

କିସନ୍ ଲାଲ ଏଥିମଧ୍ୟରେ ଅନେକ ଲୋକଙ୍କଠାରୁ ନାନା ତଦନ୍ତ କରି ଶ୍ରୀଶର କିଛି କୂଳ କିନାରା ନ ପାଇବାରୁ କଥାଟା ବାହାର କରିବାକୁ ତାଙ୍କର ସଂକଳ୍ପ ଦୃଢ଼ତର ହୋଇ ଉଠିଥିଲା । କୁଳମଣିଙ୍କ ଉତ୍ତର ଶୁଣି ସେ କହିଲେ, “ତେବେ ଦେଖୁଛି କଅଁଳିଆ କଥାରେ କିଛି ହେବ ନାହିଁ । ପୁଲିସ ହାତରେ ଏହାର ଅନୁସନ୍ଧାନର ଭାର ନ୍ୟସ୍ତ କରିବାକୁ ହେବ ।”

ଏ କଥା ଶୁଣି କୁଳମଣି ଟିକିଏ ଚମକି ଉଠିଲା । କାଳେ ପୁଲିସ ତଦନ୍ତ ହେଲେ ଅସଲ କଥାଟା ବାହାରି ପଡ଼ିବ, ଏହା ଭାବି ସେ ବ୍ୟଗ୍ରତା ସହକାରେ କହିଲା, “ଆଉ ପୁଲିସ ହାତରେ ଏସବୁ ଦିଅନ୍ତୁ ନାହିଁ । ଆପଣ ନିଜେ ତଦନ୍ତ

ନିଜ ଯାହା କରିବାର ଗୋଟାଏ ଫଇସଲ କରି ଦିଅନ୍ତୁ । ସବୁ କଥା ଧରା ନ ପଡ଼େ ମୋ ପାଖରୁ ଯେତେବେଳେ ଯାଉଛ, ମୁଁ ଏଇଟା ହାତରୁ ସହିବ ।"

କୂଳମଣିର ସ୍ୱଭାବର କପଟ ଲାଲଙ୍କ ଦୃଷ୍ଟିରେ ଅଗୋଚର ରହିଲା ନାହିଁ । ସେ କୂଳମଣିର ଅନୁରୋଧ ଶୁଣି ଟିକିଏ ଚିନ୍ତିତ ହୋଇ ଚିନ୍ତା କରିବାକୁ ଲାଗିଲେ । କଥାଟା କ୍ରମେ ତାଙ୍କୁ ଆହୁରି ରହସ୍ୟମୟ ବୋଧ ହେଲା । କୂଳମଣିକୁ ସନ୍ଦେହ କରିବାକୁ ତାଙ୍କର ସାହସ ହେଉ ନଥିଲେ ସୁଦ୍ଧା ଘଟଣାବଳୀର ନିର୍ଦ୍ଦେଶକୁ ସେ ଅଗ୍ରାହ୍ୟ କରିପାରିଲେ ନାହିଁ । ସେ ଭାବିଲେ, ହୁଏତ କୂଳମଣି କୌଣସି ଲୋକକୁ ରକ୍ଷା କରିବାକୁ ଚେଷ୍ଟା କରୁଛି, ନାହିଁ ତ ସେ ନିଜେ ଏ କାର୍ଯ୍ୟ କରିଛି । ଏ ରହସ୍ୟ-ଜାଲ ଭେଦ କରିବାକୁ ତାଙ୍କର କୌତୂହଳ ଆହୁରି ବୃଦ୍ଧି ପାଇଲା ।

ସେହିଦିନ ପୁଲିସ ଥାନାକୁ ଏତଲା ପଠାଗଲା ।

× × ×

ଏଣେ ନୀଳମଣିଙ୍କ ମା ନୀଳମଣିକୁ ଡାକି କହିଲେ, "ହଇରେ ନୀଳୁ ! ମହୁଡ଼ ଚୋରି କଥା କଣ ହୋଇଛି, ଶୁଣିଲୁଣି ?"

ନୀଳମଣି କହିଲା, "ହଁ ଶୁଣିଛି, କଚେରିରେ ମାମଲା ଯାଇକି ଗଲାଣି ?"

ନୀଳମଣିର ଏପରି ନିଶ୍ଚିନ୍ତ ଭାବ ଦେଖି ମା'ଙ୍କ ମନରେ ବଡ଼ କଷ୍ଟ ହେଲା । ସେ କହିଲେ, "ଏଇଟା ଏମିତି ଘାଣ୍ଟି ହେଉଛି, ତୋତେ କଣ ଟିକିଏ ବାଧୁ ନାହିଁ ? ତୋର ଏସବୁ କି ଢଙ୍ଗରେ ନୀଳୁ ?"

ନୀଳମଣି କହିଲା, "ତୁ ବୃଥା ବ୍ୟସ୍ତ ହେଉଛୁ କାହିଁକି ? କଥାଟା ମକଦମା ଉପରକୁ ଆସିଲାଣି, ଭଲ ହେଲା । ତାହାହେଲେ ପ୍ରକାଶ୍ୟ ଅଦାଲତରେ ସମସ୍ତେ ବୁଝିପାରିବେ ଯେ, ରାଧାଶ୍ୟାମ ଦାସଙ୍କ ପୁଅମାନେ ଏସବୁ ପ୍ରଲୋଭନର ଅନେକ ଉପରେ ।"

ନୀଳମଣିଙ୍କ ମା ଏ କଥାରେ କି ଉତ୍ତର ଦେବେ ଠିକଣା କରିପାରିଲେ ନାହିଁ । ଏ ସମ୍ବନ୍ଧରେ ଘରଙ୍କୁ କୌଣସି କଥା କହିବାକୁ କୂଳମଣି ଅନେକ ରାଣ ପକାଇ ମାଙ୍କୁ ବାରମ୍ବାର ନିଷେଧ କରିଥିଲା । ସେହି କଥା ସ୍ମରଣ କରି ସେ ନୀରବ ରହିଲେ ।

ଆଜ ମୋହର ଚୋରି ମକଦ୍ଦମାର ଶୁଣାଣିର ତାରିଖ । ପେନାଲ କୋଡ୍ (ଦଣ୍ଡବିଧି ଆଇନ)ର ଅମୋଘ ଶରଦ୍ୱାରା ଅଭିଯୁକ୍ତ ହୋଇ କୁଳମଣି ଆଜ ଅଦାଲତରେ ଆସାମୀରୂପେ ଦଣ୍ଡାୟମାନ । ଶେଷଫଳ କଣ ହେବ ଜାଣିବା ଲାଗି ଅନେକ ଲୋକ ଅଦାଲତ ଗୃହରେ ରୁଣ୍ଡ ହୋଇ ଅଛନ୍ତି । ଯେଉଁ ଭଦ୍ରଲୋକମାନେ ରାଧାଶ୍ୟାମ ବାବୁଙ୍କ ଦୁଃସ୍ଥ ପରିବାରକୁ ସାହାଯ୍ୟ କରିବା ଲାଗି ଅସାଧ୍ୟ ସାଧନ କରିବେ ବୋଲି ନାନା ଆସ୍ଫାଳନ କରୁଥିଲେ, ସେମାନେ ମଧ୍ୟ ଉପସ୍ଥିତି ମଣ୍ଡନ କରିବାକୁ ଭୁଲି ଯାଇ ନାହାନ୍ତି । ଭାବଭଙ୍ଗୀ ଓ କଥାବାର୍ତ୍ତାରୁ ସେମାନଙ୍କର ଆଗ୍ରହାତିଶଯ୍ୟ ସ୍ପଷ୍ଟ ପ୍ରକାଶ ପାଉଅଛି । ମକଦ୍ଦମାର ପରିଣାମ କଣ ହେବ ବୁଝି ପାରି କିଶନ୍ ଲାଲ ଇଚ୍ଛାକ୍ରମେ ଆଜ ଅଦାଲତରେ ଅନୁପସ୍ଥିତ ହୋଇଅଛନ୍ତି ।

ମୁଦେଇ ତରଫରୁ ସମସ୍ତ ସାକ୍ଷ୍ୟ ଗ୍ରହଣ ଶେଷ ହୋଇଅଛି । ମୁଦାଲା ତରଫରୁ କୌଣସି ସଫେଇ ସାକ୍ଷୀ ନାହିଁ । ବର୍ତ୍ତମାନ କେବଳ ମୁଦାଲାର ଶେଷ ଜବାବ ନିଆଗଲେ ସବୁ କାର୍ଯ୍ୟ ଶେଷ ହେବ । କୁଳମଣି ଆନୁପୂର୍ବିକ ସବୁ ଘଟଣା ବର୍ଣ୍ଣନା କରିଗଲା ଓ ହାକିମ ଗୋଟି ଗୋଟି କରି ସବୁ ଲେଖିଗଲେ । ଶେଷରେ ମୁଦେଇ ତରଫରୁ ଓକିଲ ଉପେନ୍ଦ୍ର ବାବୁଙ୍କ ସୂଚନା ଅନୁସାରେ ହାକିମ ମୁଦାଲାକୁ ପ୍ରଶ୍ନ କରିବାକୁ ଆରମ୍ଭ କଲେ । ଅନ୍ୟାନ୍ୟ ପ୍ରଶ୍ନ ପରେ ସେ କୁଳମଣିକୁ ପଚାରିଲେ, "ମୋହରତକ ପାଇଲେ ତୁମର ସବୁ ଦେଣା ପରିଶୋଧ ହୋଇ ପାରିବ ବୋଲି ତୁମେ କାହା ଆଗରେ ପ୍ରକାଶ କରିଥିଲ ?"

ଏ କଥା ଶୁଣି କୁଳମଣି ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହେଲା ଓ ଶରନ୍ତ ସହକାରେ କହିଲା, "ହଁ, ଏ କଥା ମୁଁ କିଶନ୍ ଲାଲଙ୍କ ମୋହରିର ବୃନ୍ଦାବନ ମହାନ୍ତିଙ୍କୁ ପରିହାସରେ କହିଥିଲି, ଏଥିରୁ କଣ ଆପଣ ସାବ୍ୟସ୍ତ କରୁଛନ୍ତି, ମୁଁ ମୋହର ନେଇଛି ବୋଲି ?"

ହାକିମ—ନା ଆହୁରି ମଧ୍ୟ ଅନେକ ପ୍ରମାଣ ଅଛି, ତୁମ ନିଜ ସାକ୍ଷ୍ୟ ତ ତୁମ ବିରୁଦ୍ଧରେ ପ୍ରଧାନ ପ୍ରମାଣ ।

କୁଳମଣି—ହଁ, ଯେତେବେଳେ ଅନ୍ୟ କିଛି ସନ୍ଧାନ ନ ମିଳିଲା, ମୁଁ ଯେ ଏଥିଲାଗି ସମ୍ପୂର୍ଣ୍ଣ ଦାୟୀ, ତାହା ମୁଁ ସ୍ୱୀକାର କରୁଅଛି, କିନ୍ତୁ—

ଉପେନ୍ଦ୍ରବାବୁ ହାକିମଙ୍କୁ ଅନାଇ ଉତ୍ସାହରେ କହିଲେ, "ହଜୁର, ଏ ଜବାବଟା ଲେଖା ଯାଉ ।"

ସ୍ତେଣ୍ଟାଙ୍କର ଲେଖା ହେଲାକ୍ଷୁ ଓକିଲ ମହାଶୟ ସଙ୍ଗ୍ରାମଜୟୀ ଙ୍କର ପରି ପାର୍ଶ୍ୱସ୍ଥ ଜୁନୟର ଓକିଲଙ୍କ କାନରେ କହିଲେ, "ଯେପରି ଫାନ୍ଦରେ ପକାଇ ଦେଲ୍ ଅସଲ କଥାଟା ନ କହି ଯିବ ବୁଝୁଅଛ ? କିନ୍ତୁ ଟୋକାଟା ଯାହାହେଉ ଖୁବ୍ ସ୍ମାର୍ଟ ।"

ନୀଳମଣି ଯେତେବେଳେ ଅଦାଲତରେ ପ୍ରବେଶ କଲା ସେତେବେଳକୁ କୁଳମଣିର ଜବାବ ଶେଷ ହୋଇଛି ଓ ହାକିମ ସ୍ଥିରଭାବରେ ବସି ରାୟ ଲେଖୁଅଛନ୍ତି । ନୀଳମଣି ଉଦାସୀନ ଭାବରେ ଦର୍ଶକମଣ୍ଡଳୀ ମଧ୍ୟରେ ଛିଡ଼ା ହୋଇ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କରିବାକୁ ଲାଗିଲା । କୁଳମଣିର ଆଖି ମଧ୍ୟ ଭାଇଙ୍କ ଉପରେ ପଡ଼ିଲା । ସେ ଦେଖିଲା, ତାଙ୍କଠାରେ ଚିନ୍ତା ବା ଦୁଃଖର ଲକ୍ଷଣ ଲେଶମାତ୍ର ନାହିଁ—ସେ ମୁଖ ଚିରକାଳ ଯେପରି ପ୍ରସନ୍ନ ଓ ପ୍ରଶାନ୍ତ ଆଜି ମଧ୍ୟ ସେହିପରି । କୁଳମଣି ଆଉ ଭାଇଙ୍କ ଆଡ଼କୁ ଅନାଇ ପାରିଲା ନାହିଁ । ତାର ଚକ୍ଷୁ ଆପେ ଆପେ ନତ ହୋଇ ପଡ଼ିଲା ।

ଦଣ୍ଡଟା କଣ ହେବ ଜାଣିବା ଲାଗି ସମସ୍ତେ ଉଦ୍‌ଗ୍ରୀବ ହୋଇ ରହି-ଅଛନ୍ତି । ଅଦାଲତ ଗୃହଟି ନୀରବ ନିସ୍ତବ୍ଧ । ସମସ୍ତଙ୍କ ଦୃଷ୍ଟି ଥରେ କୁଳମଣି ଉପରେ ଓ ଥରେ ହାକିମଙ୍କ ଉପରେ ପଡ଼ୁଅଛି । ହଠାତ୍ ବାହାରେ ଗୋଟାଏ ଗୋଳମାଳ ଶୁଣାଗଲା । ସମସ୍ତେ ଦୃଷ୍ଟି ଫେରାଇ ଦେଖିଲେ, ସ୍ୱୟଂ କସନ୍‌ଲାଲ ଗଳଦ୍‌ଘର୍ମ ହୋଇ ଜନତା ଭେଦ କରି ଅଗ୍ରସର ହେଉଅଛନ୍ତି ଓ ତାଙ୍କ ପଛେ ପଛେ ଆଉରି ଗୋଟିଏ ଲୋକପ୍ରବାହ । କସନ୍‌ଲାଲ ହେଡ଼ କନ୍‌ଷ୍ଟେବଲ ଉଡ଼ ଅତିକ୍ରମ କରି ଏଜଲାସ୍ ନିକଟରେ ଉପସ୍ଥିତ ହେଲେ ଓ ଉତ୍ତେଜିତ ଭାବରେ ଚିତ୍କାର କରି କହିଲେ, "ହଜୁର, କୁଳମଣିକୁ ଖଲାସ ଦିଆଯାଉ, ଅସଲ ଚୋର ଧରାପଡ଼ିଛି— ସାକ୍ଷୀ ପ୍ରମାଣ ଦରକାର ନାହିଁ, ସାଥେସାଥେ ମାଲ ବରାମଦ ।" କସନ୍-ଲାଲଙ୍କ କଥା ଶୁଣି ସମସ୍ତଙ୍କର ବିସ୍ମୟର ସୀମା ରହିଲା ନାହିଁ । ଏକେ କୁଳମଣି ମଧ୍ୟ ଅତିଶୟ ବିସ୍ମିତ ହୋଇ କସନ୍ ଲାଲଙ୍କ ଆଡ଼କୁ ଅନାଇ ରହିଲା ।

କସନ୍ ଲାଲ ଟିକିଏ ସୁସ୍ଥିର ହୋଇ ସବୁକଥା ବର୍ଣ୍ଣନା କରିଗଲେ । ଘଟନା ଦିନ କସନ୍ ଲାଲଙ୍କ ଘର ଚାକର ଗିରିଆ ମଙ୍ଗୁଲାଲକୁ ଧରି ଦୋକାନ ନିକଟରେ ଛିଡ଼ା ହୋଇଥିଲା । ନୀଳମଣି ବାକ୍‌ସରୁ ମୋହର କାଢ଼ି ଦେଖିବା ସମୟରେ ତାର ଦୃଷ୍ଟି ତହିଁ ଉପରେ ପଡ଼ିଥିଲା । ସେତେବେଳେ ତାର ଲୋଭ ହୋଇଥିଲା କି ନା, କୁହାଯାଇ ନ ପାରେ । କିନ୍ତୁ କୁଳମଣି

ଗୋଦାମକୁ ଖୁଣ୍ଟିବା ପରେ ଯେତେବେଳେ ସେ ଦେଖିଲା ନିକଟରେ ଆଉ କେହି ନାହାନ୍ତି, ନୀଳମଣି ଦୂରରେ ଛିଡ଼ା ହୋଇ କାହା ସଙ୍ଗେ କଥାବାର୍ତ୍ତା କରୁଅଛନ୍ତି, ସେ ଆଉ ଲୋଭ ସମ୍ଭାଳି ପାରିଲା ନାହିଁ । ସୁଯୋଗ ଅନେକ ଭଲ ଲୋକଙ୍କୁ ମଧ୍ୟ ଚୋର କରିଦିଏ । ସିରିଆର ଖୁଡ଼ ପଦିଆ ଗୋଟିଏ ମେସ୍‌ରେ କାମ କରେ । ସେ ଧୀରେ ଧୀରେ ମାଲତକ ଖୁଡ଼ ପାଖକୁ ଖଲାସ କରିଦେଲା । ମୋହରି ସକାଳେ ଯେତେବେଳେ ନାନା ଧୂମ୍‌ଧଡ଼କ ଲାଗିଲା, ସିରିଆକୁ କେହି ସନ୍ଦେହ କରିବା କଥା ଦୂରେ, ତାର ନାମ ଗନ୍ଧ ସୁଧା କେହି ଧରିଲେ ନାହିଁ । ତାକୁ ସନ୍ଦେହ କରିବାର ମଧ୍ୟ କିଛି କାରଣ ନ ଥିଲା । ତା ପରେ ନୀଳମଣି ନାମରେ ଯେତେବେଳେ ମକଦମା ଚାଲିଲା, ଦୁଇ ଖୁଡ଼ଭାଇ ନିଃଶ୍ୱାସ ମାରି ନିର୍ଶ୍ଚିନ୍ତ ହୋଇଗଲେ । କଥା ହେଲା ଯେ ଦଣ୍ଡହେବା ଚୁକି ତ ଆଉ ଅଳ୍ପଦିନ ରହିଲା, ସେହି ସମୟରେ ପଦିଆ ମୋହରି ତକ ଗାଁରେ ଘରକୁ ନେଇ ଯିବ, ଅନ୍ୟ କାହା ହାତରେ ପଠାଇବା ନିରାପଦ ନୁହେଁ । କିଛି ଦିନ ପରେ ମେସ୍‌ରେ ଗୋଟିଏ ପିଲାର ଟଙ୍କା ଚୋରି ଯିବାରୁ ସେ ଦିନ ସକାଳେ ଠାକୁର ପୂଜାହାରୀଙ୍କର ଜିନିଷପତ୍ର ପେଡ଼ି ପେଟରା ଖାନ୍‌ତଲାସ କରାଗଲା ଓ ପଦିଆର କାମ୍ବିସ ଡାବଲ ବାକ୍‌ସ ମଧ୍ୟରୁ ଟଙ୍କା ପରିବର୍ତ୍ତିରେ ଗୁଟେଣ୍ଟି ମୋହରି ବାହାରି ପଡ଼ିଲା । କିଶନ୍ ଲାଲଙ୍କ ମୋହରି ଚୋରି କଥା ମେସ୍‌ର ପିଲାମାନଙ୍କୁ ଅବିଦିତ ନ ଥିଲା ଓ ପଦିଆର ଭାଇ ଯେ କିଶନ୍ ଲାଲଙ୍କ ଘରେ ଥାଏ, ଏ କଥା ସେମାନେ ଜାଣନ୍ତି । କଥାଟା କଣ, ଅନୁମାନ କରିବାକୁ ଆଉ ବେଶି ସମୟ ଲାଗିଲା ନାହିଁ । ସେମାନେ ଧୀରେ ଧୀରେ ମୋହରି ସହିତ ପଦିଆକୁ ନେଇ କିଶନ୍‌ଲାଲଙ୍କ ନିକଟରେ ଉପସ୍ଥିତ ହେଲେ । କିଶନ୍ ଲାଲ ତ ସବୁ କଥା ଶୁଣି ଅବାକ୍ ! ସିରିଆ ମଧ୍ୟ ଏପରି ଅବ୍ୟର୍ଥ ପ୍ରମାଣ ବିରୁଦ୍ଧରେ ବେଶିକ୍ଷଣ ଭୁରୁଡ଼ା ଭୁରୁଡ଼ି କରି ପାରିଲା ନାହିଁ । ଶେଷରେ ସବୁକଥା କହି ମୁନିବର କୃପାଭିକ୍ଷା କରିବାକୁ ଲାଗିଲା । କିଶନ୍ ଲାଲ ଆଉ ଏକ ମୁହୂର୍ତ୍ତ ବିଳମ୍ବ ନ କରି ସିରିଆକୁ ଧରି ଅଦାଲତରେ ଉପସ୍ଥିତ ହେଲେ ।

ସବୁ କଥା ଶୁଣି ହାକିମ ନୀଳମଣିକୁ ଖଲାସ ଦେଲେ ଓ ମକଦମାର ବିଚାର ଅନ୍ୟ ତାରିଖକୁ ମୁଲତବି ରହିଲା ।

ନୀଳମଣି ଯେତେବେଳେ ବାହାରକୁ ଆସିଲା, କେହି ଆଲିଙ୍ଗନ, କେହି କରମର୍ଦ୍ଦନ ଇତ୍ୟାଦି କରି ତାକୁ ବ୍ୟତିବ୍ୟସ୍ତ କରି ପକାଇଲେ । କିଶନ୍ ଲାଲ ନୀଳମଣି ପ୍ରତି ସସ୍ନେହ ଦୃଷ୍ଟି ନିକ୍ଷେପ କରି ଗମ୍ଭୀର ସ୍ୱରରେ କହିଲେ, "ତୁମ ନିଜ ଦୋଷରୁ ଏତେ କାଣ୍ଡ ହେଲା । ତୁମପରି ଚତୁର ଲୋକ ଯେ ଏପରି ନିର୍ବୋଧ

ସ୍ୱଭାବରେ କାର୍ଯ୍ୟ କରିବ, କିଏ ଏହା ଭାବିଥିଲା ? ଯୋଗକୁ କଥାଟା ସିନା ଧରା ପଡ଼ିଗଲା, ନ ହେଲେ ଆଜି—। ମୁଁ ବା ଏତେ କଥା ଜାଣନ୍ତି କିପରି ?"

କୁଳମଣି କୌଣସି ଉତ୍ତର ନ ଦେଇ ଚୁପ୍ ହୋଇ ରହିଲା। ସେପର୍ଯ୍ୟନ୍ତ ସବୁ ଘଟନା ତାକୁ ପ୍ରହେଳିକା ପରି ବୋଧ ହେଉଥିଲା। ସେ ଯେ ଖଲାସ ହୋଇଅଛି, ଏ କଥା ସେ ପୂରା ବିଶ୍ୱାସ କରି ପାରୁ ନ ଥାଏ।

ଭାଇଙ୍କୁ ଦେଖି କୁଳମଣିର ହୃଦୟ ଅନୁତାପରେ ଦଗ୍ଧ ହୋଇଗଲା। ତାଙ୍କୁ କଣ କହିବ, ସେ କିଛି ଭାବି ପାରିଲା ନାହିଁ। ଉଭୟେ ଯେତେବେଳେ ଏକ ସଙ୍ଗରେ ଯାଇ ଘରେ ପହଞ୍ଚିଲେ, କୁଳମଣି କହିଲା, "ଭାଇ, ମୁଁ ଗୋଟାଏ ବଡ ଅପରାଧ କରିଛି, ମୋତେ କ୍ଷମା କର।" ଏହା କହି ସେ ନୀଳମଣିକୁ ସନ୍ଦେହ କରିଥିବା କଥା ସବୁ କହିଗଲା।

ଏକଥା ଶୁଣି ନୀଳମଣି ଟିକିଏ ଚିନ୍ତାକରି କହିଲା, "ଏସବୁ କଥା ତ ମୋତେ ନ କହିବାରୁ ଏତେ ଗଣ୍ଡୋଗୋଳ ହେଲା। ମୁଁ ମଧ୍ୟ କେତେ କଥା ତୁମମାନଙ୍କଠାରୁ ଗୋପନ ରଖି ଭଲ କରି ନାହିଁ। ଟଙ୍କା ଲାଗି ମହାଜନମାନେ ଅସ୍ଥିର କରିବାରୁ ମୁଁ ବାଧ୍ୟ ହୋଇ ସ୍ୱୀକାର କରିଥିଲି। କିନ୍ତୁ ଦେଖିଲି ଯେ, ଏ ସାମାନ୍ୟ ଟଙ୍କାରେ ଘର ଖର୍ଚ୍ଚ ଚଳି ଦେଣା ପରିଶୋଧ ହେବା ଅସମ୍ଭବ। ଏଥିଲାଗି କିଛିଦିନ ମୋତେ ଖଣ୍ଡେ ଟିଉସନ୍ କରିବାକୁ ପଡ଼ିଲା। ତା ପରେ ପ୍ରିଣ୍ଟିଂ କମ୍ପାନୀର ମେନେଜରଙ୍କୁ ଧରାଧରି କରି ଛାପାଖାନାରେ ଖଣ୍ଡେ ଠିକା କାମ ଯୋଗାଡ଼ କଲି। ସେଠାରେ ସନ୍ଧ୍ୟା ସାତଟାଠାରୁ ଦଶଟା ପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ହୁଏ। ସମସ୍ତ ସମୟରେ ଘରଠାକୁ କାଗଜପତ୍ର ଆଣି କାମ କରେଁ। ଏଥିରେ ହାରାହାରି ମାସରେ ପନ୍ଦର ଟଙ୍କାରୁ କମ ପଡେ ନାହିଁ। ଏ ଟଙ୍କାରୁ ଗୋଟିଏ ସୁଦ୍ଧା ମୁଁ ହାତରେ ନ ରଖି ପାଇଲା ମାତ୍ରକେ ମହାଜନମାନଙ୍କୁ ଶୁଝି ଦିଏ। ଏହିପରି ଭାବରେ ପ୍ରାୟ ଅଧିକାଂଶ ଟଙ୍କା ପରିଶୋଧ ହୋଇଗଲା। ଏଥିମଧ୍ୟରୁ ମୁଁ ଖଣ୍ଡେ ଦୁଇଖଣ୍ଡ ପାଠ୍ୟପୁସ୍ତକ ଲେଖିଥିଲି। ମୋର ତ ଆଉ ଛପାଇବାର ବଳ ନାହିଁ। ମେନେଜର କଣ କେଜାଣି ବିଚାରି କମ୍ପାନୀ ତରଫରୁ ବହିତକ ଛପାଇ ଦେଲେ। ସେ ବହି ପାଠ୍ୟପୁସ୍ତକରୂପେ ମନୋନୀତ ହୋଇ ଥିବାର ଶୁଣି ଏବେ ୧୫।୨୦ ଦିନ ତଳେ ବହି ସକାଶେ ସେ ମୋତେ ଶହେଟା ଟଙ୍କା ଦେଇଥିଲେ; କହିଅଛନ୍ତି, ଦ୍ୱିତୀୟ ସଂସ୍କରଣ ହେଲାକୁ ଏ ବିଷୟରେ ଗୋଟିଏ ପକା ବନ୍ଦୋବସ୍ତ କରିଦେବେ। ଏ ଟଙ୍କାଟା

ପାଇ ମୁଁ କେତେଜଣଙ୍କର ପାଉଣା ସମୁଦାୟ ତୁଟାଇ ଦେଇଅଛୁ । ଆଉ ଜଣେ ଦୁଇ ଜଣଙ୍କର ସାମାନ୍ୟ ଟଙ୍କା ବାକି ଅଛି । ମୁଁ କେବଳ ଏଥିରୁ ପନ୍ଦର ଷୋଳଟା ଟଙ୍କା ବାପାଙ୍କ ଫଟୋ ଖଣ୍ଡ ଏନଲର୍ଜ (Enlarge) କରାଇବା ପାଇଁ ହାତରେ ରଖିଥିଲି । ମା ବିରକ୍ତ ହେବେ ବୋଲି ମୁଁ ଆଜିପର୍ଯ୍ୟନ୍ତ ଏସବୁ କଥା ତାହାଙ୍କୁ ଫିଟେଇ କହି ନ ଥିଲି । କିନ୍ତୁ ଏଥିରୁ ଏପରି ବିପରୀତ ଫଳ ହେବ ବୋଲି କିଏ ଜାଣିଥିଲା ?"

ଏସବୁ କଥା ଶୁଣି କୁଳମଣି ନିର୍ବାକ୍ ବିସ୍ମୟରେ ଭାଇଙ୍କୁ ଚାହିଁ ରହିଲା ।

———

# ପ୍ରତିଦାନ

ସେ ଦିନ ରାତିରେ ନିଦ୍ରାରେ ବ୍ୟାଘାତ ହେବାରୁ ମୁଁ ବଡ଼ିଭୋରରୁ ଆସି ବାରଣ୍ଡାରେ କିଛିକାଳ ଶୋଇଥିଲି । ନିଦ ଯେ ଠିକ ହୋଇଥିଲା, ଏପରି ନୁହେଁ; ତେବେ ମୁଁ ଜାଗ୍ରତ ଅବସ୍ଥାରେ ନ ଥିଲି । ଏହିପରି ଅର୍ଦ୍ଧ ସୁଷୁପ୍ତି ଓ ଅର୍ଦ୍ଧ ଜାଗରଣରେ ରହି ମୁଁ କେତେ ଗୁଡ଼ାଏ କଅଣ ସ୍ୱପ୍ନ ଦେଖୁଥିଲି । ସ୍ୱପ୍ନ କଥା ମୋର କିଛି ମନେ ନାହିଁ; ତେବେ ମନଟା କିପରି ଗୋଟାଏ କରୁଣ ଭାବରେ ପୂର୍ଣ୍ଣ ହୋଇ ଉଠିଥିଲା, ଯେପରି କି କ୍ଷଣେ ଅଜଣା ବର୍ଷାଦିନର ମେଘ ଆସି ସମସ୍ତ ହୃଦୟକୁ ଆଚ୍ଛନ୍ନ କରି ରଖିଛି । ଏପରି ସମୟରେ ହରିଆ ଚାକର ଆସି ଡାକିଲା, "ବାବୁ, ବାବୁ, ମଧୁବାବୁ ଆସିଛନ୍ତି ।"

ମୋର ହୃତପିଣ୍ଡରେ ସମସ୍ତ କାର୍ଯ୍ୟ ଯେପରି ଏକାଥରକେ ହଠାତ୍ ସ୍ଥଗିତ ହେଲା । ମୁଁ ଧଡ଼ପଡ଼ ହୋଇ ବିଛଣାରୁ ଦରଉଠା ହୋଇ ହଠାତ୍ ଚିତ୍କାର କରି ଉଠିଲି, "ଏଁ, ଏଁ, ମଧୁବାବୁ ! କେଉଁ ମଧୁବାବୁ ?"

ହରିଆ କହିଲା, "ହେଡ୍ କିରାଣି ବାବୁ ଡାକୁଛନ୍ତି ।"

"ଓଃ !" – ଗୋଟାଏ ଗଭୀର ଦୀର୍ଘ ନିଃଶ୍ୱାସ ପକାଇ ମୁଁ କିଛିକ୍ଷଣ ନୀରବ ରହିଲି । ପରେ କହିଲି, "ତାଙ୍କୁ କହି ଦେ, ମୋ ଦେହ ଆଜି ଭଲ ଲାଗୁ ନାହିଁ, କାଲି ଆସିବେ ।"

ଏତିକି କହି ଦେଇ ମୁଁ ପୁନର୍ବାର ବିଛଣାରେ ପଡ଼ିଗଲି । ମୋର ବକ୍ଷସ୍ଥଳ ଦ୍ୱିଗୁଣ ବେଗରେ ସ୍ପନ୍ଦିତ ହେବାକୁ ଲାଗିଲା । ସମସ୍ତ ଧମନୀରେ ଉଷ୍ଣ ତାଡ଼ିତ-ପ୍ରବାହ ଖେଳିଗଲା । ବହୁଦିନର ଗୋଟିଏ ସ୍ମୃତି ହୃଦୟର ଅନ୍ତସ୍ତଳ ଭେଦ କରି ବୁଦ୍‌ବୁଦପରି ଉପରକୁ ଉଠିବାକୁ ଲାଗିଲା । କ୍ରମେ ସେ ବସ୍ତୁର ରାଜ୍ୟ ଗୁଡ଼ି ସ୍ପଷ୍ଟରୁ ସ୍ପଷ୍ଟତର, ଆହୁରି ସ୍ପଷ୍ଟତର ହୋଇ ଉଠିଲା । ଦେଶକାଳର ସମସ୍ତ ବ୍ୟବଧାନ ଘୁଞ୍ଚିଗଲା । ଅତୀତ ଜୀବନର ଗୋଟିଏ କ୍ଷୁଦ୍ର ଅଙ୍କ ମୋ ଚକ୍ଷୁ ଆଗରେ ପୁନର୍ବାର ଅଭିନୀତ ହୋଇଗଲା ।

ସେ ଆଜିକି ଅନେକ ଦିନର କଥା । ତା ନାମ ଥିଲା ସେହି ମଧୁ । ଆମ୍ଭେମାନେ କଟକ କଲେଜରେ ବରାବର ଏକ ସଙ୍ଗରେ ପଢ଼ି ଆସିଛୁଁ । କିନ୍ତୁ ସାତମତ ଆଳାପ ପରିଚୟ ଥିଲେ ହେଁ କଟକଠାରେ ଆମ୍ଭମାନଙ୍କର ଏତେ

ଘନିଷ୍ଠତା ନ ଥିଲା । କଲିକତାକୁ ଆସି ଏକା ମେସ୍‌ରେ ରହିବାରୁ ସେ ଦୂରତ୍ୱ ଅନେକ ପରିମାଣରେ କମିଗଲା ।

ସେ ବର୍ଷ ବି. ଏ. ପରୀକ୍ଷାରେ ଆମେ ଯେ କେତେ ଜଣ ବିଶ୍ୱବିଦ୍ୟାଳୟର ପ୍ରଥମ ମୋହର ଛାପା ପାଇଲୁ, ତା ମଧ୍ୟରୁ କେତେ ମାରୁଆଡ଼ି ବ୍ୟବସାୟିଙ୍କ ପରି ଅନ୍ତର୍ବାଣିଜ୍ୟ କରିବା ଲାଗି ଓଡ଼ିଶାର ସ୍କୁଲଅଫିସ୍ କୁ ଯିବା ଲାଗି ଗଲେ । ବାକି ଆମେ କେତେ ଜଣ ଏଥିରେ ସନ୍ତୁଷ୍ଟ ନରହି ଆମ ବିଦ୍ୟାର ଜାହାଜ ଉପରେ ଉପାଧିର ଧ୍ୱଜା ଉଡାଇ ଗଜେନ୍ଦ୍ରଗମନରେ ବଙ୍ଗରାଜଧାନୀକୁ ବ୍ୟବସାୟ ପାଇଁ ରମାନା ହେଲୁଁ । ନଗର ପକାଇ ଭିତରକୁ ଯାଇ ଦେଖିଲୁଁ ଯେ ବାସ୍ତବିକ ଯାହା ଶୁଣିଥିଲୁଁ, କଲିକତା ହୀରା ନୀଳା ମୋତି ମାଣିକ୍ୟ ପ୍ରଭୃତି ଜହୁରତ୍ କାଞ୍ଚନର କେନ୍ଦ୍ରସ୍ଥଳୀ, ସେ କଥାଟା ଠିକ୍—ବରଂ ତା ଅପେକ୍ଷା ଢେର ବେଶି । ଆମ ପୂର୍ବରୁ ଆଉ କେତେଜଣ ବ୍ୟବସାୟୀ ମଧ୍ୟ ଏଠାକୁ ଆସିଥିଲେ । ସେମାନେ ଏପର୍ଯ୍ୟନ୍ତ ସ୍ୱଦେଶକୁ ଫେରି ନାହାନ୍ତି—ଫେରିବାକୁ ମଧ୍ୟ ଆଉ ତାଙ୍କର ବେଶୀ ଡେରି ନାହିଁ । ସେମାନେ ପଥ-ପ୍ରଦର୍ଶକ ହୋଇ ଆମ୍ଭମାନଙ୍କୁ କେତେଗୋଟି ବଡ଼ ବଡ଼ ଗୋଦାମ ସଙ୍ଗେ ଚକ୍ଷୁ-ପରିଚୟ କରାଇ ଦେଲେ ଏବଂ ଆମ୍ଭେମାନେ ମଧ୍ୟ କର୍ମକ୍ଷେତ୍ର ଠିକଣା କରି ନେଇ ହିକଏ ନିଶ୍ଚିନ୍ତ ରହିଲୁଁ । କେବଳ ଏତିକ ନୁହେଁ, ସ୍ୱଦେଶରେ ଏହି ବେପାରି-ମାନଙ୍କ ସାହାଯ୍ୟରେ ଆମ୍ଭେମାନେ ଶୀଘ୍ର ବୁଝିପାରିଲୁଁ ଯେ, କଲିକତା କେବଳ କୁବେରପୁରୀ ନୁହେଁ, ଏହାକୁ ମର୍ତ୍ତ୍ୟର ଅମରାବତୀ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଏଠାରେ ବ୍ୟବସାୟ ମଧ୍ୟ ଚାଲିପାରେ, ଆଉ ପାରିଜାତ ସୌରଭ ଗ୍ରହଣ, ସୁରସୁନ୍ଦରୀମାନଙ୍କର ସଙ୍ଗୀତ ଶ୍ରବଣଠାରୁ ଆରମ୍ଭ କରି ସୁଧାର ଆସ୍ୱାଦ ପର୍ଯ୍ୟନ୍ତ ମିଳିପାରେ । ଯେଉଁ ଯୁଦ୍ଧରେ ରାଜ୍ୟାଧିକାର ସଙ୍ଗେ ସଙ୍ଗେ ଦକ୍ଷିଣା ସ୍ୱରୂପ କିଛି ଲୁଣ୍ଠନ ଦ୍ରବ୍ୟ ମଧ୍ୟ ଆତ୍ମସାତ୍ କରି ଯାଇପାରେ, କେଉଁ ବୁଦ୍ଧିମାନ୍ ବ୍ୟକ୍ତି ସେ ସୁଯୋଗ ଛାଡ଼ି କେବଳ ରକ୍ତପାତରେ ସନ୍ତୁଷ୍ଟ ରହିବ ?

ଆଉ ମଧ୍ୟ କାହାଣିରେ ଶୁଣାଥିଲା ଯେ, ଆମ ଦେଶର କେତେକ ସାଧବ ପୁଅ ଏଠାକୁ ବାଣିଜ୍ୟ କରିବାକୁ ଆସିଥିଲେ ଏବଂ ମାଲୁଣୀ ଘରେ ଆଶ୍ରୟ ନେଇ କୌଣସି ରାଜକେମା ସଙ୍ଗେ ଦ୍ୟୂତକ୍ରୀଡାରେ ସର୍ବସ୍ୱ ହାରି ଶେଷରେ ଘରକୁ ଫେରିବା ବେଳେ କେତେଗୁଡ଼ାଏ ଭେଲ ମାଲରେ ବୋଇତ ବୋଝାଇ କରି ସ୍ୱଦେଶକୁ ଫେରିଗଲେ । ଗିଲ୍‌ଟି ମାଲ କାଟତି ହୋଇଗଲା ସତ (ଦୁନିଆରେ ସବୁ ମାଲର କାଟତି ଅଛି), ତେବେ ଚକ୍ଷୁରା ଗରାହାକମାନେ ବୁଝିପାରିଲେ ଯେ ସବୁ ଖଣ୍ଟା ମାଲ ନୁହେଁ । ପୂର୍ବରୁ ସତର୍କ ହୋଇଥିଲେ ସୁନ୍ଦରୀ ରାଜକନ୍ୟାର

ନେଉ ହେଉଥିବା ଆମ୍ଭମାନଙ୍କ ପକ୍ଷରେ ବଡ଼ ଦୁଷ୍କର ହୋଇ ଉଠିଲା ଏବଂ ଆମ୍ଭେ-ମାନେ ଶେଷରେ ଗୋଟି ଗୋଟି ହୋଇ ପଞ୍ଝା ପଞ୍ଝା ହୋଇ ଯାଇ ମାଲୁଣୀ ଘରେ ଲୁଣ୍ଠ ହେଲୁଁ । ଯେଉଁ ବ୍ୟବସାୟରେ କେହ କେବେ ଲାଭବାନ୍ ହୋଇ ନାହିଁ, ଆମ୍ଭେ ବା ହୁଅନ୍ତୁ କପରି ? ଘରଠାକୁ ଖବର ଗଲା, ଏଠାରେ ମାଲ ଯେପରି ସୁଲଭ, ସ୍ୱଦେଶକୁ ଫେରିଲେ ଦଶପଟ ଲାଭ ହେବ; ଅତଏବ ଆଉ ମୂଳଧନ ଆବଶ୍ୟକ ।

ସବୁ ଦଳରେ, ସବୁ ସମାଜରେ ଗୋଟା କେତେ ଗୋଠଛଡ଼ା ଥାନ୍ତି । ଇତିହାସ ପୁରାଣ ସମସ୍ତେ ଏହାର ସାକ୍ଷୀ । ଆମ ଦଳରେ ମଧୁ ଠିକ୍ ସେହିପରି । ସେ ବାଲ୍ୟାବସ୍ଥାରୁ ପାଟିଆ ପର୍ଯ୍ୟନ୍ତ କାର୍ଯ୍ୟ କରି ଆସିଛି । ଅତଏବ ସେ ବ୍ୟବସାୟ ଛଡ଼ା ଆଉ କଛି ଜାଣେ ନାହିଁ ।

ସେ ଉଦବେଳେ ଗୋଦାମକୁ ଯାଇ ଖଣ୍ଡ ବନ୍ଦି କରି ଆସେ ଏବଂ ସନ୍ଧ୍ୟାରେ ଘରକୁ ଆସି ଲାଭ ଲୋକସାନର ଖାତା ମିଳାଇ ମିଳାଇ ଶୋଇପଡ଼େ । ତାକୁ କେହ କଛି ପଚାରିଲେ ସେ କହେ, "ଭାଇ, ଅଦାବେପାରିର ଜାହାଜ ଖବରରେ କାମ କଅଣ ? ମୁଁ ବ୍ୟବସାୟ କରିବାକୁ ଆସିଛି, ବ୍ୟବସାୟ କରିବ, ମୋର ପାରିକାତ ସନ୍ଧାନରେ କ ଆବଶ୍ୟକ ?"

ସଂକ୍ଷେପରେ କହିବାକୁ ଗଲେ, ଆମ୍ଭେମାନେ ଯେପରି କଲେଜର ଲେକ୍‌ଚରରେ Percentage (ଶତକଡ଼ା ଯେତକ ରଖିବା ଦରକାର ତେତକ) ମାତ୍ର ରକ୍ଷା କର ସହାଧନ କକ୍ଷଠାରୁ ଆରମ୍ଭ କର ରଙ୍ଗମଞ୍ଚ ପର୍ଯ୍ୟନ୍ତ ବନ୍ଧୁବାନ୍ଧବମାନଙ୍କ ଉତ୍ତରରେ ତତ୍ତ୍ୱଦର୍ଶିତା ଅର୍ଜନ କରିବାକୁ ଲାଗିଲୁଁ, ଏକଦେଶଦର୍ଶୀ ମଧୁ ସେହିପରି ମୁଣ୍ଡରେ ଗୁଣ୍ଡି ବାନ୍ଧିଦେଇ କେବଳ ମାଲ ବୋଝେଇରେ ବ୍ୟସ୍ତ ରହିଲା । ମଧୁର ଅରସିକତା ଦେଖି ତା ପ୍ରତି ଆମ୍ଭମାନଙ୍କର ବଡ଼ ଦୟା ହୁଏ ଏବଂ ତାହାର କର୍ତ୍ତବ୍ୟନିଷ୍ଠାରେ ଆମର ଯେ କିଛିଏ ଈର୍ଷା ନ ହୁଏ, ଏପରି ନୁହେଁ । କ୍ରମେ ମଧୁ ସମସ୍ତଙ୍କର ଅଟ୍ଟା ବିଦ୍ରୂପ ହାସ୍ୟ ପରିହାସର ଲକ୍ଷ୍ୟସ୍ଥଳ ହୋଇ ଉଠିଲା । ଆମ ମେସ୍‌ର ଯୋଦ୍ଧୃବୃନ୍ଦ ବେଳକାଳ ଉର୍ଣ୍ଣି ଏହି ଲକ୍ଷ୍ୟପଟା ଉପରେ ନଜ ନଜର ଲକ୍ଷ୍ୟଭେଦ କୌଶଳଟା ପରୀକ୍ଷା କର ନଅନ୍ତି । ଲକ୍ଷ୍ୟପଟା କନ୍ତୁ ଛିନ୍ନ ଭିନ୍ନ ହୋଇଗଲେ ସୁଦ୍ଧା ସର୍ବଦା ସ୍ଥିର ଓ ଚଞ୍ଚଳ ରହିଥାଏ । ମଧୁକୁ ଦିନେ କେହ ସ୍ୱରକେନ୍ଦ୍ର ହରାଇବାର ଦେଖି ନାହିଁ, ବରଂ ଅନେକ ଥର ତା ଉପରେ ସମସ୍ତଙ୍କର ସମ୍ମିଳିତ ଚେଷ୍ଟା ବ୍ୟର୍ଥ ହେବାର ଦେଖି ଆମ୍ଭେମାନେ ଅସନ୍ତୁଷ୍ଟ ହୋଇପଡ଼ୁଁ ।

ସହିବା ଗୁଣଟା ଅନେକ ପଶୁମାନଙ୍କ ଭଳି ମଧୁର ପ୍ରକୃତିଗତ ହେଲେ ହେଁ ଏ ସ୍ଥଳରେ ବାଧ୍ୟ ହୋଇ ତାକୁ ନିଷ୍କ୍ରିୟଭାବ ଅବଲମ୍ବନ କରିବାକୁ ପଡ଼େ । କୌଣସି କଥାରେ ମଧୁ କିଛି ପ୍ରତିବାଦ କଲେ ସେଇଟା ଆମମାନଙ୍କୁ ବଡ଼ ଅସହ୍ୟ ହୋଇପଡ଼େ । ଯେଉଁ ସତ୍ତ୍ୱବଳରେ ମନୁଷ୍ୟ ଗୋରୁକାନ୍ଧରେ ଜୁଆଳି ଦେଇ ତାହାଦ୍ୱାରା ଭୂମି କର୍ଷଣ କରେ, ଯେଉଁ ସତ୍ତ୍ୱବଳରେ ଘୋଡ଼ା ପାଟିରେ ଲଗାମ ଦେଇ ମନୁଷ୍ୟ ତା ଉପରେ ସବାର ହୁଏ, ସେହି ସତ୍ତ୍ୱବଳରେ ଆମ୍ଭେମାନେ ମଧୁ ଉପରେ ଜବରଦସ୍ତି ଯଥେଚ୍ଛାଚାର କରି ବିଂଦଶରେ ଶୁଷ୍କ ନୀରସ ଜୀବନକୁ ଟିକିଏ ସରସ କରି ନେଉଁ । ଏପରି ଅବିସମ୍ବାଦିତ ସତ୍ତ୍ୱକୁ ମଧୁ ଯଦି ଅଗ୍ରାହ୍ୟ କରେ ତାହାହେଲେ ତାହାଠାରୁ ବଳି ଅସ୍ୱାଭାବିକ କଥା ଆଉ କଣ ଅଛି ? ମଧୁ କିନ୍ତୁ ଏଥିରେ ଆଦୌ ବିଚଳିତ ହୁଏ ନାହିଁ, ଏପରିକି ଅନେକ ଥର ସେ ଆମ୍ଭମାନଙ୍କ ସଙ୍ଗେ ସେ କୌତୁକରେ ଯୋଗଦିଏ ।

ନାହିଁକି କେଜାଣି, ମୋତେ ମଧୁ ଟିକିଏ ବଡ଼ ସୁଖ ପାଏ ଏବଂ ମୋ ପାଖରେ ମନ ଫିଟାଇ ଦି'ଟା କଥା ମଧ୍ୟ କହେ । ତାହା ବୋଲି ମୁଁ ଯେ ଅନ୍ୟମାନଙ୍କ ଅପେକ୍ଷା ଏତିକ ପାଇବାର ବେଶି ଉପଯୁକ୍ତ ତାହା ନୁହେଁ; ବରଂ ମଧୁକୁ ଅପଦସ୍ଥ କରିବା ଲାଗି ନୂତନ ନୂତନ ଉପାୟ ଉଦ୍ଭାବନ କରିବାରେ ମୁଁ ସର୍ବାପେକ୍ଷା ଅଗ୍ରଣୀ । ତେବେ ମୁଁ ପ୍ରତ୍ୟକ୍ଷରେ ମଧୁ ପ୍ରତି ବିଶେଷ କିଛି ଅତ୍ୟାଚାର କରେ ନାହିଁ । ଆଉ ବାସ୍ତବିକ୍ ମଧ୍ୟ ମଧୁର ଦୁରବସ୍ଥାରେ ମୋର ମନରେ ତା ପ୍ରତି ସମୟ ସମୟରେ ଟିକି ଦୟା ହୁଏ । ଅନ୍ୟାନ୍ୟମାନେ ଯେ କୌଣସି ମନ୍ଦ ଅଭିପ୍ରାୟରେ ମଧୁ ପ୍ରତି ଏପରି ବ୍ୟବହାର କରନ୍ତି, ତାହା ନୁହେଁ; ବରଂ ଭିତରେ ସମସ୍ତଙ୍କର ତା ପ୍ରତି ଗୋଟାଏ ସ୍ନେହର ଆକର୍ଷଣ ଥାଏ । କେବଳ କୌତୁକ ଦେଖିବା ଲାଗି ସମସ୍ତେ ଯୋଗ ଦିଅନ୍ତି ଏବଂ ପ୍ରକୃତରେ ଅନ୍ୟ ମଧ୍ୟ କୌଣସି ପ୍ରସଙ୍ଗରେ ଆମ୍ଭମାନଙ୍କର ଏତେ ଆମୋଦ ହୁଏ ନାହିଁ । ଏହିପରି ଆମୋଦ ଆହ୍ଲାଦରେ ଆମ ମେସ୍‌ଟି ସର୍ବଦା ସରଗରମ ଥାଏ ।

ଗ୍ରୀଷ୍ମ ଛୁଟି ହେବାକୁ ଆଉ ବେଶି ଦିନ ନାହିଁ । ଘରର ଶାନ୍ତିମୟ କୋଳକୁ ଫେରିଯିବା ଆଶାରେ ଆମ୍ଭେମାନେ ପଢ଼ାପଢ଼ିର ଯେ କ୍ଷୀଣ ବନ୍ଧନଟି ଥିଲା, ତାହାକୁ ଛିଣ୍ଡାଇ ଦେଇ ସ୍ଫୂର୍ତ୍ତିରେ କଲିକତା ସହରର ତମାମ୍ ପ୍ରଜାପତି ପରି ଘାଉଁରି ଖାଉଛୁଁ । କେବଳ ମଧୁ ନଥିବାରୁ ମଜଲିସ୍‌ଟା ଷୋଳପଣ ଜମି ପାରୁ ନାହିଁ । ବାସ୍ତବିକ ମଧୁର ଅଭାବକୁ ଆମ୍ଭେମାନେ ଅନ୍ତରର ସହିତ ଅନୁଭବ କରୁଛୁଁ ।

ଦିନେ ସନ୍ଧ୍ୟା ସମୟରେ ମୁଁ ଓ ବିଶ୍ୱନାଥ ଷ୍ଟେସନ ଆଡ଼େ ବୁଲି ଯାଇଥିଲୁଁ । ଫେରିବା ସମୟରେ ହାବଡ଼ାପୋଲ ଉପରେ ଟିକିଏ ଠିଆ ହୋଇ ନଦୀଜଳରେ ଚନ୍ଦ୍ରକିରଣର କ୍ରୀଡ଼ା ଦେଖୁଥିଲୁଁ, ଅନ୍ୟାନ୍ୟ କଥା ପରେ ବିଶ୍ୱନାଥ କହିଲା, "କାଲି ଅପ୍ରେଲ ପହିଲା ନା ?" ମୁଁ କହିଲି, "ହଁ, କାହିଁକି ?"

ବିଶ୍ୱନାଥ କହିଲା, "ଏଥର ମଧୁ ଘରକୁ ବୁଲିଯାଇ All fool's dayଟା ମାଟି କରି ଦେଲା ।"

ମୁଁ କହିଲି, "ଆରେ ସତେ ତ ! ବର୍ଷକର ଗୋଟାଏ ଦିନ କିଅଣ ତୁଚ୍ଛାଟାରେ ଚାଲିଯିବ ?" ପରେ ମୁଁ ଟିକିଏ ନୀରବ ରହି କହିଲି, "ଆଚ୍ଛା, ଗୋଟିଏ କାମ କଲେ ତ ହୁଅନ୍ତା, କୌଣସି ପ୍ରକାରେ ତାକୁ ଯେପରି ଏଥରେ ଏ ସମୟରେ କଲିକତାକୁ ଟାଣି ଆଣନ୍ତେଁ ତାହାହେଲେ ଖୁବ ମଜା ହୁଅନ୍ତା । ସେ କୌଣସି ପ୍ରକାରେ ତାକୁ ଅପ୍ରସ୍ତୁତ କରିବାର କଥା ତ ?" ବିଶ୍ୱନାଥ କହିଲା, "କିନ୍ତୁ ମଧୁ ଗୃହର ଅଭିନବ ମଧୁର ବନ୍ଧନ କାଟି ଆସି ପାରିବ ତ ?"

ମୁଁ କହିଲି, "ଆଚ୍ଛା, କାଲି ଏହାର ଉପାୟ କରିବା ।" ଏହିପରି କଥାବାର୍ତ୍ତା ହୋଇ ଆମ୍ଭେମାନେ ବସାକୁ ଫେରି ଆସିଲୁଁ ।

ତହିଁ ଆରଦିନ ମୁଁ ଏହି ପତ୍ରଖଣ୍ଡି ଲେଖି ବିଶ୍ୱନାଥକୁ ଦେଖାଇଲି :—

ଭାଇ ମଧୁ,

ମୁଁ ଗୋଟିଏ State Scholarship (ସରକାରୀ ବୃତ୍ତି) ପାଇ ବିଲାତ ଯାଉଛି । Scholarship (ବୃତ୍ତି) ପାଇବାର ସେପରି କିଛି ଆଶା ନ ଥିବାରୁ ମୁଁ କାହାରିକୁ ନ କହି ଖଣ୍ଡେ Application (ଦରଖାସ୍ତ) ପଠାଇ ଦେଇଥିଲି । କପାଳବଳରୁ ବୃତ୍ତି ମଞ୍ଜୁର ହୋଇଛି । ମୁଁ ଏହି ୮ ତାରିଖ ଦିନ ବମ୍ବେ ମେଲରେ କଲିକତା ଛାଡ଼ୁଛି । ମେସ୍‌ର ପ୍ରାୟ ସମସ୍ତେ ଘରକୁ ଚାଲିଗଲେଣି । ମୁଁ ଏହି କେତୋଟା ଦିନ ଅନ୍ୟ କୌଣସି ମେସ୍‌ରେ ରହି କଟାଇ ଦେବି ।

ଭାଇ ! ଏହିକ୍ଷଣି କେତେକ ବର୍ଷ ସ୍ୱଦେଶକୁ ଫେରିବାର କୌଣସି ଆଶା ନାହିଁ । ଭାଗ୍ୟରେ କଅଣ ଅଛି ପ୍ରଭୁ ଜାଣନ୍ତି । ସ୍ୱଦେଶ ଛାଡ଼ିବା ପୂର୍ବରୁ ତମକୁ ଥରେ ଦେଖି ପାରିଲେ କୃତାର୍ଥ ହୁଅନ୍ତି । କିନ୍ତୁ ତମେ କଅଣ ସତେ ଏ ଅଭାଗା ପାଇଁ ଏତେ ତ୍ୟାଗ ସ୍ୱୀକାର କରିବ ? ହେଉ ତମ ଇଚ୍ଛା !

ଗରିବ ବନ୍ଧୁଟାକୁ ଟିକିଏ ମନରେ ରଖିଥିବ । ମୁଁ ବର୍ତ୍ତମାନ ବଡ ବ୍ୟସ୍ତ ଥିବାରୁ ଆଉ କିଛି ଲେଖି ପାରୁ ନାହିଁ । ପରେ ଆଉ ସବୁ । ଇତି ।

ତୁମର ସ୍ନେହର
ଇନ୍ଦ୍ରମଣି

ପତ୍ରଖଣ୍ଡି ପଢ଼ିସାରି ବିଶ୍ୱନାଥ କହିଲା, "ବାଃ, ବେଶ୍ ଉପାୟ ତ ବାହାର କରିଛ । ତେବେ ମଧୁର ବିଭାଘର ଦିନ ଦଶ ପନ୍ଦରଟା ହୋଇ ନାହିଁ । ସେ କଣ ସତେ ସେ ମାୟା ଛାଡ଼ି ଏତେ ବାଟ ଆସିବ ? ହଉ, ଚିଠି ଖଣ୍ଡେ ତ ହେଲେ ଦବ । ଦେଖାଯାଉ ।"

ସେଇ ଦିନ ମୁଁ ନିଜେ ଯାଇ ଚିଠିଖଣ୍ଡି ଡାକଘରେ ପକାଇ ଦେଇ ଜୟୋ-ଲ୍ଲାସରେ ବସାକୁ ଫେରି ଆସିଲି ।

× × ×

ସେ ପତ୍ର କଥା ମୋର ଆଦୌ ମନେ ନାହିଁ । ଘଟନାକ୍ରମେ ସେଇ ୮ ତାରିଖ ଦିନ ଜଣେ ବନ୍ଧୁଙ୍କୁ ଛାଡ଼ି ଦେବା ଲାଗି ମୁଁ ଷ୍ଟେସନକୁ ଯାଇଥିଲି । ଟ୍ରେନ୍ ଛାଡ଼ିବା ପରେ ମୁଁ ଗୋଟାଏ ସିଗାରେଟ୍ ଟାଣି ଟାଣିକା ଏକାକୀ ଶୂନ୍ୟ ମନରେ ଷ୍ଟେସନ ଭିତରୁ ବାହାରି ଆସୁଛି, ଏପରି ସମୟରେ ଗ୍ୟାସ୍ ଆଲୁଅରେ ଦେଖିପାରିଲି ଯେ, ଏକ ସ୍ଥାନରେ ଜଣେ ଲୋକ ଶୋଇଛି ଓ ଆଉ କେତୋଟି ଆମ ଦେଶର ଲୋକ ତାକୁ ଘେରି ବିଷଣ୍ଣ ଭାବରେ ବସି ଅଛନ୍ତି । କଥାଟା କଅଣ ବୁଝିବା ଲାଗି ମୋର ଟିକିଏ କୌତୂହଳ ହେଲା । ମୁଁ ନିକଟକୁ ଯାଇ ଯାହା ଦେଖିଲି, ମୋର ଚକ୍ଷୁ ସ୍ଥିର ହୋଇଗଲା । ମୁଁ ଯେ ମଧୁକୁ ଏପରି ଅବସ୍ଥାରେ ଦେଖିବି, ଏହା ମୋହର କଳ୍ପନାର ଅଗୋଚର ଥିଲା । ଦେଖିଲି, ମଧୁ ଅର୍ଦ୍ଧନିମୀଳିତ ନେତ୍ରରେ ଅଚେତନ ଅବସ୍ଥାରେ ତଳେ ଶୋଇଛି ଓ ଗୋଟିଏ ଲୋକ ତା ପାଖରେ ବସି ରହିଛି । ମଧୁର ପାଣ୍ଡୁର ମୁଖମଣ୍ଡଳରେ ଗୋଟିଏ ବିଷାଦର କାଳିମା ପଡ଼ିଯାଇଅଛି । ପ୍ରଥମେ ଏସବୁ କଥା ମୋତେ ପ୍ରହେଳିକା ପରି ବୋଧ ହେଲା । ପରେ ପୂର୍ବ ସ୍ୱପ୍ନର କଥା ସ୍ମରଣ ହେବାରୁ ମୋର ପଞ୍ଜରାହାଡ଼ କେତେଖଣ୍ଡ ଭାଙ୍ଗିଗଲା ପରି ବୋଧ ହେଲା ।

କଣ ହୋଇଛି, ଏତକ କାହାରିକୁ ପଚାରି ବୁଝିବାକୁ ମୋର ଶକ୍ତି ନ ଥିଲା । ଶେଷରେ ମୁଁ ହୃଦୟର ସମସ୍ତ ବଳ ସଞ୍ଚୟ କରି ଗୋଟିଏ ଲୋକକୁ ପଚାରିବାରୁ ସେ

ଯାହା କହଲ, ସବୁ କଥା ମୋ ମଗଜରେ ପଶିପାରଲ ନାହିଁ । ତା କଥାରୁ କେବଳ ମୁଁ ଏତକ ବୁଝିଲି ଯେ କୌଣସି ବନ୍ଧୁ ସଙ୍ଗେ ଦେଖା କରିବା ଲାଗି ମଧୁ ସେ ଦନ ସକାଳ ଗାଡ଼ିରେ ଆସି ଷ୍ଟେସନରେ ପହଞ୍ଚିବା ସମୟଠାରୁ ତାକୁ ହଇଜା ଧରିଛି । ତାଙ୍କ ଗ୍ରାମର କେତୋଟି ଲୋକ ଦୈବାତ୍ ତାକୁ ଷ୍ଟେସନ ନିକଟରେ ଏପରି ଅବସ୍ଥାରେ ଦେଖି ତାର ଯଥାସାଧ୍ୟ ସେବା ଶୁଶ୍ରୂଷାରେ ଲାଗିଛନ୍ତି ।

ଏ କଥା ଶୁଣି ମୋ ମୁଣ୍ଡ ଉପରେ ଯେପରି ଆକାଶ ଖସିପଡ଼ିଲା । ମୁଁ ବଜ୍ରାହତ ପ୍ରାୟ ଅବାକ୍ ହୋଇ ଛିଡ଼ା ହୋଇଗଲି । ମୋ ପାଦତଳେ ପୃଥିବୀ ଟଳମଳ ହେବାକୁ ଲାଗିଲା । ମୁଁ କଅଣ କରିବି, କୁଆଡ଼େ ଯିବି, କିଛି ସ୍ଥିର କରି ନ ପାରି ଗୋଟିଏ ଖୁଣ୍ଟକୁ ଧରି ତା ଉପରକୁ ଆଉଜି ପଡ଼ିଲି ।

କିଛି ସମୟ ପରେ ଗୋଟିଏ ଚିତ୍କାର ଶୁଣି ମୋର ଟିକିଏ ଚୈତନ୍ୟ ହେଲା । ଗୋଟିଏ ଲୋକଠାରୁ ବୁଝିଲି ଯେ, ରୋଗୀର ଶିଘ୍ର ମଇ ଉଠି ସେ ପ୍ରଳାପ କରୁଅଛି । ପୁନରାୟ ଶୁଣି ପାରିଲି, ମଧୁ ଚିତ୍କାର କରି ଉଠିଲା, "ଏଁ, ବମ୍ବେ ମେଲ କେତେବେଳେ ଛାଡ଼ିବ ?—ଉଃ, ଆଉ କେତେ ଡେରି ଅଛି—ଇନ୍ଦୁମଣି ଆସିଲାଣି ?—ଓହୋ ହୋ ।" ମଧୁର ଗୋଟିଏ ଗୋଟିଏ କଥା ମୋର ମର୍ମସ୍ଥଳରେ ଗୋଟିଏ ଗୋଟିଏ ଶର ଫୁଟିଗଲା । ମୁଁ ଆଉ ବେଶୀକ୍ଷଣ ସେଠାରେ ରହି ପାରିଲି ନାହିଁ । ସେମାନଙ୍କ ମଧ୍ୟରୁ ଗୋଟିଏ ଲୋକ ମୋର ଏପରି ଅବସ୍ଥା ଦେଖି ମୋର ପରିଚୟ ଜାଣିବାକୁ ପଛେ ପଛେ ଆସିଲା । ମୁଁ ତାକୁ କିଛି ନ କହି ଦ୍ରୁତଗତିରେ ସହର ଆଡ଼କୁ ଦଉଡ଼ିଲି । ଯାହା ଲାଗି ମଧୁର ଏ ଦଶା ମୁଁ ସେ ସେହି ପାଷାଣ୍ଡ ନାୟିକା, ଏ ଲୋକଟି ପାଖରେ ମୁହଁ ଖୋଲି ଏତକ କହିବାକୁ ମୋର ସାହସ ହେଲା ନାହିଁ ।

ସେ ସମୟରେ ମନର ଭାବ ଲେଖନୀ ମୁଖରେ ପ୍ରକାଶ କରିବା ମୋ ଶକ୍ତିର ଅତୀତ—ମୋର କାହିଁକି, ସେପରି ଭାଷା ଏପର୍ଯ୍ୟନ୍ତ ଜଗତରେ ସୃଷ୍ଟି ହୋଇ ନାହିଁ । ତମର ମାନବ ଶାସ୍ତ୍ରରେ ଆଉ କି ପ୍ରାୟଶ୍ଚିତର ବ୍ୟବସ୍ଥା ଅଛି, ମୁଁ ଜାଣେ ନାହିଁ । କିନ୍ତୁ ମୋର ସେହି ଏକ ମୁହୂର୍ତ୍ତର ପ୍ରାୟଶ୍ଚିତ ନିକଟରେ ତମର କବିକଳ୍ପିତ ଚଉରାଶି ନରକର ଯନ୍ତ୍ରଣା ବୋଧହୁଏ ଅତି ତୁଚ୍ଛ । ସେ ସମୟର କଥା ଦୂରେ ଥାଉ, ତମ ଭିତରେ ତ ଏତେ ଜ୍ଞାନୀ ବୀରପୁରୁଷ ଅଛ, ଦେଖି ଥରେ ଏ ଜ୍ୱାଳାମୟୀ ସ୍ମୃତିର ଆସ୍ୱାଦ କରି—ଦେଖିବା ଦେଖି ତମର କେତେ ଶକ୍ତି ! ତମର କେତେ ଧୈର୍ଯ୍ୟ !

ମୁଁ ଯେତେବେଳେ ସହର ଭିତରେ ପ୍ରବେଶ କଲି, ସହସ୍ର ସହସ୍ର ମକର, କୁମ୍ଭୀର ଯେପରି ମୋତେ ଗ୍ରାସ କରିବା ଲାଗି ମୁଖ ବ୍ୟାଦାନ କରି ଦୌଡ଼ିଲେ । ମନୁଷ୍ୟର ଚିତ୍କାର ହସ, ପକ୍ଷୀର ଚିତ୍କାର ଗାନ, ମୋର ମର୍ମସ୍ଥଳ ପର୍ଯ୍ୟନ୍ତ ଭେଦ କରି ମୋତେ ଉପହାସ କରିବାକୁ ଲାଗିଲେ । ମୁଁ ବଜାର ବଜାର, ଗଳି ଗଳି ଯେତେ ଦୌଡ଼ିଲେ ସୁଦ୍ଧା ଏ ସହରର ଦୁରନ୍ତ କବଳରୁ ନିଜକୁ ରକ୍ଷା କରି ପାରିଲି ନାହିଁ ।

ସେ ସମୟରେ ମୁଁ ଦର୍ପଣ ଧରି ମୋର ଚେହେରା ଦେଖି ନାହିଁ, କିନ୍ତୁ ମୁଁ ଯେତେବେଳେ ଡାକ୍ତରଙ୍କ ଗାଡ଼ିରେ ଧରି ଷ୍ଟେସନ ନିକଟରେ ଆସି ପହଞ୍ଚିଲି, ଯେଉଁ ଲୋକମାନେ ମଧୁର ଶୁଶ୍ରୂଷା କରୁଥିଲେ, କେହି ମୋତେ ଚିହ୍ନି ପାରିଲେ ନାହିଁ । ପରେ ଚିହ୍ନି ପାରି ଯେତେବେଳେ ମୋର ପରୋପକାର-ବ୍ରତର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ, ମୋର ଅନ୍ତଃକରଣରେ ଅସଂଖ୍ୟ ଶେଳବିଦ୍ଧ ହୋଇଗଲା ।

ମଧୁର ବିଛଣା ପର୍ଯ୍ୟନ୍ତ ଯିବାକୁ ମୋର ସାହସ ହେଲା ନାହିଁ । ରୋଗୀର ଅର୍ଦ୍ଧମୁଦ୍ରିତ ନେତ୍ରଦ୍ୱୟରୁ ଦୁଇଟି ଜ୍ୟୋତିର ରେଖା ଆସି ଯେପରି ମୋତେ ଦଗ୍ଧୀଭୂତ କରିବାକୁ ଲାଗିଲା । ଡାକ୍ତର ଏଣ୍ଡୁତେଣ୍ଡୁ କଅଣ ଗୁଡ଼ାଏ ପରୀକ୍ଷା କରି ଯେତେବେଳେ ମୋତେ ଆସି କହିଲେ ଯେ, "ରୋଗୀର ଅବସ୍ଥା ଅଠାଠିକ, ଆଉ କୌଣସି ଆଶା ନାହିଁ ।" ମୁଁ କାନରେ ଅଙ୍ଗୁଳି ଦେଇ ସେହିଠାରେ ବସିଗଲି । ତା ପରେ କଅଣ ଘଟିଲା ମୋର ସ୍ମରଣ ନାହିଁ ।

ସେହି ଦିନଠାରୁ ମୋର କଲିକତାଠାରୁ ଚୋକାନପଣ ଉଠିଲା ।

———

# ମୁକ୍ତି

ଦୂର ବିଦେଶରେ ତିନି ଚାରି ବର୍ଷ ଚାକିରି କଲା ପରେ ଯେତେବେଳେ ଗୋପାଳ ବାବୁ ଘର ପାଖରେ ଖଣ୍ଡିଏ ଚାକିରି ହେବାର ସମ୍ବାଦ ପାଇଲେ, ତାଙ୍କ ମନ ଆନନ୍ଦରେ ବିହ୍ୱଳ ହୋଇ ଉଠିଲା । ଦୟାମୟଙ୍କ ଉଦ୍ଦେଶ୍ୟରେ ତାଙ୍କ ହୃଦୟର ନିଭୃତ କନ୍ଦରରେ ପ୍ରାର୍ଥନାର ଗୋଟିଏ ଉତ୍ସ ଖୋଲିଗଲା । ପେଟଜ୍ୱାଳା ଯୋଗୁଁ ବିଦେଶରେ କେତେ ବାଧାବିଘ୍ନ ନିକଟରେ ତାଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ି ନାହିଁ ! କିନ୍ତୁ ଯା ! ଆଜିଠାରୁ ସବୁ ଦୁଃଖ ଦୁର୍ଦ୍ଦଶାର ଅବସାନ ହେଲା ।

ସେ ମନେ କରିଥିଲେ, ବନ୍ଧୁହୀନ ବିଦେଶର ନିର୍ମମ କବଳରେ ପଡ଼ି ତାଙ୍କର ସମସ୍ତ ସରସ କୋମଳ ଭାବଗୁଡ଼ିକ ନିଷ୍ପେଷିତ ହୋଇ ଯାଇଅଛି, ଅଛି କେବଳ ଗୋଟିଏ ନିରାଶାର କରୁଣ ହାହାକାର । କିନ୍ତୁ ସେ ଆଜି ଚକିତ ଭାବରେ ଦେଖିଲେ, ହୃଦୟର ପ୍ରତ୍ୟେକ ତନ୍ତ୍ରୀ ଗୃହର ଏ ମଧୁର ନିମନ୍ତ୍ରଣରେ ସମସ୍ୱରରେ ବାଜି ଉଠିଲା ।

ଗୋପାଳ ବାବୁଙ୍କର ବିବାହ ପ୍ରାୟ ତିନି ବର୍ଷ ହେଲା ହୋଇ ଗଲାଣି, କିନ୍ତୁ ଦାମ୍ପତ୍ୟସୁଖ ଉପଭୋଗ କରିବା ତାଙ୍କ ଭାଗ୍ୟରେ ପ୍ରାୟ ଘଟି ନାହିଁ କହିଲେ ଚଳେ । ବର୍ଷରେ ଥରେ ଦି'ଥର ତାଙ୍କୁ ଘରକୁ ଯିବାକୁ ପଡେ, କିନ୍ତୁ ସେ ସମୟରେ ଦିନଗୁଡ଼ାକ ଅଯଥା ଦ୍ରୁତଗତିରେ ଏପରି ଘିଡ଼ି ଘିଡ଼ି ହୋଇ ଚାଲିଯାଏ ଯେ, ମଝିରେ ତାରିଖଗୁଡ଼ାକ କେବେ ଆସି ସଂସାରରେ ନିଜ ନିଜ ରାଜତ୍ୱ କରି ଯାଇ ଅଛନ୍ତି, ଏ ବିଷୟରେ ତାଙ୍କର ସନ୍ଦେହ ହୁଏ । ବହୁ ଦିନର ବିଚ୍ଛେଦ ପରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଲଜ୍ଜା ସଙ୍କୋଚର ଶିକୁଳି ଫିଟୁ ନ ଫିଟୁଣୁ ଛୁଟି ଶେଷ ହେବାର ଘଣ୍ଟା ଟଂ ଟଂ ହୋଇ କାନରେ ଆସି ତାରସ୍ୱରରେ ପ୍ରତିଧ୍ୱନିତ ହୋଇ ଉଠେ । ପୁଣି ମନଟା ନିତାନ୍ତ ଜଡ ପଦାର୍ଥ ନୁହେଁ ଯେ, ଯେଉଁଠାରେ ଯେପରି ଭାବରେ ଭାଙ୍ଗି ଯାଇଥିବ ଠିକ୍ ସେହି ସ୍ଥାନରେ ସେପରି ଭାବରେ ପୁଣି ଯୋଡ଼ି ଲାଗିଯିବ । ଅତଏବ ପ୍ରତିଥର ଏହିପରି ନୂଆ କରି ଦାମ୍ପତ୍ୟ ଶାସ୍ତ୍ରର ଅ, ଆଠାରୁ ଆରମ୍ଭ କରି ସତରଫଳା ଟିକିଏ ମତାଇ ନେବାକୁ ହୁଏ ମାତ୍ର । ଏଥିରେ ପଢ଼ା ଶୁଣାର ଉନ୍ନତି ତ ବଡ଼ ବେଶି ହୁଏ ନାହିଁ, ବରଂ ସତରଫଳାର ମୋହଟା ମଧ୍ୟ ଭାଙ୍ଗିଯାଏ । ଏହିସବୁ କାରଣରୁ ଗୋପାଳବାବୁ ଏଥର ଅତୀତର କ୍ଷତିଟାକୁ ସୁଧେ ମୂଳେ ଆଦାୟ କରିବାକୁ କୃତସଂକଳ୍ପ ହେଲେ । ମନରେ ଭବିଷ୍ୟତ ପାଇଁ ଗୋଟି ଗୋଟି ହୋଇ କେତେ 'ପ୍ଲାନ' (ଆଗତ ଭବିଷ୍ୟ ଚିତ୍ର) ଫୁଟି ଉଠିଲା ଏବଂ ଅନ୍ତରର କନ୍ଦ ବିକନ୍ଦରେ ଭାବର ଅସଂଖ୍ୟ ଢେଉ ଖେଳିଗଲା ।

ଘରକୁ ଫେରିବାବେଳେ ଗୋପାଳ ବାବୁ ସମସ୍ତଙ୍କ ମନ ଅନୁସାରୀ କେତେ- ଗୁଡ଼ିଏ ବସ୍ତ୍ର ବସ୍ତ୍ର ସଉକିନିଆ ଜିନିଷ କିଣି ନେଇଗଲେ । ଆହା ! ଏ ସୁଖଟା ଜୀବନରେ ଆଉ ବୋଧହୁଏ କେବେ ଘଟିବ ନାହିଁ ପରା ? ଅତୀତ ଜୀବନ ଆଡ଼କୁ ମୁହଁ ବୁଲାଇ ଗୋପାଳ ବାବୁ ହତ୍ୱାନ୍ଭୂତର ଗୋଟିଏ କରୁଣ ଦୀର୍ଘ ନିଃଶ୍ୱାସ ପକାଇଲେ ଓ ସେହିଦିନ ଗୃହାଭିମୁଖରେ ଯାତ୍ରା କଲେ ।

ଏଥର ଘରକୁ ଆସି ଗୋପାଳବାବୁ ଏକ ନୂତନ ଜଳବାୟୁର ନୂତନ ପ୍ରଭାବ ଅନୁଭବ କଲେ । ଘରଟିକୁ କେନ୍ଦ୍ରକରି ଓ କଳ୍ପନାର ବ୍ୟାସାର୍ଦ୍ଧ ନେଇ ଭବିଷ୍ୟତ୍ ଜୀବନର ଶ୍ରେଷ୍ଠ ବଡ଼ କେତେଗୁଡ଼ିଏ ବୃତ୍ତ ଅଙ୍କନ କରିଗଲେ । ବୃତ୍ତଗୁଡ଼ିକ ପରସ୍ପର- ଠାରୁ ଦୂରବର୍ତ୍ତୀ ହେଲେ ସୁଦ୍ଧା ସମସ୍ତଙ୍କ ମଧ୍ୟରେ କେନ୍ଦ୍ରରୂପେ ଅଖଣ୍ଡ ଭାବରେ ରହିଲେ—ସେ ନିଜେ ଓ ତାଙ୍କ ସ୍ତ୍ରୀ କମଳା । କମଳା ବିଚାରିଲା, "ମୁଁ ତ ଆସି ପୁଅର ମା ହେଲି, ଆଉ ଗୁଡ଼ାଏ ଘୋଡ଼ାଘୋଡ଼ି କାହିଁକି ? ପେଟରେ ଭୋକ ରଖି ମୁହଁରେ ଲାଜ କଲେ ଫଳ କଣ ? ଏ ସୁଯୋଗକୁ ହାତଛଡ଼ା କରିବା ଭଲ ନୁହେଁ । ନିଜ ଧନକୁ ନିଜେ ନ ଦେଖିଲେ ଅନ୍ୟର ବା ମୁଣ୍ଡ ବଥାଇବ କାହିଁକି ?" ଫଳତଃ ଏଥରକ ଯେପରି ଆଉ ଥରେ ଉଭୟଙ୍କର ନୂଆ ହୋଇ ବିବାହ ହେଲା । ଏହିପରି ନୂତନ ଯାତ୍ରୀଯୁଗଳ ଶିଶୁଟିକୁ କୋଳରେ ଘେନି ସ୍ୱପ୍ନବିଭୋର ନେତ୍ରରେ ନିଜର କ୍ଷୁଦ୍ର-ତରୀ ଖଣ୍ଡିକ ମୃଦୁ ମନ୍ଦ ପବନରେ କେଉଁ ଅଜଣା ରାଜ୍ୟ ଆଡ଼କୁ ମେଲିଦେଲେ ।

ଗୋପାଳ ବାବୁଙ୍କର ସ୍ୱଦେଶକୁ ଫେରିବାର ମାସ ଦୁଇଟା ହୋଇ ନାହିଁ, ଖବର ଆସିଲା ଯେ, ତାଙ୍କର ଏକମାତ୍ର ଭଗିନୀ ଇନ୍ଦୁ ଦେଢ଼ ବରଷର ଗୋଟିଏ ଅପୋଗଣ୍ଡ ଶିଶୁ ରଖି ଅକାଳରେ କାଳଗ୍ରାସରେ ପତିତ ହୋଇଅଛି । ଗତବର୍ଷ ଭଗିନୀପତିଙ୍କର ଯକ୍ଷ୍ମାରୋଗରେ ମୃତ୍ୟୁ ହୋଇଥିଲା । ବର୍ତ୍ତମାନ ଏ ଦାରୁଣ ସମ୍ବାଦ ଶୁଣି ଗୋପାଳ ବାବୁ ହତବୁଦ୍ଧି ହୋଇ ପଡ଼ିଲେ । ଇନ୍ଦୁକୁ ସେ କୋଳରେ କାଖରେ ଧରି ମନୁଷ୍ୟ କରିଥିଲେ ଓ ଗଣ୍ଠିଧନ ପରି ତାକୁ ସ୍ନେହ କରୁଥିଲେ । ତାଙ୍କ ବାଲ୍ୟ- ଜୀବନର କେତେ ମଧୁର ସ୍ମୃତି ସଙ୍ଗରେ ଇନ୍ଦୁ ଓତଃପ୍ରୋତ ଭାବରେ ଜଡ଼ିତା । ସେ ଆଉ ଇହଧାମରେ ନାହିଁ, ଏକଥା ଭାବିଲା ବେଳକୁ ତାଙ୍କ ହୃଦୟର ତନ୍ତ୍ରୀ ଛିନ୍ନ ହେବାକୁ ଲାଗିଲା । ଆହା ! ସେ ଅନାଥ ବାଳକଟିର ଦଶା କଣ ହେବ ? ତାଙ୍କ ଘରେ ଆଉ ଯେ ଯେତେ ଥିଲେ ସୁଦ୍ଧା ବାପ ମା ଗଲା ପରେ ଆଉ ଆପଣାର ବୋଲି କିଏ ? ଶୋକର ବେଗଟିକିଏ କମି ଗଲାରୁ ଗୋପାଳ ବାବୁ ସେଠାକୁ ଯାଇ

ସମସ୍ତଙ୍କ ବୃଦ୍ଧାପୋଷ୍ଠ କର ଭଉଣୀ ନବକୁ ସଙ୍ଗରେ ଧର ନଜ ଘରକୁ ଫେର ଆସିଲେ ।

ଭକ୍ତ ଶିଷ୍ୟ ଯେପର ମୃତ ଗୁରୁଦେବଙ୍କର କଛ ଗୋଟିଏ ସମ୍ବଳ ରଖି ତାକୁ ପୁଷ୍ପଚନ୍ଦନ ଦେଇ ସଯତ୍ନରେ ପୂଜା କରେ ଗୋପାଳ ବାବୁ ସେହିପର ଇନ୍ଦୁର ଶେଷ ଚହ୍ନ 'ନବ'ଟି ପାଇଁ ହୃଦୟର ଗୋଟିଏ ପବିତ୍ର କକ୍ଷ ଅଲଗା କରଦେଲେ । ଭାବଲେ, ଆହା ! ବସ୍ତ୍ରଶ୍ରୀ ଜୀବନରେ କେତେ ଦୁଃଖ ନ ଭୋଗିଲା ! ବୋଧହୁଏ ଆମ୍ଭମାନଙ୍କର କଛ ଦୋଷ ଥିଲା; ହୁଏତ ସେ ବିବାହଟି ତାହା ପକ୍ଷରେ ସୁଖକର ହୋଇ ପାରଲା ନାହିଁ, ଆଉ ଟିକଏ ଭଲ ଘର ଦେଇଥିଲେ ଅବା ସେ ସୁଖରେ ବଞ୍ଚି ପାରଥାନ୍ତା । ନଜ ଉପରେ ଏହିପର କେତେ କଳ୍ପିତ ଅପରାଧର ଆରୋପ କର ଗୋପାଳ ବାବୁ ଏହି ଶ୍ରେଷ୍ଠ ଭଉଣୀଟିକୁ ମଣିଷ କର ତାହାର ପ୍ରାୟଶ୍ଚିତ କରବାକୁ ମନସ୍ଥ କଲେ ।

ସ୍ଥାନାନ୍ତରତ କ୍ଷୁଦ୍ର ବୃକ୍ଷଗଛ ପର ନବ ମଧ୍ୟ ଶୀଘ୍ର ଗୋପାଳଙ୍କ ଘର ଆଦର ଗଲା ଏବଂ କ୍ରମେ କ୍ରମେ ତାହାର ଚେରଗୁଡ଼ିକ ଗୋପାଳ ବାବୁଙ୍କ ଚାରପାଖରେ ଗୁଡ଼େଇ ହେବାକୁ ଲାଗିଲା । ଏଡ଼େ ଟକଟେ ପିଲାଠାରେ ଏତେ ଶକ୍ତି ଅଛି ବୋଲି ସେ ଜାଣି ନ ଥିଲେ ଏବଂ ଏତେ ଶୀଘ୍ର ସେ ତାଙ୍କଠାରୁ ଏପରି ଅଦ୍ଭୁତ କୌଶଳରେ କପର ଦସ୍ତଖତ ଲେଖାଇ ନେଲା, ତାହା ସେ ବୁଝି ପାରଲେ ନାହିଁ । ଚୈତନ୍ୟ ହେଲା ବେଳକୁ ସେ ଆଉ ନଜ ଆୟତ୍ତରେ ନାହାନ୍ତି । ମାତ୍ର କେତେଟାରେ ଚେର-ଗୁଡ଼ିକ ତାଙ୍କ ଶିର ପ୍ରଶିରରେ ଭେଦ ତାଙ୍କୁ ଏପର ସୁଦୃଢ଼ ଭାବରେ ଛନ୍ଦ ଦେଲା ଯେ, ତାଙ୍କର ଆଉ ଟିକଏ ହଲଚଲ ହେବାର ସୁବିଧା ରହିଲା ନାହିଁ ।

ପ୍ରଥମରେ ଗୋପାଳ ବାବୁ ନବକୁ ଆଣି କମଳାଠାରେ ସମର୍ପଣ କରିଦେଇ କହିଲେ, "ଦେଖ, ନବକୁ ଘରଠାରୁ ଚଫାତ୍ ବୋଲି ଭାବବ ନାହିଁ । ଆଜିଠାରୁ ଆମ୍ଭେମାନେ ହେଲେଁ ତାର ବାପ ମା । ସଂସାରରେ ତା'ଠାରୁ ବଳି ଦୁଃଖୀ ଆଉ କେହି ନାହିଁ । ଆମେ ଟିକଏ ତା' ଖବର ନ ବୁଝିଲେ ଏ ଛୋଟିଆ ପିଲାଟିର କ ଦଶା ହେବ !" କମଳା ଏଥିରେ ବିଶେଷ ଆଗ୍ରହ ପ୍ରକାଶ ନକଲେ ସୁଦ୍ଧା ସ୍ୱାମୀଙ୍କ କଥାର ପ୍ରତିଧ୍ୱନି କରି ମୁହଁରେ ସେ ଟିକଏ ଆହା ଆହା ଚୁ ଚୁ ନ କଲା ଏପରି ନୁହେଁ । ସେ କନ୍ତୁ ମନେ ମନେ ଚାହିଁଲା, ଏ ପୁଣି ଗୋଟାଏ କୁଗ୍ରହ କୁଆଡ଼ୁ ଜୁଟିଲା ! ଏ ପର୍ଯ୍ୟନ୍ତ ଏ ନାବ ଖଣ୍ଡି ଆମ ଦମ୍ପତିଙ୍କୁ ଘେନ ଲହଡ଼ୀରେ ନାଚ ନାଚ ଖୁସି ବାସିରେ ଚାଲୁଥିଲା, ସ୍ୱାମୀଙ୍କୁ ଏଠାକୁ ଆଣିବା

ଦ୍ୱାରା ଆଶଙ୍କାର କିଛି କାରଣ ନାହିଁ ତ ? ଏ ପୁଣି ମୋ ସ୍ୱାମୀର କଣ୍ଟା ନ ହୁଏ ?

ଗୋପାଳ ବାବୁ ସାଧାରଣତଃ ଟିକିଏ ଗମ୍ଭୀର ପ୍ରକୃତିର ଲୋକ । ବାହାର ସଙ୍ଗେ ବେଶି ଗୁଡ଼ାଏ କଥାବାର୍ତ୍ତା କରିବାକୁ ଭଲ ପାଆନ୍ତି ନାହିଁ । କିନ୍ତୁ ନବ ଆସି ତାଙ୍କର ଏ ମୌନବ୍ରତ ଭାଙ୍ଗି ଦେଇଛି. ସେ ବର୍ତ୍ତମାନ ବାଚାଳ ହେଲେ ଚଳେ । ଯେଉଁମାନେ ତାଙ୍କୁ ଭଲ କରି ଜାଣନ୍ତି, ସେମାନେ ତାଙ୍କର ଏ ଅଦ୍ଭୁତ ପରିବର୍ତ୍ତନରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ନବକୁ ଘେନି କେତେ ହସଖେଳ କରନ୍ତି, କେତେ କ୍ରୀଡ଼ାରେ ଯୋଗ ଦିଅନ୍ତି. କିନ୍ତୁ ତଥାପି ସେଥିରେ କ୍ଳାନ୍ତି ବା ତୃପ୍ତି ନାହିଁ । ପୁନର୍ବାର ବାଲ୍ୟଜୀବନ ଫେରି ପାଇଲା ପରି ସେ ଏକ ପ୍ରକାର ଆହ୍ଲାଦରେ ଆତ୍ମବିସ୍ମୃତ । ଯେଉଁ ଦିନ ନବ ଗୁରୁଣ୍ଡିବା ଅଭ୍ୟାସ ସମାପ୍ତ କରି ଜାନୁକାଡ଼ ଧରି ଗୃହ ପ୍ରଥମରେ ୪।୫ ଇଞ୍ଚ ଉଚ୍ଚ ଦ୍ୱାରବନ୍ଧକୁ ଡେଇଁ ପଡ଼ିଲା, ସେ ଦିନ ଗୋପାଳ ବାବୁ ତାକୁ କୋଳକୁ ନେଇ ପାରିତୋଷିକ ସ୍ୱରୂପ ତା ମୁଖରେ ଅସଂଖ୍ୟ ଚୁମ୍ବନ ଦେଇ ତାକୁ ଅସ୍ଥିର କରି ପକାଇଲେ । ସନ୍ଧ୍ୟାକାଶରେ ଗୋଟି ଗୋଟି ହୋଇ ତାରା ଫୁଟିଲା ପରି ଯେତେବେଳେ ନବର ମୁହଁରୁ ମା ମା, ଦା ଦା ପ୍ରଭୃତି ଅସ୍ଫୁଟ ଭାଷାଗୁଡ଼ିକ କ୍ରମେ ଫୁଟି ଉଠିଲା, ଗୋପାଳ ବାବୁଙ୍କର ଆଉ ବିସ୍ମୟର ସୀମା ରହିଲା ନାହିଁ । ନବ ଯେ ଦିନେ ଜଣେ ଖୁବ୍ ବଡ଼ଲୋକ ହେବ, ଏ ବିଷୟରେ ସେ ଏକପ୍ରକାର ନିଃସନ୍ଦେହ ହୋଇଗଲେ । ଏତେ କମ୍ ବୟସରେ କେଉଁ ପିଲାଟା ଏପରି ତୀକ୍ଷ୍ଣ ବୁଦ୍ଧିର ପରିଚୟ ଦେଇଛି ? ତାଙ୍କ ଘରକୁ ଯେ ଆସନ୍ତି ସମସ୍ତେ ଗୋପାଳ ବାବୁଙ୍କ ମୁଖରେ ନବର ଗୁଣ କୀର୍ତ୍ତନ ଶୁଣି ଶୁଣି ଚଟା ହୋଇଗଲେଣି, ତଥାପି ତାଙ୍କର ସେଥିପ୍ରତି ଲକ୍ଷ୍ୟ ନାହିଁ । ନବର ପ୍ରଶଂସା କଥାରେ କହିଲେ ନ ସରେ !

ସ୍ତ୍ରୀ ବୋଲି ଯେ ଗୋପାଳ ବାବୁ ସ୍ୱାମୀକୁ ସ୍ନେହ ଆଦର ନ କରନ୍ତି, ଏପରି ନୁହେଁ । ଯେତେବେଳେ ନିଜର ପୁଅ ତ । କିନ୍ତୁ ନବପ୍ରତି ତାଙ୍କର ଭାବ ସମସ୍ତଙ୍କୁ ଦବେଇ ଦେଇ ପଡ଼ାକୁ ବାହାରି ପଡ଼େ । ଗୋପାଳବାବୁ ଅନେକ ଥର ନିଜ ସ୍ତ୍ରୀକୁ ଡାକି ନବ ସହିତ କ୍ରୀଡ଼ା କଉତୁକରେ ଯୋଗ ଦିଅନ୍ତି । କିନ୍ତୁ କମଳା ସେ ସେଥିରେ ବ୍ୟଗ୍ରତା ଦେଖାଏ ନାହିଁ । ଏକଥା ବେଶିଦିନ ତାଙ୍କ ଦୃଷ୍ଟିରୁ ଛପି ହୋଇ ରହିପାରିଲା ନାହିଁ । ସେ ମନେ କଲେ କମଳାର ହୃଦୟଟା ଟିକିଏ ଟାଣ, ସେଥିଲାଗି ଏ ନବ ଏ ପର୍ଯ୍ୟନ୍ତ ତା ଉପରେ ବେଶି ପ୍ରଭାବ ବିସ୍ତାର କରି ପାରି ନାହିଁ । ପୁଣି ମନକୁ ପ୍ରବୋଧ ଦେଲେ, ନବ ପରି ପିଲା ପକ୍ଷରେ ଗୋଟାଏ ସ୍ତ୍ରୀଲୋକକୁ ନିଜର କରି ନେବାକୁ ବେଶି ଦିନ ଲାଗିବ ନାହିଁ ।

ନବକୁ କଣ କିଏ ସ୍ନେହ ନ କରି ରହି ପାରେ ? କମଳା ମନେ କରିଥିଲା, ଗୋପାଳ ବାବୁଙ୍କ ହୃଦୟରେ ତାର ଓ ରାଧୁର ପୂର୍ଣ୍ଣ ଅଧିକାର—ସେଇ ଦୁଇ ଜଣହିଁ ବାଣ୍ଟି କରି ତାଙ୍କ ଜୀବଦଶା ପର୍ଯ୍ୟନ୍ତ ଭୋଗ ଦଖଲ କରିବେ । କୌଣସି କାଳେ ଏ ନିଗୂଢ଼ ଦଖଲ ସ୍ୱତ୍ୱରେ ଯେ କିଛି ବାଧା ପଡ଼ିପାରେ, ଏ କଥା ସେ ଧାରଣାକୁ ମଧ୍ୟ ଆଣି ନ ଥିଲା । ବର୍ତ୍ତମାନ ସେଥିରେ ନୂତନ ଭାଗୁଆଳି ଦେଖି କମଳା ସଖେଦ ବିସ୍ମୟରେ ଭାବିଲା, ଏ କି ଘୋର ଅନ୍ୟାୟ ! ମୋ ତପସ୍ୟାର ଫଳ, ମୋ ଆଖିର ମାଣିକ, ମୋ ରଙ୍କନିଧି ରାଧୁ କୁଆଡ଼େ ଗଲା ? ନାଁ, ଆସି ଗାଦି ମାଡ଼ି ବସିଲା ଗୋଟାଏ କେଉଁଠିକାର ଅରକ୍ଷିତ ଛତରା ଟୋକା ! ଇମିତକା ମଣିଷ କଣ ସଂସାରରେ ଥାନ୍ତି ? ମୋ ରାଧୁ ହେଲା ପଛ, ଏ ଛତରାଟୋକା ହେଲା ଆଗ ! ଏ କାଳିଆ କଦଳିସ୍ୱା ପିଲାଟା ଠେଇଁ ଏମିତ କି ମନ୍ତ୍ର ଲାଗିଛି ଯେ ତାର ଠେଇଁ ସବୁ ଗେଲ, ସବୁ ସିନେହ ଅଜାଡ଼ି ହେଉଛି ! ଏତେ ସିନେହ ସୁଆଗ ଅଣ୍ଡିରି ପୁଅକୁ ଶୋଭା ପାଏ ନାହିଁ ।

ଗୋପାଳ ବାବୁ ଦେଖିଲେ, ନବର ଲୋକବଶ କରିବାର କ୍ଷମତା ଉପରେ ତାଙ୍କର ଯେପରି ସ୍ଥିର ବିଶ୍ୱାସ ଥିଲା, ସେଟା ନିତାନ୍ତ ଅଭ୍ରାନ୍ତ ନୁହେଁ । ଅନ୍ତତଃ ନିଜର ସ୍ତ୍ରୀ ଉପରେ ସେ କ୍ଷମତାଟା କିଛି କାମ୍ କଲା ନାହିଁ । ସେ ସ୍ପଷ୍ଟ ବୁଝି ପାରିଲେ ଯେ, ସ୍ନେହ କରିବା ତ କାଠିକର ପାଠ, ସୁଖ ପାଇବା ତ ଦୂରର କଥା, ନବ କ୍ରମେ କମଳାର ଆଖିର କଣ୍ଟା ହୋଇ ଉଠୁଛି । ତେବେ ତ ଏ ସ୍ଥାନଟା ନବ ପକ୍ଷରେ ବଡ଼ ନିରାପଦ ନୁହେଁ ! ଏକଥା ଭାବିଲା ବେଳକୁ ତାଙ୍କ ଦେହ ଶୀତେଇ ଉଠିଲା । କଣ କରିବେ, ସେ କିଛି ବୁଝି ପାରିଲେ ନାହିଁ । ପାଖରେ ନବ ବସି ଖେଳୁଥିଲା । ପକ୍ଷୀ ଯେପରି ଶାବକଟିର ଭୟର କୌଣସି କାରଣ ଦେଖିଲେ ତାକୁ ପାଖକୁ ନେଇ ନିଜ ପକ୍ଷପୁଟରେ ଘୋଡ଼ାଇ ପକାଏ, ଗୋପାଳବାବୁ ସେହିପରି ନବକୁ କୋଳକୁ ଟାଣିନେଇ ଦୃଢ଼ ଭାବରେ ବକ୍ଷରେ ଚାପି ଧଇଲେ ।

ନବ ଟିକିଏ ବାଢ଼ି ଉଠିଲେ କମଳାର ସେଇଟା ବଡ଼ ଅସହ୍ୟ ହୋଇ ପଡ଼େ । "ଏ ଘରେ ଆଉ ଚଳି ହେବ ନାହିଁ । ସଦାବେଳେ ଛୁଆଟାଏ କେଁ କେଁ ହେଲେ କାହା ମନ ଥଣ୍ଡା ରହିବ ? ସଂସାରରେ କଅଣ ପିଲା ନାହାନ୍ତି ! ଏମିତ କୋଉ ପିଲାଟା ହରଘଡ଼ି ସ୍ୱର ମେଲେଇ ବସିଛି ? ଏଇଠେଇଁ ପିଲାଟିଏ ଚଳୁଛି ଯେ ଟିକିଏ ଉଣ୍ଡ ମୁଣ୍ଡ ବାଜିବାକୁ ନାହିଁ । ବେଶୀ ଆଦର ପାଇଲେ ସମସ୍ତେ ଶଢେଇ ହୁଅନ୍ତି ।" ଏହିପରି କେତେ କଥା କହି କମଳା ଚିତ୍କାର କରି ଉଠେ ।

ଗୋପାଳ ବାବୁ ମୂର୍ତ୍ତିମନ୍ତ ପରି ପଦେ କିଛି କଥା ନ କହି ନବକୁ ସେଠାରୁ ନେଇ-ଯାଇ କଅଁଳା ପଅଁଳା କରି ଗ୍ରହଣ କରି ଥାଆନ୍ତି । ନବର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଘରର ଜିନିଷ ପତ୍ର ଭାଙ୍ଗିବା ପ୍ରବୃତ୍ତି ପ୍ରବଳ ହୋଇ ଉଠିଲା । ଆଜି ଶିଶିଟାଏ, କାଲି ଘଣ୍ଟାଟାଏ, ପରଦିନ ଲଣ୍ଠନଟାଏ ଏହିପରି ନବକିଶୋରଙ୍କ ଅନୁଗ୍ରହରୁ ମଝିରେ ମଝିରେ ଘରର କେତେକ ଜିନିଷ ଅଳିଆ ଗଦାକୁ ସ୍ଥାନା-ନ୍ତରିତ ହେଲା । କମଳାର ଗୃହିଣୀପଣରେ ବେଶି ସୁନାମ ନ ଥିଲେ ସୁଦ୍ଧା ଏହି ସମୟରେ ତାଙ୍କର ମିତବ୍ୟୟ ନୀତିଟା ବେଶ୍ ଜାଗ୍ରତ ହୋଇ ଉଠିଲା ଏବଂ ସେହି ଅବସରରେ ପଦେ ଅଧେ କଡ଼ା କଥା ମଧ୍ୟ ମୁହଁରୁ ବାହାରି ଗଲା । ଏହା ହେବା ମଧ୍ୟ ସ୍ୱାଭାବିକ; ବିଶେଷତଃ ଯେତେବେଳେ ନୀତିଭଙ୍ଗକାରୀ ନିଜେ ବା ନିଜର କେହି ନୁହେଁ । ଗୋପାଳବାବୁ ଅବଶ୍ୟ କିନ୍ତୁ ଏଥିରେ ବଡ଼ ଅପଦସ୍ଥ ହୋଇ ପଡ଼ନ୍ତି । ସେ ମନେ କରନ୍ତି, ଏ ସମସ୍ତ ବାକ୍ୟ ବାଣର ଲକ୍ଷ୍ୟସ୍ଥଳ ସେ ନିଜେ, ଏବଂ ସ୍ତ୍ରୀଙ୍କୁ ସନ୍ତୋଷ କରିବାପାଇଁ ସେ ନବକୁ ବେଳେ ବେଳେ ପଦେ ଅଧେ ଗାଳି ଦେବାକୁ ମଧ୍ୟ କୁଣ୍ଠିତ ହୁଅନ୍ତି ନାହିଁ ।

ନବ ବର୍ତ୍ତମାନ ଗୋପାଳ ବାବୁଙ୍କର ପ୍ରଧାନ ଚିନ୍ତାର ବିଷୟ ହୋଇ ଉଠିଲା । ଏଣିକି ନବ ଟିକିଏ ଚଳବୁଲ କରି ପାରିଲାଣି । ଅତଏବ ପଦେ ପଦେ ତାର ବିପଦ । ତାହାର ତ ଆହା ବୋଲି କହିବାକୁ ଏ ଇହସଂସାରରେ କେହି ନାହିଁ, କିଏ ତାହାକୁ ଯତ୍ନ କରିବ, କିପରି ସେ ମନୁଷ୍ୟ ହେବ, ଏହିସବୁ ଚିନ୍ତା ଗୋପାଳ ବାବୁଙ୍କୁ ବିଚଳିତ କଲା । ସେ ଏଣିକି ଆଉ ପ୍ରକାଶ୍ୟ ଭାବରେ ନବକୁ ଆଦର ସ୍ନେହ କରିବାକୁ ସାହସ କଲେ ନାହିଁ । କମଳା ପାଖରେ ଥିଲାବେଳେ ନବର ହାସ୍ୟ କୌତୁକ ଦେଖି ଗୋପାଳ ବାବୁ କେତେ ଥର ମନେ ମନେ ପାଞ୍ଚନ୍ତି, କୋଳକୁ ଆଣି ତାକୁ ଗୋଟିଏ ଚୁମା ଦେବି ବା ପଦେ ହସି କରି କଥା କହିବି, କିନ୍ତୁ କିପରି ଗୋଟାଏ ଅଜଣା ଭୟ ତାକୁ ତର୍ଜନୀ ଦେଖାଇ ବାରଣ କରିଦିଏ । ସେ କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କ୍ଷାନ୍ତ ହୁଅନ୍ତି । କିନ୍ତୁ ନବକୁ ନିର୍ଜନରେ ପାଇଲେ ସେ ସଂସାରଟାକୁ ଆଖି ବୁଜାଇ ଦେଇ ଗାଢ଼ ଆଲିଙ୍ଗନରେ ଆବଦ୍ଧ କରି ପକାନ୍ତି । ଏହିପରି ସେ ମନର ଭାବକୁ ଯେତିକି ଗୋପନ କରିବାକୁ ଚେଷ୍ଟା କରନ୍ତି, ତାହା ସେତିକି ଫୁଟି ଉଠେ । କେତେବେଳେ ଭାବନ୍ତି, ଏ ମୋର କଣ କରିବ ଯେ, ମୁଁ ସବୁ ସାଂସାରିକ ସୁଖ-ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ ସ୍ତ୍ରୀର କିଣା ଗୋଲାମ ପରି ରହିବି ? ଏ କଣ ସୁଖ ନା ଦୁଃଖ ? କିନ୍ତୁ ସେ ଭାବନା କ୍ଷଣକ ପାଇଁ ।

ଗୋପାଳ ବାବୁ କିନ୍ତୁ ଯେତେ ସାବଧାନ ହେଲେ ସୁଦ୍ଧା କମଳା ଆଖିରେ ଧୂଳି ପକାଇ ପାରିଲେ ନାହିଁ । ତାଙ୍କର ଏପରି ପରିବର୍ତ୍ତନ ଦେଖି କମଳା ଭାବିଲା

ଯେ ମୋ ଉପରେ ସନ୍ଦେହ କରି ସେ ଏପରି ଭାବ ଦେଖାଉ ଅଛନ୍ତି । ସେ ତାଙ୍କର ହାବ ଭାବ ଓ କଥାବାର୍ତ୍ତାରୁ ଏହାର ଅଭ୍ରାନ୍ତ ପ୍ରମାଣ ପାଇ ପାରିଲା ଏବଂ ତାହାର ଭିତରର ଈର୍ଷା ଦ୍ୱିଗୁଣ ଜଳି ଉଠିଲା । ଯେତେବେଳେ ଗୋପାଳବାବୁ ବା ନବ ତା ପାଖରେ ନ ଥାନ୍ତି, ତାହାର ସୂକ୍ଷ୍ମ କଳ୍ପନା-ଚକ୍ଷୁ କାନ୍ଥ ବାଡ଼ ଭେଦ କରି ଉଭୟଙ୍କର କେତେ ରଙ୍ଗରହସ୍ୟ, ହାସ୍ୟ-ପରିହାସ, ଗେଲକଉତୁକ ଦେଖି ଆସେ, କେତେ ଗୁପ୍ତ ମନ୍ତ୍ରଣା ଶୁଣି ଆସେ । ଏଣେ ଗୋପାଳ ବାବୁଙ୍କ ଶତ ଚେଷ୍ଟା ସତ୍ତ୍ୱେ ଅନ୍ତରର ଧୂଳିଟିକୁ ଜାଗ୍ରତ ରଖିବାଲାଗି କମଳାର ଉପକରଣ ଅଭାବ ପଡ଼େ ନାହିଁ ।

ପ୍ରକାଶ୍ୟ କଳହ ଅପେକ୍ଷା ଏପରି ବିବାଦ କ୍ରମେ ବେଶି ଦୁଃସହ ହୋଇ ଉଠିଲା । ପରିବାର ମଧ୍ୟରେ କାମଦାମ, ଆମୋଦ ଆହ୍ଲାଦ ସବୁ ହୁଏ, କିନ୍ତୁ ବିଷାଦର ମଳିନ ହାସ୍ୟ ପରି କୌଣସିଥିରେ ଶ୍ରୀ ବା ମାଧୁର୍ଯ୍ୟ ନାହିଁ । ଏଥି ମଧ୍ୟରେ ନବ ଓ ରାଧୁ ପାଠଶାଳାରେ ନାଁ ଲେଖାଇ ସାରିଲେଣି, ଗୋପାଳ ବାବୁଙ୍କର ଗୋଟିଏ କନ୍ୟା ଲାଭ ହେଲାଣି; କିନ୍ତୁ ସ୍ୱାମୀ ସ୍ତ୍ରୀ ମଧ୍ୟରେ ସେ ବ୍ୟବଧାନ ପୂର୍ବପରି ଅକ୍ଷୁଣ୍ଣ ରହିଅଛି । ଅଶରୀରୀ ଜୀବ ପରି ଗୋଟାଏ ଅବିଶ୍ୱାସର ଛାୟା ସର୍ବଦା ଘରର ଚାରି-ପାଖରେ ଘେରି ରହିଛି । ତାହାର ଦୌରାତ୍ମ୍ୟରେ ପରିବାରର ସମସ୍ତେ ଅଥୟ ହୋଇ ସାରିଲେଣି ।

ଗୋପାଳ ବାବୁ ଘରେ ଶାନ୍ତି ପାଇବେ ବୋଲି କେତେ ଆଶା ବାନ୍ଧି ଆସି ନ ଥିଲେ । କିନ୍ତୁ ବର୍ତ୍ତମାନ କଣ ହେଲା ? ସୃଷ୍ଟିକର୍ତ୍ତା ସମସ୍ତ ଦୁଃଖ ଶୋକ ସୃଷ୍ଟି କରି ତାହା ସଙ୍ଗେ ଆଶାର ଯେଉଁ ଅଦ୍ଭୁତ ଚଟଣିଟିକ ଦେଇ ଅଛନ୍ତି, ସେଥିରେ ଆଉ କଥା ବା ପଚାରୁଛି କିଏ ? ହାଉଖିଆ ଅକାଣ୍ଡିଆ ବଗଡ଼ା ଚାଉଳର ଭାତ ମଧ୍ୟ ଅକ୍ଳେଶରେ ଉଦରସ୍ଥ ହୋଇଯାଏ; ତେବେ ସେ ଚଟଣିରେ ପାଚକ ମସଲା ଅପେକ୍ଷା ଲଙ୍କାମରିଚର ଭାଗ ଏତେ ବେଶିଥାଏ ଯେ, ସମସ୍ତ ସମୟରେ ପେଟରେ ନାନା ବିକାରର ମଧ୍ୟ ଅବିର୍ଭାବ ହୋଇପଡ଼େ ! ଆଉ କାହାର କଣ ହେଉ ନ ହେଉ ଅନ୍ତତଃ ଗୋପାଳ ବାବୁଙ୍କ ଭାଗରେ ସେ ଲଙ୍କାମରିଚରୁ ଗୋଟିକେତେ ଭଲ କରି ପଡ଼ିଛି । କୁଆଡ଼େ ଗଲା ତାଙ୍କର ସେ ପ୍ରଫୁଲ୍ଲ ମୁଖକାନ୍ତି ? ସେ ସମୁଜ୍ଜ୍ୱଳ ହାସ୍ୟ ? ଅଛି କେବଳ ପାଣ୍ଡୁର ମୁଖମଣ୍ଡଳରେ ବିଷାଦର କାଳିମା । ତା'ଛଡ଼ା ମଧ୍ୟ ସେ ଏବେ ଟିକିଏ ଚଉଲ ହୋଇ ପଡ଼ିଲେଣି । ସର୍ବଦା ଗୋଟାଏ ଅନ୍ୟମନସ୍କ ଭାବ ଯେପରି ବରାବର ଗୋଟାଏ କଣ ଭାବୁଛନ୍ତି ।

ଜ୍ୟେଷ୍ଠମାସିଆ ଦିନ, ସକାଳୁଆ କଚେରି ହେଉଛି, ଗୋପାଳ ବାବୁଙ୍କର ଜଣେ ଉପରିସ୍ଥ କର୍ମଚାରୀ ତାଙ୍କୁ ଟିକିଏ କଣ ସାମାନ୍ୟ ତ୍ରୁଟିଲାଗି ଅନେକ ଅପମାନ-ସୂଚକ କଥା କହି ଗାଳି ଦେଲେ । ସେ ତ୍ରୁଟି ମଧ୍ୟ ତାଙ୍କ ନିଜର ନୁହେଁ । ଗୋପାଳ ବାବୁଙ୍କ ପରି ସୁଦକ୍ଷ ବିଶ୍ୱସ୍ତ କର୍ମଚାରୀ ସେ ଅଫିସରେ ଆଉ ନାହାନ୍ତି କହିଲେ ଚଳେ । ଏଥିଲାଗି ଉପରିସ୍ଥ କର୍ମଚାରୀମାନଙ୍କଠାରୁ ଆରମ୍ଭ କରି ପିଆଦା ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଟିକିଏ ଭୟ ଓ ଖାତିର କରନ୍ତି । ତାଙ୍କର ପ୍ରକୃତି ଶାନ୍ତ ଶିଷ୍ଟ ହେଲେ ସୁଦ୍ଧା ସେ ଜଣେ ସ୍ୱାଧୀନଚେତା ଲୋକ, ହଠାତ୍ ଏପରି ଅନ୍ୟାୟ ବ୍ୟବହାରରେ ମର୍ମାହତ ହୋଇ ସେ ସେହିକ୍ଷଣି କାର୍ଯ୍ୟରୁ ଇସ୍ତଫା ଦେବାକୁ ଉଦ୍ୟତ ହେଲେ । କିନ୍ତୁ ସହଯୋଗୀ କର୍ମଚାରୀମାନେ ନାନା ପ୍ରକାର ବୁଝାସୁଝା କରିବାରୁ ବହୁକଷ୍ଟରେ ଏଥିରୁ କ୍ଷାନ୍ତ ହେଲେ । ଯାହାହେଉ, ସେ ଦିନ କୌଣସି କାର୍ଯ୍ୟରେ ତାଙ୍କର ମନ ଲାଗିଲା ନାହିଁ । ଯାହା ଏପର୍ଯ୍ୟନ୍ତ କେବେ ଘଟି ନ ଥିଲା, ଆଜି ତାହା ଶୁଣିବାକୁ ପଡ଼ିଲା । ସବୁ ଭାଗ୍ୟର ଦୋଷ । ଏହିପରି ନାନା କଥା ଭାବି ସେ କ୍ଷୁଣ୍ଣ ମନରେ ଘରକୁ ଫେରି ଆସିଲେ ।

ଘରେ ଆସି ପୋଷାକପତ୍ର କାଢୁଛନ୍ତି, ଏପରି ସମୟରେ କମଳା ଏକ ଗୁରୁତର ଅଭିଯୋଗ ଘେନି ସେଠାରେ ହାଜର । ଗୋପାଳ ବାବୁ ସେତେବେଳେ ଏସବୁ ଶୁଣିବାକୁ ଆଦୌ ପ୍ରସ୍ତୁତ ନ ଥିଲେ ସୁଦ୍ଧା ଗୃହଲକ୍ଷ୍ମୀଙ୍କର ନାଟକୀୟ ଭାବଭଙ୍ଗୀ, ଶବ୍ଦବିନ୍ୟାସର ଛଟା ଏବଂ ମଝିରେ ମଝିରେ ରୌଦ୍ର କରୁଣାଦି ନାନାରସର ଅବତାରଣା ଦେଖି ତାଙ୍କର ଦୀର୍ଘ ଭୂମିକା ସମ୍ବଳିତ ନାଲିସଟି ଅଡ଼ୁକୁ କାନ ନ ବୁଲାଇ ରହିପାରିଲେ ନାହିଁ । ନାଲିସର ସାରମର୍ମ ଏହି—ସେଦିନ ସକାଳେ ନବା କୁଆଡ଼ୁ ଗୋଟାଏ ଖେଳନା ବାଜା ଆଣି ରାଧୁ ଆଗରେ ପେଁ ପେଁ କରି ବଜେଇ ତାହାର ସେପରି ବାଜା ନାହିଁ ବୋଲି ତାକୁ ନାନାଦି ଉପହାସ କଲା । ପିଲା ମନ ତ ସମ୍ଭାଳି ହବ କେତେକେ ! ରାଧୁ ସେଠୁ ବାଜା ପାଇଁ କାନ୍ଦି କାନ୍ଦି ଜିଦ୍ ଧରିଲା, ମୁଁ ବୁଝେଇ ବୁଝେଇ ଥକିଲି, ନାହିଁ ନ ବୁଝେ । ପାଖରେ କେଉଁଠି ମିଳୁଛି ଯେ, ପଇସା ଦେଇ କିଣି ଆଣିବ ? ନବକୁ କେତେ କଅଁଳା ସଅଁଳା କରି କହିଲି— ଆରେ ଟିକିଏ ଦେ, ସେ ଧରିଥାଉ, ସେ ପୁଣି ବୁଝିଗଲାରୁ ତୋ ବାଜା ତୋତେ ଫେରାଇ ଦେବ ଯେ । ନବ କ ବୁଝିବା ଜନ୍ତୁ ! ଓଲଟି ହତଭାଗ୍ଣ୍ଡ ତା ଆଗରେ ବେଶି ବଜେଇ ବଜେଇ ନାଚିଲା । ଏଣେ ଦେଖ ରାଧୁର ନାଟ, ରାହାଧର ଝୋଲମରି ପରି ହୋଇଗଲା । କିଛିକ୍ଷଣ ପରେ ନବ ବାଜାଟିକୁ ରଖିଦେଇ କୁଆଡ଼େ ଗଲାରୁ ମୁଁ ଲୁନକରି ରାଧୁକୁ ଟିକିଏ ଧରେଇ ଦେଇ ବୋଧ କରି ଦେଲି । ନବ ତେଣୁ ଆସି ରାଧୁ ହାତରେ ବାଜାଟିକୁ ଦେଖି ବାଘ ପରି ମୂର୍ତ୍ତେଜ ହୋଇ ଉଠିଲା । ତାକୁ ମାରେ

କ ନ ମାରେ ! ଘଧୁକୁ ବୁଝେଇ ମୁଁ ନବ ହାତକୁ ବାଜାଟା ବଢ଼େଇ ଦେଲା ବେଳକୁ 'କଅଁ ସେ ମୋ ବାଜା ଧରନ ନା' କହି ଫିଙ୍ଗି ଲା ଯେ ସେଇଟାକୁ ମୋ ଉପରକୁ—ଦେଖ ମୋ ମୁଣ୍ଡ କଣ ହୋଇଛି ! ଆଖି ଫୁଟିଯିବାକୁ ଆଉ କେତେ ଥିଲା ! ମୋତେ ଓ ଘଧୁକୁ ଆଜ ଆମ ଘରକୁ ପଠାଇ ଦଅ, ତେମେ ପଛକେ ତମ ନବକୁ ନେଇ ଘର କରୁଥାଅ । ମୁଁ ଆଉ ଏ ଘରେ ଦଣ୍ଡେ ପାଣି ଛୁଇଁବ ନାହିଁ ଇତ୍ୟାଦ ।

ନବ ନକଟରେ ଥିଲା, କମଳା ମୁଣ୍ଡ ଦେଖାଇଲା ବେଳକୁ ସେ ଆଉ ସମ୍ଭାଳ ନ ପାର କହିଲା, "ଖଣ୍ଟରେ ବାଜ ମାଇଁଙ୍କ ମୁଣ୍ଡ ଫୁଲ ଯାଇଛି, ମୁଁ କାହିଁକ —" । କମଳା ସମକ୍ଷରେ ତା' ବରୁଦ୍ଧରେ ମିଥ୍ୟାର ଅଭିଯୋଗ ଦେଖି ଗୋପାଳ ବାବୁ ନବ ଆଡ଼କୁ ଆଖି ତରଟି 'ଚୁପ୍' ବୋଲ୍ କହି ବନ୍ଦ କର ଦେଲେ । ଗୋପାଳ ବାବୁ ମାନବ ଚରିତ୍ରରେ ବଶେଷଜ୍ଞ ନହେଲେ ସୁଦ୍ଧା ପରିବାରର କେତେ ଜଣ ଲୋକଙ୍କର ସ୍ୱଭାବ ଚରିତ୍ର ବୁଝିବାର କ୍ଷମତାଟିକ ତାଙ୍କର ଥିଲା । ତେଣୁ କମଳାର କଥାଗୁଡ଼ିକ ନର୍ମଳ ସତ୍ୟ ବୋଲି ବିଶ୍ୱାସ କର ପାରଲେ ନାହିଁ । ଆଉ କଛି ପ୍ରମାଣ ତାଙ୍କର ହସ୍ତଗତ ନ ହେଲେ ସୁଦ୍ଧା ଗୋଟାଏ ଟିଣରେ ଖେଳନା ବାଜ ମୁଣ୍ଡଟା କପର ଏତେ ଫୁଲିଯିବ, ଏ କଥା ସେ ନାନା ଚନ୍ତା ସତ୍ତ୍ୱେ ହୃଦୟଙ୍ଗମ କର ପାରଲେ ନାହିଁ । ଖେଳନା ଦ୍ୱାରା ଟିକଏ ଛଣ୍ଡିଯିବା କ ଚରହୋଇଯିବା ଅବା ହୋଇପାରେ । ବାସ୍ତବକ ମଧ୍ୟ ସେଇଯା, ନବ ଗୋଟିଏ ଖେଳନା ଆଣି ବଜାଇବା ଛଡ଼ା ଅଭି-ଯୋଗରେ ସତ୍ୟର ଭିତ୍ତି ନାହିଁ ବୋଇଲେ ଚଳେ । ଯାହା ହେଉ ଗୋପାଳବାବୁ ସବୁ କଥା ବୁଝି ପାରଲେ, କନ୍ତୁ ନାନା କାରଣରୁ ସେ ଦନର ବିଗ୍ରହଟା ଓଲଟାଅଡ଼ୁ ଆରମ୍ଭ କରଦେଲେ । ସେ ରାଗରେ ନବର କାନକୁ ଧର ଦୁଇଟା ଚାପୁଡ଼ା ମାର କହିଲେ, "ହାରାମଜାଦା ଟୋକା ! ସ୍ତ୍ରୀକୁ ଆଣି ମୁଁ ନାକରେ କାନ୍ଦ ସାରଲିଣି । ତୁ ଏ ଘରୁ ନ ଗଲେ ମଙ୍ଗଳ ନାହିଁ, ତୁ ହେଉଛୁ ସବୁ ଅନର୍ଥର ମୂଳ !" ଏହା କହି ଆଉ କାହାର ଆଡ଼କୁ ନ ଅନାଇ ଗୁଡ଼ାଖୁ ଦେବାଲାଗି ସେ ଚାକରକୁ ଡାକଲେ । ଏପର ଅସମୟରେ ଗୁଡାଖୁର ତଲବ ଦେଖି ଚାକରଟି ମଧ୍ୟ ବଡ଼ ଶଙ୍କିତ ଭାବରେ ନଜ କାର୍ଯ୍ୟରେ ଲାଗିଗଲା ।

ନବ ମାଡ଼ ଖାଇବା କଥା ଛାଡ, ମାମୁଁଙ୍କଠାରୁ ସ୍ନେହ ଆଦର ଛଡ଼ା ଦନେ କଟୁକଥା ଶୁଣି ନାହିଁ । ଆଜ ଏ ଘୋର ଅପମାନରେ ତା ମନରେ ଗୋଟିଏ ଦୁର୍ଜୟ ଅଭିମାନର ଉଦ୍ରେକ ହେଲା । ସେ ପୂର୍ବରୁ ଥରେ ଦାଦାଙ୍କ ବଡ଼ଘରକୁ ଯାଇ ଦନାକେତେ ତାଙ୍କ ଗାଁରେ ରହି ଆସିଥିଲା । ଆଜ ଏପର ଅନ୍ୟାୟ ବ୍ୟବହାରରେ ତା ମନଟା ଘର ଆଡକୁ ଅତ୍ୟନ୍ତ ଆକୃଷ୍ଟ ହୋଇ ପଡ଼ିଲା । ତାଛଡ଼ା ସେ ଶୁଣିଥିଲା

ଯେ, ତାହାର ସହପାଠୀ ହରି ତା ବାପାଙ୍କଠାରୁ ମାଡ ଗାଳି ଖାଇ ସ୍ୱଗାଁକୁ ପଳାଇ ଯାଇ ଥିବାରୁ ତାର ସେହି ଦିନଠାରୁ ଟିକିଏ ପ୍ରତିପତ୍ତି ବଢ଼ିଯାଇଛି । ଯାହାହେଉ ସେ କାହାରିକୁ କିଛି ନ କହି ସାହସ କରି ଗୋବିନ୍ଦପୁର ଅଭିମୁଖରେ ବାହାରି ପଡ଼ିଲା ।

ସେ ଦିନ ସକାଳୁ ଖଣ୍ଡ କେତେ ମେଘ ଗୁପ୍ତଚର ପରି ଲୁଚି ଲୁଚି ଆକାଶରେ ଭାସି ବୁଲୁଥିଲେ । ଯେଉଁ ଦି'ଘଡ଼ିକ ଦିନଘଡ଼ି ଅଛି, ସେମାନେ କି ଇସର ଦେଲେ କେଜାଣି, ମେଘସବୁ ଅସଂଖ୍ୟ ଦଳ ଦଳ ହୋଇ ବିଜୁଳିପତାକା ଉଡ଼ାଇ ଘଡଘଡ଼ି-ଭେରୀ ବଜାଇ ଆସି ରଣସ୍ଥଳରେ ଉପସ୍ଥିତ ହୋଇଗଲେ । ଏପରି ପାଣି ପଥର-ମାଡ ଆଉ ଦେଖା ନାହିଁ । ରାତିରେ ଟିକିଏ ବର୍ଷା ଛାଡ଼ିବାରୁ ଗୋପାଳ ବାବୁ ବୁଲିଯିବା ବାହାନାରେ ଯାଇ ଅନେକ ସ୍ଥାନରେ ନବର ଖୋଜ-ତଲାସ କରି ବିଷଣ୍ଣ ମନରେ ଫେରି ଆସିଲେ । ସୁକରବାକର ମଧ୍ୟ ପାଖ ଆଖ ଖୋଜି ଖୋଜି କିଛି ଫଳ ହେଲା ନାହିଁ । ଶେଷରେ ଗୋପାଳ ବାବୁ ବିରକ୍ତ ହୋଇ କହିଲେ, "ଯାଉ ସେ କୁଆଡ଼େ ଯାଉଛି । ତାକୁ ଆଉ କେହି ଖୋଜାଖୋଜି କରନା ।"

ସେ ଦିନ ରାତିରେ ଶତଚେଷ୍ଟା କରି ତାଙ୍କ ଆଖିକି ନିଦ ମାଡ଼ିଲା ନାହିଁ । ଟିକିଏ ଯାଇ ବିଛଣାରେ ପଡ଼ନ୍ତି, ପୁଣି ଆସି ବରଣ୍ଡାରେ ବୁଲନ୍ତି । ପାହାନ୍ତା ବେଳକୁ ଟିକିଏ ତନ୍ଦ୍ରା ଆସିଲା ସତ୍ୟ, କିନ୍ତୁ ଗୋଟାଏ ଭୟାନକ ସ୍ୱପ୍ନ ଦେଖି ସେ ଉଠି ବସିଲେ ।

ଟିକିଏ ଉଆଁଳ ଖରା ପଡ଼ିଗଲାଣି । ଗୋପାଳ ବାବୁ ଦାଣ୍ଡରେ ଛିଡ଼ା ହୋଇ ଏକଦୃଷ୍ଟିରେ କଣ ଭାବୁଛନ୍ତି । କେତେଗୁଡ଼ାଏ ପାନରା ବାଲି ଅନେକ ରାସ୍ତାରେ କଟକରୁ ଆସି ପହଞ୍ଚିଥିଲେ । ବର୍ଷା କଥା ପଡ଼ୁ ପଡ଼ୁ ସେମାନେ କହିଲେ, ବାବୁ, ସେ ତରଫକୁ ଯେଉଁ ବର୍ଷା ହେଲା, ଏଆଡ଼କୁ କାହିଁ ? ବଡ ବଡ଼ କେତେ ଗଛ ଯେ ଭାଙ୍ଗି ପଡ଼ିଲା, ତାର ପ୍ରମାଣ ନାହିଁ । ସାତ ଆଠ ବର୍ଷର କାଳିଆ ହୋଇ କରି ପିଲାଟିଏ ଏଣ୍ଡୁ ଯାଉଥିଲା । ସେ ଭଲଲୋକ ଘରର ପିଲା ହବ, ଗୋଟିଏ ନେଳିଆ ଅଙ୍ଗା ପିନ୍ଧିଛି । ମାଇଲା ଯେ ଗୋଟାଏ ଚଡ଼କ, ତାକୁ ନେଇ ପଚାଶ ହାତ ଦୂରରେ ଫୋପାଡ଼ି ଦେଲା । ସେଇଠେଇଁ ସାଙ୍ଗେ ସାଙ୍ଗେ ତାର ପ୍ରାଣ ବାହାରିଗଲା ।"

ଗୋପାଳ ବାବୁ କାହାରିକୁ କିଛି ନ କହି ଭୂଇଁକୁ ଧରି ସେହିଠାରେ ଥକା ହୋଇ ବସି ପଡ଼ିଲେ ।

———

# ମାଳତୀ

ରାତି ଅଧିକ ହୋଇ ପଡ଼ିଲାଣି । ଆକାଶ ନିବିଡ଼ ମେଘାଚ୍ଛନ୍ନ । କିଛି ସମୟ ଆଗରୁ ଅସରାଏ ଖୁବ୍ ଟାଣୁଆ ବର୍ଷା ହୋଇ ଯାଇଛି । କିନ୍ତୁ ଝଡ଼ ତୋଫାନ୍ ବନ୍ଦ ହୋଇ ନାହିଁ । ଶ୍ମଶାନଆଡ଼ୁ ଘୁ ଘୁ ସୁ ସୁ ଶବ୍ଦ ଶୁଣା ଯାଉଛି । ପବନ ବଡ଼ ବଡ଼ ଗଛଗୁଡ଼ାକ ସଙ୍ଗେ ଏକ ଉତ୍କଟ କ୍ରୀଡ଼ାରେ ମତ୍ତ । ଚିଲ୍କା ବକ୍ଷରେ ମଧ୍ୟ ତାଣ୍ଡବ ନୃତ୍ୟ ଲାଗିଅଛି । ଢେଉଗୁଡ଼ାକ ଅଶାନ୍ତ ବାଳକ ଶିଶୁଙ୍କ ପରି ଉଚ୍ଛୃଙ୍ଖଳ ଭାବରେ ଗୋଡ଼ାଗୋଡ଼ି ହୋଇ ତଟ ଉପରେ ଆସି ବଳ ବଳ ଶେଷ କରି ପଡ଼ିଯାଉଛନ୍ତି । କୂଳରେ ବନ୍ଧା ହୋଇଥିବା ନୌକାଗୁଡ଼ିକ ଏ ତାଣ୍ଡବ ଲୀଳାରେ ଯୋଗ ଦେବା ନିମନ୍ତେ ନିଜ ନିଜର ବନ୍ଧନ ରଜ୍ଜୁକୁ ଅସହିଷ୍ଣୁ ଭାବରେ ଟଣା ଓଟରା କରୁଛନ୍ତି ଏବଂ ସଙ୍ଗେ ସଙ୍ଗେ ନିଜର ନିଃସହାୟ ଅବସ୍ଥା ବୁଝି ଖାଲି ଗୁଡ଼ାଏ ମନେ ମନେ ଭଟର ଭଟର ହେଉଛନ୍ତି । ଏ ସମସ୍ତରେ ସୁଦ୍ଧା କଦାଚ କ୍ୱଚିତ୍ ଖଣ୍ଡେ ଖଣ୍ଡେ ମାଛଧରା ଡଙ୍ଗା ମଧ୍ୟରୁ କ୍ଷୁଦ୍ର ଆଲୋକ ରେଖାଟିଏ ଜଳରେ ପ୍ରତିବିମ୍ବିତ ହେଉଅଛି ।

ଅଦୂରବର୍ତ୍ତୀ ଧୀବର ପଲ୍ଲୀଟି ନିର୍ଜନ ନିସ୍ତବ୍ଧ । କେବଳ ଗୋଟିଏ କ୍ଷୁଦ୍ର କୁଟୀରରୁ ଗୋଟିଏ କ୍ଷୀଣ ଆଲୋକରେଖା ଆସି ମହିଦାଣ୍ଡରେ ପଡ଼ିଅଛି । ଘରଟି ନୀଚ ଓ ଗ୍ରାମର ଅନ୍ୟାନ୍ୟ ଘରଠାରୁ ଟିକିଏ ଅଲଗା । ଘରର କବାଟ ଭିତରୁ କିଳା ହୋଇଥିଲେ ମଧ୍ୟ କବାଟ ଫାଙ୍କ ଦେଇ ଭିତର ଆଲୁଅ ପଦାକୁ ବାହାରୁଅଛି । ଭିତରେ ମିଞ୍ଜି ମିଞ୍ଜି ହୋଇ ଯେଉଁ ଦୀପଟି ଜଳୁଛି ତାହା ଅନ୍ଧାର ଯେତେ ଦୂର କରୁନାହିଁ, ଘରେ ତାହା ଅପେକ୍ଷା ବେଶି ଧୂଆଁର ସୃଷ୍ଟି କରୁଅଛି । ଘର ଭିତରେ ଖଣ୍ଡିଏ ଜାଠର ଖଟିଆ ଓ କେତେଗୁଡ଼ିଏ ଶିକା ଉପରେ ହାଣ୍ଡି, ସଲିମ, ବାଉଁଶିଆ, ଡ଼ାଲ ପ୍ରଭୃତି ଛଡ଼ା ଅନ୍ୟ କୌଣସି ମୂଲ୍ୟବାନ୍ ଜିନିଷ ଦୃଷ୍ଟିଗୋଚର ହୁଏ ନାହିଁ । ଘରର ଫାଙ୍କା ସ୍ଥାନରେ ଦୁଇ ତିନି ଖଣ୍ଡ ଛିଣ୍ଡା ମଶିଣା ଉପରେ ଛୋଟ ବଡ଼ ତିନୋଟି ଶିଶୁ ବିପର୍ଯ୍ୟସ୍ତ ଭାବରେ ନିଦ୍ରାମଗ୍ନ । କାହା ଉପରେ ଖଣ୍ଡେ ଲୁଗା ପଡ଼ିଛି ତ କାହା ଉପରେ ନାହିଁ । ଘରର ଏକ ପାଖରେ ଥାଳ କଂସା ପ୍ରଭୃତି କେତେ ଖଣ୍ଡ ବାସନ କୁସନ ପଡ଼ିଛି । ଆଉ ଏକ ପାଖରେ ଗୋଟିଏ ମଳିନବସନା ସ୍ତ୍ରୀଲୋକ କାନ୍ଥକୁ ଆଉଜି ଆଉ ଗୋଟିଏ କ୍ଷୁଦ୍ର ଶିଶୁକୁ କୋଳରେ ଧରି ଅର୍ଦ୍ଧସୁପ୍ତ ଅବସ୍ଥାରେ ବସି ଢୁଳାଉଛି । କେତେବେଳେ ଶିଶୁଟି କାନ୍ଦି ଉଠିଲେ ସ୍ତ୍ରୀଲୋକଟି ତାକୁ ସାନ୍ତ୍ୱନା ଦେଉଛି; ପୁଣି କେତେବେଳେ ଚମକି ପଡ଼ିଲା ପରି ଉଠି ଦୁଆର ଆଡ଼କୁ ଉତ୍ସୁକ ଭାବରେ ଅନାଇ ରହୁଛି ଓ

କାନ ଡେରୁଛି । କିଛି ସମୟ ପରେ ପୁଣି କଣ ଭାବି ଟିକିଏ ଆଖି ବୁଜି କାନ୍ଥକୁ ଆଉଜି ପଡ଼ୁଛି । ଏହିପରି ଭାବରେ ଯେପରି କାହାର ପ୍ରତୀକ୍ଷାରେ ରହି ସେ ଥରକୁ ଥର ଉଠୁଛି ଓ ଥରକୁ ଥର ନିଦ୍ରାର ତାଡ଼ନାରେ ଟିକିଏ ଶୋଇପଡୁଛି । ଶେଷରେ ସେ ଦୁଆର ଫିଟାଇ ବାହାରକୁ ଯାଇ ଦେଖିଲା ଯେ ଆଉ ଅନ୍ଧାର ନାହିଁ, ଶୁକ୍ଳଦଶ ଚନ୍ଦ୍ରାଲୋକରେ ଶୁଭ୍ର ଓ ଉଜ୍ଜ୍ୱଳ ଦେଖାଯାଉଛି । ଆକାଶରେ ଆଉ ବେଶି ମେଘ ନାହିଁ, ପବନର ବେଗ ମଧ୍ୟ ଟିକିଏ କମି ଆସିଛି ।

ସେ ଗୃହଆଡ଼କୁ ଚାହିଁ ଦେଖିଲା, କେଉଁଠାରେ ଜନ ମାନବର ସଞ୍ଚାର ନାହିଁ, ମେଘ କୋଳରେ ଚନ୍ଦ୍ର ହସୁଛି । ତାରାଗୁଡ଼ିକ ମିଟି ମିଟି କରି ଚାହିଁ ରହିଛନ୍ତି । ଆଉ ଖଣ୍ଡେ ଖଣ୍ଡେ ମେଘ ଆକାଶରେ ଭାସି ବୁଲୁଛନ୍ତି । ସ୍ତ୍ରୀଲୋକଟିର ନାମ ମାଳତୀ । ବୟସ ବାଇଶି ତେଇଶି ହେବ । ତାର ସ୍ୱାମୀ ସୁବଳ ବେହେରା ଉହପଦରକୁ ଡଙ୍ଗା ନେଇ ମାଛ ଧରିବାକୁ ଯାଇଛି । ଏତେବେଳଯାଏ ଦେଖାନାହିଁ । ମାଳତୀ ଆଉ ଥରେ ଚିଲିକା ଆଡ଼କୁ ଚାହିଁ ଦେଇ ଦୀର୍ଘ ନିଃଶ୍ୱାସଟିଏ ପକାଇ ଦେଇ ଘର ଭିତରକୁ ଅଗ୍ରସର ହେଲା । ପୁଣି କଣ ଭାବି ଘରେ ଶିକୁଳି ଲଗାଇ ଦେଇ କିଛି ଦୂରରେ ଥିବା ଗୋଟିଏ କୁଡ଼ିଆ ଆଡ଼କୁ ଗଲା ।

ସେ କୁଡ଼ିଆରେ ଥାଏ ସାବି । ସେ ବଡ଼ ଦୁଃଖିନୀ । ତାର ସ୍ୱାମୀ ନାହିଁ କି ଅନ୍ୟ କେହି ସାହା ଭରସା ନାହିଁ । ଅଛନ୍ତି ଖାଲି ଦୁଇଟି ଅପୋଗଣ୍ଡ ଶିଶୁ । ସେହି ଶିଶୁ ଦୁଇଟି ପାଇଁ ଯେପରି ସେ ସଂସାରରେ ବଞ୍ଚି ରହିଛି । ସେହିମାନେ ହିଁ ତାର ଗେଲର ଶାଙ୍କୋଳି ପୁଣି ସେହିମାନେ ହିଁ ତାର ଅନ୍ଧକାରମୟ ଜୀବନର ଏକମାତ୍ର ଆଲୋକ ରେଖା । କେତେବେଳେ ମାଛ ଶୁଖୁଆ ବିକି କେତେବେଳେ କାହାର କାମ ଧନ୍ଦା କରି ଦେଇ ଯାହା ପାଏ ସେଥିରେ ତାର ଓ ପିଲା-ମାନଙ୍କର ଖାଲି ବଞ୍ଚି ରହିବାକୁ ମଧ୍ୟ କଷ୍ଟକର ହୁଏ । ଏତେ ବଡ଼ ଗାଁଟା ଯାକରେ କେବଳ ସୁବଳ ବେହେରା ଯୋଗୁଁ ସେ ଆଜି ପର୍ଯ୍ୟନ୍ତ ପିଲାଟିମାନଙ୍କୁ ବଞ୍ଚାଇ ପାରିଛି ।

ସୁବଳର ଦେହ ଯେପରି ସୁଦୀର୍ଘ ଓ ବଳିଷ୍ଠ ତାର ମନଟି ସେହିପରି ଉଦାର ଓ ପ୍ରଶସ୍ତ । ତାର ରୋଜଗାର ନିଜ ପରିବାରର ଭରଣପୋଷଣ ପାଇଁ ଯଥେଷ୍ଟ ନ ଥିଲେ ସୁଦ୍ଧା ସେ ସାବିର ପିଲାମାନଙ୍କୁ ସେଥିରୁ ଏକାବେଳକେ ବଞ୍ଚିତ କରେ ନାହିଁ । ଛଉଣ୍ଡ ପିଲାମାନେ ଯେତେବେଳେ "କକା" "କକା" କହି ତା ପାଖକୁ

ଦଉଡ଼ି ଆସନ୍ତି ସେ ସେମାନଙ୍କୁ ସ୍ନେହରେ କୋଳକୁ ଟାଣି ନିଏ ଓ ସେମାନଙ୍କ ସଙ୍ଗେ ବାଳକ ପରି ଖେଳ କୌତୁକରେ ମାତିଯାଏ ।

ଏଥିରେ ଯଦି କେହି ବାଧା ଦେଉଥାନ୍ତା ସେ ମାଳତୀ । କିନ୍ତୁ ମାଳତୀ ପକ୍ଷରେ ତାର ସ୍ୱାମୀର ସବୁ କାର୍ଯ୍ୟ ସୁନ୍ଦର—ତାର ଗୁଣ ସୁନ୍ଦର, ଦୋଷ ସୁନ୍ଦର, ହସ ସୁନ୍ଦର, ରାଗ ସୁନ୍ଦର । ମାଳତୀର ନିଜର ବୋଲି କିଛି ଗୋଟାଏ ନାହିଁ । ତାର ବାପ ବଡ଼ଆ ବେହେରା ଗ୍ରାମର ଜଣେ ମାତବର ଲୋକ । ଦଶ ପନ୍ଦର ଗାଁରେ ତାର ନାମଡ଼ାକ, ପାଞ୍ଚ ସାତଖଣ୍ଡ ନାହା ତାର ଭଡ଼ା ଲାଗେ । ସଦାବେଳେ କାରବାର ଲାଗି ରହିଥାଏ । ଭଲ ଘରଟିଏ ଦେଖି ଝିଅକୁ ବାହା ଦେବ ବୋଲି ତାର ସ୍ୱର ଇଚ୍ଛା ଥିଲା । ଭଲ ପାତ୍ର ମଧ୍ୟ ମିଳିଥିଲା । କିନ୍ତୁ ସୁବଳର ରୂପ ଗୁଣ ମୋହରେ ମାଳତୀ ସବୁ ଛାଡ଼ି ଦାରିଦ୍ର୍ୟକୁ ବରଣ କଲା । ବାପର ବୃଦ୍ଧି ଶୁଦ୍ଧି କ୍ରୋଧ ଝଗଡ଼ା କୌଣସି କଥାକୁ ଭ୍ରୂକ୍ଷେପ ନ କରି ସେ ଆସି ସୁବଳର କୁଟୀରରେ ଆଶ୍ରୟ ଗ୍ରହଣ କଲା । ସେହିଦିନୁ ସୁବଳ ମାଳତୀର ଇଷ୍ଟଦେବତା ।

ସୁବଳ ଚାଲିଯାଏ ମାଛ ଧରିବାକୁ, ଆଉ ମାଳତୀ ଘରେ ତାର ଭାବନାର ପସରା ମେଲାଇ ଦେଇ ବସିଯାଏ । ସେ ଭାବନାର ଅନ୍ତ ନାହିଁ । ସମ୍ଭବ ଅସମ୍ଭବ ସବୁ ପ୍ରକାର ଚିନ୍ତା ଆସି ମାଳତୀର ମନକୁ ଆଲୋଡ଼ିତ କରି ପକାଏ । ସେ ଘଣ୍ଟା ପରେ ଘଣ୍ଟା ଘର କାମସବୁ କରିଯାଏ । କିନ୍ତୁ ତାର ମନ ପଡ଼ିଥାଏ ଯାଇ ସେହି ଚଲିକାର ସୁଦୂର ନୀଳ ବକ୍ଷରେ ସୁବଳର ଡ଼ଙ୍ଗାଟି କିପରି ପାଣି ଉପରେ ଚାଲୁଥିବ, କିପରି ଦୋଳୁଥିବ, ପଦେ ପଦେ କେତେ ବିପଦ ଆସି ବାଟ ଓଗାଳୁଥିବ—ସୁବଳ କିପରି ତାର ବଳିଷ୍ଠ ଭୁଜରେ କ୍ଷେପଣୀ ଧରି ଶ୍ରମ ବିକ୍ରମରେ ସେସବୁ ଅତିକ୍ରମ କରୁଥିବ—ଓଃ କି କଷ୍ଟକର ଏ ନାଉରୀ ଜୀବନ ! ଖରା ନାହିଁ, ଶୀତ ନାହିଁ, ଝଡ଼ ନାହିଁ, ବର୍ଷା ନାହିଁ, ସବୁବେଳେ ପେଟପାଇଁ କି ଭୀଷଣ ସଂଗ୍ରାମ ! ବିପଦ ସଙ୍ଗେ କି ଅବିଶ୍ରାନ୍ତ ଯୁଦ୍ଧ !

ମାଳତୀ ସାମୀର ବୁଢ଼ୀଆ ଆଈକୁ ଏତେ ଜଳ'କ ଯତ୍ନରେ ସିବାର କାରଣ ହେଉଛି ଯେ ସାମୀ ଘରେ ପାଞ୍ଚ ଦିନ ହେଲା ବାଧିକା ପଡ଼ିଛି, ତାର ଉଠିବାକୁ ବଳ ନାହିଁ । ମାଳତୀ ମଝିରେ ମଝିରେ ଯାଇ ତାକୁ କୋଳ୍ କରି ପାଣି ଟିକିଏ କି ତୋରାଣି ଟିକିଏ ପିଆଇ ଦେଇ ଆସେ । ପିଲାଟାମାନଙ୍କୁ ଘରକୁ ଆଣି ଗଣ୍ଡାଏ କରି ଖାଇବାକୁ ଦେଇଦିଏ । ଆଉ ଟିକିଏ ଭୁଲାଇ କରି ରଖିନିଏ । ସାମୀର ବୁଢ଼ୀଆ ଖଣ୍ଡି ମଧ୍ୟ ଖଟିଆ ପଡ଼ିବା ଉପରେ ବସିଲାଣି । ସୁବଳ କେତେ ଥର

ତାକୁ ଟିକଏ ଗ୍ରାଆଣି ଛପର କରି ସଜାଡ଼ି ଦେବାକୁ ବସିଲାଣି । କିନ୍ତୁ ଲଗାଣ ବର୍ଷା ଯୋଗୁ କିଛି କରିପାରୁ ନାହିଁ । ଆଉ ତାକୁ ହେଲେ କିଏ ତର ଅଛି ? ଦିନେ ଦି'ଦିନ ନିଜର ବ୍ୟବସାୟ ବନ୍ଦ କରି କେଉଁଠାକୁ ଯାଇ ନଡ଼ା ଦଶ ବୋଝ କି କାଠ ବାଉଁଶ ଦି'ଖଣ୍ଡ ଆଣିଲେ ସିନା ହେବ । ଏକା ଲୋକ କେଉଁଆଡ଼କୁ ପାରିବ ସେ ?

ମାଲତୀ ସାବୀର କୁଡ଼ିଆ ଘର ପାଖକୁ ଯାଇ ଦେଖିଲା, ଘରଟା ଖଣ୍ଡିଆ ଭୂତ ପରି ଦାନ୍ତନେକୁଟି କରି ଛିଡ଼ା ହୋଇଛି । ଘରର ନଡ଼ା କୁଟା ସବୁ ପବନରେ ତଳେ ଓଲଟି ହୋଇ ପଡ଼ିଛି । ଆଉ ଘର ଭିତରେ ଦର ଦର ହୋଇ ବର୍ଷା ପାଣି ପଡ଼ୁଛି । ଚାରିଆଡ଼େ ଖାଲି ଖାଁ । ଖାଁ । ହେଉଛି । ମାଲତୀକୁ ସ୍ଥାନଟା କିପରି ମାଡ଼ି ପଡ଼ିଲା ପରି ଲାଗିଲା । ସେ ଘର ପାଖକୁ ଯାଇ 'ସାବୀ' 'ସାବୀ' ବୋଲି ଅନେକ ଥର ଡାକିଲା । କିନ୍ତୁ କିଛି ସୋର ଶବଦ ପାଇଲା ନାହିଁ । ଶେଷରେ କବାଟରେ ହାତ ମାରିଦେବାରୁ କବାଟ ଠିଆ ମେଲା ହୋଇଗଲା । ଆଉ ସାଙ୍ଗେ ସାଙ୍ଗେ ଘୁ ଘୁ କରି ଗୁଡ଼ାଏ ଶୀତଳ ପବନ ଘର ଭିତରେ ପଶିଗଲା । ପିଲା ଦିଟା ଚରଚରେଇ ଉଠିଲେ କିନ୍ତୁ ସାବୀର ଟିକଏ ଉଁ ଚୁଁ ନାହିଁ କାହିଁକି ? ଏଡ଼େ ବଡ଼ କନକନିଆ ଥଣ୍ଡା ପବନରେ ତାର ନିଦ ଭାଙ୍ଗୁ ନାହିଁ କିପରି ? ସେ ମାଲତୀ ପାଖକୁ ଯାଇ ତାର ଦେହରେ ହାତ ମାରି ଦେଇ ଚମକି ପଡ଼ିଲା— ଦେହଟା ଯାକ ହିମ କାକର ! ମାଲତୀ ବୁଝି ପାରିଲା ଯେ ସାବୀର ପ୍ରାଣ ଅନେକ ଆଗରୁ ପିଣ୍ଡ ଛାଡ଼ି ଚାଲିଗଲାଣି । କଣ କରିବ ତାକୁ କିଛି ବୁଦ୍ଧି ଦେଖାଗଲା ନାହିଁ— ସେ କେତେବେଳ ଯାଏ ଥକା ହୋଇ ବସି ରହିଲା । କିଛି ସମୟ ପରେ ନିଦ୍ରିତ ଶିଶୁ ଦୁଇଟିଙ୍କୁ ଧରି ସେ ନିଜ ଘରକୁ ଫେରି ଆସିଲା ।

ସେମାନଙ୍କୁ ମଶିଣାରେ ଶୁଆଇ ଦେଲା ପରେ ମାଲତୀ ମୁଣ୍ଡରେ ଭାବନାର ଜୁଆର ଆସିଗଲା । ସେ ଭାବିଲା ସାବୀ ତ ମରି ସରଗକୁ ଚାଲିଗଲା । ସେ ଖାଲି ଘାଣ୍ଟି ହେବାକୁ ରହିଲା । ସେ ଘାଣ୍ଟି ହେଲେ କିଛି ଚିନ୍ତା ନ ଥିଲା, କିନ୍ତୁ ସୁବଳ ସେ ତା ସଙ୍ଗେ ଘାଣ୍ଟି ହୋଇଯିବ । ସେମାନଙ୍କର ପାଞ୍ଚ ପାଞ୍ଚଟା ପିଲା, ସେମାନଙ୍କ ପାଟିରେ ଦି'ବେଳା ଦି'ମୁଠା ଲେଖାଏଁ ଆହାର ଦେବାକୁ ଭାରି ବଳ ନାହିଁ । ପୁଣି ଭଗବାନ ଆଣି ଦେଲେଣି ବୋଝ ଉପରେ ନଳିତା ବିଡ଼ା । ସମ୍ଭାଳି ନ ପାରି ଘେନି ତ ଆସିଲା, ପିଲା ଦୁଇଟାଙ୍କୁ ଏବେ କରେ କଣ ? ସୁବଳ ଦେଖିଲେ କଣ କହିବ, କଣ କରିବ, ତାର ଠିକଣା କଣ ? ଏହିପରି ନାନା ଚିନ୍ତା ତା ମୁଣ୍ଡରେ ଖେଳିଗଲା ।

ରାତି ପାହି ଆସିଲା ବେଳକୁ ସୁବଳ ଆସି ପହଞ୍ଚି ଗଲା ଏକ ଜାଲବନ୍ଧା ଧରି । ମାଳତୀ କବାଟ ଫିଟାଇ ଦେଇ ପଦାକୁ ଧଡ଼ପଡ଼ ହୋଇ ବାହାରି ପଡ଼ିଲା । ସୁବଳ ତାକୁ ଦେଖି ହସି ହସି କହିଲା, "ନାବକେଳି ସାରି ଫେରିଲେ ହରି" । ମାଳତୀ କହିଲା, "ଆହା, ହା ନାବକେଳି ? କୋଉ ଏକ ସକାଳୁ ଯାଇଛ ସେ ପୁଣି ଆସି ଦିନ ଉଠିବାକୁ ବସିଲେଣି । ଏତେ ବଡ଼ ଝଡ଼ ତୋଫାନରେ ଲୋକେ କଣ ମାଛ ଧରିବାକୁ ଯାଆନ୍ତି ? ନ ହେଲେ ସେ ମାଛ, ନ ହେଲେ ସେ ପଇସା ? କାହିଁକି ଆମ ଜୀବନ କଣ ଜୀବନ ନୁହେଁ ?" ସୁବଳ କହିଲା, "ନାହିଁ ଲୋ, ଆଜି କ ଦୁର୍ଯୋଗରେ ବାହାରିଥିଲି, ମାଛ ଫାଛ କିଛି ନାହିଁ ? ଖାଲି ଭୁଆଁ ବୁଲା ସାର ହେଲା, ଲାଭ ଭିତରେ ଯେ ଜାଲ ଖଣ୍ଡି ଛିଣ୍ଡି ଯାଇଛି ।"

ଏକଥା ଶୁଣି ମାଳତୀର ଛାତି ଭିତର ଥରି ଉଠିଲା । ସେ ଗୋଟାଏ କଣ ବାହାନା କରି ଘର ଭିତରକୁ ଚାଲିଗଲା । କିଛି ସମୟ ପରେ ଆସି କହିଲା, "ଏ, ଶୁଣିଲଣି, ସାନଟି ଆଜି ରାତିରେ ମରିଗଲା ।" "ଏଁ କେତେବେଳେ ?" ଏତିକି କହିଦେଇ ସୁବଳ ଗୁମ୍ ହୋଇ ବସି ରହିଲା, ପରେ କହିଲା, "ଭଗବାନଙ୍କ ଏ କି ବିଚାର ! ହଉ, ତୁ ଯା, ପିଲା ଦି'ଟାଙ୍କୁ ଘେନିଆସ, ମୁଁ ମଡ଼ା ଉଠାଇବାର ବ୍ୟବସ୍ଥା କରେଁ । ଆମର ପାଞ୍ଚୋଟି ପିଲା ଥିଲେ, ଏବେ ହେଲେ ସାତୋଟି । ଯେତେବେଳେ ଯାହା ଯୋଗ, ସେଥିକି ଉପାୟ କଣ ? ଆଉ ଭାବିବାକୁ ବେଳ ନାହିଁ, ତୁ ଯା ।"

ଦଳର କଥା ଶୁଣି ମାଳତୀ ମୁଣ୍ଡରୁ ବଡ଼ ବୋଝଟାଏ ଖସି ପଡ଼ିଲା । ସୁବଳକୁ ପିଲାଙ୍କ ଶୋଇବା ସ୍ଥାନକୁ ଟାଣିନେଇ କହିଲା, "ହେଇ ଦେଖ୍ ଇଏ କଣ ?" ସୁବଳ ଆଉ କଥା କହିପାରିଲା ନାହିଁ । କେବଳ ମାଳତୀକୁ ନିଜ ଛାତି ଉପରକୁ ଆଉଜାଇ ଆଣିଲା ।

————